ବିଶ୍ୱଭାରତୀ ଗବେଷଣା ପ୍ରକାଶନ

ପ୍ରଥମ ପ୍ରକାଶ ୧୯୬୪

ଦ୍ୱିତୀୟ ସଂସ୍କରଣ ଅଗଷ୍ଟ ୧୯୮୦

ମୂଲ୍ୟ ଟଙ୍କା ମାତ୍ର

ମୁଦ୍ରକ : ଅତୁଲ ମିଶ୍ର ବି. ଏ.

ଆଂଲୋ ଓଡ଼ିଆ ପ୍ରେସ,

୧୧୪, ବଡ଼ବଜାର ଷ୍ଟ୍ରୀଟ, କଲିକତା-୭୦୦ ୦୧୨

ପ୍ରକାଶକ :

**ଡକ୍ଟର ପଶୁପତି ଶାଶମଲ**

ସମ୍ପାଦକ, ବିଶ୍ୱଭାରତୀ ଗବେଷଣା ପ୍ରକାଶନ ସମିତି

ଶାନ୍ତିନିକେତନ, ପଶ୍ଚିମବଙ୍ଗ

# ନିଜ କଥା

## ଦ୍ୱିତୀୟ ସଂସ୍କରଣ

ଆଧୁନିକ ଓଡ଼ିଆ କାବ୍ୟଧାରା : ଆଦିଯୁଗ ଗ୍ରନ୍ଥଟି ଛାତ୍ର ଅଧ୍ୟାପକ ଓ ସୁଧୀ ମଣ୍ଡଳରେ ଆଦୃତ ହେବା ସଙ୍ଗେ ସଙ୍ଗେ ବିଶ୍ୱଭାରତୀ, ଉତ୍କଳ, ବ୍ରହ୍ମପୁର ଓ ସମ୍ବଲପୁର ଆଦି ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟ କର୍ତ୍ତୃକ ସ୍ନାତକୋତ୍ତର ଶ୍ରେଣୀର ସୂଚନା ପାଠ୍ୟରୂପେ ସ୍ୱୀକୃତ । ସୁଦୂର ଲଣ୍ଡନ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଜନ ବୋଲ୍ଟନ ଏହି ଗ୍ରନ୍ଥଟିରେ ମୁଗ୍ଧ ହୋଇ ନିକଟରେ ବିଶ୍ୱଭାରତୀ ଆସି ମୋ ସଙ୍ଗେ ଯୋଗାଯୋଗ ସ୍ଥାପନ କରି ଯାଇଛନ୍ତି ।

ସଂପ୍ରତି ଆଧୁନିକ ଓଡ଼ିଆ କାବ୍ୟଧାରାର ଦ୍ୱିତୀୟ ଭାଗ "ଆଧୁନିକ ଓଡ଼ିଆ କାବ୍ୟଧାରା : ନବ ଜାଗରଣ ଯୁଗ" ନାମରେ ବିଶ୍ୱଭାରତୀ ଗବେଷଣା ସମିତି କର୍ତ୍ତୃକ ପ୍ରକାଶିତ ହୋଇଛି । ଏହାର ତୃତୀୟ ଭାଗ "ଆଧୁନିକ ଓଡ଼ିଆ କାବ୍ୟଧାରା : ସମକାଳୀନ ଯୁଗ" ଗ୍ରନ୍ଥଟି ନିକଟ ଭବିଷ୍ୟତରେ ପ୍ରକାଶିତ ହେବ ବୋଲି ଆଶା କରାଯାଏ ।

ଆଧୁନିକ ଓଡ଼ିଆ ସାହିତ୍ୟ ପ୍ରେମ ଲକ୍ଷିତ ଏହି ପ୍ରଥମ ଚର୍ଚ୍ଚା ନିବନ୍ଧ ଗ୍ରନ୍ଥଟି ଦୀର୍ଘ ପନ୍ଦର ବର୍ଷ ପରେ ପୁନର୍ମୁଦ୍ରିତ ହେଉଛି । ଏହି ଅବସରରେ ନୂତନ ତଥ୍ୟ, ପରିବର୍ତ୍ତିତ ଦୃଷ୍ଟିଭଙ୍ଗୀ ଆଲୋକରେ ଗ୍ରନ୍ଥଟିର ନୂତନ ସଂଯୋଜନ ପ୍ରୟୋଜନ ହେବା ସ୍ୱାଭାବିକ । ମାତ୍ର ଏବେ ମଧ୍ୟ ଓଡ଼ିଆରେ ଉଚ୍ଚ ଗବେଷଣା ପାଇଁ ଅନୁକୂଳ ଆଧୁନିକ ଯୁଗୋପଯୋଗୀ କ୍ଷେତ୍ର ପ୍ରସ୍ତୁତ ହୋଇନାହିଁ । କୌଣସି ତଥ୍ୟାନୁସନ୍ଧାନର ଆନୁଷ୍ଠାନିକ ପ୍ରୟାସ, ଅଥବା ତଥ୍ୟାଗାର ପ୍ରତିଷ୍ଠାର ଉଦ୍ୟମ ଏ ପର୍ଯ୍ୟନ୍ତ ହୋଇନାହିଁ । ଅଧିକନ୍ତୁ ଗବେଷକଙ୍କ ସଂଖ୍ୟା ବୃଦ୍ଧି ତୁଳନାରେ ଉଚ୍ଚକୋଟୀର ଗବେଷଣା ଅନୁଷ୍ଠାନର ଅଭାବ ଗୁଣାତ୍ମକ ବିକାଶ ପଥରେ ବାଧାରୂପେ ଦେଖା ଦେଇଛି । ଏହି ଅବସରରେ "ସୁବିନ୍ୟସ୍ତ ଭାଷାର ଉପାଦାନରେ ଗଠିତ ବିଷାଦ ବଧୁର, ଆନନ୍ଦ ଉଜ୍ଜ୍ୱଳ, ଆହରଣପୁଷ୍ଟ, ଆବେଦନରେ ଚିରନ୍ତନ, ଆକର୍ଷଣରେ ନିତ୍ୟନୂତନ ଆଧୁନିକ ଉତ୍କଳର କାବ୍ୟ ଆତ୍ମାର ଜୀବନ୍ତ ବିଗ୍ରହ" ରୂପେ ସ୍ୱୀକୃତ ଏହି ଗ୍ରନ୍ଥଟିର ନୂତନ ମୂଲ୍ୟାୟନ ହେବା ସଙ୍ଗେ ସଙ୍ଗେ ଏହାର ପ୍ରୟୋଜନୀୟତା ବିଶେଷ ଅନୁଭୂତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ନୂତନ ସଂସ୍କରଣରେ ସଂଯୋଜନ କ୍ୱଚିତ୍ ଆବଶ୍ୟକ ହୋଇଛି । କେବଳ ସ୍ଥଳ ବିଶେଷରେ ସଂଶୋଧନ ମାତ୍ର କରାହୋଇଛି । ସୂଚନାରେ ପୁନର୍ବିନ୍ୟାସ କରାହୋଇଛି । ଏହି କାର୍ଯ୍ୟରେ ସହାୟତା ଲାଗି ବିଶ୍ୱଭାରତୀ ଓଡ଼ିଆ ବିଭାଗର ଗବେଷକ ଶ୍ରୀମାନ ଦେବେନ୍ଦ୍ର କୁମାର ଦାଶଙ୍କୁ ଆନ୍ତରିକ ସାଧୁବାଦ ।

ଶାନ୍ତିନିକେତନ
୨୫ ଜ୍ୟେଷ୍ଠ ୧୩୮୫

ନରେନ୍ଦ୍ର ନାଥ ମିଶ୍ର
୧୦ ଜୁନ ୧୯୭୮

## ପ୍ରଥମ ସଂସ୍କରଣ

'ଆଧୁନିକ ଓଡ଼ିଆ ସାହିତ୍ୟର ଆଧୁନିକତା' ନାମରେ ଗୋଟିଏ ପ୍ରବନ୍ଧ ପ୍ରାୟ ଦଶବର୍ଷ ତଳେ ଛାତ୍ର ଜୀବନରେ ଲେଖିଥିଲି। ସେଇ ପ୍ରବନ୍ଧଟି ପ୍ରଥମେ 'ପ୍ରଜ୍ଞାଟୀ' ଓ ପରେ ମୋର 'ଶୈଳ ଓ ସୀମାନ୍ତ' ଗ୍ରନ୍ଥରେ ପ୍ରକାଶିତ ହୋଇଛି। ଏହି ପ୍ରବନ୍ଧରେ ନୂଆ ସାହିତ୍ୟର ଯୁଗ ବିନ୍ୟାସ ପ୍ରସଙ୍ଗରେ ଲେଖିଥିଲି "ଐତିହାସିକ ତାତ୍ପର୍ଯ୍ୟ ଦୃଷ୍ଟିରୁ ସମାଲୋଚକମାନେ ବ୍ୟକ୍ତି ବା ଗୋଷ୍ଠୀକୁ କେନ୍ଦ୍ର କରି ରାଧାନାଥ ଯୁଗ ସତ୍ୟବାଦୀ ଯୁଗ, ସବୁଜ ଯୁଗ ଆଦି ଯୁଗ ବିନ୍ୟାସ କରିଛନ୍ତି। କିନ୍ତୁ ସମଗ୍ରରୂପେ ଆଧୁନିକ ସାହିତ୍ୟର ସ୍ୱରୂପ ବିନ୍ୟାସ ପାଇଁ ଏଇ ନାମଗୁଡ଼ିକ ଯଥେଷ୍ଟ ଇଙ୍ଗିତପୂର୍ଣ୍ଣ ନୁହେଁ। ଏଥିପାଇଁ ଆଧୁନିକ ସାହିତ୍ୟକୁ ଅଭ୍ୟୁଦୟ ବା ପୁନର୍ଜାଗୃତି, ଜାତୀୟଯୁଗ ଓ ଆନ୍ତର୍ଜାତୀୟ ଯୁଗ ରୂପେ ବିଭକ୍ତ କରାଯାଇପାରେ। ଏହି ଯୁଗଗୁଡ଼ିକ ଭିତରେ ଯଥାକ୍ରମେ ଆଧୁନିକ ସାହିତ୍ୟର ଆରମ୍ଭ, ବିକାଶ ଓ ପରିଣତି ନିହିତ। ଏଇ ବିଚାରରେ ଆଧୁନିକ ସାହିତ୍ୟର ସମସ୍ତ ବିଭାଗର ବିକାଶକ୍ରମ ଆଲୋଚନା କରାଯାଇ ପାରେ। ମାତ୍ର ଯେପରି ପ୍ରାଚୀନ ପରମ୍ପରାର, ସେଇପରି ଆଧୁନିକ ପୁରୋଦୃଷ୍ଟି ଓ ପଶ୍ଚାତ୍ର ଏକ ସମନ୍ୱିତ ଭୂମିକା କବିତା ଭଳି ଅନ୍ୟ ବିଭାଗରୁ ଖୋଜି ପାଇବା ସହଜ ନୁହେଁ। ସେଇ ଦୃଷ୍ଟିରୁ ପ୍ରଥମେ ଆଧୁନିକ କବିତାର ଆଲୋଚନା କରିବାକୁ ସ୍ଥିର କରିଅଛି। ୧୯୬୦ ମସିହାରେ ବିଶ୍ୱଭାରତୀ କର୍ତ୍ତୃକ ପିଏଚ୍. ଡି. ଥେସିସ୍ ରୂପେ ଗୃହୀତ ଏହି ଗ୍ରନ୍ଥଟି ସୂଚିତ ଆଲୋଚନାର ପ୍ରଥମ ପର୍ଯ୍ୟାୟ। ଆଧୁନିକ କବିତାର ବିକାଶ ଓ ପରିଣତିର ଅବଧାରଣା ଲାଗି ଅଧିକ ଅନୁସନ୍ଧାନ ଆବଶ୍ୟକ।

ଆଧୁନିକ କାଳର ଅନ୍ୟତମ ବିଦଗ୍ଧ କବି ଓ ସମାଲୋଚକ ଅଧ୍ୟାପକ ଡକ୍‌ଟର କୃଷ୍ଣବିହାରୀ ଦାଶ ମୋର ଏହି ଗବେଷଣାର ପ୍ରଧାନ ପଥ ପ୍ରଦର୍ଶକ ଓ ସହାୟକ। ତାଙ୍କର ନିର୍ଦ୍ଦେଶନାରେ ଗ୍ରନ୍ଥଟି ରଚିତ। ପରମ ଶ୍ରଦ୍ଧାଭାଜନ ପୂଜ୍ୟପାଦ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସୂଚନା କ୍ରମେ ଗ୍ରନ୍ଥର ପରିଶିଷ୍ଟରେ ଅଧିକ ବିଷୟ ସଂଯୋଜିତ ହୋଇଛି। ଏ ଦୁହିଙ୍କଠାରେ ମୁଁ ଏକାନ୍ତ ଋଣୀ। ବିଶ୍ୱଭାରତୀ ଓଡ଼ିଆ ବିଭାଗର ପୂର୍ବତନ ମୁଖ୍ୟ ଅଧ୍ୟାପକ ଡକ୍‌ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଅନୁଗୁଳ କଲେଜର ଅଧ୍ୟାପକ ଶ୍ରୀ ଭବଗ୍ରାହୀ ମିଶ୍ର ଉପାଦାନ ସଂଗ୍ରହରେ ନାନାଭାବରେ ସାହାଯ୍ୟ କରିଛନ୍ତି। ବିଶ୍ୱଭାରତୀରେ ମୋର ସହକର୍ମୀ ଅଧ୍ୟାପକ ଶ୍ରୀ ଖଗେଶ୍ୱର ମହାପାତ୍ର ନାମସୂଚୀ ପ୍ରସ୍ତୁତିରେ ପ୍ରଭୂତ ସାହାଯ୍ୟ କରିଛନ୍ତି। ଏ ସମସ୍ତଙ୍କୁ ଆନ୍ତରିକ ସାଧୁବାଦ।

ଶାନ୍ତିନିକେତନ ଲେଖକ
୨୦-୯-୬୪

# ମୁଖବନ୍ଧ

ଥେସିସ୍ ଲେଖା ଏକ ଅସାଧ୍ୟ କର୍ମ ନୁହେଁ । ସାଧାରଣତଃ ଦ୍ୱିତୀୟ ଶ୍ରେଣୀର ତୃତ ଥେସିସ୍ ଲେଖି ଡକ୍ଟରେଟ ଡିଗ୍ରୀ ପାଇଥାନ୍ତି । ବିଶ୍ୱବିଦ୍ୟାଳୟର ପାଠାଗାରରେ କେତେ ଥେସିସ୍‌ର ପାଣ୍ଡୁଲିପି ପଡ଼ି ପଡ଼ି ପାଣ୍ଡୁର ହୋଇଯାଏ, ଆଲୋକର ମୁଖ ଦେଖେ ନାହିଁ । ସେଥିରେ ହୁଏତ କେବଳ ତଥ୍ୟ ସଂକଳନ ହୋଇଥାଏ, ସତ୍ୟାନୁସନ୍ଧାନର ଏକାଗ୍ର ପ୍ରଚେଷ୍ଟା ହୋଇ ନ ଥାଏ ।

ଥେସିସ୍‌ର ଅର୍ଥ ସତ୍ୟାନୁସନ୍ଧାନ ଓ ସେହି ପ୍ରୟାସ କ୍ରମରେ ବିଷୟର ନୂତନ ବିଭବ ଆବିଷ୍କାର, ଉଦ୍‌ଭାବନ ବା ସର୍ଜନ । ସଭ୍ୟତାର ଅଗ୍ରବର୍ତ୍ତୀ ବର୍ତ୍ତିକା ଧରି ଏହି ଗବେଷକମାନେ ଅଗ୍ରସର ହୋଇଥାନ୍ତି । ଏମାନଙ୍କ ତ୍ୟାଗ ଓ ଆତ୍ମୋତ୍ସର୍ଗ ଉପରେ ବହୁ ଭୋଗର ମନ୍ଦିର ଗଢ଼ା ; ଦୁର୍ଗମକୁ ସୁଗମ, ଅସାଧ୍ୟକୁ ସାଧ୍ୟ ଏହିମାନେ କରିଥାନ୍ତି, ଅସରନ୍ତି ପ୍ରାକୃତିକ ଶକ୍ତି ଉତ୍ସକୁ ସାଧାରଣ ମନୁଷ୍ୟର ଉପକାରରେ ଲଗାଇଥାନ୍ତି । ଏମାନେ ପ୍ରକୃତରେ ସାଧକ,ଋଷି । ପ୍ରେକ୍ଷାଗାର ସେମାନଙ୍କ ଆଶ୍ରମ । ଆତ୍ମାହୁତିରେ ସେମାନେ ମହା ସାଧନାର ଯଜ୍ଞ ଜଳାଇଥାନ୍ତି ଏମାନଙ୍କ ପକ୍ଷରେ ଥେସିସ୍ ଲେଖାର ଅର୍ଥ ଗୋଟିଏ ତୋରଣ ଅତିକ୍ରମ, ବୃହତ୍ତର ଗବେଷଣା ଲାଗି ଏକ ପ୍ରସ୍ତୁତି । ସାରା ଜୀବନ ଏମାନେ ଗବେଷଣା କରୁଥାନ୍ତି, ନୂଆ ନୂଆ ଥେସିସ୍ ଲେଖୁଥାନ୍ତି । ସାଧାରଣ ଗବେଷକଙ୍କ ପକ୍ଷରେ ଏହା ଏକ ସାମୟିକ ଯୋଜନା, ଡିଗ୍ରୀ ଲାଭ ଅର୍ଥ ଯୋଗ୍ୟତାର ଏକ ସ୍ୱୀକୃତି ; ସେହି 'ସ୍ୱୀକୃତି ପତ୍ର' ବଳରେ ସେମାନଙ୍କର ପଦୋନ୍ନତି ହୋଇଥାଏ, କିନ୍ତୁ ପ୍ରକୃତ ଆତ୍ମୋନ୍ନତି ହୋଇପାରେ ନାହିଁ । ଏହାକୁ ଆଳ କରି ପରବର୍ତ୍ତୀ ଜୀବନରେ କୌଣସି କୌଣସି ଗବେଷକ ଆଉ କିଛି କରନ୍ତି ନାହିଁ । ଉପାଧି ତାର ଅହଙ୍କାରର ହେତୁ ହୁଏ, ଏକ ବ୍ୟାଧିରେ ପରିଣତ ହୁଏ ।

ସାହିତ୍ୟ ଗବେଷକଙ୍କର କାର୍ଯ୍ୟ ବୈଜ୍ଞାନିକ ଗବେଷକଙ୍କଠାରୁ ଭିନ୍ନତର । ଏଥିରେ ସ୍ଥୁଳ ଉପାଦାନର ପରୀକ୍ଷା ନିରୀକ୍ଷା ହୁଏ ନାହିଁ । ସେ ସୃଷ୍ଟିକୁ ପୁଣି ସୃଷ୍ଟି କରେ, କଳାତ୍ମକ ବସ୍ତୁର ବୁଦ୍ଧିର ପ୍ରୟୋଗରେ ମାନସ ସୃଷ୍ଟିର ନୂତନ ମୂଲ୍ୟାଙ୍କନ କରେ, ଯୁଗେ ଯୁଗେ ସୃଷ୍ଟି ରହସ୍ୟର ଦ୍ୱାର ଉଦ୍‌ଘାଟନ କରେ । "କୀର୍ତ୍ତିର୍ଯସ୍ୟ ସ ଜୀବତି" ବୋଲି ଯାହା କହନ୍ତି, ତାହା ସବୁ କବି ବା ଲେଖକଙ୍କ ପ୍ରତି ପ୍ରଯୁଜ୍ୟ ହୋଇ ନ ପାରେ । କାଳକ୍ରମେ ବହୁ କବିଙ୍କର ନାମ ଲୁଚିଯାଇପାରେ ; ଗବେଷକ ସେହି ବିସ୍ମୃତ କବି ଲେଖକ-ମାନଙ୍କ ଜୀବନୀ ଓ ରଚନାକୁ ପୁଣି ଲୋକଲୋଚନକୁ ଆଣେ, ସେମାନଙ୍କ ଲେଖାର ନୂତନ ବିଭବ ଦର୍ଶାଏ । ଉଦାସୀନ ପାଠକ ଆକୃଷ୍ଟ ହୁଅନ୍ତି, ରଚନାର ଏକାନ୍ତ ପ୍ରାଚୀନ, ଅଧୁନା ସ୍ୱଚ୍ଛୀକୃତ ନୂତନ ରସ ଆସ୍ୱାଦନ କରନ୍ତି । ତେଣୁ ଗବେଷକ କେବଳ ଜଣେ ଗତାନୁଗତିକ ବ୍ୟାଖ୍ୟାକାର ନୁହନ୍ତି, ଏକଦା ସ୍ରଷ୍ଟାର ପୁନଃସର୍ଜକ : ନୂତନର ପ୍ରସ୍ତାବକ, ପ୍ରେରକ ମଧ୍ୟ ।

ଗବେଷଣା ଡକ୍ଟର ନରେନ୍ଦ୍ରନାଥ ମିଶ୍ରଙ୍କର ଏକ ଜୀବନ ବ୍ୟାପୀ ଯୋଜନା । ତେଣୁ ଡିଗ୍ରୀ ଲାଭ ତାଙ୍କୁ ବିକ୍ଷତ କରି ନାହିଁ । ଯାହା ଲାଭ ହୋଇଥାଉ ପଛକେ ତାଙ୍କର କିଛି କ୍ଷତି କରି ନାହିଁ । ଓଡ଼ିଆ ସାହିତ୍ୟର ନବ ନବ ଆଭିମୁଖ୍ୟ ଆବିଷ୍କାରରେ ସେ ତତ୍ପର, ନିରଳସ, ଅଧ୍ୟବସାୟୀ ।

ତାଙ୍କର ବିଷୟବସ୍ତୁ ନୂତନ ନୁହେଁ, ଏହା ବହୁ ଆଲୋଚିତ । ତେଣୁ କିଛି ନୂଆ କଥା କହିବା ଉଦ୍ଭାବନା ଶକ୍ତିର ଅପେକ୍ଷା ରଖେ । ପୁଣି ଅନ୍ୟର ଭାବ ଭାବନାକୁ ଆତ୍ମସାତ୍ କରି ନିଜର ପରି ବ୍ୟକ୍ତ କରିବା ଗ୍ଳାନିକର । ଗତାନୁଗତିକ ପଥରେ ମୌଳିକତା ଦେଖାଇବାର ଭାବ କରିବା ଭୟଙ୍କର । ଅନ୍ୟର ଅସ୍ୱୀକୃତ ଚୌର୍ଯ୍ୟ, ଛଦ୍ମପନ୍ଥା ହେବାର ଏକ ନିନ୍ଦନୀୟ ବାସନା । ଏ ସାଂସ୍କୃତିକ ଅନୁଦାରତାର ସୀମା ନାହିଁ । ତେଣୁ ଡକ୍ଟର ମିଶ୍ର ପୂର୍ବସୂରିମାନଙ୍କର ଆଲୋଚନାର ସୂଚନା ପ୍ରସ୍ତାବନାରେ ଦେଇ ଅଛନ୍ତି, ନିଜର କର୍ତ୍ତବ୍ୟ ଓ କୃତିତ୍ୱର ଆଭାସ ଏଥିରୁ କିଛି ପରିମାଣରେ ମିଳୁଛି ।

କାବ୍ୟ ସୃଷ୍ଟି ଓ ପରିସ୍ଥିତିର ଏକ ବ୍ୟାଖ୍ୟା । ତେଣୁ କାବ୍ୟ ବିଷୟ ପ୍ରତି ଧ୍ୟାନ ଦେବା ଆଗରୁ ସେ ପରିବେଶର ସ୍ୱରୂପକୁ କଳନାରେ ଆଣିଛନ୍ତି । ଅଭ୍ୟୁଦୟ ଯୁଗର କାବ୍ୟ ସାଧନା ଓ ସିଦ୍ଧିର ମୂଲ୍ୟାଙ୍କନ ଏହି ପ୍ରବନ୍ଧରେ କରାଯାଇଛି । ପୂର୍ବବର୍ତ୍ତୀ ଆଲୋଚକମାନଙ୍କ ମଧ୍ୟରୁ କେହି କେହି କବିଙ୍କୁ ସ୍ୱର୍ଗକୁ ଉଠାଇଛନ୍ତି, କିମ୍ବା ବିନା ଦ୍ୱିଧାରେ ପାତାଳକୁ ଫିଙ୍ଗି ଦେଇଛନ୍ତି ; ଅତି ପ୍ରଶଂସା ନଇଲେ ଅତି ନିନ୍ଦା । ଦୃଷ୍ଟି ନିରାସକ୍ତ ନୁହେଁ ଓଜନ କରି କହିବାର ଦେଖାଯାଏ ନାହିଁ । ଶୀତଳ ବା ଉତ୍ତପ୍ତ ପରିସ୍ଥିତି ଯେପରି କି ପ୍ରେରଣା ଯୋଗାଇଛି । କାବ୍ୟ କଥା କହୁଁ କହୁଁ କବି କଥା ପୁଣି ନିତାନ୍ତ ବ୍ୟକ୍ତିଗତ କୁତ୍ସା ରଚନା କରିବାକୁ ପଶ୍ଚାତ୍ପଦ ହୋଇ ନାହାନ୍ତି । ଏ ଯୁଗରେ ତହିଁର ବହୁଳାଂଶ ଅପାଠ୍ୟ । ଡକ୍ଟର ମିଶ୍ର ସେହି ବ୍ୟକ୍ତିଗତ ମୋହାଚ୍ଛନ୍ନତାରୁ ମୁକ୍ତ, ହୃଦୟର ଆବେଗରେ ସ୍ଖଳିତ ନ ହୋଇ ସେ ତଥ୍ୟଗତ ହେତୁବାଦ ଉପରେ ନିର୍ଭରଶୀଳ ହୋଇ ଅଛନ୍ତି । ତେଣୁ ତାଙ୍କର ବିଶ୍ଳେଷଣ ମନ୍ମୟ ନ ହୋଇ ହୋଇଛି ତନ୍ମୟ । ବୈଜ୍ଞାନିକ ପ୍ରଣାଳୀରେ ସେ କାବ୍ୟ ନିର୍ମାଣ ପ୍ରୟାସ ଓ କୌଶଳ, କବି କୀର୍ତ୍ତିର ମହତ୍ତ୍ୱ ମହିମା ପ୍ରଦର୍ଶନ କରିଅଛନ୍ତି ।

ଲେଖକ ଊନବିଂଶ ଶତକରେ ପ୍ରକାଶିତ ଓଡ଼ିଆ କବିତାର ଏକ ଉଜ୍ଜ୍ୱଳ ଆଲେଖ୍ୟ ଅଙ୍କନ କରିଅଛନ୍ତି । ସଂସ୍କୃତ ଓ ପାଶ୍ଚାତ୍ୟ ସାହିତ୍ୟରୁ ଆହରଣ ଓ ଅନୁକରଣର ଚିତ୍ର କେତେକାଂଶରେ ଆଲୋଚିତ ପ୍ରବନ୍ଧମାନଙ୍କରୁ ଗୃହୀତ ; ଏହା ପୂର୍ଣ୍ଣାଙ୍ଗ ନ ହେଲେ ମଧ୍ୟ ଦିଗ୍‌ଦର୍ଶକ ଦୀପସ୍ତମ୍ଭ ସ୍ୱରୂପ ହୋଇଅଛି । ନବଭାବ ବହନର ଉପଯୋଗୀ ଛନ୍ଦ ଆଧୁନିକ ଯୁଗର କବିମାନେ କିପରି ବ୍ୟବହାର କରିଛନ୍ତି, ତାହାର ତାତ୍ତ୍ୱିକ ଓ ସାଂସ୍କୃତିକ ବିଶ୍ଳେଷଣ ଗ୍ରନ୍ଥ ଶେଷରେ କରା ହୋଇଅଛି ।

"ଏହାର ଉପାଦାନ ମୌଳିକ ବା ପ୍ରତ୍ୟକ୍ଷ ନୁହେଁ, ଅପ୍ରତ୍ୟକ୍ଷ, ପର ପ୍ରସାଦ ଗୃହୀତ" ଆଲୋଚକଙ୍କର ଏହି ସ୍ୱୀକୃତ ଅନୁସନ୍ଧାନକାରୀର ସାହସିକତା ଓ ସାଂସ୍କୃତିକ ହୃଦର ଦୃଷ୍ଟି କୋଣର ପ୍ରତୀକ । ହେଲେ ହେଁ "ଆଧୁନିକ ଓଡ଼ିଆ କାବ୍ୟଧାରା" ବହୁ ପ୍ରବନ୍ଧର ଏକେ ସୂଚୀ ପତ୍ର ନୁହେଁ, ସାର ସଂଗ୍ରହ ନୁହେଁ, ଏହା ବହୁଧାରାରେ ଆତ୍ମଧାରାର ଏକ ବିପୁଳ ଯୋଗ ।

ବିଶ୍ୱ ଜଗତର ସାଂସ୍କୃତିକ ପରିପ୍ରେକ୍ଷୀରେ ସ୍ୱଦେଶୀୟ ସଂସ୍କୃତିର ଏକ ଗଭୀର ସମୀକ୍ଷା ଏଥିରେ କରାଯାଇଅଛି । ଯେତେବେଳେ ଯେତିକି ଉପାଦାନର ପ୍ରୟୋଜନ ହୋଇଅଛି, ଲେଖକ ତାହା ଗ୍ରହଣ କରିଅଛନ୍ତି । ତେଣୁ ତାଙ୍କ ପ୍ରବନ୍ଧ ତଥ୍ୟବହୁଳ ହୋଇନାହିଁ । ବରଂ ଜାଣିଶୁଣି ସେ ବହୁ ବିଷୟ ଏଡ଼ି ଯାଇଛନ୍ତି । ବିଦଗ୍ଧ ପାଠକ ଏହିଭଳି ପ୍ରବନ୍ଧର ତୁଳନାତ୍ମକ ଅଧ୍ୟୟନରେ ଉପାଦାନର ଅପ୍ରାଚୁର୍ଯ୍ୟ ଅନୁଭବ କରିବେ । ଡକ୍ଟର ମିଶ୍ରଙ୍କ ଶ୍ରମକୁଣ୍ଠତା ଯୋଗୁ ଏହା ଘଟି ନାହିଁ । ସେ ଗ୍ରନ୍ଥର ମେଦ ବୃଦ୍ଧି କରି ପାଠକକୁ 'ସବୁ ପାଇଛି'ର ଦେଶରେ ଅବତୀର୍ଣ୍ଣ କରାଇ ନାହାନ୍ତି । ତାହା କରିଥିଲେ ସେ ଜଣେ ସଂଗ୍ରାହକ ହୋଇଥାନ୍ତେ, ସମୀକ୍ଷକ ହୋଇ ପାରି ନ ଥାନ୍ତେ । ଗ୍ରନ୍ଥରେ ଆମୂଳଚୂଳ କଳାତ୍ମକ ଆନୁପାତିକ ସୌଷ୍ଠବ ସଂରକ୍ଷିତ ହୋଇଅଛି । ତଥ୍ୟ ଆହରଣ ସଙ୍ଗେ ସଙ୍ଗେ ପରିବେଷଣରେ ସେ ଅଧିକ କୌଶଳ ପ୍ରଦର୍ଶନ କରିଅଛନ୍ତି । ରାଧାନାଥ, ଫକୀରମୋହନ, ମଧୁସୂଦନ – ଏହି ତିନି କବିଙ୍କ ଚିନ୍ତା, ଅନୁଭୂତି, ଆଶା, ନୈରାଶ୍ୟ, ଜାତୀୟତା, ବିଶ୍ୱଜନୀନତା ତାଙ୍କ ଲେଖନୀରେ ସ୍ପଷ୍ଟ ରୂପ ପାଇଛି । ଗୋଟିଏ ସ୍ଥାନରେ ପ୍ରାୟ ଏକଶତ ବର୍ଷ ବ୍ୟାପୀ ଗୋଟିଏ ଯୁଗର ଚିତ୍ର ଏଥିରୁ ମିଳିବ । ଆମୂଳାନ୍ତ ଭାଷାର ସ୍ତର ଓ ଆଲୋଚନାର ସ୍ୱରସାମ୍ୟ ସୁରକ୍ଷିତ । ମନନର ମୁଦ୍ରା ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ ଅଙ୍କିତ ।

ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଏହା ଦ୍ୱିତୀୟ ଥେସିସ୍, ମଧ୍ୟ ଓଡ଼ିଆରେ ପ୍ରକାଶିତ ଦ୍ୱିତୀୟ ଥେସିସ୍ । ଅବଶ୍ୟ ଏହା ଆଗରୁ ଓଡ଼ିଆରେ ଆଉ କେତୋଟି ଥେସିସ୍ ଲିଖିତ ହୋଇଅଛି, ପ୍ରକାଶିତ ହୋଇନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟର ଆଲୋଚନାରେ ଏହା ଗୋଟିଏ ନିର୍ଦ୍ଦିଷ୍ଟ ମାଇଲ ଖୁଣ୍ଟ । ଗୋଟିଏ ଭାଷାର ଭିତ୍ତିକ ସୁଦୃଢ଼ କରିବାରେ ଏହି ଭଳି ଥେସିସ୍‌ର ଯଥେଷ୍ଟ ଉପଯୋଗିତା ରହିଅଛି ।

ଡକ୍ଟର ମିଶ୍ର ଜଣେ ସ୍ୱତନ୍ତ୍ର ପ୍ରାବନ୍ଧିକ ; ଓଡ଼ିଆ ସାହିତ୍ୟର ଆଲୋଚନା କ୍ଷେତ୍ରକୁ ସେ ପ୍ରସାରିତ କରି ଆସୁଛନ୍ତି । ଏହି ଥେସିସ୍‌ର ପରବର୍ତ୍ତୀ ଅଂଶର ଅଧ୍ୟୟନରେ ସେ ଏବେ ବ୍ୟାପୃତ । ତାଙ୍କ ଗବେଷଣା ସାର୍ଥକ ହେଉ, ଏହାହିଁ ମୋର ଆନ୍ତରିକ କାମନା ।

ରେଭେନ୍‌ସା କଲେଜ
କଟକ
୧ । ୧ । ୭୪

କୁଞ୍ଜବିହାରୀ ଦାଶ

# ସୂଚୀପତ୍ର

( କେବଳ ପ୍ରଧାନ ଉପଶୀର୍ଷକଗୁଡ଼ିକ ସୂଚୀର ଅନ୍ତର୍ଭୁକ୍ତ ହୋଇଛି )


ଆଦର୍ଶବାଦ—୧୧୫, ଆଧୁନିକ ଓଡ଼ିଆ କାବ୍ୟ-ଧର୍ମ ଓ

## ଦ୍ୱିତୀୟ ଭାଗ

## ପରିଶିଷ୍ଟ

# ପ୍ରସ୍ତାବନା

## ସୃଷ୍ଟିଚେତନାହିଁ କଳା ଓ ଭାବଚେତନାହିଁ ସମାଲୋଚନା *

ଆଧୁନିକ କାବ୍ୟ ଧାରାର ଅଭ୍ୟୁଦୟ ଗତ ଶତକରେ ଆମ ସାହିତ୍ୟିକ ଇତିହାସର ଏକ ସନ୍ଧି-କ୍ଷଣରେ ଘଟିଥିଲା । ପାଶ୍ଚାତ୍ୟ ପ୍ରଭାବ ଫଳରେ ଓଡ଼ିଆ କବିତା ଭାବଗତ ଓ ରୂପଗତ ଉଭୟ ଦିଗରୁ ବିପୁଳ ପରିବର୍ତ୍ତନ ସ୍ରୋତରେ ଗତି କରିଥିଲା । କେବଳ କଳା ସଚେତନ ନହୋଇ ପ୍ରଥମେ କବିଗଣ କାଳ ସଚେତନ ହୋଇଥିଲେ । ସେମାନଙ୍କ କାବ୍ୟରେ ବ୍ୟକ୍ତିମାନସର ସ୍ୱାକ୍ଷର ଯେପରି ଉଜ୍ଜ୍ୱଳ, ସେଇପରି ଯୁଗ ପରିବେଶ ଓ କାଳ-ଧର୍ମ ପୁଷ୍କଳ ଧାରାରେ ପ୍ରକାଶ ପାଇଅଛି । ମାତ୍ର ଏହି ଯୁଗ ପରିବେଶ ବା କବି ମାନସକୁ ବୁଝିବା ପ୍ରଥମେ ସମାଲୋଚକଙ୍କ ପକ୍ଷରେ ସହଜ ହୋଇ ନଥିଲା । ସେମାନେ ଏହି ନୂତନ କାବ୍ୟକୁ ପରମ୍ପରାରେ ପ୍ରତିଷ୍ଠିତ ମଧ୍ୟଯୁଗର କାବ୍ୟ ସହିତ ତୁଳନା କରିବାରେ ବ୍ୟସ୍ତ ଥିଲେ । ଏପରି ଯୁଗସନ୍ଧିରେ ଆଲୋଚନା ଓ ସର୍ଜନା ସାହିତ୍ୟ ମଧ୍ୟରେ ବିରୋଧ ଘଟିବା କିଛି ଅସ୍ୱାଭାବିକ କଥା ନୁହେଁ । ଯଥାର୍ଥରେ ସୃଷ୍ଟି ପ୍ରତି ଧ୍ୟାନ ଦେଲେ କଳା ବା କବିତାର ବିକାଶ ଘଟେ । ଏହି କଳା ବା କବିତାର ଭାବ ସ୍ୱଚ୍ଛ ରୂପେ ଗ୍ରହଣ କଲେ ସମାଲୋଚନା ସମ୍ଭବ ହୁଏ । ମାତ୍ର ନବଯୁଗର ଅଭ୍ୟୁଦୟ ବେଳେ ଭାବ ଗ୍ରହଣରେ ସ୍ୱଚ୍ଛ ବିଚାର କ୍ୱଚିତ୍ ପ୍ରକାଶ ପାଏ । କାରଣ, "ସମାଲୋଚକଗଣ ସ୍ୱଭାବତଃ ରକ୍ଷଣଶୀଳ । ସେମାନେ ଅତୀତରୁ ସବୁବେଳେ ଦୃଷ୍ଟାନ୍ତ ଖୋଜନ୍ତି ; ପରିବେଶର ଚାପରେ ନ ପଡ଼ିଲେ ଭବିଷ୍ୟତମୁଖୀ ନବ ପଥର ସମର୍ଥନ ସହଜରେ କରନ୍ତି ନାହିଁ । ସେମାନଙ୍କ ଶକ୍ତି ସାଧାରଣତଃ ଦ୍ରୁତ ପରିବର୍ତ୍ତନରେ ବାଧାଦେବା, ଉଚ୍ଛୃଙ୍ଖଳ ପ୍ରଭାବକୁ ସଂଯତ କରିବାରେ ସଦା ପ୍ରୟାସୀ ଥାଏ । ସମାଜ ବା ସାହିତ୍ୟରେ ପ୍ରତ୍ୟେକ ପରିବର୍ତ୍ତନ ଯୁଗ, ଭାବ ସଂଘର୍ଷ ଯୁଗ ରୂପେ ଆତ୍ମପ୍ରକାଶ କରେ । ଏହି ସଂଘର୍ଷ ଜୀବନ ଓ ଚିନ୍ତାଧାରାର ପ୍ରତ୍ୟେକ ଦିଗରେ, ସ୍ୱାଧୀନତା ଓ ଶାସନ ଶକ୍ତି, ମୌଳିକତା ଓ ପରମ୍ପରା, ବ୍ୟକ୍ତି ଭାବନା ଓ ସମୂହ ଚିନ୍ତା, ନବୀନ ଓ ପ୍ରାଚୀନ ଭେଦରେ କଳ୍ପିତ ବିରୋଧମାନ ସାମ୍ମୁଖ୍ୟ ମଧ୍ୟରେ ଦେଖା ଦେଇଥାଏ ।"[୧]

## ନବୀନ ଓ ପ୍ରାଚୀନ ଆଦର୍ଶର ସଂଘର୍ଷ

ଆଧୁନିକ କାବ୍ୟଧାରାର ଅଭ୍ୟୁଦୟ ଘଟିବା ସଙ୍ଗେ ସଙ୍ଗେ ନବୀନ ଓ ପ୍ରାଚୀନ ଆଦର୍ଶ ଯେନି ଇନ୍ଦ୍ରଧନୁ ଓ ବିଜୁଳି ପତ୍ରିକା ମାଧ୍ୟମରେ ବାଦାନୁବାଦ ଦେଖା ଦେଇଥିଲା । ଆଧୁନିକ ଯୁଗ ପ୍ରବର୍ତ୍ତକ ରାଧାନାଥ ଓ ମଧ୍ୟଯୁଗର ଶ୍ରେଷ୍ଠ କାବ୍ୟ-କବି ଉପେନ୍ଦ୍ର ଭଞ୍ଜ—ଏହି ଦୁଇ ପନ୍ଥୀଙ୍କର ଆରାଧ୍ୟ ଥିଲେ ।

୧୮୯୨ ଖ୍ରୀଷ୍ଟାବ୍ଦରେ ମୟୂରଭଞ୍ଜର ଆଦର୍ଶବାଦୀ ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ ଉତ୍କଳପ୍ରଭା ନୂତନ ପନ୍ଥୀଗଣଙ୍କୁ ଓ କର୍ମଯୋଗୀ ଗୌରୀ-ଶଙ୍କରଙ୍କ ସମ୍ପାଦିତ ଉତ୍କଳ ଦୀପିକା ପୁରାତନ ପନ୍ଥୀଙ୍କୁ ଉତ୍ସାହିତ କରୁଥିଲା । ନୂତନ ପନ୍ଥୀଗଣ ନବ କାବ୍ୟଧାରାର ସ୍ତୁତିଗାନ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ସାହିତ୍ୟ ପ୍ରତି ତୀବ୍ର ପ୍ରତିକୂଳ ସମାଲୋଚନା ପ୍ରକାଶ କରୁଥିଲେ । ନୂତନପନ୍ଥୀଗଣଙ୍କ ମଧ୍ୟରେ ପ୍ରମୁଖ ସମାଲୋଚକ ପଣ୍ଡିତ ରାମ ନାରାୟଣ ଲାଲଙ୍କ ପ୍ରାଚୀନ ସାହିତ୍ୟ ଯେନି ନମ୍ର ସମାଲୋଚନାର ସ୍ୱର ପ୍ରାୟ ସମସ୍ତ ନବ୍ୟଶିକ୍ଷିତର ସମର୍ଥକଙ୍କ କଣ୍ଠରେ ଅନୁରଣିତ ହେଉଥିଲା । 'ଓଡ଼ିଶାର ସାହିତ୍ୟ ଜଗତରେ କବି ଉପେନ୍ଦ୍ର ଭଞ୍ଜଙ୍କୁ ଶୀର୍ଷ-ସ୍ଥାନ ଅଧିକାର କରି ବସିଥିବାର ନୟନ ଗୋଚର ହୁଏ । ଅଶିକ୍ଷିତ ସମ୍ପ୍ରଦାୟର ତ କଥାନାହିଁ । ସେମାନେ କବିଙ୍କୁ ଦେବଗୁରୁ ବୃହସ୍ପତି କମ୍ବା କବିଗୁରୁ କାଳିଦାସଙ୍କ ସହିତ ଏକାସନେ ବସାଇ ସ୍ୱୀୟ ସ୍ୱୀୟ ନୟନ ମନକୁ ଚରିତାର୍ଥ କରୁଅଛନ୍ତି ।...ମାତ୍ର ଅଧିକ ଆଶ୍ଚର୍ଯ୍ୟ ଓ କ୍ଷୋଭର ବିଷୟ ଏହି ଯେ, ଆଧୁନିକ ଉଚ୍ଚଶିକ୍ଷାଭିମାନୀ ଯୁବକମଣ୍ଡଳୀଙ୍କ ମଧ୍ୟରୁ କେହି କେହି ପୂର୍ବର ଓ ଆଧୁନିକ ଅଶିକ୍ଷିତମାନଙ୍କର ଅନ୍ଧତମ ମତର ପରିପୋଷକ ହୋଇଛନ୍ତି । ...ଏହିପରି ହୋଇପାରେ ଯେ, ସେମାନଙ୍କର ସେଥିରେ ଆଦୌ ଜ୍ଞାନ ନାହିଁ, କମ୍ବା ସେମାନେ ଭଞ୍ଜକବିଙ୍କ କାବ୍ୟ ସହିତ ଅନ୍ୟ କୌଣସି ଭାଷାର ଉତ୍କୃଷ୍ଟ କାବ୍ୟକୁ ତୁଳନା କରିବାର ସୁବିଧା ପାଇ ନାହାନ୍ତି, ଅଥବା କବି ରଚିତ ପୁସ୍ତିକାବଳୀ ପ୍ରତି ଦୃଷ୍ଟି ନକ୍ଷେପ ନକରି ପୂର୍ବ ପ୍ରଚଳିତ କିଂବଦନ୍ତୀ ଅନୁସରଣରେ ସ୍ୱ ସ୍ୱ ମତ ବ୍ୟକ୍ତ କରିଥାନ୍ତି ।"[୨]

ଶ୍ରୀଯୁକ୍ତ ଲାଲ ମହାଶୟଙ୍କର ଅନେକ ସମର୍ଥକ ଥିଲେ । ଏମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ବିଶ୍ୱନାଥ କର, ସାବାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ଆଦି ପ୍ରଧାନ । ଏମାନେ ଅଶ୍ଳୀଳତା ଓ ଦୁର୍ବୋଧ୍ୟତା ଦୋଷରେ ପ୍ରାଚୀନ କାବ୍ୟର ନିନ୍ଦା କରୁଥିଲେ । ଏମାନଙ୍କ ମତ ସମର୍ଥନ କରି ଉତ୍କଳ ପ୍ରଭାର ସମ୍ପାଦକ ଶ୍ରୀ ରାଜନାରାୟଣ ଦାସ ଏକ ସମ୍ପାଦକୀୟରେ ଲେଖିଥିଲେ—'ଓଡ଼ିଆ ଭାଷାରେ ପ୍ରକୃତତଃ ସାହିତ୍ୟ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳ ସାହିତ୍ୟ ମଧ୍ୟରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସଙ୍କ ଖଣ୍ଡ ଦଶ କାବ୍ୟ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ସାରଳା ଦାସଙ୍କ ରାମାୟଣ ଓ ମହାଭାରତ ଏହାକି ଗୋଟିଏ ଜାତିର ସାହିତ୍ୟକୁ ଲକ୍ଷ୍ୟ । ପୁଣି ଯେଉଁସବୁ ଗ୍ରନ୍ଥର ନାମ କରିଣ କଲୁଁ, ସେମାନଙ୍କ ମଧ୍ୟରୁ କେବଳ

ଜଗନ୍ନାଥ ଦାସଙ୍କ ଶ୍ରୀମଦ୍‌ଭାଗବତକୁ ଛାଡ଼ି ଆଉ ସବୁ ଦ୍ୱାରା ସମାଜର ଉନ୍ନତ ହେବା ଦୂରେ ଥାଉ ବରଂ ଅଧୋଗତ ହେଉଅଛୁ ।...ଭଞ୍ଜକବି ସ୍ୱୀୟ ଗ୍ରନ୍ଥମାନଙ୍କରେ ଆଦିରସ ରୂପ ହଳାହଳ ସମୁଦ୍ର ମନ୍ଥନ କରିଅଛନ୍ତି । ଏଭଳି ଗ୍ରନ୍ଥ ସମାଜର ବୈଗୁଣ୍ୟ ଜନ୍ମାଇବାକୁହିଁ ସକ୍ଷମ । ଯେଉଁ ଗ୍ରନ୍ଥ ପାଠକଲେ ସମାଜସ୍ଥ ସାଧାରଣ ଲୋକଙ୍କର ସ୍ୱ ସ୍ୱ କର୍ତ୍ତବ୍ୟ ବୋଧ ଜନ୍ମେ ଏବଂ ଯାହା ସମସ୍ତଙ୍କୁ ନୀତିଶିକ୍ଷା, ଚରିତ୍ର ଗଠନ ଓ ସାମାଜିକ ଶିକ୍ଷା ନିମନ୍ତେ ସାହାଯ୍ୟ କରିପାରେ ତାହା ପ୍ରକୃତ ସାହିତ୍ୟ ଅଟେ । ଏଭଳି ସାହିତ୍ୟ ଓଡିଆଙ୍କର ନାହିଁ । ସୁତରାଂ ଉତ୍କଳ ସମାଜର ଉନ୍ନତିର ଉପାୟ ନାହିଁ । ଏହି ଉଦ୍ଦେଶ୍ୟ ପୂରଣ କରିବା ଉଦ୍ଦେଶ୍ୟରେ ଉତ୍କଳ ପ୍ରଭାର ଉତ୍କଳ କ୍ଷେତ୍ରରେ ଆବିର୍ଭାବ ।'[୩]

'ଉତ୍କଳ ପ୍ରଭା'ର ଘୋଷିତ ନୀତି ଓ ଆଧୁନିକତାର ପକ୍ଷ ସମର୍ଥନ ନାମରେ ପ୍ରାଚୀନ କାବ୍ୟର ପ୍ରତିକୂଳ ସମାଲୋଚନାକୁ ଗୌରୀଶଙ୍କରଙ୍କ 'ଉତ୍କଳ ଦୀପିକା' ଓ ବାଲେଶ୍ୱରର 'ସମ୍ବାଦ ବାହିକା' ସମର୍ଥନ କରି ନଥିଲେ । 'ଉତ୍କଳ ପ୍ରଭା'ରେ ପ୍ରକାଶିତ ଲାଲାଙ୍କ ମତ ଖଣ୍ଡନ କରି ଗୌରୀଶଙ୍କର ଲେଖିଥିଲେ 'ଯେଉଁ କବିଙ୍କୁ ସମସ୍ତ ଓଡ଼ିଶା-ବାସୀ ଅତିଶୟ ଆଦର ଏବଂ ସମ୍ମାନ କରନ୍ତି, ଏବଂ ଯାହାଙ୍କ ଦ୍ୱାରା ଉତ୍କଳ ସାହିତ୍ୟର ଗୌରବ ବୃଦ୍ଧି ହୋଇଅଛି, ତାହାଙ୍କର ଅକାରଣ ନିନ୍ଦାର ପ୍ରତିବାଦ କରିବା ପାଇଁ କେହି ଆମମାନଙ୍କର ସାହାଯ୍ୟ ଲୋଡ଼ିଲେ, ତାହାକୁ ନିରାଶ କରିବା ମଧ୍ଯ ଅନ୍ୟାୟ ବିବେଚନା କରୁଁ ।' ଲାଲାଙ୍କ ଭଞ୍ଜ କାବ୍ୟ ଆଲୋଚନା ଘେନି ପୁଣି ଲେଖିଥିଲେ, 'ଲାଲା ରାମନାରାୟଣ ଯେ ଶ୍ରମ ସ୍ୱୀକାର ପୂର୍ବକ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥଗୁଡ଼ିକ ପଢିଛନ୍ତି, ଏଥିଲାଗି ସେ ଧନ୍ୟବାଦର ପାତ୍ର ଅଟନ୍ତି, ମାତ୍ର ଦୁଃଖର ବିଷୟ ଯେ, ସେ ଆଧୁନିକ ଉଗ୍ର ସଂସ୍କାରକଙ୍କର ଆଖିବାଟେ ଦେଖି ବିଚାର କରିବାକୁ ପ୍ରବୃତ୍ତ ହେବାରୁ ତାହାଙ୍କ ସମାଲୋଚନା ଚକୁଳି ଖାଇବା ଛାଡ଼ି ଛିଦ୍ର ଗଣିବା ନ୍ୟାୟକୁ ଅନୁସରି ଅଛି ଏବଂ ଏଇଥିପାଇଁ ଏତେ ଅନର୍ଥ ଉପସ୍ଥିତ ହୋଇଅଛି ।'[୪]

ଠିକ୍ ଏହି ଭାବରେ ଉତ୍କଳ ପ୍ରଭା ନୀତିର ସମାଲୋଚନା ବାଲେଶ୍ୱର ସମ୍ବାଦ-ବାହିକାରେ ପ୍ରକାଶ ପାଇଥିଲା । 'ପ୍ରଭା ନ ଥିଲା ତ ନାହିଁ ।...ଅନ୍ଧକାରରେ ବୁଲିବା ବରଂଚ ଭଲ ଥିଲା , କିନ୍ତୁ କ୍ଷୀଣପ୍ରଭା ଆଲୋକ ପାଇ ପୁଣି ଅନ୍ଧକାରକୁ ଫେରିଯିବା କି ଅଧିକ ବିପଦର କଥା ନୁହେଁ ; ଅନ୍ଧ ହୋଇ ବାଡ଼ି ଧରି ଚାଲିବା ଶ୍ରେୟଃ । କିନ୍ତୁ ଅଳ୍ପ ମାତ୍ର ଚକ୍ଷୁ ଫିଟାଇ ଆଲୁଅ ଅନ୍ଧାରରେ ପଡ଼ି କଚଡା ଖାଇବା ଭଲନୁହେଁ ।'[୫] ଏପରିକି ପ୍ରଭାରେ ପ୍ରକାଶିତ ରାଧାନାଥଙ୍କ ମହାଯାତ୍ରା ଓ ତାଙ୍କ ବ୍ୟକ୍ତିତ୍ୱ ପ୍ରତି ଆକ୍ଷେପ ଏହି ପତ୍ରିକାରେ ପ୍ରକାଶ ପାଇଥିଲା । 'ମହାଯାତ୍ରା ସୁନ୍ଦର ଶିକ୍ଷଣୀୟ କବିତା ନୁହେଁ । ଓଡ଼ିଶାରେ ଅମିତ୍ରାକ୍ଷର ଛନ୍ଦ ପ୍ରତି ଲୋକଙ୍କର ଆସ୍ଥା ନାହିଁ । ରାଧାନାଥ ବାବୁ ସେ ନୂତନ ପଥର ପଥିକ ହୋଇ ସୁଦ୍ଧା ସମ୍ମାନାସ୍ପଦ ନୁହଁନ୍ତି ।'[୬]

ଏହି ବିରୋଧମାନ ସାହିତ୍ୟର ସମର୍ଥନ ପାଇଁ ପ୍ରାଚୀନ ପନ୍ଥୀଗଣ ଇନ୍ଦ୍ରଧନୁ ଓ ନବ୍ୟପନ୍ଥୀଗଣ ବିଜୁଳି ପତ୍ରିକା ପ୍ରକାଶ କରିଥିଲେ । ଶ୍ରୀ ଗୋଲୋକ ଧନ୍ଦା ଛଦ୍ମନାମ-ଧାରୀ ଲେଖକ ପ୍ରାଚୀନ ଓ ଲାଲା ମହାଶୟ ନବୀନ ପନ୍ଥୀଙ୍କର ନେତୃତ୍ୱ ନେଇଥିଲେ । ଏମାନଙ୍କର ଦୃଷ୍ଟିକୋଣକୁ ବିଦ୍ରୂପ କରି ଭକ୍ତ କବି ମଧୁସୂଦନ ଭଣ୍ଡ ରସାୟନ କାବ୍ୟ ରଚନା କରିଥିଲେ । ଯଥାର୍ଥରେ କାବ୍ୟର ସୌନ୍ଦର୍ଯ୍ୟ ଉଦ୍‌ଘାଟନ ଉଦ୍ଦେଶ୍ୟରେ ଏମାନେ ଆଲୋଚନାରେ ଅଭିନିବେଶ ନ ଦେଖାଇ ପରସ୍ପର କୁତ୍ସା ରଟନାରେ ବ୍ୟସ୍ତଥିଲେ । ମଧୁସୂଦନଂକ କବିତାରୁ ଏହାର ସୁନ୍ଦର ସୂଚନା ମିଳେ —

"ରେ ରେକାର ଶବ୍ଦେ ଧନ୍ଦା ବୋଇଲେ ସକୋପେ,
ସୂଚ୍ୟଗ୍ର ପ୍ରମାଣ ଦୋଷ ଭଞ୍ଜେ ଯେ ଆରୋପେ,
ସେ ଉତ୍କଳ କୁଳାଙ୍ଗାର ମୂଢ଼ ଅବିବେକ,
ନ ଜାଣଇ କିମ୍ପାଇଁ ଭଞ୍ଜକବି ଠେକ ।
ତୁ କି ଜାଣିବୁରେ ଲାଲା ଉପେନ୍ଦ୍ର ଗୌରବ,
ପୁଂସ-ପୁଂସୀ ମଣିଙ୍କର ପୀରତି- ସୌରଭ ?
ଆରେ ଲାଲା ଶିଷ୍ୟ ଚେଲା ! ହୁଅ ସାବଧାନ ।
ନୋହିଲେ ହୋଇବ ଲଙ୍କା କାଣ୍ଡର ବିଧାନ ।
ଥାଇ ବୋଇଲେ ଲାଲାଜୀ, ଆରେ ଧନ୍ଦାସୁର,
ଅଳୀ ଜୁକ ମାରଶିଷ୍ୟ ବିଷ-ବୀଜାଙ୍କୁର ।
ରେ ଅନ୍ଧ ଗୋଲୋକ ଧନ୍ଦା, ଦେଖିଛୁ କି ଫେଡ଼ି
ରୌରବପୂରିତ ଭଞ୍ଜଗୌରବର ପେଡ଼ି ?
ଦେଖିଥିଲି ଥରେ ବସ୍ତ୍ର ନାସିକାରେ ଗୁଞ୍ଜି,
ଫୁସ ଫୁସୀ ଭଡା ଭଣ୍ଡ ଭଞ୍ଜ କାବ୍ୟପୁଞ୍ଜି ।
* * *
ଏ ବୀଭତ୍ସ ବ୍ୟାପାରର କ୍ଳେଦମୟ ଗନ୍ଧ
ଅସୁର ନିକଟେ ସିନା ଅଟଇ ସୁଗନ୍ଧ !" ୭ ।

ଉପର ଉଦ୍ଧୃତିରୁ ଆଧୁନିକ କାବ୍ୟଧାରାର ଆଦ୍ୟ ଅଭ୍ୟୁଦୟ ଯୁଗରେ ସମାଲୋଚନାର ଆଭି-ମୁଖ୍ୟ ସହଜରେ କଳନା କରିଯାଇପାରେ । ନୂତନ କାବ୍ୟର ନିନ୍ଦା ବା ପ୍ରଶଂସା ବାଣ୍ଟି ବୁଲିବା ସମାଲୋଚକଙ୍କର କାର୍ଯ୍ୟ ଥିଲା । କାବ୍ୟଗତ ଶିଳ୍ପ ସୌନ୍ଦର୍ଯ୍ୟର ମର୍ମ ଭେଦ କରିବା, ବିଷୟ ଓ ଭାବବସ୍ତୁର ପରସର କଳନା କରିବା ପ୍ରତି ଏମାନଙ୍କର ଦୃଷ୍ଟି ଯାଇ ନଥିଲା । ପ୍ରାଚୀନ କାବ୍ୟ ତୁଳନାରେ ଆଧୁନିକ କାବ୍ୟର ମୂଲ୍ୟ ଏମାନେ ବିଗ୍ଭର

କରିବାକୁ ବସୁଥିଲେ । ସମାଲୋଚନାର ପ୍ରକୃତ ଲକ୍ଷ୍ୟ ସୃଷ୍ଟିରେ ସାହାଯ୍ୟ କରିବା । ତାହା ଏହି ସମାଲୋଚନାରୁ କ୍ୱଚିତ୍ ମିଳୁଥିଲା । ମାତ୍ର ଏହି ଆନ୍ଦୋଳନ ଫଳରେ ନୂତନ ସାହିତ୍ୟର ନୂତନତା ବିଷୟରେ ସାଧାରଣରେ ଚେତନା ବଢିଥିଲା । ଏଥିଲାଗି ନବ୍ୟକାବ୍ୟ ଆଦର୍ଶ ବିସ୍ତାରର ପଥ ସୁଗମ ହୋଇଥିଲା ।

## ନୂତନ କାବ୍ୟଧାରାର ମୂଲ୍ୟ ନିରୂପଣ

କ୍ରମେ ନବ୍ୟ କାବ୍ୟଧାରା ପ୍ରତି ଚକିତ ସନ୍ଦେହ ଦୃଷ୍ଟି ଖଣ୍ଡିତ ହେଲା । ଯୁଗର ପରିବର୍ତ୍ତିତ ଜୀବନଧାରା ପ୍ରଭାବରେ କାବ୍ୟ କିପରି ନବ କଳେବର ଗ୍ରହଣ କରିବା ଏକାନ୍ତ ଆବଶ୍ୟକ, ତାହା ସମାଲୋଚକଗଣ ବୁଝିବାକୁ ଉଦ୍ୟମ କଲେ । ଯେଉଁସବୁ ପ୍ରଭାବ ଓ ପରିବେଶ ଏଥିଲାଗି ଦାୟୀ ତାହାର ବିଶ୍ଳେଷଣ ହେବାକୁ ଲାଗିଲା । ପ୍ରାଚୀନ କବିମାନଙ୍କ କୃତି ସହିତ ତୁଳନାରେ ନୂତନ କାବ୍ୟକୁ ବୁଝିବା ଉଦ୍ୟମର ଅସାରତା ଏମାନେ ହୃଦୟଙ୍ଗମ କଲେ ।

ନବ ଯୁଗର କବି ରାଧାନାଥଙ୍କ ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ, ଶ୍ରୀଯୁକ୍ତ ତାରିଣୀ ଚରଣ ରଥ ଯଥାର୍ଥରେ କହିଥିଲେ – "ପୂର୍ବକାଳୀନ କବିମାନଙ୍କ ସହିତ ତାହାଙ୍କୁ ତୁଳନା କରିବା ଅନାବଶ୍ୟକ ମାତ୍ର । ସେମାନେ ଯେଉଁ ସମୟରେ ଜୀବିତ ଥିଲେ, ସେ ସମୟର ଅବସ୍ଥା, ଆଚାର ବ୍ୟବହାର, ଶିକ୍ଷା ନୀତି, ରୁଚି ପ୍ରଭୃତି ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଏଣୁ କୌଣସି ପ୍ରକାର ତୁଳନା ସମୀଚୀନ ନୁହେ ।" ୮

ଅନ୍ୟ ଦିଗରେ ସାରଳା ବଳରାମଙ୍କଠାରୁ ଭଞ୍ଜଙ୍କ ଦେଇ କ୍ରମବିକାଶ ସୂତ୍ରରେ ଓଡ଼ିଆ କାବ୍ୟଧାରାର ବିକାଶରେ ରାଧାନାଥଙ୍କ ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ନିମ୍ନ ସିଦ୍ଧାନ୍ତରେ ପହଞ୍ଚି ଅଛନ୍ତି । 'ପ୍ରାଚୀନ ସାହିତ୍ୟର ଯାହା ସାର, ତାହା ଏବଂ ଭାଷାର ମାଧୁର୍ଯ୍ୟକୁ ଗ୍ରହଣ କରି ଦକ୍ଷ କବି ତହିଁରେ ବର୍ତ୍ତମାନ ବୈଜ୍ଞାନିକ ଯୁଗର ଏହି ପାଠକ ସମାଜର ନବରୁଚିକୁ ଚାହିଁ ସମୁନ୍ନତ ଭାବମାନଙ୍କର ବୈଚିତ୍ର୍ୟ ଏବଂ ସାରସତ୍ତ୍ୱ ସଂଗ୍ରହ ପୂର୍ବକ ଉନ୍ନତ ଆଦର୍ଶର ସାହିତ୍ୟ ନିର୍ମାଣ କଲେ । ଏ ନିର୍ମାଣରେ ତାହାଙ୍କର ଏ ଦେଶୀ, ପରଦେଶୀ, ଏବଂ ଦୂରଦେଶୀ ସବୁପ୍ରକାର ଉପାଦାନ ରହିଅଛି ।' ୯

## କବିଙ୍କ ଜୀବନୀ ଓ ବ୍ୟକ୍ତିତ୍ୱ

ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ବ୍ୟକ୍ତିତ୍ୱ ଓ ଜୀବନୀ ଘେନି ବହୁ ଆଲୋଚନା ଏହି କବିମାନଙ୍କର ସହକର୍ମୀ, ଶିଷ୍ୟ, ମୁଗ୍ଧ ପାଠକ ଓ ବନ୍ଧୁଙ୍କ ଦ୍ୱାରା ଲେଖା ହୋଇଅଛି । ଏସବୁ ସାଧାରଣତଃ ମୃତ୍ୟୁକାଳୀନ ଚିନ୍ତା ବା ଶ୍ରାଦ୍ଧବାସରରେ ସ୍ମୃତି ଉଦ୍‌ବୋଧନ ରୂପେ କଳ୍ପିତ । ମାତ୍ର ବ୍ୟକ୍ତିତ୍ୱ ଅଧ୍ୟୟନମୂଳକ ସାହିତ୍ୟ ଭାବରେ କେବଳ ଉତ୍କଳ ସାହିତ୍ୟରେ ପ୍ରକାଶିତ ମୃତ୍ୟୁଞ୍ଜୟ ରଥଙ୍କ ରଚିତ ମଧୁସୂଦନ,

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ଭକ୍ତକବି ମଧୁସୂଦନ ଓ ଶ୍ରୀ ଦୁର୍ଗାଚରଣ ରାୟଙ୍କ ସଙ୍କଳିତ ରାଧାନାଥ-ଜୀବନୀ ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥ ପ୍ରକାଶ ପାଇ ନାହିଁ ।

ରାଧାନାଥ ଜୀବନୀରେ ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ଗୋପାଳଚନ୍ଦ୍ର ପ୍ରହରାଜ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଆଦି ବହୁ ସ୍ୱନାମଧନ୍ୟ ସାହିତ୍ୟିକଙ୍କ ସ୍ମୃତିଲେଖ ସଙ୍କଳିତ ହୋଇଅଛି । ଏସବୁଥିରେ କବିବରଙ୍କ ଜୀବନୀର ଉପାଦାନ, ଚରିତ୍ର, କାର୍ଯ୍ୟ ଓ ବ୍ୟକ୍ତିତ୍ୱର ପ୍ରଭାବ ବିଶଦ ଭାବରେ ପ୍ରକାଶିତ ହୋଇଅଛି । କବିଙ୍କ କାବ୍ୟରେ ପ୍ରକାଶିତ ପ୍ରକୃତି ପ୍ରୀତି, ମାନବପ୍ରେମ ତଥା କବିମାନସ ବୁଝିବା ଲାଗି ପ୍ରତ୍ୟକ୍ଷରେ ନହେଲେ ବି ଏହି ଲେଖାମାନ ପରୋକ୍ଷରେ ସାହାଯ୍ୟ କରେ ।

ମଧୁସୂଧନଙ୍କ ଜୀବନୀରେ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ କବିଙ୍କର ପାରିବାରିକ ଜୀବନ, ସାଧାରଣ ସେବା, ଶିକ୍ଷା ବିସ୍ତାର ଓ ଧର୍ମ ପ୍ରଚାର ଲାଗି କାର୍ଯ୍ୟାବଳୀ ଉପରେ ଆଲୋକପାତ କରିଛନ୍ତି । ମୃତ୍ୟୁଞ୍ଜୟ ରଥଙ୍କ ଜୀବନୀ ବିଷୟକ ପ୍ରବନ୍ଧ ଓ ନନ୍ଦକିଶୋରଙ୍କ ରାଓଙ୍କ ସ୍ମୃତି ମୂଲ୍ୟବାନ ଉପାଦାନ ଯୋଗାଇ ଥାଏ ।

ଏ ଦିଗରୁ ଫକୀରମୋହନଙ୍କ ଆତ୍ମଜୀବନ ଚରିତ ଅତି ଉପାଦେୟ । ତାଙ୍କର କର୍ମ ଓ ସାଧନାର ବିଶଦ ଚିତ୍ର ଏଥିରୁ ମିଳେ । ଏହା ତୁଳନାରେ ଫକୀରମୋହନଙ୍କ ଜୀବନୀ ଓ ସ୍ମୃତି ଯେଉଁ ଲିଖିତ ରଚନାରୁ କୌଣସି ନୂତନ ତଥ୍ୟ ପ୍ରାୟ ମିଳେନାହିଁ । ବାଲେଶ୍ୱର ଫକୀରମୋହନ ସାହିତ୍ୟ ପରିଷଦ ପ୍ରକାଶିତ 'ଫକୀରମୋହନ ପରିକ୍ରମା'ରେ କବିଙ୍କ ପାରିବାରିକ ଜୀବନ ଯେଉଁ କେତେକ ଅଧିକ ତଥ୍ୟ ପ୍ରକାଶ ପାଇଅଛି । ନିଜର ସ୍ୱାଭାବିକ ସ୍ନେହ ପ୍ରବଣ ହୃଦୟ ଓ ଉଦାରତା ଗୁଣରେ ଆତ୍ମଜୀବନ ଚରିତରେ ଯାହା କବି ଲେଖିବାକୁ ହୁଏତ ସଙ୍ଗତ ମନେ କରି ନାହାନ୍ତି, ସେଇପରି କେତେକ ବିଷୟ ଜୀବନ କଥାର ଲେଖକଗଣ ଆଲୋକକୁ ଆଣିଛନ୍ତି ।

### ରାଧାନାଥଙ୍କ କାବ୍ୟାବଳୀର ସମୂହ ଆଲୋଚନା

ସ୍ୱର୍ଗତଃ ତାରିଣୀଚରଣ ରଥ ନିଜ ଓଡ଼ିଆ ସାହିତ୍ୟ ଇତିହାସରେ ପ୍ରଥମେ ଆଧୁନିକ ଯୁଗକୁ ରାଧାନାଥଙ୍କ ନାମରେ ଚିହ୍ନିତ କରିଅଛନ୍ତି । ତାଙ୍କ ଉକ୍ତିରେ— 'ରାଧାନାଥ ଉତ୍କଳର ଜାତୀୟ କବି । ସେ ଉତ୍କଳକୁ ଗୌରବମୟ ଭାଷାର ନବ ପରିଚ୍ଛଦ ପିନ୍ଧାଇ ଦେଇଅଛନ୍ତି; ଉତ୍କଳର ଗୌରବମୟ ଚିତ୍ର ଉଜ୍ଜ୍ୱଳ ବର୍ଣ୍ଣରେ ଅଙ୍କିତ କରି ଯାଇଅଛନ୍ତି ; ଉତ୍କଳର ନଦନଦୀ, ପର୍ବତ ସାଗର, ଅରଣ୍ୟ ପ୍ରାନ୍ତର, ଗ୍ରାମନଗର, ତରୁଲତା, ଫଳପୁଷ୍ପ, ପଶୁପକ୍ଷୀ, ନରନାରୀ, ରାଜାପ୍ରଜା ସମସ୍ତଙ୍କ ପାଇଁ ଗୋଟିଏ ଗୌରବମୟ ଆସନ ରଚନା କରିବା ପାଇଁ ଚେଷ୍ଟା କରିଅଛନ୍ତି । ଉତ୍କଳର ଗୌରବମୟ ଅତୀତକୁ ଆଣି ଆମ୍ଭମାନଙ୍କ ସମ୍ମୁଖରେ ସ୍ଥାପିତ କରିଅଛନ୍ତି ଏବଂ ଗୌରବମୟ ଭବିଷ୍ୟତ ଆଡକୁ ଆମମାନଙ୍କର ଦୃଷ୍ଟି ଆକର୍ଷଣ କରି

ଅଛନ୍ତି ।” ୧୦ ଏହି ଉକ୍ତିରେ ରାଧାନାଥଙ୍କ ସମସ୍ତ କାବ୍ୟ ସାହିତ୍ୟ ପ୍ରତି ଯେଉଁ ଦୃଷ୍ଟିକୋଣ ପ୍ରକାଶ ପାଇଅଛି, ତାହା ପ୍ରାୟ ଆଜି ପର୍ଯ୍ୟନ୍ତ ସମାଲୋଚକଙ୍କଠାରୁ ସମର୍ଥନ ପାଇ ଆସିଅଛି ।

## ରାଧାନାଥଙ୍କ କାବ୍ୟରେ ଆଦର୍ଶର ଅଭାବ

ନନ୍ଦକିଶୋରଙ୍କ ପୂର୍ବରୁ ସମାଲୋଚକମାନେ ସାଧାରଣତଃ ସଂସ୍କୃତ ରୀତିରେ କାବ୍ୟର ଆଲୋଚନା କରୁଥିଲେ । ରସ ଓ ଅଲଙ୍କାର ବିଚାର ଏଥିରେ ମୁଖ୍ୟସ୍ଥାନ ଅଧିକାର କରୁଥିଲା । ନନ୍ଦକିଶୋର ଏ ରୀତି ଭାଙ୍ଗିଲେ । ଜୀବନ ସହିତ କାବ୍ୟର ସମ୍ପର୍କ ସେ ବିଶ୍ଳେଷଣ କରିବାକୁ ଚେଷ୍ଟା କଲେ । ନିଜ ଆଲୋଚନାର ଆଭିମୁଖ୍ୟ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଥିଲେ —‘ସଂସ୍କୃତ ସାହିତ୍ୟରେ ଆମ୍ଭମାନଙ୍କର ପ୍ରବେଶ ନାହିଁ । ଆବାଲ୍ୟ ଇଂରେଜୀ ସାହିତ୍ୟ ଆଲୋଚନା କରିଅଛୁ । ତେଣୁ ସେମାନେ (ପାଠକମାନେ) ସଂସ୍କୃତ ଆଲଙ୍କାରିକମାନଙ୍କ ଆଦର୍ଶାନୁଯାୟୀ ସମାଲୋଚନା ପ୍ରତ୍ୟାଶା ନ କରି କାବ୍ୟାବଳୀ ପାଠବେଳେ ଆମ୍ଭମାନଙ୍କ ମନରେ ଯେଉଁ ଭାବରାଜି ସମୁତ୍ଥିତ ହେଲା ତାହାର ସରଳ ଅଭିବ୍ୟକ୍ତି ଯେବେ ତୃପ୍ତ ରହିବେ ।’ ୧୧

ପ୍ରାଚୀନ କାବ୍ୟ ତୁଳନାରେ ରାଧାନାଥଙ୍କର କାବ୍ୟର ସହଜ ମଧୁର ଭାଷା, ସ୍ୱଦେଶୀୟ ପ୍ରକୃତି ଚିତ୍ରଣ ଓ ସ୍ୱାଦ୍ୟ ପ୍ରଣୟ ଚିତ୍ରରେ ସମସ୍ତେ ମୁଗ୍ଧ ହୋଇଥିଲେ । ମାତ୍ର ନନ୍ଦକିଶୋର ପ୍ରଥମେ ରାଧାନାଥଙ୍କ କାବ୍ୟରେ ଆଦର୍ଶ ଚରିତ୍ର ଖୋଜିଲେ, ସ୍ୱର୍ଗୀୟପ୍ରେମର ଅଭାବ ଅନୁଭବ କଲେ । ‘ରାଧାନାଥଙ୍କ ନାୟକ ନାୟିକାଙ୍କ ପ୍ରେମ ତାଙ୍କରି ଭାଷାରେ ରୂପଜ । ସେ ଏମନ୍ତ ଚିତ୍ର ଉତ୍କଳକୁ ଦେଇ ପାରିନାହାନ୍ତି ଯାହା ଯେବେ ଓଡ଼ିଆ ଜାତି ନବଯୁଗର ଆଦର୍ଶ ପ୍ରତି ଆକୃଷ୍ଟ ହେବ, ନବୀନ ଉଦ୍ୟମରେ ମାତି ପୃଥିବୀର ଉନ୍ନତ ଜାତିମାନଙ୍କ ସହି ଉନ୍ନତ ପଥରେ ଜ୍ଞାନ, ପ୍ରୀତି ଓ କର୍ମର ଧ୍ୱଜା ହସ୍ତରେ ଧାରଣ କରି ଅଗ୍ରସର ହେବ । . କବିର ଲେଖନୀ କଣ ନକରି ପାରେ ? ତାହା ନର୍ଜୀବିକୁ ଜୀବନ ଦିଏ । ନରକ କୀଟକୁ ତ୍ରିଦିବର ଦେବତା କରିଏ । କବି ସବୁ କରିପାରନ୍ତି । ରାଧାନାଥ ଉତ୍କଳକୁ ମାର୍ଜିତ କବିତାମୟୀ ଭାଷା ଦେଇଅଛନ୍ତି । କିନ୍ତୁ ହାୟ ! ରାଧାନାଥଙ୍କ ବିଷୟ ନିର୍ବାଚନ ଅଧିକାଂଶ ସ୍ଥାନରେ ସମୁଚିତ ହୋଇ ନାହିଁ ।’ ୧୨

କବିଙ୍କର ଏହି ତ୍ରୁଟି ଦେଖାଇବା ସଙ୍ଗେ ସଙ୍ଗେ ଅନୁକରଣକାରୀଙ୍କୁ ଆକ୍ଷେପ କରି ଲେଖିଛନ୍ତି —‘ବର୍ତ୍ତମାନ ବହୁ ଲେଖକ ରାୟ କବିଙ୍କ ଅନୁକରଣ କରି ବଙ୍କା ଭାଷା, କନ୍‌ଭେନ୍‌ଶନ୍ୟାଲ ଷ୍ଟାଇଲ ଓ ନୈତିକ ଦାୟିତ୍ୱବିହୀନ ଭାବ ସମ୍ବଳିତ କାବ୍ୟ ଲେଖୁଛନ୍ତି । ସେମାନଙ୍କ ମତରେ ବ୍ୟତିରେକୀ ଅଲଙ୍କାର, ଅନୁପ୍ରାସ ଓ ଯମକ—ଗୁପ୍ତ ପ୍ରେମ ଓ ସମାଜ ବିରୁଦ୍ଧ ସମ୍ଭୋଗ ନୋହିଲେ କାବ୍ୟ ହେଲା ନାହିଁ ।’ ୧୩

## ନବଭାବ ଓ ନବରୁଚି ପ୍ରବର୍ତ୍ତକ ରାଧାନାଥ

ରାଧାନାଥଙ୍କ ପ୍ରଥମ ଶ୍ରାଦ୍ଧ ସଭାରେ ପଠିତ ପଣ୍ଡିତ ନୀଳକଣ୍ଠଙ୍କ "ରାଧାନାଥ ଓ ଉତ୍କଳ ସାହିତ୍ୟ" ୧୪ ପ୍ରବନ୍ଧଟି ବିଶେଷ ଉଲ୍ଲେଖଯୋଗ୍ୟ । ଏଥିରେ ଆଲୋଚନାର ଏକ ସ୍ୱାଧୀନ ଚିନ୍ତାଧାରା ପ୍ରକାଶ ପାଇଅଛି । ନୂତନ କାବ୍ୟର ଭାବଗ୍ରହଣରେ, ମୂଲ୍ୟ ନିରୂପଣରେ, ସେ ଏଥିରେ ବିଶେଷ ଶକ୍ତି, ସଂଯମ ଓ ସୂକ୍ଷ୍ମଦୃଷ୍ଟିର ସଙ୍କେତ ଦେଇଅଛନ୍ତି । ସମଗ୍ର ଉତ୍କଳ ସାହିତ୍ୟର ଗତି ଓ ପ୍ରକୃତି କଳନାରେ କବିଙ୍କ ବୈଶିଷ୍ଟ୍ୟ, ଅନୁବାଦ ଓ ଭାବଗତ ସାରସଂଗ୍ରହରେ ତାଙ୍କର ମୌଳିକତା ଓ ଶକ୍ତି, ଭାବ ବର୍ଣ୍ଣନା ଓ ଲକ୍ଷନ ପଦ୍ଧତିରେ ଅଭିନିବେଶ ଓ କୌଶଳ, ବିୟୋଗାନ୍ତ କାବ୍ୟ କଳ୍ପନାରେ ତଥା ବିଷୟ ଚୟନରେ ନୂତନତ୍ୱ ପ୍ରଭୃତି ଏହି ପ୍ରବନ୍ଧରେ ସୁନ୍ଦର ବିଶ୍ଳେଷଣ କରାଯାଇଅଛି ।

ପ୍ରାଚୀନ କାବ୍ୟ ତୁଳନାରେ ରାଧାନାଥଙ୍କ କାବ୍ୟର ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ କହିଛନ୍ତି -'ମଧ୍ୟ ଯୁଗର କବିତା, ଯଥା—ପ୍ରେମ ସୁଧାନିଧି ଓ ଲାବଣ୍ୟବତୀ ପ୍ରଭୃତିରେ ବିଷୟ ଚୟନ ସର୍ବଂ ପ୍ରାୟ ଏକ । ସେଥିରେ ନାୟକ ନାୟିକା ଓ ଆନୁସଙ୍ଗିକ ଅନ୍ୟାନ୍ୟ ସମସ୍ତ ଚରିତ୍ର କେବଳ ଗୋଟିଏ ଉଚ୍ଚକୁଳଜାତ ବିଳାସୀ ଦମ୍ପତିର ବିବାହ ମିଳନ, ବିଚ୍ଛେଦ ଓ ପୁନର୍ମିଳନରେ ପୂର୍ଣ୍ଣ । ସମସ୍ତେ ଇତର ବିଶେଷ ପରିମାଣରେ ସେହି ବିଳାସୀ ଦମ୍ପତିର ଭୌତିକ ସମ୍ଭୋଗ କ୍ରିୟାରେ ବ୍ୟସ୍ତ । ସେହି ବିଷୟରେ ପତ୍ର ଲେଖନ, ସେହି ବିଷୟ ଧ୍ୟାନ, ସେହି ବିଷୟରେ ଦାନ ଓ ବ୍ରାହ୍ମଣ ଭୋଜନ ; ଆଉ କିଛି ନାହିଁ, କେବଳ ସେହି ସମ୍ଭୋଗ ପ୍ରକ୍ରିୟାହିଁ କାବ୍ୟର ଉଦ୍ଦେଶ୍ୟ । କୌଣସି ମହତ୍ତ୍ୱବାନ୍ ଚରିତ୍ରର ଚିତ୍ର ବଡ ବେଶି ଦେଖାଯାଏ ନାହିଁ । କିନ୍ତୁ, କେଦାରଗୌରୀ, ଉଷା, ନନ୍ଦିକେଶ୍ୱରୀ ପ୍ରଭୃତିରେ ସେ ଚିତ୍ର ଭିନ୍ନ ରୂପ ଧାରଣ କରିଅଛି । ସମ୍ଭୋଗ ପରିବର୍ତ୍ତରେ ସେ ସବୁର ବିୟୋଗରେ ଶେଷ । ମିଳନ ଓ ଦମ୍ପତିର ସହବାସ କାବ୍ୟର ଉଦ୍ଦେଶ୍ୟ ନୁହେଁ । ପ୍ରେମର ଦୃଢ଼ତା ଏବଂ ଧୀର ଚରିତ୍ରର ଚିତ୍ର ସେ ସବୁର ପରମ ଲକ୍ଷ୍ୟ ।' ୧୫

ରାଧାନାଥଙ୍କ ରଚନାରେ ପ୍ରକାଶିତ ନୂତନ ଆଦର୍ଶକୁ ସ୍ୱାଗତ କରିବା ସଙ୍ଗେ, କେତେ ତ୍ରୁଟିଗୁଡ଼ିକ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଅଛନ୍ତି । ସେ ଦେଖାଇଛନ୍ତି—'ରାଧାନାଥ ଉଚ୍ଚ ଆଦର୍ଶର ଚିତ୍ର ଦେବାକୁ ଯାଇ ସ୍ଥାନେ ସ୍ଥାନେ ଇହ ଜଗତ ପରିତ୍ୟାଗ କରି ଦେବାଦେବୀଙ୍କ ସାହାଯ୍ୟ ଗ୍ରହଣ କରିଛନ୍ତି । ନନ୍ଦିକେଶ୍ୱରୀରେ ଗଙ୍ଗା ତର୍ପଣ, ଉଷାରେ ଲୁବ୍ଧପତ୍ନୀଙ୍କ ସ୍ୱପ୍ନ ଓ କାର୍ତ୍ତିକେୟ, ପାର୍ବତୀରେ କୌଶଲ୍ୟାର ପ୍ରେତ, ମହାଯାତ୍ରାରେ ଅଗ୍ନି ପ୍ରଭୃତି ପାଠକଙ୍କୁ ଆଉ ଇହ ଜଗତର ଚିତ୍ରରେ ମୋହିତ କଲାପରି ବୋଧ ହୁଏନାହିଁ । ସେତେବେଳେ ପାଠକ ଇହ ଜଗତ ପରିତ୍ୟାଗ ପୂର୍ବକ କି ଏକ ଅଦ୍ଭୁତ ପୌରାଣିକତା ଅନୁଭବ କରି କାବ୍ୟର ପ୍ରାକୃତିକତା ବିସ୍ମୃତ ହୁଅନ୍ତି । ଏଠାରେ କେବଳ ଆଦର୍ଶର

ପ୍ରାକୃତିକତା ନଷ୍ଟ ହୁଏ ନାହିଁ, ସଙ୍ଗେ ସଙ୍ଗେ ବର୍ଣ୍ଣନା ମଧ୍ୟ ଅସ୍ୱାଭାବିକ ହୋଇ ପଡ଼େ ।' ଏଥି ସହିତ ରାଧାନାଥଙ୍କ ସାହିତ୍ୟରେ ରାଜ ପ୍ରଶସ୍ତି, ସମାଜ ଚିତ୍ରରେ ଆଦର୍ଶର ଅଭାବ, ପୁଣି ଭାଷା ପ୍ରୟୋଗରେ କୃତ୍ରିମତା, ଇଂରେଜୀ ଓ ବଙ୍ଗଳାର ଅନୁକରଣ ଆଦିକୁ ସମାଲୋଚନା କରିଅଛନ୍ତି ।

କବିଙ୍କ ପ୍ରତିଭା ଓ କାବ୍ୟ ଯେନ ପଣ୍ଡିତ ନୀଳକଣ୍ଠଙ୍କ ଶେଷ ମନ୍ତବ୍ୟ ପ୍ରଣିଧାନ-ଯୋଗ୍ୟ । ସମସ୍ତ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ ପରିବର୍ତ୍ତନକୁ ସେ ସ୍ୱୀକାର କରିଛନ୍ତି ଓ ସ୍ୱାଗତ କରିଛନ୍ତି । 'ପ୍ରତିଭା ବଳରେ ହେଉ, ବା ଭିନ୍ନ ଭିନ୍ନ ସାହିତ୍ୟର ଅସାଧାରଣ ଗବେଷଣା ଜନିତ ହେଉ, ରାଧାନାଥ ସାହିତ୍ୟରେ ଯେଉଁ ପନ୍ଥା ନିର୍ଦ୍ଦେଶ କରିଅଛନ୍ତି, ତାହା ଉତ୍କଳରେ ଏକାବେଳକେ ଯୁଗୋଚିତ ହୋଇଅଛି । ରାଧାନାଥ ଉତ୍କଳ ସାହିତ୍ୟକୁ ଯେଉଁ ନିରୁପମ ଜୀବନୀ ଶକ୍ତି ଦେଇଅଛନ୍ତି ତାହା ଅତି ଅଳ୍ପ କବି ଓ ମନୀଷୀ ସାହିତ୍ୟ ବିଶେଷକୁ ଏକାବେଳକେ ପ୍ରଦାନ କରନ୍ତି ।'୧୬

## ରାଧାନାଥଙ୍କ କାବ୍ୟର ଶାଶ୍ୱତ ମୂଲ୍ୟ

ଡାଃ ମାୟାଧର ମାନସିଂ ରାଧାନାଥଙ୍କ କାବ୍ୟର ଶାଶ୍ୱତ ମୂଲ୍ୟ ନିରୂପଣ କରିବାକୁ ଉଦ୍ୟମ କରିଛନ୍ତି । ଦେଶପ୍ରୀତି, ପ୍ରକୃତି ବର୍ଣ୍ଣନା, ଛନ୍ଦ ଓ ଭାଷା ବିନ୍ୟାସରେ କବିଙ୍କ ଗୌରବ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଲୋକ ଚରିତ୍ର ଚିତ୍ରଣରେ ଅସାମର୍ଥ୍ୟ କିପରି ପ୍ରକାଶ ପାଇଛି ତାହା ଦର୍ଶାଇଛନ୍ତି । ସେ ଯଥାର୍ଥ କହିଛନ୍ତି 'ରାଧାନାଥଙ୍କ ଚିନ୍ତାବଳୀ ସୁଖପାଠ୍ୟ ଭାଷାରେ ଲିଖିତ କେତେଗୁଡ଼ିଏ କିଂବଦନ୍ତୀ ମାତ୍ର । ଏଥିରେ ମାନବିକତା ଆଧିଭୌତିକତାରେ ଲୟଲାଭ କରିଅଛି ; ସତ୍ୟ ପରିବର୍ତ୍ତିରେ କଳ୍ପନା ସ୍ଥାନ ମାଡ଼ି ବସିଅଛି, ଇତିହାସ ପରିବର୍ତ୍ତରେ କାହାଣୀ କାର୍ଯ୍ୟ କରିଅଛି ।.. ତାଙ୍କ କବିତାରେ ମହାକବିମାନଙ୍କ ଅନେକ ଲକ୍ଷଣ ପ୍ରତ୍ୟକ୍ଷ ହୁଏ । କିନ୍ତୁ ଯାହା କବିତାର ଶ୍ରେଷ୍ଠାଂଶ ସେହି ଲୋକ ଚରିତ୍ର ଚିତ୍ରଣ ଅଭାବରୁ ତାଙ୍କ କାବ୍ୟ ଶୂନ୍ୟ-ଗର୍ଭ ସ୍ୱର୍ଣ୍ଣପାତ୍ର ପରି ହୋଇଛି । ସେ ପାତ୍ରକୁ ମନୋଜ୍ଞ ପରିପାଟୀ ଦାନ କରିଅଛନ୍ତି ; କିନ୍ତୁ ଯାହା ଯୋଗେ ପାତ୍ର ସାର୍ଥକତା ଲାଭ କରେ, ସେହି ପାନୀୟ ରସ ସେ ସୃଷ୍ଟି କରିନାହାନ୍ତି ।...ରାଧାନାଥ ମନୁଷ୍ୟର ଜୀବନକୁ ଅବହେଳା କରିଅଛନ୍ତି । ଜୀବନହିଁ ସାହିତ୍ୟ ଜାହ୍ନବୀର ଗଙ୍ଗୋତ୍ରି । ଏହି ଅବହେଳା ଯୋଗୁଁ ରାଧାନାଥ ମହାକବି ନହୋଇ କେବଳ କବି ହୋଇ ରହିଲେ । ଯେଉଁ ସୂକ୍ଷ୍ମ ଦୃଷ୍ଟି ଥିଲେ କବି ଦେଶ ଅତିକ୍ରମି ବିଶ୍ୱଜନୀନ ହୁଅନ୍ତି ରାଧାନାଥ ସେ ସୌଭାଗ୍ୟର ଅଧିକାରୀ ନ ଥିଲେ ' ୧୭

## ରାଧାନାଥଙ୍କ କାବ୍ୟ ବିଶେଷ ଘେନ ଆଲୋଚନା

ରାଧାନାଥଙ୍କ କାବ୍ୟଗୁଡ଼ିକ ପ୍ରଥମେ ଆତ୍ମପ୍ରକାଶ କରିବା ସମୟରେ ନାନା ସମାଲୋଚନା ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ସ୍ତାବକଙ୍କ ପ୍ରଶଂସା ଓ ନିନ୍ଦୁକଙ୍କ ନିନ୍ଦାରେ ଏହି ଆଲୋଚନାମାନ ପରିପୂର୍ଣ୍ଣ । ଏମାନଙ୍କ ମନରେ ମହାଯାତ୍ରା ଓ ପାର୍ବତୀ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିବା ମନେହୁଏ । ମହାଯାତ୍ରାର ଅମିତ୍ରାକ୍ଷର ଛନ୍ଦ ଓ ସମୁଚ୍ଚ ପରିକଳ୍ପନା ; ପାର୍ବତୀରେ ପାନବାସ୍ୟ ଦୁର୍ବଳତାର ଚିତ୍ର ଗତାନୁଗତିକ ଚିନ୍ତାରେ କେବଳ ନୁହେଁ, ନବ ସୌନ୍ଦର୍ଯ୍ୟ ପ୍ରେମୀଙ୍କୁ ମଧ୍ୟ ଚକିତ ଓ ବିସ୍ମିତ କରିଦେଇ ଅଛି ।

ଏହି ସମସ୍ତ ଆଲୋଚନା ମଧ୍ୟରେ ମଧୁସୂଦନଙ୍କ ମହାଯାତ୍ରାର ମୁଖବନ୍ଧ ଓ ଶ୍ରୀଜଗଦାନନ୍ଦ ମହାନ୍ତିଙ୍କ ଆଲୋଚନା ବିଶେଷ ଉଲ୍ଲେଖଯୋଗ୍ୟ ।

ମଧୁସୂଦନ ରାଧାନାଥଙ୍କ ଏକାନ୍ତ ଆପଣାର ଶିଷ୍ୟ । ପୁଣି ତାଙ୍କ ବ୍ୟକ୍ତିତ୍ୱ ପ୍ରଭାବରେ ବିଶେଷ ପ୍ରଭାବିତ ଥିଲେ । ତଥାପି ମହାଯାତ୍ରା ସମାଲୋଚନାରେ ସେ ଯେଉଁ ସ୍ୱାଧୀନ ମତ ବ୍ୟକ୍ତ କରିଅଛନ୍ତି, ତାହା ଏକା ତାଙ୍କ ଭଳି ସତ୍ୟସନ୍ଧ ସୂକ୍ଷ୍ମବୁଦ୍ଧିସମ୍ପନ୍ନ ପୁରୁଷଙ୍କ ପକ୍ଷରେ ସମ୍ଭବ । କନିକାର ରାଣୀ ପାଟ ମହାଦେଈ ଶ୍ରୀକୃଷ୍ଣ ପ୍ରିୟାଙ୍କ ଆନୁକୂଲ୍ୟରେ ୧୮୯୭ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ମହାଯାତ୍ରା ପୁସ୍ତକର ମୁଖବନ୍ଧ ରୂପେ ମଧୁସୂଦନଙ୍କ ଆଲୋଚନା ପ୍ରକାଶିତ ହୋଇଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଦର୍ଶ ଅନୁକ୍ରମେ ମହାକାବ୍ୟ ରୂପେ ମହାଯାତ୍ରାର ସଫଳତା, ସମକାଳୀନ କାବ୍ୟ, ପାଶ୍ଚାତ୍ୟ ଓ ପ୍ରାଚୀନ ସଂସ୍କୃତ ଦୃଷ୍ଟାନ୍ତରେ ଏଥିରେ ବ୍ୟବହୃତ ଅମିତ୍ରାକ୍ଷର ଛନ୍ଦର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ସେ ଏହି ମହାକାବ୍ୟର ବିଷୟ ଚିତ୍ର ଓ ବର୍ଣ୍ଣନାରେ ଯେଉଁ ତ୍ରୁଟି ଦେଖାଇଛନ୍ତି, ତାହା ଯୁକ୍ତିପୂର୍ଣ୍ଣ ଓ ସେହି ଭାବ ପରିବେଶରେ ଅତି ସାହସିକ କାର୍ଯ୍ୟ । 'ମହାଯାତ୍ରାର କବି ବର୍ଣ୍ଣନା ବିଷୟରେ ସର୍ବତ୍ର ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅମୂଲ୍ୟ ବୋଲିଲେ ଅତ୍ୟୁକ୍ତି ହେବ ନାହିଁ ; କିନ୍ତୁ ସେ ବର୍ଣ୍ଣନାଗୁଡ଼ିକ ମଧ୍ୟରେ କତିପୟ ଅଂଶ ସରସତା ସତ୍ତ୍ୱେ ମହାକାବ୍ୟର ଅନୁପଯୁକ୍ତ ଅଥବା ବର୍ତ୍ତମାନ ବିଜ୍ଞାନୋଜ୍ଜ୍ୱଳ ବିଶ୍ୱାସର ବିରୋଧୀ । କୌଣସି କୌଣସି ବର୍ଣ୍ଣନା ପ୍ରାଚୀନ କବିମାନଙ୍କର ଉପଯୁକ୍ତ ହେଲେହେଁ କୁସଂସ୍କାର ପରିପୋଷକତା ହେତୁରୁ ଆଧୁନିକ ପ୍ରଶସ୍ତ ବିଶ୍ୱାସର ବିରୋଧୀ ହୋଇଅଛି ।'[୧୮]

ମହାଯାତ୍ରା ଘେନି ଶ୍ରୀଜଗଦାନନ୍ଦ ମହାନ୍ତିଙ୍କ ଆଲୋଚନା ସବୁଠାରୁ ବିଶଦ ଓ ପୁଷ୍କଳ । ନିଜ ଆଲୋଚନାର ଆଦର୍ଶ ବିଷୟରେ ତାଙ୍କର ସ୍ୱୀକାରୋକ୍ତି ଅତି ସ୍ପଷ୍ଟ । 'ଆଧୁନିକ ସାହିତ୍ୟିକ ମଣ୍ଡଳର ଦୃଷ୍ଟି ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ, ସେମାନଙ୍କ ମତରେ କେତେକ ଦୋଷଗୁଣ ପ୍ରକାଶ କରିବାହିଁ ସମାଲୋଚନା । ମାତ୍ର ଏହା

ସମାଲୋଚନା ସମ୍ବନ୍ଧରେ ଅତୀବ ସଂକୀର୍ଣ୍ଣ ଧାରଣା । କେତେଗୁଡ଼ିଏ ଦୋଷ ସଂଗ୍ରହ କରି ଗ୍ରନ୍ଥକୁ ଓ ଗ୍ରନ୍ଥକାରଙ୍କୁ ରସାତଳରେ ନିକ୍ଷେପ କରିବା, ଅଥବା ଗୁଣ କୀର୍ତ୍ତନ କରି ଲେଖକଙ୍କୁ ସପ୍ତସ୍ୱର୍ଗର ଊର୍ଦ୍ଧ୍ୱଭାଗରେ ଅଭିଷିକ୍ତ କରାଇବା ସମାଲୋଚନା ନୁହେ, ତାହା ପକ୍ଷପାତିତା । ଅଥବା ଅପର କୌଣସି ଗ୍ରନ୍ଥ ବା ଗ୍ରନ୍ଥମାଳା ସହିତ କାବ୍ୟଟିକୁ ତୁଳନା କରି ତୁଲ୍ୟ ପଂକ୍ତିଙ୍କର ଉଦ୍ଧାର କରିବା ସମାଲୋଚନା ନୁହେଁ, ତାହା ପିପୀଲିକାବତ୍ ତୁଲ୍ୟ ବସ୍ତୁର ରୁଣ୍ଡୀକରଣ ମାତ୍ର । ସମାଲୋଚନାର ଲକ୍ଷ୍ୟ ତୀକ୍ଷ୍ଣ ଗବେଷଣା ସାହାଯ୍ୟରେ କବିଙ୍କ ପ୍ରତିଭା ପରିସ୍ଫୁଟୀକରଣ, କବିଙ୍କ ବିଶେଷତ୍ୱ ଜନ ସମାଜ ସମକ୍ଷରେ ବିସ୍ତାର କରି ଜନସାଧାରଣଙ୍କ ଚିନ୍ତାର ପରିସର ପ୍ରସାରିତ କରିବା, କବିଙ୍କ ଦିବ୍ୟ ରାଜ୍ୟକୁ ଯିବା ନିମିତ୍ତ ସାଧାରଣତଃ ସୁଗମ ସରଣୀ ନିର୍ମାଣ. କବି ଜୀବନର କି ତଥ୍ୟ ସ୍ୱୀୟ କାବ୍ୟରେ ଚିତ୍ରିତ କରିଅଛନ୍ତି ତାହାର ଆବିଷ୍କରଣ ଓ ବ୍ୟାଖ୍ୟାନ, କାବ୍ୟରେ କବିଙ୍କ ବ୍ୟକ୍ତିଗତ ଜୀବନ କେତେ ଦୂର ପ୍ରତିଫଳିତ ହୋଇଅଛି, ତାହାର ପ୍ରକାଶ କରିବା ।[୨୯] ଶ୍ରୀମହାନ୍ତି ନିଜ ଆଲୋଚନାରେ ଏହି ସମସ୍ତ ଦିଗ ପ୍ରତି ସଦା ଅବହିତ ରହିଅଛନ୍ତି । ତାଙ୍କ ଆଲୋଚନାରେ ଐତିହାସିକର ସନ୍ଧାନୀ ଦୃଷ୍ଟି ପ୍ରକାଶ ପାଇଅଛି । ରାଧାନାଥଙ୍କ କାବ୍ୟର ବିଷୟ ବସ୍ତୁ ଓ ଭାବ ଆହରଣ ସମସ୍ତ କ୍ଷେତ୍ର ଉପରେ ସେ ଆଲୋକପାତ କରିବାକୁ ସଫଳ ଉଦ୍ୟମ କରିଅଛନ୍ତି । ଉପସଂହାରରେ ପ୍ରାଚୀନ ମହାକାବ୍ୟଗୁଡ଼ିକ ତୁଳନାରେ ରାଧାନାଥଙ୍କ କୃତିରେ ଭାଷା ପ୍ରୟୋଗରେ କୃତ୍ରିମତା, ସଙ୍ଗୀତ ବିରଳତା, କଳ୍ପନା ସୌଷ୍ଠବର ଅଭାବ ଲକ୍ଷ୍ୟକରି କହିଛନ୍ତି 'ମହାଯାତ୍ରାକୁ ପ୍ରାଚୀନ ମହାକାବ୍ୟମାନଙ୍କ ଅପେକ୍ଷା ଉଚ୍ଚତର ସ୍ଥାନ ପ୍ରଦାନ କରି ନ ପାରୁଁ ।'[୨୦]

ଚନ୍ଦ୍ରଭାଗା ଓ ଦରବାର ଦେନି ଶ୍ରୀଭବଭୂତି ରାୟ, ଚିଲିକା ଓ ଯଯାତିକେଶରୀ ଦେନି ପଣ୍ଡିତ କୁଳମଣି ଦାଶ କ୍ଷୁଦ୍ର ସମାଲୋଚନା ପ୍ରବନ୍ଧ ଲେଖିଅଛନ୍ତି । ସେହିପରି ଅନ୍ୟ କାବ୍ୟ ଉପରେ ରଚିତ ବିଭିନ୍ନ ବ୍ୟକ୍ତିଙ୍କ ଆଲୋଚନା ଗୁଡ଼ିକ ବିଷୟରେ ବିଶେଷ କିଛି କହିବାର ନାହିଁ । ଏଗୁଡ଼ିକ ପ୍ରାୟ ଗତାନୁଗତିକ, କାବ୍ୟ ପରିଚୟର ପ୍ରୟାସ ମାତ୍ର ।

ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟଙ୍କ ପାର୍ବତୀ କାବ୍ୟ ସମାଲୋଚନାରେ ଉଲ୍ଲେଖଯୋଗ୍ୟ ନୂତନତା ଅଛି । କାବ୍ୟର କଥା ଭାଗର ବିକାଶ ସୂତ୍ର ସେ ହୋମରଙ୍କ ଇଲିଆଡ୍ ଠାରୁ ଆରମ୍ଭ କରି ଏସ୍କାଇଲାସ୍ ଓ ସେକ୍ସପିୟରଙ୍କ ପର୍ଯ୍ୟନ୍ତ ଖୋଜିଛନ୍ତି । ଏହା ଉପାଦେୟ ହୋଇଅଛି । କାବ୍ୟଟିର ସଂଯୋଜନା ଓ ପରିକଳ୍ପନାରେ ସ୍ୱାତନ୍ତ୍ର୍ୟ ଓ ସାର୍ଥକତା ଦେଖା-ଇବାକୁ ଯାଇ ସେ ଯଥାର୍ଥ କହିଛନ୍ତି 'କବିବର ରାଧାନାଥଙ୍କ ପାର୍ବତୀ କେବଳ ଏସ୍କାଇଲାସ୍ ବା ସେକ୍ସପିୟରଙ୍କ ଚିତ୍ରର ଅନୁସରଣରେ ଲିଖିତ ନୁହେ, ଏହା ଉଭୟ ମହାକବିଙ୍କ ଅନୁସରଣରେ ଲିଖିତ ହେବା ଅନୁମିତ ହୁଏ । ସେକ୍ସପିୟର ଯେପରି

ହୋମାରଙ୍କୁ ବା ଏସ୍କାଇଲସ୍‌ଙ୍କୁ ଅନୁସରଣ କରି ମୌଳିକତା ଦେଖାଇଛନ୍ତି, ରାଧାନାଥ ମଧ୍ୟ ଠିକ୍ ସେହିପରି ଏସ୍କାଇଲସ ଓ ସେକ୍ସପିୟରଙ୍କୁ ଅନୁସରଣ କରି ମଧ୍ୟ ମୌଳିକତା ଦେଖାଇଛନ୍ତି ।'୨୧

## ରାଧାନାଥଙ୍କ କାବ୍ୟର କେତୋଟି ଦିଗ

ରାଧାନାଥଙ୍କ କାବ୍ୟର ଗୋଟିଏ ଗୋଟିଏ ବିଶେଷ ଦିଗ ନେଇ ରଚିତ ପ୍ରବନ୍ଧଗୁଡ଼ିକ ମଧ୍ୟରେ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳଙ୍କ 'ସଂଧ୍ୟାର ରୂପକାର ରାଧାନାଥ' ଶ୍ରୀଯୁକ୍ତ ନରସିଂହ ଚରଣ ଦାସଙ୍କର 'ରାଧାନାଥଙ୍କ କାବ୍ୟରେ ନାରୀସୃଷ୍ଟି' ଓ ଶ୍ରୀ କୁଞ୍ଜବିହାରୀ ଦାଶଙ୍କର 'ରାଧାନାଥଙ୍କ ଦୁଃଖବାଦ' ପ୍ରବନ୍ଧ ବିଶେଷ ଉଲ୍ଲେଖଯୋଗ୍ୟ । କବିମାନସର ଗତି, ପ୍ରକୃତି ତଥା ସୌନ୍ଦର୍ଯ୍ୟ ଦୃଷ୍ଟିର ଆଭିମୁଖ୍ୟ ଶ୍ରୀବଡ଼ାଳ ସୁନ୍ଦର ବିଶ୍ଳେଷଣ କରିଛନ୍ତି । କବିଙ୍କ ରୂପାଙ୍କନର ବୈଶିଷ୍ଟ୍ୟ ବର୍ଣ୍ଣନା କରିବାକୁ ଯାଇ ସେ କହିଛନ୍ତି –'ରୂପାଙ୍କନରେ ଅନନ୍ୟ ସାଧାରଣ ନୈପୁଣ୍ୟ, ରୂପାୟନରେ, ବିଭାବ ନିର୍ବାଚନରେ ଅବିଚଳିତ ସଂଯମ ଓ ସୁଯୋଜନା ସନ୍ଧ୍ୟାର ରୂପକାର ରାଧାନାଥଙ୍କୁ ଅଦ୍ୱିତୀୟ ଶିଳ୍ପୀ ବୋଲି ଚିହ୍ନାଇ ଦେଇଅଛି । ସେ ଶିଳ୍ପ କେବଳ ବସ୍ତୁତାନ୍ତ୍ରିକତାର ପ୍ରାଣହୀନ ପାଷାଣ ମୂର୍ତ୍ତି ନୁହେଁ, କିମ୍ବା ବାସ୍ତବ ଭିତ୍ତିହୀନ ଅବିମିଶ୍ର କଳ୍ପନାର ଅତି ପ୍ରାକୃତ ଭୟଭଙ୍ଗୁର ବସ୍ତୁ ନୁହେଁ ; ତାହା ବାସ୍ତବତାର ଉପକରଣରେ ପ୍ରାଣର ଗମ୍ଭୀରତମ ଅନୁଭୂତି ମିଶାଇ ସୂକ୍ଷ୍ମ ଅନ୍ତର୍ଦ୍ଦୃଷ୍ଟିର ଜଗତରେ ଗୋଟିଏ ଜୀବନ୍ତ ସତ୍ତା, ଆମ୍ଭମାନଙ୍କର ଏକାନ୍ତ ଆପଣାର, ଏକାନ୍ତ ଅବସାଦର ସାମଗ୍ରୀ ।'୨୨

ରାଧାନାଥଙ୍କ କାବ୍ୟ ବିଶେଷ ଉପରେ ଓ କାବ୍ୟ କଳାର ବିଭିନ୍ନ ଦିଗ ଉପରେ ବିଭିନ୍ନ ପତ୍ର ପତ୍ରିକାରେ ଓ ପ୍ରବନ୍ଧ ସଂକଳନରେ ବିକ୍ଷିପ୍ତଭାବେ ବହୁ ପ୍ରବନ୍ଧ ପ୍ରକାଶିତ ହୋଇଅଛି । ଏଠାରେ ସେହି ସମସ୍ତ ପ୍ରବନ୍ଧର ମୂଲ୍ୟ ନିରୂପଣ କରିବା ସମ୍ଭବ ନୁହେଁ । ନିକଟ ଅତୀତରେ ପ୍ରକାଶ ପାଇଥିବା ଆଲୋଚନାବଳୀ ମଧ୍ୟରେ ଶ୍ରୀବିନୋଦ ନାୟକଙ୍କର 'ରାଧାନାଥଙ୍କ ମହାଯାତ୍ରାରେ ସ୍ପେନ୍‌ସାର ଓ ମିଲଟନ୍' ଅଧ୍ୟାପକ ଶ୍ରୀବେଣୀଧର ରାଉତଙ୍କର 'ନନ୍ଦିକେଶ୍ୱରୀ'; ଅଧ୍ୟାପକ ନଟବର ସାମନ୍ତରାୟଙ୍କର 'ଦରବାର—ଏକ ଅଧ୍ୟୟନ' ଓ ଖଗେଶ୍ୱର ମହାପାତ୍ରଙ୍କର 'ରାଧାନାଥଙ୍କ କାବ୍ୟରେ ସୌନ୍ଦର୍ଯ୍ୟ ତତ୍ତ୍ୱ' ପ୍ରବନ୍ଧରେ ନୂତନତା ଅଛି ।

## ମଧୁସୂଦନଙ୍କ କବିତାର ଆଲୋଚନା

ମଧୁସୂଦନଙ୍କ କବିତା ରଚନା ପଦ୍ଧତି ଦିଗରୁ ପ୍ରାଚୀନ କବିତାଠାରୁ ସ୍ୱତନ୍ତ୍ର । ସେ ଆଧୁନିକ ଯୁଗର ପ୍ରଥମ ଗୀତି କବି । ମାତ୍ର ଭାବସଙ୍ଗତି ଦିଗରୁ ସେ ପ୍ରାଚୀନ ପରମ୍ପରାରୁ ବିଚ୍ୟୁତ ହୋଇନାହାନ୍ତି । ଧର୍ମଭାବ ଓ ଶୁଦ୍ଧନୀତି ପ୍ରଚୁର ତାଙ୍କ କବିତାର ଆଦର୍ଶ । ଏହା ଏକ ପ୍ରାଚୀନ ଭାରତୀୟ ପରମ୍ପରା । ମଧ୍ୟଯୁଗର ପଞ୍ଚସଖାମାନେ ଆମ

ସାହିତ୍ୟରେ ଏହାର ଅନୁବର୍ତ୍ତନ କରିଥିଲେ । ଏହି ପରିମ୍ପରା ଅନୁସରଣ କରିଥିବାରୁ ରାଧାନାଥଙ୍କ ଭଳି ମଧୁସୂଦନଙ୍କ ସପକ୍ଷ ଓ ବିପକ୍ଷରେ ଆନ୍ଦୋଳନ ଦେଖାଦେଇ ନାହିଁ । ସାଧାରଣ ପାଠକଙ୍କଠାରେ ବା ସମାଲୋଚକଙ୍କ ପକ୍ଷରେ ଏହାର ସାର ଗ୍ରହଣ ବା ପ୍ରତ୍ୟାଖ୍ୟାନ ପାଇଁ ଆଲୋଡ଼ନ ସୃଷ୍ଟି ହୋଇନାହିଁ । କେବଳ ଆଲୋଚନାର ଆନନ୍ଦ ଲାଗି ଅଳ୍ପ କେତେ ଜଣ କବି ଓ ଭାବୁକ ବ୍ୟକ୍ତି ମଧୁସୂଦନଙ୍କ କବିତାର ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି ।

କବିଙ୍କ ଜୀବନ କାଳରେ ୧୯୦୦ ଖ୍ରୀଷ୍ଟାବ୍ଦରେ କବି ନନ୍ଦକିଶୋର ପ୍ରଥମେ ଛନ୍ଦମାଳାର ସହଜ ସରଳ ଶିଶୁ କବିତାଗୁଡ଼ିକ ପ୍ରତି ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ନନ୍ଦକିଶୋର, ମଧୁସୂଦନଙ୍କ ଶିଷ୍ୟ, ସଖା ଓ ସାହିତ୍ୟିକ ଆଦର୍ଶର ଏକ ପ୍ରକାର ଅନୁଗାମୀ ଥିଲେ । ସରଳ, ମାଧୁର୍ଯ୍ୟପୂର୍ଣ୍ଣ ଶିଶୁ ମନୋରଞ୍ଜକ କବିତା ରଚନାରେ କୁଶଳତା ତାଙ୍କର ଖୁବ୍ ଥିଲା । ଛନ୍ଦମାଳାର ସରଳ ଶିଶୁ କବିତାରେ ସେ ଯେପରିକି ନିଜ ଆଦର୍ଶର ଆତ୍ମିକତା ଖୋଜି ପାଇଥିଲେ । ଆଲୋଚନାରେ ନନ୍ଦକିଶୋର ନିଜର ଶୈଶବ ସ୍ମୃତି ଓ ଅନୁଭୂତି ପ୍ରକାଶ କରିଛନ୍ତି । ତାଂକର ନିମ୍ନ ଉକ୍ତି ପ୍ରଣିଧାନ ଯୋଗ୍ୟ । 'ଆମ୍ଭେମାନେ ଅତି ଶୈଶବକାଳରୁ ଏହି କବିତା ପୁସ୍ତକ ଖଣ୍ଡିକ ସହିତ ପରିଚିତ । ଏହାର ଅଧିକାଂଶ କବିତା ଆମ୍ଭର କଣ୍ଠସ୍ଥ । ....ଏହି ସମାଲୋଚନା ବାର ତେର ବର୍ଷ ପୂର୍ବେ ସଂଚିତ ସ୍ମୃତିର ଭଗ୍ନାବଶେଷରୁ ସଂକଳିତ ହୋଇଅଛି ।' ୨୩

ଆଧୁନିକ ଖଣ୍ଡ କବିତାର ଆଦର୍ଶ, ଏଥିରେ ଗୀତି ଓ ସୌନ୍ଦର୍ଯ୍ୟବୋଧର ସ୍ଥାନ, ପାଣ୍ଡିତ୍ୟ ଓ ଅନୁଭୂତିର ସଂମିଶ୍ରଣ କିପରି କାମ୍ୟ—ତାହା ନନ୍ଦକିଶୋର ଆଲୋଚନା କରିଛନ୍ତି । ମଧୁସୂଦନଙ୍କ ଋତୁଚିତ୍ର ସମ୍ବଳିତ କବିତା ଗୁଡ଼ିକୁ ଯାନକୃଷ୍ଣଙ୍କ ରସକଲ୍ଲୋଳ ଓ କାଳିଦାସଙ୍କ ଋତୁ ସଂହାରସ୍ଥ ଋତୁ ବର୍ଣ୍ଣନା ସହିତ ତୁଳନା କରିଛନ୍ତି । ଆଦି ରସର କୌଣସି ପୁଟ ନଥାଇ ମଧୁସୂଦନ କିପରି ନିଜ ଚିତ୍ରକୁ ମନୋଜ୍ଞ କରି ପାରିଛନ୍ତି ତାହା ବିଶ୍ଳେଷଣ କରିଛନ୍ତି । ନନ୍ଦକିଶୋର ଛନ୍ଦମାଳାର ଦୃଷ୍ଟାନ୍ତରୁ ସମଗ୍ରଭାବରେ ମଧୁସୂଦନଙ୍କ କବିତାର ଦୋଷ ଗୁଣ ନିରୂପଣ କରିବାକୁ ଯାଇ ନିମ୍ନ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ।

ଗୁଣ-୧ କବିଙ୍କ ଭାଷାରେ ଏପରି ମୋହ ଅଛି, ଯାହାକୁ ପାଠକଲା ମାତ୍ରକେ ପାଠକ ମନରେ ଅପୂର୍ବ ମାୟା ଜାଲ ବିସ୍ତାରିତ ହୁଏ । ୨—କବି ଶବ୍ଦ ନିର୍ବାଚନ ବିଷୟରେ ଅତି ସାବଧାନ ହୋଇଅଛନ୍ତି । ୩ ତାହାଙ୍କ ଭାଷା ଲଳିତ, ମଧୁର ଏବଂ ସରଳ ଅଥଚ ସର୍ବତ୍ର ଯେ ସହଜ, ଏପରି ନୁହେ । ୪ କୌଣସି କୌଣସି ସ୍ଥାନରେ କବି ସାଧାରଣ ବ୍ୟବହୃତ ଶବ୍ଦ ଗ୍ରହଣ କରିଛନ୍ତି । ଯେମନ୍ତ ନଉଡ଼ି, କଙ୍କାଳ, ବେଙ୍ଗଳା ଇତ୍ୟାଦି । ୫ କବିଙ୍କ ଭାଷା ଅନୁପ୍ରାସ ବହୁଳ । ସମଗ୍ର ପୁସ୍ତିକାର ନାନା ଅଂଶରେ ଏହାର

ନିଦର୍ଶନ ମିଳିବ । ୬ ତାଂକର ଭାଷା ସର୍ବାନୁଗାମିନୀ । ୭ ତାଂକର ପଦ୍ୟ ସକଳ ପୁରାତନ ପ୍ରଥାନୁଯାୟୀ ରାଗିଣୀ ଯୁକ୍ତ ହୋଇଥିବାରୁ ପାଠକମାନଙ୍କର ସୁଗେୟ, ମନୋ-ମୋହନ ହୋଇଛି । ୮ - କବି ସମଗ୍ର ପୁସ୍ତିକାରେ ସୁନ୍ଦର ବର୍ଣ୍ଣନାତ୍ମକ କ୍ଷମତା ପ୍ରଦର୍ଶନ କରିଅଛନ୍ତି । ୯ ମଧୁସୂଦନଙ୍କ କବିତା ସ୍ୱାଭାବିକ । କବିଙ୍କ ପ୍ରାଣରେ ନୈସର୍ଗିକ ଆବେଗ ଅଛି । ୧୦ —କବି ପ୍ରକୃତିର ଉପଭୋଗ୍ୟ ଲାବଣ୍ୟମୟୀ ମୂର୍ତ୍ତି ଦର୍ଶନ କରିଅଛନ୍ତି । ତାଙ୍କର କବିତା ନିସ୍ପଟ । ତାଙ୍କ ବର୍ଣ୍ଣିତ ଭାବ ପବିତ୍ର ଓ ପ୍ରେମ ସ୍ୱର୍ଗୀୟ । ତାଙ୍କର ଉପମା ଓ ରୂପକାଳଙ୍କାର ଉଦାର ଓ ବିଶ୍ୱଜନୀନ । ସମଗ୍ର ପୁସ୍ତକରେ ଉପଦେଶାତ୍ମକ ବାକ୍ୟ ସକଳ ବିକୀର୍ଣ୍ଣ ହୋଇ ପଡ଼ିଅଛି । ୧୧— କବିଙ୍କ ଚରିତ୍ର ଚିତ୍ରଣ ଅତି ଦକ୍ଷତାର ସହିତ ସମ୍ପାଦିତ ହୋଇଅଛି ।

ଦୋଷ୧ ଯେଉଁଠାରେ କବି ଶାନ୍ତ ଓ କରୁଣ ରସର କବିତା ଲେଖିଛନ୍ତି, ସେଠାରେ ସେ ଉଦ୍ଭାବନ କରିଅଛନ୍ତି । କିନ୍ତୁ ତାଙ୍କ ବୀର ରସାତ୍ମକ କବିତାରେ ସେ ଅନୁକରଣ କରିଅଛନ୍ତି । ୨— ତାଙ୍କର କେତେକ କବିତା ବ୍ୟକ୍ତିତ୍ୱହୀନ ହେବାରୁ ତାହା ସାଧାରଣ ପାଠକଙ୍କ ମନୋମୋହନ ନ ହୋଇପାରେ । କିନ୍ତୁ ଏଥିପାଇଁ ପାଠକଙ୍କର କବିତ୍ୱ ଦରକାର । ଉପରୋକ୍ତ ବିଷୟଟି ଦୋଷ ନ ହୋଇ ଗୁଣ ହୋଇପାରେ । କବିଙ୍କର ଉପମା ଓ ରୂପକରେ ବୈଚିତ୍ର୍ୟ ନାହିଁ ।

ନନ୍ଦକିଶୋର, ମଧୁସୂଦନଙ୍କ ଗୁରୁ ଓ ଋଷି ସୁଲଭ ବ୍ୟକ୍ତିତ୍ୱକୁ ତାଙ୍କର କବିତା ଅପେକ୍ଷା ଅଧିକ ମୂଲ୍ୟବାନ ମନେ କରିଅଛନ୍ତି । 'ସ୍ୱର୍ଗୀୟ ମଧୁସୂଦନ ରାଓ ବାହାଦୁର' ଓ 'ରାଓଙ୍କ ସ୍ମୃତି' ପ୍ରବନ୍ଧ ଦୁଇଟିରେ ମଧୁସୂଦନଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ଆଲୋଚନା କରିଅଛନ୍ତି । ମଧୁସୂଦନଙ୍କ ବ୍ୟକ୍ତିତ୍ୱ ପ୍ରତି ଅସୀମ ଶ୍ରଦ୍ଧା ଦୃଷ୍ଟିରେ ନନ୍ଦକିଶୋରଙ୍କ ଆଲୋଚନା ପ୍ରଭାବିତ । ତେଣୁ ଦୋଷ ଅପେକ୍ଷା ଗୁଣହିଁ ସେ ଅଧିକ ଦେଖିଛନ୍ତି । ଉପଦେଶ ଦେବା ଅପେକ୍ଷା, ଉଚ୍ଚ କଳ୍ପନା, ସୁନ୍ଦର ଶୈଳୀ ଓ ଭାଷାର କ୍ରୀଡ଼ାରେ ମନୁଷ୍ୟର ହୃଦୟ ବୃତ୍ତିକୁ ସଂଗୃହୀତ କରିବା ପ୍ରକୃତରେ କବିତାର ଲକ୍ଷ୍ୟ । ସେ ଦିଗରେ ମଧୁସୂଦନ କିପରି ସଫଳ ହୋଇଛନ୍ତି, ତାହା ଠିକ୍‌ଭାବରେ ଆଲୋଚନା କରିବାକୁ ନନ୍ଦକିଶୋର ସମର୍ଥ ହୋଇନାହାନ୍ତି ।

୧୯୧୬ ଖ୍ରୀଷ୍ଟାବ୍ଦରେ ମଧୁସୂଦନଙ୍କ ବିକ୍ଷିପ୍ତ ରଚନାବଳୀ ପ୍ରଥମେ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେଲା । ଏଥିରେ ମୃତ୍ୟୁଞ୍ଜୟ ରଥଙ୍କ ଦ୍ୱାରା ଲିଖିତ କବିଙ୍କ ଜୀବନୀ ଘେନି ଏକପ୍ରବନ୍ଧ ଓ ଶ୍ରୀମଧୁସୂଦନ ଦାଶଙ୍କ ଲିଖିତ ଭୂମିକା ପ୍ରକାଶ ପାଇଥିଲା । ଗ୍ରନ୍ଥାବଳୀର ପାଠକଙ୍କ ମନରେ କବିଙ୍କ ବ୍ୟକ୍ତିତ୍ୱ ଓ ସମଗ୍ର ସାହିତ୍ୟର ସ୍ୱରୂପ ବିଷୟରେ ଏକ ସ୍ଥୂଳ ଧାରଣା ଦେବାର ପ୍ରୟାସ ଏହି ଦୁଇଟିରେ ହୋଇଅଛି । ଋଷି ଦିବ୍ୟ ଦ୍ରଷ୍ଟା ମଧୁସୂଦନଙ୍କ

କବିତାରେ ଅଭିବ୍ୟକ୍ତ ଆଧ୍ୟାତ୍ମିକ ଭାବଧାରାର ପରୀକ୍ଷା ଓ ଆତ୍ମମୁଖ୍ୟ ବର୍ଣ୍ଣନା କରିବାକୁ ଯାଇ, ଶ୍ରୀଦାଶ ନିମ୍ନ ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । 'ବସ୍ତୁକୁ ଅଖଣ୍ଡ ରସର ଲୀଳା ଭୂମି ରୂପେ ଦର୍ଶନ କରିବା ଶକ୍ତି ସମସ୍ତଙ୍କର ନାହିଁ, ତେଣୁ ସବୁ କବିଙ୍କର ନ ଥାଏ । ବଳରାମ, ଜଗନ୍ନାଥ ପ୍ରଭୃତି କେତେ ଗୁଡ଼ିଏ ପୁରାତନ ତ୍ୟାଗୀ ଅଥବା ଯୋଗୀ ଉତ୍କଳୀୟ କବିଙ୍କୁ ଛାଡ଼ି ଦେଲେ, ସଂସାରୀ କୌଣସି କବିଙ୍କର ଏହି ଦୃଷ୍ଟି ଥିଲା ପରି ବୋଧ ହୁଏ ନାହିଁ । ମାତ୍ର ଆମ୍ଭମାନଙ୍କର କବିଙ୍କଠାରେ ଏହି ଦୃଷ୍ଟି ଯେ ଥିଲା, ତାହା ତାଙ୍କର ବର୍ଣ୍ଣନାତ୍ମକ କବିତାଗୁଡ଼ିକ ପଢ଼ିଲେ ପାଠକମାନେ ବୁଝି ପାରିବେ ।' ୧୪

ସମଗ୍ରଭାବରେ ମଧୁସୂଦନଙ୍କ ରଚନାବଳୀର ସଂକ୍ଷିପ୍ତ ଆଲୋଚନା ପାଇଁ ପ୍ରଥମେ ପଣ୍ଡିତ ନୀଳକଣ୍ଠ ଉଦ୍ୟମ କରିଛନ୍ତି । ଉତ୍କଳ ସାହିତ୍ୟ ସମାଜରେ କବିଙ୍କ ଶ୍ରାଦ୍ଧ ସଭାରେ ପଠିତ ଓ ଉତ୍କଳ ସାହିତ୍ୟ ପତ୍ରିକାର ବିଂଶଭାଗ, ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ 'ଓଡ଼ିଆ ସାହିତ୍ୟରେ ମଧୁସୂଦନ' ପ୍ରବନ୍ଧରୁ ନବଜୀବନ ଆଦର୍ଶର ପ୍ରଚାରକ, ଦିବ୍ୟଦ୍ରଷ୍ଟା କବି ମଧୁସୂଦନଙ୍କ କାବ୍ୟ ଓ ବ୍ୟକ୍ତିତ୍ୱ ଜାତୀୟତାର ବିକାଶ ଯୁଗରେ କିପରି ପ୍ରିୟ ଥିଲା ତାହାର ସ୍ପଷ୍ଟ ସୂଚନା ମିଳେ । ସତ୍ୟବାଦୀ ଯୁଗ ଉପରେ ମଧୁସୂଦନଙ୍କ ସାହିତ୍ୟ କିପରି ଗଭୀର ପ୍ରଭାବ ବିସ୍ତାର କରିଥିଲା, ତାହାର ବିଶ୍ଳେଷଣ କରିବାକୁ ଯାଇ ଯଥାର୍ଥରେ ପଣ୍ଡିତ ନୀଳକଣ୍ଠ କହିଛନ୍ତି—'ଘରର ଗୋଟିଏ କୋଠରୀରେ ଥାଇ ଅନୁମାନରେ ଘରଟିର ସମୂହ ଗଠନ ଗୌରବର ଆଲୋଚନା କରିବା ସୁସାଧ୍ୟ ନୁହେ । ବଣରୁ ବାହାରି ଅନ୍ତତଃ କିଛି ଦୂରକୁ ନ ଗଲେ କେହି ବନଭୂମିର ବିଚିତ୍ର ଶୋଭା ଉପଲବ୍ଧି କରି ପାରିବେ ନାହିଁ । କୌଣସି ଦଳୀୟ ବ୍ୟକ୍ତି ପକ୍ଷରେ ନିଜ ଦଳର ମତ ସମାଲୋଚନା କରିବା ସୁକଠିନ । ମଧୁସୂଦନଙ୍କ ସମାଲୋଚନା ଆମ୍ଭମାନଙ୍କ ପକ୍ଷରେ ବହୁ ପରିମାଣରେ ସେହିପରି । ସାହିତ୍ୟ ହିସାବରେ ଆମେମାନେ ଏକ ପ୍ରକାର ମଧୁସୂଦନଙ୍କ ଆଦର୍ଶରେ ବଢ଼ୁଅଛୁଁ । ଯେ ଯାହାର ଆଦର୍ଶ, ସେ ତାହାର ସମାଲୋଚ୍ୟ ହେବା ସହଜ ନୁହେ । ଯେ ଯହିଁରେ ଅନୁପ୍ରାଣିତ, ସେ ତାହାର ଦୋଷ ଗୁଣ ବାଛିବାରେ ସଂପୂର୍ଣ୍ଣ କୃତକାର୍ଯ୍ୟ ହେବା ଅସମ୍ଭବ ।' ୧୫

ମଧୁସୂଦନଙ୍କ ଲେଖନ ପଦ୍ଧତି ଓ କବିତାର ସାଧାରଣ ଧର୍ମ ବିଷୟରେ ପଣ୍ଡିତ ନୀଳକଣ୍ଠ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି, ତାହା ଏବେ ସର୍ବବାଦୀ ସମ୍ମତ ମତ । ତାଙ୍କର ସ୍ପଷ୍ଟ ଉକ୍ତି ପ୍ରଣିଧାନ ଯୋଗ୍ୟ । 'ଲେଖନ ପଦ୍ଧତି ବିଚାର କଲେ ମଧୁସୂଦନଙ୍କ ଗଦ୍ୟ ପଦ୍ୟରେ ବିଶେଷ ପ୍ରଭେଦ ନାହିଁ । ତତ୍ସମ ଶବ୍ଦର ପ୍ରାଚୁର୍ଯ୍ୟ, ସାଧାରଣ ପକ୍ଷରେ ଦୁର୍ବୋଧତା, ଶବ୍ଦ ବିନ୍ୟାସ, ସ୍ୱର ସଙ୍ଗୀତ ବିକାଶରେ ଶ୍ରମପରତା, ଭାବ ଓ ଯତି ନିୟମାଦିର ପବିତ୍ରତା ପ୍ରଭୃତି ପଦ୍ୟରେ ସର୍ବତ୍ର ସ୍ପଷ୍ଟ । ଲେଖା ସର୍ବଦା ପ୍ରଣାଳୀବଦ୍ଧ ଓ ରୁଚି ସମ୍ପନ୍ନ ।' କବିଙ୍କ କବିତାର ଆଧ୍ୟାତ୍ମିକ ଭାବ ସମ୍ପନ୍ନତା ବିଷୟରେ ନିଜର ଅନୁଭବ ବିଶ୍ଳେଷଣ କରି ସେ କହିଛନ୍ତି —'ମଧୁବାବୁଙ୍କ କବିତା ଥରେ ପଢ଼ିଲେ ଭାବର ସଙ୍ଗେ

ସଙ୍ଗେ ପ୍ରାଣ ବେଳେ ବେଳେ ଅତୀନ୍ଦ୍ରିୟ ଦେଶକୁ ଚାଲିଯାଏ । ପାଠକ ଭାଷାର ଉଚ୍ଛୃଙ୍ଖଳ ବିଳାସରେ ଭାସି ନ ଯାଇ ନିୟମନିବଦ୍ଧ ଶାଣିତ ବର୍ଣ୍ଣ ଯୋଜନା ମଧ୍ୟରେ ସଂଯତ ଭାବରାଶି ବିକାଶରେ ଆତ୍ମୋନ୍ନତି ଅନୁଭବ କରେ ।' ୧୬

ମଧୁସୂଦନଙ୍କ କବିତାର ଦର୍ଶନ ଯେତେ ଅଧ୍ୟାପକ ମୋହିନୀ ମୋହନ ସେନାପତି ପ୍ରଥମେ ଆଲୋଚନା କରିଛନ୍ତି । ୧୬ । ମୋହିନୀ ମୋହନ ନାସ୍ତିକ ଓ ଜଡ଼ବାଦୀ ଦାର୍ଶନିକ ଥିଲେ । ବାସ୍ତବ ଉଜ୍ଜ୍ୱଳ ଜ୍ଞାନ ଦୃଷ୍ଟିରେ ସେ ମଧୁସୂଦନଙ୍କ ଧର୍ମ ବିଶ୍ୱାସ ଓ ଆଧ୍ୟାତ୍ମିକ ଭାବଧାରାଗୁଡ଼ିକୁ ଖଣ୍ଡିତ କରିଛନ୍ତି । ବସନ୍ତଗାଥାର ସନେଟ୍‌ଗୁଡ଼ିକର ଶିଳ୍ପ ନୈପୁଣ୍ୟ ବା ଭାବ ଅଭିବ୍ୟକ୍ତିର ସୌନ୍ଦର୍ଯ୍ୟ ପ୍ରତି ବିଶେଷ ଧ୍ୟାନ ନ ଦେଇ, କବିଙ୍କ ଧର୍ମ ମତ କଣ —ଏଇ ପ୍ରଶ୍ନରୁ ଆଲୋଚନା ଆରମ୍ଭ କରିଛନ୍ତି । କବିଙ୍କ କବିତାରେ ପ୍ରାପ୍ତ ଈଶ୍ୱର ବିଶ୍ୱାସ ଓ ତ୍ୟାଗ ଧର୍ମ ସମାଜ ବିକାଶର ଏକାନ୍ତ ବିରୋଧୀ ବୋଲି ସମାଲୋଚନା କରି ବିପ୍ଳବୀ ଭାବୁକ ମୋହିନୀ ମୋହନ ଯେଉଁ ସିଦ୍ଧାନ୍ତରେ ପହଞ୍ଚି ଅଛନ୍ତି ତାହା ବିଶେଷ ପ୍ରଣିଧାନ ଯୋଗ୍ୟ । 'କବି ଯେତେବେଳେ ଜ୍ଞାନମୟ, ପ୍ରେମମୟ ଏବଂ ପୁଣ୍ୟମୟ ଅନନ୍ତର କଥା କହୁଅଛନ୍ତି, ସେତେବେଳେ ବୁଝିବୁଁ ଯେ କବି ତାଙ୍କର ଜ୍ଞାନର କଥା ନ କହି ବିଶ୍ୱାସର କଥା କହୁଅଛନ୍ତି । ଯେଉଁ ବିଶ୍ୱାସ ଜ୍ଞାନକୁ ଆଶ୍ରୟ ନ କରି ଶୂନ୍ୟରେ ଝୁଲୁଥାଏ, ତାହା ଅଳୀକ ଏବଂ ଅସାର, ତାହା ଦ୍ୱାରା ଲୋକମାନଙ୍କର କୌଣସି ହିତ ସାଧିତ ହୁଏ ନାହିଁ ।'

'ସତ୍ୟ ଶିବ ସୁନ୍ଦରଙ୍କୁ ପୂଜା କରିବାକୁ ଯାଇ ସତ୍ୟକୁ ଛାଡ଼ି କଳ୍ପନାର ଆଶ୍ରୟ ଗ୍ରହଣ କରିଅଛନ୍ତି ।'

'କବି ଜ୍ଞାନର ବନ୍ୟା ରୁଦ୍ଧ କରି ବିଶ୍ୱାସ-ସୌଧ ଚିରସ୍ଥାୟୀ କରିବାକୁ ଚାହିଁଥିଲେ । ଏହା ମାରାତ୍ମକ ଓ ଅସମ୍ଭବ ।'

'ପୁଣ୍ୟର ଆଦର୍ଶ ଲୋଡ଼ିବାକୁ ଯାଇ କବି ତ୍ୟାଗ ଧର୍ମର ଆଶ୍ରୟ ଗ୍ରହଣ କରିଥିଲେ । ...ଏହି ତ୍ୟାଗ ଧର୍ମ ଆମ୍ଭମାନଙ୍କୁ ବିନାଶ ଆଡ଼କୁ ନେଇଯାଏ । ବାସନାର ବିନାଶ ଅର୍ଥ ଆତ୍ମହତ୍ୟା ।' କବିଙ୍କ ଆଦର୍ଶର ମୃତ୍ୟୁ ଘଟିପାରେ, ମାତ୍ର କବିତା ଅମର । ଏଥିରୁ କବିଙ୍କ ହୃଦୟର ପରିଚୟ ଯେତେ ନିବିଡ଼ ଭାବରେ ମିଳେ ତାହା ସେହି ପରିମାଣରେ ସାର୍ଥକ । କବି ମଧୁସୂଦନଙ୍କର ଉଚ୍ଚ ପ୍ରେମ ପ୍ରବଣ ହୃଦୟ ଥିଲା । ଏହି ହୃଦୟର ଅନ୍ତରଙ୍ଗ ଭାବରାଜି ସେ ନିଜ କବିତାରେ ନିପୁଣରୂପେ ପ୍ରକାଶ କରିବାର କ୍ଷମତା ଲାଭ କରିଥିଲେ । କେବଳ ଧର୍ମ ବିଶ୍ୱାସ ନୁହେଁ, କବିଙ୍କର ଦାମ୍ପତ୍ୟ ପ୍ରେମ, ବନ୍ଧୁବାତ୍ସଲ୍ୟ, ଦେଶପ୍ରେମ ଓ ମାନବପ୍ରେମ ସମସ୍ତଙ୍କୁ ଆକର୍ଷଣ କରିଥିଲା । ତାଙ୍କର ଏହି ପ୍ରେମ ଜଗତକୁ ବାନ୍ଧିଥିଲା । ଏହା ସୃଷ୍ଟି

ଭାବରେ ସ୍ୱୀକାର କରି ମୋହିନୀ ମୋହନ କହିଛନ୍ତି—'କବି ଯେଉଁ ମତଗୁଡ଼ିକ ପ୍ରଚାର କରିବା ତାଙ୍କ ଜୀବନର ମହାବ୍ରତ କରିଥିଲେ, ଭବିଷ୍ୟତ ବଂଶ ତାହା ଗ୍ରହଣ ନ କରିପାରେ, ତାହା ଭୁଲି ଯାଇପାରେ ; କିନ୍ତୁ ମଧୁସୂଦନ ସାହିତ୍ୟ ଉଦ୍ୟାନରେ ଯେଉଁ ମଧୁଚକ୍ର ରଚନା କରି ଯାଇଅଛନ୍ତି, ସେଥିରୁ ମଧୁ ସେ ଚିରକାଳ ପାନ କରୁଥିବେ ।'

## ସବୁଜ କବିଙ୍କ ଦୃଷ୍ଟିରେ ମଧୁସୂଦନ

ମଧୁସୂଦନଙ୍କ ଆଦର୍ଶ ଖଣ୍ଡ ଓ କ୍ଷୁଦ୍ରରେ ଆବଦ୍ଧ ନ ଥିଲି । ତାଙ୍କର ଆଦର୍ଶ ଉଦାର ଓ ବିଶ୍ୱଜନୀନ ଥିଲି । ତାଙ୍କ ରଚନାରେ ଏହି ଦିଗ ଆଦର୍ଶବାଦୀ ତରୁଣଗଣଙ୍କୁ ବିଶେଷ ଉଦ୍‌ବୁଦ୍ଧ କରିଥିଲି । ଏହାର ସୂଚନା ସବୁଜ ଯୁଗର ଦୁଇ ପ୍ରଧାନ ପୁରୋଧା ଶ୍ରୀ ଅନ୍ନଦାଶଙ୍କର ଓ କାଳନ୍ଦୀ ଚରଣଙ୍କ ଆଲୋଚନାରୁ ମିଳିଥାଏ ।

ଶ୍ରୀଯୁକ୍ତ ଅନ୍ନଦା ଶଙ୍କର ରାୟଙ୍କ 'ବସନ୍ତଗାଥା' ମଧୁସୂଦନଙ୍କ କାବ୍ୟ କୃତି ଯେତେ ହୋଇଥିବା ଆଲୋଚନା ମଧ୍ୟରେ ବିଶେଷ ମୂଲ୍ୟବାନ୍ ।୨୮ କେବଳ ଭାବ ଓ ବିଷୟ ଦିଗରୁ ନୁହେଁ, ରସ ଓ ସୌନ୍ଦର୍ଯ୍ୟ ଦିଗରୁ ବସନ୍ତଗାଥାର ଚତୁର୍ଦ୍ଦଶପଦୀ କବିତା ଗୁଡ଼ିକର ମୂଲ୍ୟ ନିରୂପଣ ଲାଗି ଏଥିରେ ସଫଳ ପ୍ରୟାସ ହୋଇଅଛି । ନାମକରଣ, ଛନ୍ଦ ଓ ଶୈଳୀ, ଭାବ ଓ ବିଷୟବସ୍ତୁ ଦିଗରୁ ଏହି ଆଲୋଚନାର ଧାରା ଅତି ସୂକ୍ଷ୍ମ । ପ୍ରଥମ ପର୍ଯ୍ୟାୟରେ ଗାଥା ଶବ୍ଦ ପ୍ରୟୋଗରେ କିପରି ଅର୍ଥଗତ ଅସଙ୍ଗତି ଘଟିଅଛି ; ପୁଣି ବସନ୍ତ ସହିତ କବିତା ଗୁଡ଼ିକର ଭାବ ଓ ବିଷୟର କିପରି କୌଣସି ସାମଞ୍ଜସ୍ୟ ନାହିଁ—ତାହା ସମସ୍ତ ଦିଗରୁ ବିଶ୍ଳେଷଣ କରି ଲେଖକ ଦେଖାଇଛନ୍ତି । ଦ୍ୱିତୀୟ ପର୍ଯ୍ୟାୟରେ ଚତୁର୍ଦ୍ଦଶପଦୀର ପାଶ୍ଚାତ୍ୟ ପରମ୍ପରା ଓ ମଧୁସୂଦନଙ୍କ ଆହରଣରେ ବୈଶିଷ୍ଟ୍ୟ ଆଲୋଚିତ ହୋଇଅଛି । ଭାବ ଓ ଆଦର୍ଶର ଆଭିମୁଖ୍ୟ ବିଶ୍ଳେଷଣ ପ୍ରସଙ୍ଗରେ—ପ୍ରେମ ଦୃଷ୍ଟିରେ କିପରି କବି ଜୀବନକୁ ବିଚାର କରିଛନ୍ତି, ତାହା ବର୍ଣ୍ଣନା କରିଛନ୍ତି । କବିଙ୍କ ହୃଦୟର ପ୍ରେମଧାରା କେତେବେଳେ ଦେଶ ଅଥବା ପ୍ରକୃତି, ପୁଣି କେତେବେଳେ ଈଶ୍ୱର ଅଥବା ମନୁଷ୍ୟ ପ୍ରତି କିପରି ଧାବିତ ହୋଇଅଛି ; ଏହି ଦୃଷ୍ଟିରୁ ତାଙ୍କ କବିତା କିପରି ସାର୍ଥକ ହୋଇଅଛି, ତାହା ସମାଲୋଚକ ସ୍ଥିର କରିଅଛନ୍ତି । ତାଙ୍କ ମତରେ ମଧୁସୂଦନଙ୍କ କବିତାବଳୀ ମଧ୍ୟରେ 'ଋଷି ପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟ ଉତ୍ସବ' କବିତା ଦୁଇଟି ପ୍ରଥମ ଓ ବସନ୍ତଗାଥାର ଶ୍ରେଷ୍ଠ ଚତୁର୍ଦ୍ଦଶପଦୀ ଗୁଡ଼ିକ ଦ୍ୱିତୀୟ ସ୍ଥାନର ଅଧିକାରୀ । ଉପସଂହାରରେ ଉତ୍କଳର ଆଧୁନିକ ଯୁଗର ଦୁଇ ଶ୍ରେଷ୍ଠ କବି ରାଧାନାଥ ଓ ମଧୁସୂଦନଙ୍କ କବିତ୍ୱ ଓ ବ୍ୟକ୍ତିତ୍ୱକୁ ତୁଳନା କରି ଶ୍ରୀଯୁକ୍ତ ରାୟ କବି ଭାବରେ ରାଧାନାଥଙ୍କୁ ଓ ଗୁରୁ, ଋଷି ଓ ଦ୍ରଷ୍ଟାଭାବରେ ମଧୁସୂଦନଙ୍କୁ ଶ୍ରେଷ୍ଠ ଆସନ ଦେଇଛନ୍ତି ।

ଶ୍ରୀକାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ରଚିତ ଭକ୍ତକବି ମଧୁସୂଦନ କବିଙ୍କ ଜୀବନୀ ଓ ସାହିତ୍ୟ ଆଲୋଚନା ଯେଉଁ ଏକମାତ୍ର ଗ୍ରନ୍ଥ । ଓଡ଼ିଆ ସାହିତ୍ୟ ପ୍ରଗତିର ପଥିକୃତ ଦ୍ଵାରା ତାହାର ପ୍ରମାଣ ପୁରୁଷମାନଙ୍କର ସ୍ମୃତି ଆରାଧନା ଉଦ୍ଦେଶ୍ୟରେ କଳ୍ପିତ 'ବୀର ଜୀବନୀ ଗ୍ରନ୍ଥମାଳା' ପର୍ଯ୍ୟାୟର ଏକ କୃତି ରୂପେ ୧୯୨୮ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ଦୀର୍ଘ ତିରିଶ ବର୍ଷ ବିତି ଯାଇଥିଲେ ମଧ୍ୟ ଏହାର ଦ୍ଵିତୀୟ ସଂସ୍କରଣ ହୋଇନାହିଁ । ଶୁଦ୍ଧ ସାହିତ୍ୟ ଭାବରେ ପ୍ରଗତିର ଧାରାରୁ ଆଲୋଚନା ଗ୍ରନ୍ଥର ସ୍ଥାନ ଆମଦେଶରେ କେତେ ନିମ୍ନରେ ରହିଅଛି, ଏ ଗ୍ରନ୍ଥଟି ତାହାର ଏକ ଦୃଷ୍ଟାନ୍ତ ।

ଏହି ଗ୍ରନ୍ଥର ପ୍ରଥମ ସତରଟି ପରିଚ୍ଛେଦରେ କବିଙ୍କ ଜୀବନୀ, ସମାଜ ସଂସ୍କାର, ଧର୍ମ-ପ୍ରଗତି ଓ ଶିକ୍ଷା ବିସ୍ତାର ଆଦି ଦିଗରେ କାର୍ଯ୍ୟ କଳାପର ବିବରଣୀ ପ୍ରଦତ୍ତ ହୋଇଅଛି । କବିଙ୍କ ମୃତ୍ୟୁକାଳରେ ପ୍ରକାଶିତ ଉତ୍କଳସାହିତ୍ୟ ପତ୍ରିକାର ବିଶେଷ ସଂଖ୍ୟାରେ ଲିଖିତ କବିଙ୍କ ଜୀବନୀ ବିଷୟକ ପ୍ରବନ୍ଧ, ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ରଚିତ କବିଙ୍କ ଜୀବନୀ ଓ କବିଙ୍କ ଦିନ ଲିପିରୁ ତଥା ପରିବାରର ବ୍ୟକ୍ତିମାନଙ୍କଠାରୁ ତଥ୍ୟ ସଂଗ୍ରହ କରି ଲେଖକ ଏହି ଭାଗଟି ଲେଖିଅଛନ୍ତି । ଏହା ଉପାଦେୟ ହୋଇଛି । ଗ୍ରନ୍ଥର ଶେଷ ଦଶ ଗୋଟି ଅଧ୍ୟାୟରେ କବିଙ୍କ ଗ୍ରନ୍ଥାବଳୀର ଆଲୋଚନା ସ୍ଥାନ ପାଇଅଛି । ଆଲୋଚନାର ସୁବିଧା ପାଇଁ ସମସ୍ତ କବିତାକୁ ନିମ୍ନ ପ୍ରକାରେ ଶ୍ରେଣୀକରଣ କରାଯାଇଅଛି । ଯଥା ଶିଶୁ କବିତା, ବର୍ଣ୍ଣନାତ୍ମକ କବିତା, ଭାବନାତ୍ମକ ବା ଧର୍ମ ଓ ନୀତି ବିଷୟକ କବିତା, ଅନୁବାଦ । ପ୍ରତ୍ୟେକ ଶ୍ରେଣୀର କବିତା ଉପରେ ଗୋଟିଏ ଲେଖାଏଁ ଅଧ୍ୟାୟ ଲିଖିତ ହୋଇଅଛି । ଏହି ଆଲୋଚନାରେ କୌଣସି ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ପ୍ରକାଶ ପାଇନାହିଁ । ଭାବବସ୍ତୁ ବା କାବ୍ୟକଳା ଦିଗରୁ କବିତାର ମୂଲ୍ୟ ନିରୂପଣ ଲାଗି ସେପରି ବ୍ୟାପକ ପ୍ରଚେଷ୍ଟା ପ୍ରକାଶ ପାଇନାହିଁ । ସହଜଭାବରେ କବିତାବଳୀର ବିଷୟବସ୍ତୁର ପରିଚୟ ପ୍ରଦାନ କରାଯାଇଅଛି ।

### ରାଧାନାଥ ଓ ମଧୁସୂଦନଙ୍କ ତୁଳନା

ରାଧାନାଥ ଓ ମଧୁସୂଦନ ଉଭୟ ଏକ ସମୟର କବି ଥିଲେ । ମାତ୍ର ଉଭୟଙ୍କ କାବ୍ୟ ସାଧନା ଭିନ୍ନ ଦିଗରେ ଗତି କରିଥିଲା । ରାଧାନାଥ କଥା କାବ୍ୟ ଓ ମଧୁସୂଦନ କ୍ଷୁଦ୍ର କବିତା ରଚନାରେ ନିଜ ପ୍ରତିଭାର ବିନିଯୋଗ କରିଥିଲେ । କେବଳ ଆକୃତି ଦିଗରୁ ନୁହେଁ, ଭାବ ଓ ଆଦର୍ଶ ଚୟନରେ ମଧ୍ୟ ଉଭୟଙ୍କ ଦୃଷ୍ଟିକୋଣ ସ୍ଵତନ୍ତ୍ର ଥିଲା । ରାଧାନାଥ ପ୍ରକୃତି ପ୍ରାଣ, କଳାପ୍ରେମୀ କବି ଓ ମଧୁସୂଦନ ଶୁଦ୍ଧନୀତି ଧର୍ମର ପ୍ରଚାରକ ସାଧକ ଥିଲେ । ବ୍ୟକ୍ତିତ୍ଵର ଏହି ଦୁଇ ସ୍ଵତନ୍ତ୍ର ଦିଗ ନାନାଭାବରେ କବି ଦ୍ଵୟଙ୍କ କାବ୍ୟକୁ ସଂଚରିତ ହେବା ସ୍ଵାଭାବିକ । ଏହି ଦୃଷ୍ଟିରୁ ଉଭୟଙ୍କ ବ୍ୟକ୍ତିତ୍ଵ ଓ କାବ୍ୟଗତ ଆଭିମୁଖ୍ୟର ତୁଳନାରେ ସମାଲୋଚକମାନେ ପ୍ରବୃତ୍ତ ହୋଇଅଛନ୍ତି ।

ସ୍ୱର୍ଗତଃ ନନ୍ଦକିଶୋର ବଳ ପ୍ରଥମେ ତୁଳନାତ୍ମକ ବିଚାର ଦ୍ୱାରା ରାଧାନାଥ ଓ ମଧୁ-ସୂଦନଙ୍କ ସ୍ୱତନ୍ତ୍ର ସ୍ଥାନ ନିରୂପଣ ପାଇଁ ଚେଷ୍ଟା କରିଅଛନ୍ତି । କବି ଦ୍ୱୟଙ୍କ କାବ୍ୟର ଆଦର୍ଶ, ପ୍ରକୃତି ପ୍ରତି ଦୃଷ୍ଟି କୋଣ ଓ ଭାଷା ପଦ୍ଧତିରେ ସ୍ୱାତନ୍ତ୍ର୍ୟ ନେଇ ସେ ପ୍ରଥମେ ସ୍ପଷ୍ଟ ମତ ପ୍ରକାଶ କରିଛନ୍ତି । ତାଙ୍କର ନିମ୍ନ ଉକ୍ତିମାନ ପ୍ରଣିଧାନ ଯୋଗ୍ୟ । 'ବୀର ରସ ସୃଷ୍ଟିରେ, ସ୍ୱଦେଶ ପ୍ରେମିକତାରେ, ବୈରାଗ୍ୟ ସଙ୍ଗୀତ ରଚନାରେ ମଧୁସୂଦନ ରାଧାନାଥଙ୍କ ଶିଷ୍ୟ । ...କିନ୍ତୁ ଗୋଟିଏ ବିଷୟରେ ମଧୁସୂଦନ ରାଧାନାଥଙ୍କଠାରୁ ଶ୍ରେଷ୍ଠ । ନବ ଯୁଗର, ନବ ଜୀବନର, ଧର୍ମମୟ ସଙ୍ଗୀତର, ସଂଯମର, କର୍ମ ଜୀବନର ପ୍ରଧାନ ଗାୟକ ମଧୁସୂଦନ । ଆଧୁନିକ ଉତ୍କଳକୁ କର୍ମମୟ ରଣ ଚତ୍ୱରକୁ ବଳ୍‌ଗା ଧାରଣ କରି ଆଣିବା ବିଷୟରେ ସେହି ପ୍ରଥମ ।'୨୯ 'କବି ମଧୁସୂଦନ ଓ କବି ରାଧାନାଥ ଉଭୟେ ପ୍ରକୃତିର ଶୋଭା ସନ୍ଦର୍ଶନ କରିଅଛନ୍ତି । କିନ୍ତୁ ରାଧାନାଥ ଯେଉଁ ପ୍ରକୃତିର ଶୋଭାକୁ ଚିର ସଧବା ପୂର୍ଣ୍ଣ ଯୌବନା ନାରୀରୂପେ ଦେଖନ୍ତି, ମଧୁବାବୁ ତାହାକୁ ଚିର କୁମାରୀ ରୂପରେ ଦେଖନ୍ତି । ଉଭୟ କବିଙ୍କ ଭାଷାରେ ମଧ୍ୟ ତଦନୁରୂପ ପାର୍ଥକ୍ୟ ଲକ୍ଷିତ ହୁଏ । ରାଧାନାଥ ବାବୁଙ୍କ ଭାରତୀ ଗୃହିଣୀ ଦୋଷଗୁଣ, ରୂଢ଼ତା, କୋମଳତା ସଙ୍ଗରେ ନେଇ ଘର କରଣା କରନ୍ତି ଓ କବିଙ୍କ ନିକଟରେ କେତେ-ବେଳେ ଅଟ୍ଟହାସ୍ୟ, କେତେବେଳେ ବିଳାପ କରନ୍ତି । ପକ୍ଷାନ୍ତରରେ ମଧୁବାବୁଙ୍କ ଭାରତୀ ସଙ୍କୁଚିତା, ଈଷତ୍ ଲଜ୍ଜିତା ଓ ମୃଦୁଭାବ ସମ୍ପନ୍ନା । ସେ ସମ୍ମୁଖରେ ଈଷତ୍ ମୃଦୁହାସ୍ୟ ଏବଂ ଦୁଃଖତାପରେ ବିଷଣ୍ଣ ମୁଖଭଙ୍ଗୀରେ ସଂଯତଭାବରେ ସ୍ୱୀୟ ମନୋଭାବ ପ୍ରକାଶ କରନ୍ତି ।'୩୦ ନିଜ କବି ଦୃଷ୍ଟିରେ ନନ୍ଦକିଶୋର ରାଧାନାଥଙ୍କ ଭାଷା ଶିଳ୍ପର ମହତ୍ତ୍ୱ ସ୍ୱୀକାର କରିଅଛନ୍ତି । ଉଭୟ କବିତାର ଭାଷା ମାଧୁରୀ ଉପଭୋଗ ନେଇ ନିଜର ଅନୁଭୂତି ବର୍ଣ୍ଣନା କରି ଲେଖି-ଅଛନ୍ତି—'ସରଳ ହୃଦୟା ବାଳିକାର ତରଳ ଚଞ୍ଚଳ ବପୁଠାରୁ ଅତଳ ଗମ୍ଭୀର ପ୍ରଣୟବତୀ ପୂର୍ଣ୍ଣ ଯୁବତୀର ଧୀର ସ୍ଥିର ମୂର୍ତ୍ତି କେତେ ଆନନ୍ଦଦାୟକ ।'୩୧

ନନ୍ଦକିଶୋରଙ୍କ ଭଳି କବି ଭାବରେ ଏହି ଦୁଇ ଜଣଙ୍କ ସ୍ଥାନ ନିର୍ଣ୍ଣୟ ଉଦ୍ୟମ ଡଃ ମାୟାଧର ମାନସିଂ 'ରାଧାନାଥ ଓ ମଧୁସୂଦନ' ପ୍ରବନ୍ଧରେ କରିଅଛନ୍ତି । କବି ଭାବରେ ରାଧାନାଥଙ୍କୁ ଓ ଶିକ୍ଷକ ଭାବରେ ମଧୁସୂଦନଙ୍କୁ ସେ ମହତ୍ତ୍ୱ ପ୍ରଦାନ କରିଅଛନ୍ତି । ଶୁଦ୍ଧ କାବ୍ୟ ବିଳାସ ଦୃଷ୍ଟିରେ ରଚିତ ନ ହୋଇ କେବଳ ପାଠ୍ୟ ପୁସ୍ତକର ପୃଷ୍ଠା ମଣ୍ଡନ ପାଇଁ ରଚିତ ହୋଇଥିବାରୁ ମଧୁସୂଦନଙ୍କ କବିତା କଳାଭାବରେ ସଫଳ ହୋଇ ପାରିନାହିଁ । ମାନସିଂଙ୍କ ଭାଷାରେ—'ତାଙ୍କ କବିତାର ପ୍ରଧାନ ଅଭାବ ଅନୁଭୂତି । ଅନୁଭୂତି ଅଭାବରୁ ଅଭିବ୍ୟକ୍ତି ମଧ୍ୟ ମଧୁର ହୋଇ ନାହିଁ ଅନେକ କବିତାର ଭାଷା ଆୟାସ ସାଧ୍ୟ ପରି ଜଣା ପଡ଼େ । ପଦ ପୂରଣ ଲାଗି ଯେଉଁ ସ୍ଥାନରେ ଯେଉଁ ଶବ୍ଦ ନ ଥିବାର କଥା ସେ ସ୍ଥାନରେ

ସେ ଶବ୍ଦ ରଖା ଯାଇଛି । ଭାଷାର ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ବଢ଼ାଇବା ଲାଗି ଧନ୍ୟ ଧନ୍ୟ, ଅହୋ, ମହା, ଘୋର ପ୍ରଭୃତି ଶବ୍ଦ ଗୁଡ଼ିକ ଯତ୍ରତତ୍ର ବ୍ୟବହୃତ ହୋଇଅଛି ।' ୩୨

'କବି ଦ୍ୱୟଙ୍କ ସଂସ୍କାର ଓ ଜୀବନ ଛନ୍ଦ' ପ୍ରବନ୍ଧରେ ଶ୍ରୀଯୁକ୍ତ କାଳନ୍ଦୀ ଚରଣ ପାଣିଗ୍ରାହୀ କବି ଭାବରେ ରାଧାନାଥଙ୍କୁ ମଧୁସୂଦନଙ୍କଠାରୁ ମଧ୍ୟ ଶ୍ରେଷ୍ଠ ସ୍ଥାନ ଦେଇଅଛନ୍ତି । ତାଙ୍କ ମତରେ, 'ରାଧାନାଥଙ୍କ କବିତ୍ୱର ସ୍ଥାନ ହୃଦୟ, ମଧୁସୂଦନଙ୍କ କବିତା ମସ୍ତିଷ୍କ ବା ଜ୍ଞାନରୁ ଉତ୍ପତ୍ତି ଲାଭ କରିଅଛି । କଳା ବା ଆର୍ଟ ରାଧାନାଥଙ୍କ କବିତାରେ ଯେଉଁ ପରିମାଣରେ ଫୁଟିଅଛି, ମଧୁସୂଦନ ସେତେ ଫୁଟାଇ ପାରିନାହାନ୍ତି ।' ୩୩

## ଫକୀରମୋହନଙ୍କ କବିତାର ଆଲୋଚନା

ରାଧାନାଥ ଓ ମଧୁସୂଦନଙ୍କ ତୁଳନାରେ ଦେଖିଲେ, ଫକୀରମୋହନଙ୍କ କବିତାର ଆଲୋଚନା ଏ ପର୍ଯ୍ୟନ୍ତ ହୋଇନାହିଁ କହିଲେ ଚଳେ । ଏବେ ୧୯୫୨ ମସିହାରେ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶ ପାଇବା ପୂର୍ବରୁ ତାଙ୍କର ଏକମାତ୍ର କାବ୍ୟ 'ବୌଦ୍ଧାବତାର କାବ୍ୟ' ଦୁଇଟି ସଂସ୍କରଣରେ ଓ ପ୍ରଧାନ କବିତା ସଂକଳନ 'ଅବସରବାସରେ' ତିନିଗୋଟି ସଂସ୍କରଣରେ ପ୍ରଚାରିତ ହୋଇଥିଲା । ମଧୁସୂଦନଙ୍କ ଗ୍ରନ୍ଥାବଳୀ ତୁଳନାରେ ଏ ପ୍ରସାର ଅଳ୍ପ ନୁହେଁ । ୧୯୧୫ ଓ ୧୯୪୯ରେ ମଧୁସୂଦନ-ଗ୍ରନ୍ଥାବଳୀର ମାତ୍ର ଦୁଇଟି ସଂସ୍କରଣ ପ୍ରକାଶ ପାଇଛି । ତଥାପି ଫକୀର ମୋହନଙ୍କ କବିତାବଳୀର ମୂଲ୍ୟାଙ୍କନ ଲାଗି କାହିଁକି ଯେ ସେପରି ଉଦ୍ୟମ ହୋଇନାହିଁ, ତାହା ଅନୁମାନର ବାହାରେ ନୁହେଁ । ରାଧାନାଥ ଓ ମଧୁସୂଦନ କେବଳ କବି ଥିଲେ । ମାତ୍ର ଫକୀରମୋହନଙ୍କ ପ୍ରତିଭାର ଶ୍ରେଷ୍ଠ ଅଂଶ, କବିତାରେ ନୁହେ, ଗଦ୍ୟରେ ତାଙ୍କର କଥା ସାହିତ୍ୟରେ ପ୍ରକାଶ ପାଇଅଛି । ସେଥିଲାଗି ଅଧିକାଂଶ ସମାଲୋଚକଙ୍କ ଦୃଷ୍ଟି ସେଇ ଆଡ଼କୁ ଟଳିବା ସ୍ୱାଭାବିକ ।

କବି ନନ୍ଦକିଶୋରଙ୍କଠାରେ ରାଧାନାଥ ଓ ମଧୁସୂଦନଙ୍କ କବିତା ତୁଳନାରେ ଫକୀରମୋହନଙ୍କ କବିତା ଊଣା ପ୍ରିୟ ନଥିଲା । ବିଶେଷରେ ଫକୀରମୋହନଙ୍କ କବିତାର ସରଳ ସ୍ୱାଭାବିକ ଅନଳଂକୃତ ଭାଷା ଓ ରଚନା ରୀତି ନନ୍ଦକିଶୋରଙ୍କର ଏକ ପ୍ରକାର ଆଦର୍ଶ ଥିଲା । ରାଧାନାଥ ଓ ମଧୁସୂଦନଙ୍କ କବିତାର ଆଲୋଚନା ଶେଷ କରି ସାରିବା ପରେ ଫକୀରମୋହନଙ୍କ କବିତାର ଆଲୋଚନାରେ ପ୍ରବୃତ୍ତ ହେବା କଥା ସେ ଉତ୍କଳ କବି ଫକୀରମୋହନ ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି । ମାତ୍ର ଏଥିଲାଗି ସେ ସୁଯୋଗ ପାଇନାହାନ୍ତି ।

ଗ୍ରନ୍ଥାବଳୀର ମୁଖବନ୍ଧରେ ପଣ୍ଡିତ ନୀଳକଣ୍ଠ କେବଳ ଫକୀରମୋହନଙ୍କ ରଚନାର ପାଠଗତ ବିଚାର ଓ ସମଗ୍ରଭାବରେ ତାଙ୍କର ସାହିତ୍ୟିକ ଜୀବନର ଅଭିବ୍ୟକ୍ତି ପ୍ରତି ଧ୍ୟାନ ଦେଇଅଛନ୍ତି । ସେଥିରେ କବିତାଂଶର ଆଲୋଚନାପାଇଁ ଯଥେଷ୍ଟ ଅବସର ମିଳିନାହିଁ ।

ସୂଚନାରେ ସେ କବିଙ୍କ ଯୌବନ କାଳରେ ରଚିତ ପୁଷ୍ପମାଳା ଓ ଉପହାର ଭଳି କବିତା ସଂଗ୍ରହରେ ଯେ ଯଥାର୍ଥ କବିତା ଥିଲା, ତାହା ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି ।

ସ୍ରଷ୍ଟାରୂପେ ଫକୀରମୋହନଙ୍କ ମାନସ ଲୋକକୁ ବୁଝିବାଲାଗି ତାଙ୍କର କବିତା ଯେ ଏକ ଅନପେକ୍ଷିତ ଉପାଦାନ; ତାହା ଏବେ ଆଲୋଚକଗଣ ସ୍ୱୀକାର କଲେଣି । ଏ ଯାବତ୍ ପ୍ରକାଶିତ ଆଲୋଚନା ମଧ୍ୟରେ ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କ 'ବୌଦ୍ଧାବତାର କାବ୍ୟ ଓ କବି ଫକୀରମୋହନ', ଫକୀରମୋହନ ପରିକ୍ରମାରେ ପ୍ରକାଶିତ ଶ୍ରୀ ସୁଧାଂଶୁ ଶେଖର ରାୟଙ୍କ 'କବି ଫକୀରମୋହନ', ଅଧ୍ୟାପକ ଶ୍ରୀ ସର୍ବେଶ୍ୱର ଦାସଙ୍କ 'ଯୁଗସ୍ରଷ୍ଟା ଫକୀରମୋହନ' ଗ୍ରନ୍ଥରେ ସନ୍ନିବେଶିତ ଆଲୋଚନା ଓ 'ଉତ୍କଳ ଭ୍ରମଣଂ' ପ୍ରେନ ଅଧ୍ୟାପକ ଶ୍ରୀନଟବର ସାମନ୍ତ-ରାୟଙ୍କ ଐତିହାସିକ ଓ ପାଠଗତ ଆଲୋଚନା ବିଶେଷ ଉଲ୍ଲେଖଯୋଗ୍ୟ ।

ଏହି ଯୁଗର ଗୌଣକବିବୃନ୍ଦଙ୍କ ସମ୍ବନ୍ଧରେ କୌଣସି ଉଲ୍ଲେଖ ଯୋଗ୍ୟ ଆଲୋଚନା ହୋଇନାହିଁ କହିଲେ ଚଳେ । ସେମାନଙ୍କ ରଚନାବଳୀର ମୂଲ୍ୟ ବିଗ୍ରହ କରିବା ଅପେକ୍ଷା ଏହାର ପରିଚୟ ସଂଗ୍ରହ ଆବଶ୍ୟକ । ଏ ଦିଗରେ ଶ୍ରୀଯୁକ୍ତ ନଟବର ସାମନ୍ତରାୟ କେତେକ ମୂଲ୍ୟବାନ ତଥ୍ୟ ପ୍ରକାଶ କରିଅଛନ୍ତି । ଏହି ପ୍ରବନ୍ଧରେ ସଂକ୍ଷିପ୍ତ ଭାବରେ ମିଳୁଥିବା କେତେକ ଗୌଣକବିଙ୍କ ରଚନାର ପରିଚୟ ପ୍ରଦତ୍ତ ହୋଇଅଛି ।

## ବର୍ତ୍ତମାନ କଳ୍ପିତ ପ୍ରବନ୍ଧର ଆଭିମୁଖ୍ୟ

ରାଧାନାଥ ଓ ତତ୍ପର ଯୁଗର କବି ଓ କବିତା ପ୍ରେନ ଏ ପର୍ଯ୍ୟନ୍ତ ପ୍ରକାଶିତ ଆଲୋଚନାର ସ୍ୱରୂପ ଉପର ବିବରଣୀରୁ ଧାରଣା କରି ଯାଇପାରେ । ଏହା ସଂକ୍ଷିପ୍ତ । ଏଥିରେ ସମଗ୍ରଭାବରେ ଯୁଗପରିବେଶ ଅଥବା କବିମାନସର ଚିତ୍ର ଫୁଟି ନାହିଁ । ଏ ଦିଗରେ ବର୍ତ୍ତମାନ କଳ୍ପିତ ପ୍ରବନ୍ଧରେ ପ୍ରଥମ ପ୍ରୟାସ ହୋଇଅଛି । ଏହା ସଂକ୍ଷିପ୍ତ ଆଲୋଚନାର ସଂକଳନ ନୁହେ । ବିଷୟ ବର୍ଣ୍ଣନା ଓ ଭାବ ବିଶ୍ଳେଷଣ ଦିଗରୁ ଏଥିରେ ଯୁଗର ଇତିହାସ, କାବ୍ୟର ବିଷୟଚିତ୍ର, କବିଙ୍କ ଜୀବନୀ ଓ ବ୍ୟକ୍ତିତ୍ୱର ସମସ୍ତ ଦିଗ ଆଲୋଚିତ ହୋଇଅଛି ।

କାବ୍ୟର ପରିସର ଅତି ବ୍ୟାପକ । ଭାବ ଓ କଳା ଦିଗରୁ ଏହାର କ୍ରମବିକାଶର ଇତିହାସ, ସମୂହଭାବରେ ମାନବ ସଭ୍ୟତାର କ୍ରମବିକାଶର ଇତିହାସ ସହିତ ଜଡ଼ିତ । ଦେଶକାଳର ଖଣ୍ଡିତ ପରିଧିରେ ଏହାର ବିଗ୍ରହ ପୂର୍ଣ୍ଣତଃ ଅସମ୍ଭବ । ଏହାର ସୂଚନା ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଦିଆଯାଇଅଛି । ମାନବ ସମାଜରେ କବିତାର ଅଭ୍ୟୁଦୟ, ସଭ୍ୟତାର ସ୍ତର ଭେଦରେ କାବ୍ୟକଳାର ବିକାଶକ୍ରମ, ଆଧୁନିକ ବିକାଶର କ୍ରମିକ ଇତିହାସ ସୂଚନାରେ ବର୍ଣ୍ଣନା କରି ଯାଇଅଛି ।

ଯୁଗର ଇତିହାସ, ଜୀବନଧାରା, ସମାଜର ଚିନ୍ତା ଧାରଣାରେ ନଥିଲେ, କାବ୍ୟର ମର୍ମ ସମ୍ପୂର୍ଣ୍ଣରୂପେ ଗ୍ରହଣ କରିବା ସମ୍ଭବ ନୁହେ । କାରଣ ବୃହତ୍ତର ଦୃଷ୍ଟିରେ କାବ୍ୟହିଁ ଜୀବନର ବ୍ୟାଖ୍ୟା । ଏଥିଲାଗି କାବ୍ୟଗତ ଉପାଦାନ ପ୍ରତି ଧ୍ୟାନ ଦେବା ପୂର୍ବରୁ ପରିବେଶର ସୁସ୍ପଷ୍ଟ କଳନା ନିମନ୍ତେ ପ୍ରୟାସ ହୋଇଅଛି । ଦ୍ୱିତୀୟ ଅଧ୍ୟାୟରେ ଊନବିଂଶ ଶତକର ଭାରତ ଓ ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ଇତିହାସ, ଭାରତୀୟ ପୁନର୍ଜାଗରଣର ଧାରା, ଓଡ଼ିଶାରେ ତାହାର ପ୍ରଭାବ ଓ ପରିସର, ଇଂରେଜ ଶାସନ, ରାଜନୈତିକ, ଆର୍ଥିକ ଓ ସାଧାରଣ ଶିକ୍ଷାର ସ୍ଥିତି ଆଦି ପ୍ରସଙ୍ଗ ଆଲୋଚିତ ହୋଇଅଛି ।

ଯୁଗର ପ୍ରମୁଖ କବିମାନଙ୍କ କବିତାରୁ ସମୂହ ଭାବରେ ମିଳୁଥିବା ଉପାଦାନ ଯେଉଁ ଆଧୁନିକ କାବ୍ୟଧାରାର ବ୍ୟାପକତର ଅନୁଶୀଳନ ପାଇଁ ପ୍ରୟାସ ହୋଇଅଛି । ସମାଜଚିନ୍ତା, ଦେଶପ୍ରେମ ଓ ଜାତୀୟତା, ଧର୍ମ ଓ ଦର୍ଶନ ଯେଉଁ ତିନିଗୋଟି ସ୍ୱତନ୍ତ୍ର ଅଧ୍ୟାୟ ସନ୍ନିବେଶିତ ହୋଇଅଛି ।

ସମୂହଭାବରେ ଦେଖିଲେ, କାବ୍ୟ ଯୁଗ ପ୍ରଭାବର ଫଳ । ମାତ୍ର ଏହାର ମୌଳିକ ବିକାଶରେ କବି ବିଶେଷଙ୍କ ପ୍ରତିଭାର ଦାନ ଅନସ୍ୱୀକାର୍ଯ୍ୟ । ଏହି ଦୃଷ୍ଟିରେ ଗ୍ରନ୍ଥର ଦ୍ୱିତୀୟ ଭାଗ କଳ୍ପିତ ହୋଇଅଛି । ଏଥିରେ ଫକୀରମୋହନ, ରାଧାନାଥ, ମଧୁସୂଦନଙ୍କ ଜୀବନୀ, କାବ୍ୟ ସାଧନାର ଧାରା ଓ କାବ୍ୟ କୃତିର ସ୍ୱରୂପ ଆଲୋଚିତ ହୋଇଅଛି । ଏକ ସ୍ୱତନ୍ତ୍ର ଅଧ୍ୟାୟରେ ଗୌଣ କବିମାନଙ୍କର ଦୁଷ୍ପ୍ରାପ୍ୟ ରଚନାର ପରିଚୟ ଦିଆ ଯାଇଅଛି ।

ଭୂର ଇତିହାସ ଦୃଷ୍ଟିରେ ଆଧୁନିକ କାବ୍ୟଧାରାର ଅଭ୍ୟୁଦୟ ଯୁଗର ସାଧନା ଓ ସିଦ୍ଧିର ମୂଲ୍ୟ ଅଙ୍କନ ପାଇଁ ପ୍ରଥମ ଚେଷ୍ଟା ଏହି ପ୍ରବନ୍ଧରେ କରାଯାଇଅଛି । ରାଧାନାଥ, ଫକୀରମୋହନ ବା ମଧୁସୂଦନଙ୍କ ପ୍ରବର୍ତ୍ତିତ ରୁଚି, ଭାବ, ବ୍ୟକ୍ତିତ୍ୱ ଓ ବ୍ୟକ୍ତିଗତ ଜୀବନର ଆଦର୍ଶ ପ୍ରଭାବରେ ପ୍ରଭାବିତ ଆଲୋଚକଙ୍କଠାରେ ପ୍ରକାଶ ପାଇଥିବା ମୂଲ୍ୟମାନଭାବ ଅଥବା ବ୍ୟକ୍ତି ସମ୍ପର୍କରୁ ଜାତ ନିନ୍ଦୁକତା ବା ପ୍ରଶସ୍ତିର ଭାବରୁ ମୁକ୍ତ ଥିବାରୁ ଅନୁଭୂତିର ସ୍ପନ୍ଦନ ଅପେକ୍ଷା ତଥ୍ୟଗତ ବିଶ୍ଳେଷଣ ପ୍ରତି ଏହି ଆଲୋଚନାରେ ପ୍ରବଣତା ପ୍ରକାଶ ପାଇଥିବା ସ୍ୱାଭାବିକ । ନୈର୍ବ୍ୟକ୍ତିକ ନିରପେକ୍ଷ ତନ୍ମୟ ଭାବ ବିଶ୍ଳେଷଣକୁହିଁ ଏହି ପ୍ରବନ୍ଧର ଧର୍ମ ରୂପେ ଗ୍ରହଣ କରାଯାଇଅଛି ।

ସମାଜ ଶୃଙ୍ଖଳାର ଉଦ୍‌ଭବକାଳରେ ଭାବପ୍ରବଣ ଦିବ୍ୟଦୃଷ୍ଟି ସମ୍ପନ୍ନ କବି ହୃଦୟର ଆତ୍ମଦାନର ଇତିହାସ ଯୁଗ ବିଶେଷର କାବ୍ୟକୃତି ଭିତରୁ ଖୋଜି ବାହାର କରିବାର ପରମ୍ପରା ଏ ପର୍ଯ୍ୟନ୍ତ ଆମ ଆଲୋଚନା ସାହିତ୍ୟରେ ପ୍ରାୟ ଫୁଟି ନାହିଁ । ଏହା ଏକ କଠିନ କାର୍ଯ୍ୟ, କେବଳ ଅଳଙ୍କାର ଶାସ୍ତ୍ର ବା କାବ୍ୟଗତ ମଣ୍ଡନ କଳା ଶାସ୍ତ୍ରରେ ପ୍ରବୀଣ ବ୍ୟକ୍ତିଙ୍କ ଦ୍ୱାରା

ସାଧିତ ହେବା ସମ୍ଭବ ନୁହେ । ଆଧୁନିକ କାବ୍ୟରେ ଆଧୁନିକ ଜୀବନର ବ୍ୟାଖ୍ୟା କପରି ଓ କି ପରିମାଣରେ ଘଟିଅଛି, ବିଶ୍ଳେଷଣ କରି ଦେଖିବାକୁ ହେଲେ, ଜୀବନର ଗତିଧାରା ସହିତ ଗଭୀର ପରିଚୟ ଆବଶ୍ୟକ । ଜୀବନର ଗତି ବିଚିତ୍ର, ପ୍ରବାହ ବିପୁଳ । ଏହାର ପରିଧି, ସ୍ଥାନ ଓ କାଳର ସମନ୍ୱିତ କଳ୍ପନାରେ କଳ୍ପିତ-ବିଶ୍ୱମୟ ପ୍ରସାରିତ । ଏହାର ଅବଧାରଣା ଲାଗି ଦର୍ଶନ, ସମାଜ ବିଜ୍ଞାନ, ଇତିହାସ ଆଦିରେ ପଣ୍ଡିତ ବ୍ୟକ୍ତିର ଜ୍ଞାନଦୃଷ୍ଟି ଲୋଡ଼ା । କେବଳ ସାହିତ୍ୟ ବା କାବ୍ୟ ଆଲୋଚନା କ୍ଷେତ୍ରରେ ନୁହେ, ସମଗ୍ରଭାବରେ ଦେଖିଲେ, ଏହି ଦୃଷ୍ଟିରୁ କଳ୍ପିତ ଭାବ ଉଦ୍ରେକକାରୀ ଗ୍ରନ୍ଥ ସଂଖ୍ୟା ଆମ ଭାଷାରେ ମୁଷ୍ଟିମେୟ । କାବ୍ୟ ଆଲୋଚନା ସୂତ୍ରରେ ଏ ଦିଗରେ କେତେକ ପରିମାଣରେ ପଥ ପ୍ରସ୍ତୁତ କରିବା ଉଦ୍ୟମରେ ମୋର ଏହି ପ୍ରବନ୍ଧ କଳ୍ପିତ ହୋଇଅଛି ।

ବିଷୟ ପ୍ରବେଶରେ ସହାୟତା କରିବା ଲାଗି ଏହି ପ୍ରସ୍ତାବନା ଉଦ୍ଦିଷ୍ଟ । ବିଶ୍ୱାସ, ଗ୍ରନ୍ଥର ପ୍ରତ୍ୟେକ ଅଂଶକୁ ତାର ସମ୍ପୂର୍ଣ୍ଣ ଚେହେରା ସହିତ ମିଳାଇ ଦେଖିବାରେ ଏହା ସାହାଯ୍ୟ କରିବ । ଊନବିଂଶ ଶତକରେ ପ୍ରକାଶିତ ଓଡ଼ିଆ କବିତାର ଏକ ପୂର୍ଣ୍ଣ ଚିତ୍ର ଏଥିରେ ଦେବା ଲାଗି ପ୍ରୟାସ ହୋଇଛି । ଏହି ଉଦ୍ଦେଶ୍ୟରେ ଏଥିରେ ଯେଉଁ ସବୁ ଉଦ୍ଧୃତ ରହିଛି, ବା ଯେଉଁ କବିତା ଗୁଡ଼ିକ ପ୍ରସଙ୍ଗରେ ଆଲୋଚନା ହୋଇଛି, ସେ ଗୁଡ଼ିକୁ କାବ୍ୟ କଳା ଦୃଷ୍ଟିରୁ ସବୁବେଳେ ଶ୍ରେଷ୍ଠ ବୋଲି ମନେ କରିବା ଉଚିତ ନୁହେ । ବହୁ ସ୍ଥଳରେ କେବଳ ଭାବ ଓ ବିଷୟ ବୈଚିତ୍ର୍ୟ ଲାଗି କବିତାକୁ ପ୍ରାଧାନ୍ୟ ଦିଆ ଯାଇଛି ।

ତଥ୍ୟ ଦିଗରୁ ଏହି ରଚନାରେ ନାନା ଅପୂର୍ଣ୍ଣତା ଓ ଅପୁଷ୍ଟତା ଲକ୍ଷ୍ୟ କରି ଯାଇ-ପାରେ । କବିମାନଙ୍କର ବିଶଦ ଜୀବନୀ ଲେଖା ହୋଇ ନାହିଁ, ରଚନାବଳୀ ସୁସମ୍ପାଦିତଭାବେ ପ୍ରକାଶ ପାଇ ନାହିଁ । ଏ ଦିଗରେ ଯେତେବେଳେ ଯଥାର୍ଥ ଉଦ୍ୟମ ହେବ, ହୁଏତ ଅଳ୍ପ ସମୟ ଭିତରେ ଏହି ଗ୍ରନ୍ଥ ପୁରୁଣା ମନେ ହୋଇପାରେ । ମାତ୍ର ସେତିକି ବେଳେହିଁ ଏହାର ଯଥାର୍ଥ ମୂଲ୍ୟ ଜଣା ପଡ଼ିବ ।

ଏହି ଗ୍ରନ୍ଥରେ ଓଡ଼ିଆ କବିମାନଙ୍କ ଉପରେ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ବିକ୍ଷିପ୍ତଭାବରେ ଓ ସଂସ୍କୃତ ସାହିତ୍ୟର ପ୍ରତ୍ୟକ୍ଷ ଅନୁବାଦ ଓ ଅପ୍ରତ୍ୟକ୍ଷ ପ୍ରଭାବ ପ୍ରସଙ୍ଗ ପରିଶିଷ୍ଟରେ ଆଲୋଚିତ ହୋଇଛି । ଏକ କବିତା ବା ସାହିତ୍ୟ ସମ୍ପର୍କରେ ଆସି ଭିନ୍ନ ଏକ ଯୁଗର କବିତା ବା ସାହିତ୍ୟ ଯେଉଁ ସର୍ଜନା ଶକ୍ତି ଆହରଣ କରେ ତାହାହିଁ ଏ କ୍ଷେତ୍ରରେ ପ୍ରଣିଧାନ ଯୋଗ୍ୟ । ଏଠାରେ ଅଳ୍ପ କେତେକ ଉଦାହରଣ ଦ୍ୱାରା ଏହାର ଏକ ସାମାନ୍ୟ ଧାରଣା ଦେବାର ପ୍ରୟାସ ହୋଇଛି । ଅପ୍ରତ୍ୟକ୍ଷ ଅନୁବାଦ ଓ ପ୍ରଭାବର ଯେତେ ଉଦାହରଣ ଅଛି ତାହାର ଏକ ପୂର୍ଣ୍ଣ ବିବରଣୀ ଓ ଆଲୋଚନା ଦେବାକୁ ବସିଲେ ତାହା ହୁଏତ ଆଉ ଏକ ଗ୍ରନ୍ଥ ହୋଇ ଯିବ ।

ଅଳ୍ପ ବା ବହୁତରେ ଏହି ଗ୍ରନ୍ଥର ପ୍ରତ୍ୟେକ ଛନ୍ଦରେ ପୂର୍ବାଗ୍ରନ୍ଥିମାନଙ୍କର କିଛି ନା କିଛି ପ୍ରଭାବ ଦେଖିବାକୁ ମିଳିବ । ଆଜିର ଜ୍ଞାନୋଜ୍ଜ୍ୱଳ ଯୁଗରେ ବିଶେଷତଃ ସମାଲୋଚନା କ୍ଷେତ୍ରରେ ନୂତନ ଜ୍ଞାନର ସୃଷ୍ଟି ବା ମୌଳିକତା ପ୍ରଦର୍ଶନ ଅତି ବିରଳ ପ୍ରତିଭାବାନ ଲେଖକ ପକ୍ଷରେ ମଧ୍ୟ ଏକ ବିଡମ୍ବନା । ସେ ପ୍ରୟାସ ଏଠାରେ କ୍ୱଚିତ ହୋଇ-ଅଛି । ଅଧିତ ବିଷୟ କ୍ଷେତ୍ରର ଏକ ସମନ୍ୱିତ ଧାରଣା ଦେବାହିଁ ଏକମାତ୍ର ଉଦ୍ଦେଶ୍ୟ ।

ଏହି ଗ୍ରନ୍ଥ କବିତା ଯେପରି ଲିଖିତ । ଏହାର ଉପାଦାନ ମୌଳିକ, ବା ପ୍ରତ୍ୟକ୍ଷ ନୁହେଁ; ଅପ୍ରତ୍ୟକ୍ଷ, ପର ପ୍ରସାଦ ପ୍ରାପ୍ତ । ଯେଉଁ ଯୁଗର କବି ଓ କବିତା ବିଷୟରେ ଏଥିରେ ଆଲୋଚନା କରାଯାଇଛି, ସେ ଯୁଗର ମହତ୍ତ୍ୱ ଓ ଉପାଦେୟତା ଉପରେ କେତେକ ପରି-ମାଣରେ ଏ ଆଲୋଚନାର ସାର୍ଥକତା ନିର୍ଭର କରେ । ଆଲୋଚ୍ୟ ଯୁଗର କବିତା ଓ ତାର ମର୍ମସ୍ଥଳରେ ପ୍ରବେଶ ଲାଗି ସାମାନ୍ୟ ଆଲୋକ, ଓ କିଞ୍ଚିତ ଆଗ୍ରହ ଆଧୁନିକ ଯୁଗର ପାଠକଙ୍କ ମନରେ ସୃଷ୍ଟିକରେହିଁ ଏ ଗ୍ରନ୍ଥର ପରମ ସାର୍ଥକତା । କବିତାର ଆଲୋଚନା, କବିତା ପାଠରେ ଅଧିକ ଆନନ୍ଦ ଓ ସହୃଦୟତା ସୃଷ୍ଟି ଲାଗି ସମର୍ଥ ବୋଲି ଯେଉଁମାନଙ୍କର ବିଶ୍ୱାସ, ସେହି ସହୃଦୟ ପାଠକଙ୍କ ଲାଗି ଏ ଗ୍ରନ୍ଥ ଉଦ୍ଦିଷ୍ଟ ।

ଲେଖକ – ମନୋମୋହନ ଆଚାର୍ଯ୍ୟ

ପ୍ରଥମ ଅଧ୍ୟାୟ

# ଉପକ୍ରମ

"ସଂକ୍ଷେପରେ କହିଲେ, କବିତା ଏକ ସାର ସଂଗ୍ରହ । ସଙ୍ଗୀତ, ଚିତ୍ର, ଅନୁଭବ ଓ ଚିନ୍ତା ଶକ୍ତିର ଏକତ୍ର ସମାବେଶ କବିତାରେ ଘଟେ । ଏହି ଦିଗରୁ ଦେଖିଲେ, ଅନ୍ୟ କୌଣସି ସୂକ୍ଷ୍ମକଳା ବା ମାନବ ମନର ଶୃଙ୍ଖଳିତ ପ୍ରକାଶଧାରାକୁ କବିତା ସହିତ ତୁଳନା କରାଯାଇ ପାରିବ ନାହିଁ ।...କେବଳ କବିତା ମାନବ ଚିନ୍ତାର ସମସ୍ତ ଦିଗ ଶୃଙ୍ଖଳିତ ଓ ସଂକ୍ଷିପ୍ତ ରୂପେ ପ୍ରକାଶ କରିପାରେ ।" ୧

## କବିତାର ଅଭ୍ୟୁଦୟ

ସାହିତ୍ୟ ଏବେ ବହୁ ଶାଖାରେ ବିଭକ୍ତ । କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ନାଟକ ପ୍ରତ୍ୟେକ ବିଭାଗ ଆଧୁନିକ ସାହିତ୍ୟର ଅନ୍ତର୍ଗତ । ମାତ୍ର ସାହିତ୍ୟର ଆଦ୍ୟ ବିକାଶ କାଳରୁ ବହୁ ଦିନ ପର୍ଯ୍ୟନ୍ତ ସବୁ ଦେଶରେ କବିତାହିଁ ସାହିତ୍ୟର ଏକମାତ୍ର ରୂପ ଥିଲା । ଏବେ ବି ଯେଉଁ ଆଦିମ ଅଧିବାସୀଙ୍କ ମଧ୍ୟରେ ଆଧୁନିକ ସଭ୍ୟତାର ଆଲୋକ ପ୍ରବେଶ କରି ନାହିଁ, ସେମାନଙ୍କ ମଧ୍ୟରେ କେବଳ କବିତା ସ୍ୱତଃସ୍ଫୂର୍ତ୍ତି ସାହିତ୍ୟ ଶିଳ୍ପ ରୂପେ ଦେଖା ଯାଇ ଥାଏ ।

କବିତାର ଆଦିଯୁଗ, ସଭ୍ୟତାର ଆଦ୍ୟ ବିକାଶ ସହ ଜଡ଼ିତ । ସମାଜ ବିଜ୍ଞାନ, ଭାଷା ବିଜ୍ଞାନ ତଥା ନୃବିଜ୍ଞାନର ସୂତ୍ର ଅବଲମ୍ବନ କରି ଆଲୋଚନା କଲେ କବିତାର ଆଦ୍ୟ ବିକାଶର ଧାରା ଜଣାଯାଏ । ପ୍ରଥମେ ଏହା ସ୍ୱତଃସ୍ଫୂର୍ତ୍ତି ଓ ମୌଖିକ ରଚନା ଆକାରରେ ପ୍ରକାଶ ପାଇଥିଲା । ବୈଜ୍ଞାନିକମାନଙ୍କ ମତରେ ମାନବ ମନର ପ୍ରଥମ ପ୍ରକାଶ ଯାଦୁ ବିଦ୍ୟା ବା ଭେଳକିବିଦ୍ୟା ମଧ୍ୟରେ ଘଟିଥିଲା । ଆଦିମ ମନୁଷ୍ୟ ହତିଆର ବ୍ୟବହାର କରି ଜାଣିବା ସଙ୍ଗେ ସଙ୍ଗେ ସମ୍ପୂର୍ଣ୍ଣ ରୂପେ ପ୍ରକୃତିର ଦାସ ନ ହୋଇ, ପ୍ରକୃତିର ନିୟମ ବୁଝି ତାହା ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ଚେଷ୍ଟାକଲା । କିନ୍ତୁ ପ୍ରକୃତ ବସ୍ତୁ ଓ ଘଟଣାର ନିୟମ ଯେଉଁଠି ବୁଝି ପାରିଲା ନାହିଁ, ସେଠାରେ ମନୁଷ୍ୟ ସମାଜର ସାମୂହିକ ଇଚ୍ଛା ଶକ୍ତିର ପ୍ରଭାବ କଥା ଚିନ୍ତାକଲା । ଆଦିମ ମାନବ ଯଦି ମେଘ ଗୁହାଁଲା, ତେବେ ସେ ମେଘର

ଘୂରିବୁ ଗର୍ଜନ, କ୍ଷିପ୍ର ଗତି ଓ ବର୍ଷଣ ସ୍ୱରକୁ ଅନୁକରଣ କଲା । ଏହି ଧ୍ୱନ୍ୟନୁକୃତିହିଁ ଆଦିମ ଭାଷା ଓ ଆଦିମ କବିତା । ଏଥିରେ ଆଦିମ ମନୁଷ୍ୟର ଭାବ, ଅନୁଭାବ ଓ ମାନସିକ ପ୍ରତିକ୍ରିୟା ଏକତ୍ର ପ୍ରକାଶ ପାଇଥିଲା । କ୍ରମେ ମନୁଷ୍ୟର ମସ୍ତିଷ୍କ ବିକଶିତ ହେଲା । ଶ୍ରମ ଶକ୍ତି ବୃଦ୍ଧି ଲାଭ କଲା । ସାମୂହିକ ଶ୍ରମର ସାଥୀ ରୂପେ ଦେଖାଦେଲା ଛନ୍ଦ ଓ ସ୍ୱର । ସ୍ୱତଃସ୍ଫୂର୍ତ୍ତି ଉଚ୍ଛ୍ୱାସରେ ଆଦିମାନବ ନିଜର ଯେଉଁ ଅନୁଭବକୁ ଏହି ଛନ୍ଦରେ ଗୁନ୍ଥିଲା, ତାହା ହେଲା ଆଦିମ କବିତା । ଏହି କବିତାର କବିଥିଲା ସମଗ୍ର କର୍ମନିରତ ସମାଜ । ସବାର ବେଦେହର ନାଉରୀ ଆଦି ଏବେ ବି ଯେପରି ଏକତାନରେ ସମବେତ ଭାବରେ ଲୋକ ସଙ୍ଗୀତ ଗାଇଥାନ୍ତି, ସେଥିରୁ ଆଦି କବିତାର ରୂପ ସଂକେତ କଳ୍ପନା କରାଯାଇ ଥାଏ । ମାନବର ହତିଆର ଉନ୍ନତହେବା ସଙ୍ଗେ କର୍ମଶକ୍ତି ବିଶେଷ ବଢ଼ିଗଲା । ଏକାକୀ ମନୁଷ୍ୟ ଚାଷ କରିବା ଫଳ ତୋଳିବା ଓ ଶିକାର କରିବା ଲାଗି ସମର୍ଥ ହେଲା । ସମୂହ ଶ୍ରମ ସ୍ଥାନରେ ବ୍ୟକ୍ତିଗତ ଶ୍ରମର ଅଭ୍ୟୁଦୟ ଘଟିଲା । ସାଧାରଣଙ୍କ ମଧ୍ୟରୁ ଜଣେ ଜଣେ ଅସାଧାରଣ କର୍ମକୁଶଳ ପୁରୁଷ ବାହାରିଲେ । କ୍ରମେ ସେମାନେ ଜନନେତା ଭାବରେ ରାଜା ବା ଦଳପତିର ସ୍ଥାନନେଲେ । ଜୀବନ ଯାତ୍ରା ପଥରେ ମନୁଷ୍ୟ ବହୁତ ନୂତନ ଜିନିଷ ଆବିଷ୍କାର କଲା । ସେ କେତେ ନୂତନ ଜ୍ଞାନ ଓ ଅନୁଭୂତି ଲାଭକଲା । ସେ ସବୁଥିରେ ଦଳପତି ବା ରାଜାଙ୍କ କୃତିତ୍ୱ ବିଶେଷ ପ୍ରକାଶ ପାଇଥିଲା । ଏହି ସମୟରେ ଏକକ କବିଙ୍କ ଉଦୟ ହେଲା । ଏହି କବି ଥିଲେ ଚାରଣ । ସେ ଦଳ ଓ ଦଳପତିଙ୍କ ଗୌରବ ଗାଥା ଉଦ୍‌ବେଳିତ କଣ୍ଠରେ ଗାନ କରୁଥିଲେ । ସଭ୍ୟତାର କ୍ରମ ବିକାଶ ସଙ୍ଗେ ସଙ୍ଗେ ଚାରଣ କବି, ପୁରାଣ ପଣ୍ଡା ରୂପରେ ଓ ପରେ ପ୍ରକୃତ କାବ୍ୟର କବି ରୂପେ ଦେଖା ଦେଲେ । (୨)

କାବ୍ୟର କବି ବିଦଗ୍ଧ । କେବଳ ପ୍ରାଣର ଆବେଗ ବା ସ୍ୱତଃସ୍ଫୂର୍ତ୍ତି ଉଚ୍ଛ୍ୱାସ ଦେଇ ସେ କବିତା ରଚନା କରନ୍ତି ନାହିଁ । ଦେଶ, କାଳ ଓ ପାତ୍ର ସମ୍ବନ୍ଧରେ ବିପୁଳ ଜ୍ଞାନଗରିମାର ସେ ଅଧିକାରୀ । ପ୍ରକୃତି ଓ ପ୍ରବୃତ୍ତିଠାରୁ ଭିନ୍ନ ହେବାର ସାଧନା ଓ ଶ୍ରମର ସଙ୍କେତ ତାଙ୍କ କବିତାରେ ପରିପୂର୍ଣ୍ଣ ହୋଇ ରହିଥାଏ । ତାଙ୍କ କବିତା ମାନବ ଜ୍ଞାନର ଶ୍ରେଷ୍ଠ ବିକାଶ ଓ ମାନବ ମନର ସର୍ବଶ୍ରେଷ୍ଠ ଶୃଙ୍ଖଳା ପ୍ରକାଶର ପ୍ରତୀକ । ସେ ଦୃଷ୍ଟିରୁ ବିଚାର କଲେ ଯେପରି ଏହି ଯୁଗଧର୍ମୀ କବିତାକୁ କାଳ ଓ ସମାଜ ରଚନା କରେ, କବିତା ମଧ୍ୟ ସେହିପରି ଯୁଗ ଓ ସମାଜକୁ ନିର୍ମାଣ କରେ ।

**ଓଡ଼ିଆ କବିତାର ବୃତ୍ତାନ୍ତ**

ଓଡ଼ିଆ କବିତାର ମୂଳରେ ସହସ୍ର ବର୍ଷର ପ୍ରାଚୀନ ପରମ୍ପରା କଳ୍ପନା କରାଯାଇ-ପାରେ । ବହୁ ପ୍ରାଚୀନ ଅଷ୍ଟ୍ରିକ୍, ଦ୍ରାବିଡ଼ ଓ ଆର୍ଯ୍ୟମାନଙ୍କର କବିତା ରଚନାର ଉତ୍ତରା-ଧିକାର ଦେଇ ଓଡ଼ିଆ କବିତା ଗୌରବାନ୍ୱିତ । ସମାଜ ଚଳଣିରେ ଯେଉଁ ଲୌକିକ

କାବ୍ୟଧାରାର ପ୍ରବାହ ଅବିଚ୍ଛିନ୍ନଭାବରେ ଏବେ ବି ପ୍ରବାହିତ—ସେଥିରୁ ଏଇ ପରମ୍ପରାର ସଙ୍କେତ କଳନା କରି ଯାଇପାରେ ।

ଲିଖିତ ଓଡ଼ିଆ କବିତାର ଆଦି ରୂପ ମିଳେ ଚର୍ଯ୍ୟା ଗୀତରେ । ଏହା ସରଳ, ସହଜ, ସ୍ୱତଃସ୍ଫୂର୍ତ୍ତି, ଛନ୍ଦୋମୟ, ମାତ୍ର ଏଥିରେ ଆବେଗ ଅଳ୍ପ । ସାଧକ ଜୀବନରେ ଗୋଟିଏ ଗୋଟିଏ ମୁହୂର୍ତ୍ତର ଅନୁଭବ କବି ଶିଷ୍ୟ ମଣ୍ଡଳରେ ହୁଏତ ଛନ୍ଦୋବଦ୍ଧ ଭାବରେ ପ୍ରକାଶ କରୁଥିଲେ । ଏଥିରେ ବହୁ ରହସ୍ୟମୟ ସାଧନାର ସଙ୍କେତ ପରିଚିତ ପ୍ରତୀକ ଓ ରୂପକଳ୍ପ ମଧ୍ୟରେ ପ୍ରକାଶ ପାଉଥିଲା । ଏହା ଶୁଣି ଶିଷ୍ୟମାନେ ତନ୍ମୟ ହେଉଥିଲେ । ସାଧକ ଗୁରୁଙ୍କ ଉପଦେଶାତ୍ମକ ବାଣୀ ରୂପେ ଏ ସବୁ ମୁଖସ୍ଥ କରୁଥିଲେ ବା ଲେଖି ରଖୁଥିଲେ ।

ଚର୍ଯ୍ୟା ଯୁଗ ପରେ ଦେଖା ଦେଲା, ପୁରାଣ ରଚନାର ଯୁଗ । ଏତେବେଳେ କବି ନିଜେ ତାଳପତ୍ର ଓ ଲେଖନ ଧରି କବିତା ରଚନା କରିବାକୁ ବସୁଥିଲେ । କାରଣ ସହସ୍ର ସହସ୍ର ପଦ ସଂଖ୍ୟା ବିଶିଷ୍ଟ ବୃହଦାକାର ପୁରାଣ ଗ୍ରନ୍ଥମାନ ମନେ ମନେ ରଚନା କରିବା ବା ସ୍ମରଣରେ ସଙ୍କଳନ କରିବା ଅସମ୍ଭବ ବ୍ୟାପାର ଥିଲା । କିନ୍ତୁ ଏଥିରେ ଆଦି କବିତାର ସ୍ୱତଃ-ସ୍ଫୂର୍ତ୍ତ ରଚନା ବିନ୍ୟାସ ଓ ସଙ୍ଗୀତଧାରା କ୍ଷୁନ୍ନ ହେଉ ନ ଥିଲା । କବି କେବଳ ରଚୟିତା ନଥିଲେ, ସେ ପୁରାଣର ପ୍ରବକ୍ତା ମଧ୍ୟ ଥିଲେ । ପୁରାଣ ପଣ୍ଡା ଭାବରେ ଶ୍ରୋତାମାନଙ୍କୁ ନିଜ ରଚନା ପଢି ବୁଝାଉଥିଲେ । ଯେଉଁ ଆଦର୍ଶ ସମାଜମୟ ପରିବ୍ୟାପ୍ତ ଥିଲା, ତାକୁଇ ସେ ପ୍ରକାଶ କରୁଥିଲେ, ସେଇ ଆଦର୍ଶରେ ସମାଜର ମଙ୍ଗଳ ଦେଖୁଥିଲେ ଓ ତାକୁ ଶ୍ରଦ୍ଧାର ସହିତ ଗ୍ରହଣ କରିବାକୁ ଉଦ୍‌ବୋଧନ ଦେଉଥିଲେ । ତେଣୁ ଏ ଯୁଗରେ ପାଠକ ବା ଶ୍ରୋତା ଆଉ ରଚୟିତାଙ୍କ ମଧ୍ୟରେ ମତବାଦ ବା ଦୃଷ୍ଟିକୋଣରୁ କୌଣସି ପାର୍ଥକ୍ୟ ନ ଥିଲା । ସେଥିଲାଗି ନିରକ୍ଷର, ଶିକ୍ଷିତ, ଧନୀ ଓ ଦରିଦ୍ର ସମସ୍ତେ ସମବେତଭାବରେ ପୁରାଣ ପାଠରେ ଯୋଗ ଦେଉଥିଲେ ଓ ତାକୁ ଉପଭୋଗ କରୁଥିଲେ ।

ପୁରାଣ ଯୁଗ ପରେ କାବ୍ୟ ଯୁଗ ଦେଖାଦେଲା । କାବ୍ୟ ଯୁଗ କେତେକ ପରିମାଣରେ କୃତ୍ରିମତା ଦୋଷଦୁଷ୍ଟ । କାରଣ କବିମାନେ ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦିଷ୍ଟ ନିୟମ ଓ ଶୃଙ୍ଖଳା ଅନୁସାରେ କାବ୍ୟ ରଚନା କରୁଥିଲେ । ପୁଣି ପାଠକ ବା ଶ୍ରୋତା ଏଇ ଶାସ୍ତ୍ର ଜ୍ଞାନରେ ସୁନିପୁଣ ହେବା ଆଶା କରି ଯାଉଥିଲା । ଏ ସବୁ ସତ୍ତ୍ୱେ ସଙ୍ଗୀତ ମାଧ୍ୟମରେ ପରିବେଷିତ ହେଉଥିବାରୁ ଓ ଏକ ପାରମ୍ପରିକ ଚିନ୍ତାଧାରା ପରିଧିରେ ସମସ୍ତେ ଗତି କରୁଥିବାରୁ କାବ୍ୟ ଯୁଗରେ କବି ଓ ପାଠକ ବା ଶ୍ରୋତାଙ୍କ ସମ୍ପର୍କ ପୂର୍ବ ଭଳି ନିବିଡ ଥିଲା ।

ଓଡିଆ କବିତାର ପ୍ରାଚୀନ ବିକାଶକ୍ରମକୁ ଲକ୍ଷ୍ୟ କଲେ ଏଇ କେତୋଟି କଥା ସ୍ପଷ୍ଟ ହୁଏ । ପ୍ରଥମତଃ କବି ଓ ପାଠକ ବା ଶ୍ରୋତାଙ୍କ ସମ୍ପର୍କ ନିବିଡ ଥିଲା ।

ପାଠକ ଓ କବିଙ୍କ ମନୋଭୂମିରେ ମେଳଥିଲା ଓ ପାଠକଙ୍କର ମନୋଭୂମି କବି ମାନସରେ ପ୍ରତିଫଳିତ ହେଉଥିଲା ; ଆଦିମ ଧର୍ମ ସଙ୍ଗୀତ ଯୁଗ, ପୁରାଣ ଓ କାବ୍ୟ ଯୁଗ ଯଥାକ୍ରମେ ରହସ୍ୟବାଦୀ କତିପୟ ଧର୍ମସାଧକ, ଦରିଦ୍ର ଭାଗ୍ୟବାଦୀ ଅଗଣିତ କୃଷିଜୀବୀ ଜନସାଧାରଣ ଓ ବିଳାସୀ, ଅବସରଭୋଗୀ ଦରବାରୀଙ୍କ ଦୃଷ୍ଟିକୋଣର ପ୍ରତିବିମ୍ବ ବହନ କରିଅଛି । ଏହି ସବୁ ସ୍ତର ଭିତର ଦେଇ ଓଡ଼ିଆ କବିତା ଏକ ସ୍ୱତଃସ୍ଫୂର୍ତ୍ତ କଳା ରୂପେ ପ୍ରଥମେ ଆତ୍ମ ପ୍ରକାଶ କରି କ୍ରମଶଃ ଚେତନାବନ୍ତ କଳା ରୂପ ଗ୍ରହଣ କରିଅଛି ।

**ଆଧୁନିକ କବିତାର ପ୍ରେରଣା**

ସମାଜରେ ଯେଉଁ ଦିନୁ ବିଶ୍ରାମଭୋଗୀ ଶ୍ରେଣୀର ଉଦୟ ହେଲା, ସେହିଦିନରୁ ପୂର୍ବ ଭୋଜବିଦ୍ୟା ଦୁଇ ସ୍ୱତନ୍ତ୍ର ଧାରାରେ ବିଭକ୍ତ ହୋଇଗଲା । ଏକ ଦିଗରେ ବିଜ୍ଞାନ ଓ ଅପର ଦିଗରେ କଳାର ବିକାଶ ଦେଖାଦେଲା । ପ୍ରକୃତି ସହିତ ସଂଘର୍ଷହିଁ ଏହାର ହେତୁ । ବହିଃ ପ୍ରକୃତିର ସଂଘର୍ଷରୁ ବିଜ୍ଞାନ, ଓ ଅନ୍ତଃ ପ୍ରକୃତିର ସଂଘର୍ଷରୁ କଳା ଆତ୍ମ ପ୍ରକାଶ କଲା । ବସ୍ତୁତଃ କବି ମାନସର ଆଭ୍ୟନ୍ତରୀଣ ଆଲୋଡ଼ନହିଁ ଆଧୁନିକ କବିତାର ଶ୍ରେଷ୍ଠ ପ୍ରେରଣା ।

ପ୍ରାଚୀନ ଯୁଗରେ କବି ମନରେ କୌଣସି ଆଲୋଡ଼ନ ଯେ ନଥିଲା, ନୁହେଁ । କିନ୍ତୁ ଆଲୋଡ଼ନ ଅପେକ୍ଷା ବେଶି ଥିଲା ଆବିଷ୍ଟତା । କବିତା ଥିଲା ଏହି ଆବିଷ୍ଟତାର ବହିଃପ୍ରକାଶ । ସେଥିପାଇଁ କବି ଭୋଜବିଦ୍ୟାର ମନ୍ତ୍ର, ବା ପୁରାଣର ଅତିମାନୁଷିକ କଳ୍ପନା ଦେଇ ବ୍ୟସ୍ତଥିଲା । ପରୀକ୍ଷା ଓ ପୂର୍ବଦୃଷ୍ଟିରେ ପରିବେଶକୁ ବିଶ୍ଳେଷଣ କରିବା ଓ ଭବିଷ୍ୟତ ଗଠନ ଲାଗି ସଙ୍କେତ ଦେବାର ଦାୟିତ୍ୱ ଆଧୁନିକ କବି ଭଳି ପ୍ରାଚୀନ ଯୁଗ କବିର ନଥିଲା ।

ଆଧୁନିକ କବିର ଦାୟିତ୍ୱ ତ୍ରିବିଧ– ବିବେକ ପ୍ରତି ଦାୟିତ୍ୱ, ପାଠକ ପ୍ରତି ଦାୟିତ୍ୱ ଓ ସମାଜ ପ୍ରତି ଦାୟିତ୍ୱ । ଏହି ଦାୟିତ୍ୱର ବନ୍ଧନ ବ୍ୟତୀତ ଆଧୁନିକ ଯୁଗର କବି ଆଉ କୌଣସି ବନ୍ଧନ ସ୍ୱୀକାର କରେନାହିଁ । ବିଶେଷ ଭାବରେ ବିଧି ନିର୍ଦ୍ଦେଶ, ଧର୍ମର ନିର୍ଦ୍ଦେଶକୁ ସେ ଗ୍ରହଣ କରେ ନାହିଁ ।

ଆଧୁନିକ କବିତା ବ୍ୟକ୍ତି ଉଦ୍ୟମର ଫଳ । ସମବେତ ସମାଜ ସମ୍ମୁଖରେ ଏ ଯୁଗର କବି ନିଜର କବିତା ପରିବେଷଣ କରେନାହିଁ । ଆଧୁନିକ କବିତାର ପ୍ରଚାର ପାଇଁ ପୁରାଣପଣ୍ଡା ବା ପାଲାଗାୟକ ଭଳି କୌଣସି ସାମାଜିକ ଅନୁଷ୍ଠାନ ନାହିଁ । କୌଣସି ଦରବାର ବା ଧର୍ମ ସଂସ୍ଥାର ପୃଷ୍ଠପୋଷକତା ଉପରେ କବି ନିର୍ଭର କରେନାହିଁ । ଆତ୍ମ ଶକ୍ତି ଉପରେ ନିର୍ଭର କରି, ଅନିର୍ଦ୍ଦିଷ୍ଟ ପାଠକଙ୍କ ଉଦ୍ଦେଶ୍ୟରେ କବିତା ରଚନା କରେ ।

ତଥାପି ସମାଜ, ଭବିଷ୍ୟତ ଗଠନ ଲାଗି କବିର ପୂର୍ବଦୃଷ୍ଟି କାମନା କରେ । କବି କେବଳ ସମାଜର ଆଧ୍ୟାତ୍ମିକ ଆଦର୍ଶର ପଥନିର୍ଦ୍ଦେଶକ ନୁହେଁ । ସେ ସମାଜର ଜଟିଳତମ ସମସ୍ୟାର ସମାଧାନ

ଲାଗି ସଙ୍କେତ ଦେବ । କୌଣସି ବିପଦ ବା ଦୁଃଖରେ ସାଧାରଣ ଲୋକ ଭାଙ୍ଗି ପଡ଼ିବା-ବେଳେ, ସେ ସେଇ ଦୁଃଖ ନିଜ ଅନ୍ତରରେ ଅନୁଭବ କରିବ । ସେଇ ଅନୁଭବକୁ କବିତାରେ ପ୍ରକାଶ କରି ଇତର ଜନର ଦୁଃଖ ନିବାରଣର ଉପାୟ ବତାଇ ଦେବ । ଆପଣା ବେଦନାତୁର ହୃଦୟର ପ୍ରକାଶ କ୍ଷମତାହିଁ କବିତ୍ୱ । କବିଗୁରୁ ଗ୍ୟେଟେ ସୁନ୍ଦର କହିଛନ୍ତି । "ପ୍ରକୃତି ଆମ କବିମାନଙ୍କ ନୟନରେ ଦେଇଛି ଅଶ୍ରୁ, କଣ୍ଠରେ ଦେଇଛି ବ୍ୟଥାର ଭାରତୀ । ମନୁଷ୍ୟ ଯେଉଁ ଦୁଃଖ ସହି ପାରେନା, ସେହି ଦୁଃଖ ସମସ୍ତଙ୍କ ପାଖେ ପ୍ରକାଶ କରିଦେବା ଲାଗି ସେ ମୋ କଣ୍ଠରେ ଦେଇଛି ଛନ୍ଦ ଓ ବାଣୀ । ସେଥିଲାଗି ଆଉମାନେ ବେଦନା ବିପାକରେ ମୂକ ହୋଇଗଲା ବେଳେ, ଈଶ୍ୱରଙ୍କ କୃପାରେ ମୁଁ ବ୍ୟଥାର କାହାଣୀ ପ୍ରକାଶ କରିବାକୁ ମୁଖର ହୋଇପଡେ ।" ୩

## କବିତାର ଅଧ୍ୟୟନ

ଯେତେ ଭାବରେ ବିଶ୍ଳେଷଣ କଲେ, ସବୁ କବିତାରେ ମାତ୍ର ଦୁଇଟି କଥା ଦେଖିବାକୁ ମିଳେ ମଣିଷ ଓ ମଣିଷର ପରିବେଶ । ୪ ଗୋଟିଏ ଯୁଗର କବିତା ସହିତ, ସେଇ ଯୁଗର ସମାଜ ଓ ସଭ୍ୟତାର ନିବିଡ ସମ୍ପର୍କକୁ ଲକ୍ଷ୍ୟ କରି ଜଣେ ପାଶ୍ଚାତ୍ୟ ପଣ୍ଡିତ ଏପରି ମତ ପ୍ରକାଶ କରିଛନ୍ତି ।

ମାତ୍ର କବିତା କେବଳ ଯୁଗ ପ୍ରଭାବର ଫଳ ନୁହେଁ । ଏଥିରେ କବିଙ୍କ ବ୍ୟକ୍ତିତ୍ୱ ପ୍ରକଟିତ ହୁଏ । କବିଙ୍କ ଅନୁଭୂତି ଓ ଚିନ୍ତା ଏହାର ପ୍ରଧାନ ଉପାଦାନ । ଏଥିଲାଗି କବିତାର ଅଧ୍ୟୟନ ପ୍ରସଙ୍ଗରେ କବିଙ୍କ ଜୀବନୀ ଆଲୋଚନା ଏକାନ୍ତ ଆବଶ୍ୟକ ।

ପୁଣି କବିତା ଏକ କଳା । ଏଥିରେ ବହୁ ପ୍ରକାର ରୂପ ବୈଚିତ୍ର୍ୟ ଦେଖିବାକୁ ମିଳେ । ମହାକାବ୍ୟ, କାବ୍ୟ, ଖଣ୍ଡ କବିତା, ଗାଥା ଓ ଗୀତି କବିତା ଆଦି ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବିଭାଗ । ପ୍ରତ୍ୟେକ ବିଭାଗ ସ୍ୱତନ୍ତ୍ର ପରମ୍ପରା ଉପରେ ପ୍ରତିଷ୍ଠିତ, ପ୍ରତ୍ୟେକ ବିଭାଗ ସ୍ୱତନ୍ତ୍ର ଧାରାରେ ବିକଶିତ ହୋଇଥାଏ । ଏଇ କ୍ରମବିକାଶ ଧାରା ସ୍ୱତନ୍ତ୍ର ଭାବରେ ଅଧ୍ୟୟନ କରାଯାଇପାରେ । କବିତା ଅଧ୍ୟୟନ ପାଇଁ ତିନି ସ୍ୱତନ୍ତ୍ର ପର୍ଯ୍ୟାୟର ବର୍ତ୍ତମାନ କଳ୍ପନା କରାଯାଇପାରେ । ପ୍ରଥମତଃ କବିତା ଓ ସମାଜ, ଦ୍ୱିତୀୟରେ କବି ଓ କବିତା, ଆଉ ପରିଶେଷରେ କବିତା ଓ କଳା । ଏହାକୁ ଅନ୍ୟ କଥାରେ କହିଲେ, କବିତା ଉପରେ ବାହାର ଜଗତର ପ୍ରଭାବ, କବି ବିଶେଷଙ୍କ ଜୀବନୀ ଓ କୃତି, ଆଉ ବିଭିନ୍ନ ପ୍ରକାରର ରଚନା ଶୈଳୀର ବିଚାର ଓ ବିଶ୍ଳେଷଣହିଁ କବିତାର ପରିପୂର୍ଣ୍ଣ ଅଧ୍ୟୟନ ।

## ଆଧୁନିକ ଓଡ଼ିଆ କବିତା ଅଧ୍ୟୟନର ପରିସର

ଏଇ ଆଦର୍ଶ ଅନୁସରଣରେ ଆଧୁନିକ ଓଡ଼ିଆ କବିତାର ଅଧ୍ୟୟନ କରାଯାଇପାରେ । ପ୍ରଥମରୁ ଦେଖିବାର କଥା ଆଧୁନିକ କବିତା କଣ ? ଗତ ଶତକର ଶେଷପାଦରେ ଇଂରେଜ

ଶିକ୍ଷା ମାଧ୍ୟମରେ ଇଉରୋପୀୟ ସଂସ୍କୃତିର ସଂସ୍ପର୍ଶରେ ଆସି ଆମ ସାହିତ୍ୟରେ ଯେଉଁ ନୂତନ କାବ୍ୟ କବିତା ରଚନାର ଧାରା ପ୍ରବର୍ତ୍ତିତ ହେଲା, ତାହାହିଁ ଆଧୁନିକ କବିତା । ଏହାର ଇତିହାସ କାଳ ଏ ପର୍ଯ୍ୟନ୍ତ ଗୋଟିଏ ଶତାବ୍ଦୀ ବି ଅତିକ୍ରମ କରିନାହିଁ । ଇତିହାସ ଦୀର୍ଘହେଲେ ତାହାକୁ କାଳରେଖାରେ ଖଣ୍ଡିତ କରି ବିଶ୍ଳେଷଣ କରିବା ସମ୍ଭବ । ମାତ୍ର ଏ ଇତିହାସ ଦୀର୍ଘ ନ ହେଲେ ବି ବୈଚିତ୍ର୍ୟମୟ । ବୟସ ଦୃଷ୍ଟିରୁ ଏହା ଏକ କ୍ଷୁଦ୍ର ଗ୍ଭରା ଗଛ ହେଲେ ମଧ୍ୟ, ବହୁ ବିଭିନ୍ନ ଭାବ ଧାରାର ଏକତ୍ର ସମାବେଶ ଦ୍ୱାରା ବହୁ ଭାବରେ ରୂପ ପରିବର୍ତ୍ତନ କରି ସାରିଛି, ବହୁ ଯୁଗ ଭୋଗ କରି ସାରିଛି । କେବଳ ଆଲୋଚନାର ସୁବିଧା ଦୃଷ୍ଟିରୁ ନୁହେ, ବିଶିଷ୍ଟ ଚରିତ୍ରଗତ ଲକ୍ଷଣ ସବୁ ଅନୁଧ୍ୟାନ କଲେ ଆମେ ତିନି ବିଭିନ୍ନ ଯୁଗର ସ୍ପଷ୍ଟ ସନ୍ଧାନ ପାଇ ପାରିବା । ଅବଶ୍ୟ ଐତିହାସିକ ତାତ୍ପର୍ଯ୍ୟ ଦୃଷ୍ଟିରୁ ସମାଲୋଚକ-ମାନେ ବ୍ୟକ୍ତି ବା ଗୋଷ୍ଠୀକୁ କେନ୍ଦ୍ର କରି ରାଧାନାଥ ଯୁଗ, ସତ୍ୟବାଦୀ ଯୁଗ, ସବୁଜ ଯୁଗ ଆଦି ଯୁଗ ବିନ୍ୟାସ କରିଥାନ୍ତି । କିନ୍ତୁ ସମଗ୍ର ଆଧୁନିକ କବିତାର ସ୍ୱରୂପ, ପ୍ରବୃତ୍ତି ବିଶ୍ଳେଷଣ ଲାଗି ଏହି ଯୁଗ ବିଭାଗ ଯଥେଷ୍ଟ ଇଙ୍ଗିତପୂର୍ଣ୍ଣ ନୁହେ । ଆଧୁନିକ ଯୁଗର ପ୍ରବର୍ତ୍ତକ କବି ରାଧାନାଥ, ମଧୁସୂଦନ ଫକୀରମୋହନ ଆଦି ସମସ୍ତେ ଏକ ନୂତନ ଜାଗରଣର ମନ୍ତ୍ର ପ୍ରଥମେ ଉଚ୍ଚାରଣ କରିଥିଲେ, ଜାତୀୟ ଜୀବନର ଭିତ୍ତି ସ୍ଥାପନ କରିଥିଲେ । ଏହି ଜାତୀୟତାର ଶକ୍ତି ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଆଦି ସତ୍ୟବାଦୀ ଗୋଷ୍ଠୀର ଲେଖକଙ୍କ ରଚନାରେ ସ୍ପଷ୍ଟ ଅନୁଭୂତ ହେଲା । ବିଗତ ଦେଢ଼ଶତ ବର୍ଷର ଇଂରେଜ ଶାସନରେ ରହି ଜାତୀୟ ଜୀବନରେ ଯେଉଁ ଗୌଣ ମନୋଭାବ ଦେଖା ଦେଇଥିଲା ତାହା କ୍ରମଶଃ ଦୂରୀଭୂତ ହେଲା । ପୃଥିବୀର ଅନ୍ୟ ସମସ୍ତ ସ୍ୱାଧୀନ ଜାତିମାନଙ୍କ ପରି ଭାରତରେ ଏହିପରି ଆତ୍ମ ପ୍ରତିଷ୍ଠାର ଭାବନା ଦୃଢ଼ୀଭୂତ ହେଲା । ଯେଉଁସବୁ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ସମସ୍ୟାବଳୀର ସମାଧାନ ଭିତରେ ପୃଥିବୀମୟ ମନୁଷ୍ୟ ସମାଜର ଭବିଷ୍ୟତ ନିର୍ଭର କରେ, ସେଇସବୁ ସମସ୍ୟା ଭିତରକୁ ପ୍ରବେଶ କରିବାର ପ୍ରବଣତା ଜାଗ୍ରତ ହେଲା । ସବୁଜ ଯୁଗ ଓ ତତ୍ପରବର୍ତ୍ତୀ ଆମର ସମସାମୟିକ କବିମାନେ ଏଥିରେ ନେତୃତ୍ୱ ନେଲେ । ଯେପରି ନିର୍ଦ୍ଦିଷ୍ଟ ଦେଶରେ, ସେଇପରି ପୃଥିବୀର ଏକ ନିର୍ଦ୍ଦିଷ୍ଟ ଯୁଗରେ ଯେ ଆମେ ବାସ କରୁଚୁ ଏଇ ଧାରଣା ସ୍ପଷ୍ଟ ହୋଇ ଉଠିଲା । ଜାତୀୟତା ଯୁଗର ସ୍ୱଦେଶ ପ୍ରୀତି ସ୍ଥାନରେ ଆନ୍ତର୍ଜାତୀୟ ଯୁଗଚେତନା ପ୍ରତିଷ୍ଠିତ ହେଲା । ତେଣୁ ଆଧୁନିକ କାବ୍ୟଧାରାର ଇତିହାସକୁ ଅଭ୍ୟୁଦୟ ବା ପୁନର୍ଜାଗରଣ ଯୁଗ, ଜାତୀୟତା ଯୁଗ ଓ ଆନ୍ତର୍ଜାତୀୟ ଭାବ ସଙ୍ଘର୍ଷର ଯୁଗ ରୂପେ ତିନି ସ୍ୱତନ୍ତ୍ର ପର୍ଯ୍ୟାୟରେ ବିଭକ୍ତ କରିଯାଇ ଏହି କ୍ରମରେ ଆଲୋଚନା କରିଯାଇପାରେ ।

ତେବେ ଏଠାରେ ମନେ ରଖିବାକୁ ହେବ, ଏ ଯୁଗ ବିଭାଗ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ । କୌଣସି ପ୍ରାକୃତିକ ବସ୍ତୁର ବିଭାଜନ ଏତେକ କଠିନ, ପୁଣି ଭାବପର୍ଯ୍ୟାୟର ବିଭାଗୀକରଣ

ଆହୁରି କଠିନ । ଚିନ୍ତା ଜଗତରେ ଜନ୍ମ ଛଡ଼ା ମୃତ୍ୟୁ ନାହିଁ । ଗୋଟିଏ ଗୋଟିଏ ଚିନ୍ତା ଧାରାର ଜନ୍ମ ବହୁ ସାଙ୍ଗୋପାଙ୍ଗ ଚିନ୍ତାପର୍ଯ୍ୟାୟ ସହ ଜଡ଼ିତ । ତେଣୁ ଅଭ୍ୟୁଦୟ ଯୁଗରେ ଯଦି ଜାତୀୟତାର ଉଚ୍ଛ୍ୱାସ ଶୁଣୁ ବା ଜାତୀୟତାର ଯୁଗରେ ପୁନର୍ଜାଗରଣର ଉଦ୍‌ବୋଧନ ଶୁଣୁ, ସେଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ ।

ଏହା ବ୍ୟତୀତ ଆହୁରି ମଧ୍ୟ ମନେ ରଖିବାକୁ ହେବ, କାବ୍ୟଧାରାରେ ଯୁଗାନ୍ତର କେବଳ ଭାବଗତ ପରିବର୍ତ୍ତନ ଭିତରେ ଘଟେ ନାହିଁ । ରୁଚିଗତ ପରିବର୍ତ୍ତନ ମଧ୍ୟ ଯୁଗାନ୍ତର ଆଣେ । କବିତା, କଳା ଓ ସାହିତ୍ୟରେ ଶ୍ରେଷ୍ଠକୃତିକୁ ବୁଝିବା ଓ ଉପଭୋଗ କରିବା ଏଇ ରୁଚିଉପରେ ନିର୍ଭର କରେ । *

ଆଧୁନିକ କାବ୍ୟଧାରାର ଆଦିଯୁଗର ବିଚାର ଓ ବିଶ୍ଳେଷଣ ଏଇ ପ୍ରବନ୍ଧର ଉଦ୍ଦେଶ୍ୟ । ଯେଉଁ ଯୁଗ ପରିବେଶ, କବି ପ୍ରତିଭା, କାବ୍ୟ ଶୈଳୀ ଓ ଭାବପର୍ଯ୍ୟାୟ ଉପରେ ଏଇ ଯୁଗ ପ୍ରତିଷ୍ଠିତ ତାହାର ଆଲୋଚନା କରିବା ପୂର୍ବରୁ ପୂର୍ବାଭାସ ରୂପେ ଏହାର ପୂର୍ବବର୍ତ୍ତୀ ଯୁଗର ସଂକ୍ଷିପ୍ତ ପରିଚୟ ଦେଇ ରଖିବା ଆବଶ୍ୟକ ।

## ପ୍ରାଚୀନ ଓ ଆଧୁନିକ ଧାରା

ପ୍ରଥମରୁ ମନେ ରଖିବାକୁ ହେବ, ସାହିତ୍ୟର ଧର୍ମ ଜୈବ ନୁହେ । ମାନବିକ ଜୈବ ପ୍ରକୃତିର ବହିରଙ୍ଗର ବିକାଶହିଁ ସଂସ୍କୃତି, ତାହାହିଁ ସାହିତ୍ୟ । ଏଇ ଭାବରେ ଗୋଟିଏ ସୂତ୍ରରେ ସମାଜ, ସଂସ୍କୃତି, ସାହିତ୍ୟ ବନ୍ଧା । ଆମେ ମନୁଷ୍ୟର ଚେହେରାରେ ଲକ୍ଷ ଲକ୍ଷ ବର୍ଷର ଅପରିବର୍ତ୍ତନୀୟତା ଲକ୍ଷ୍ୟ କରିପାରୁ । ମାତ୍ର ସଂସ୍କୃତି ଓ ସଭ୍ୟତା କ୍ଷେତ୍ରରେ ସମ୍ପୂର୍ଣ୍ଣ ଶାଶ୍ୱତ କିଛି ନାହିଁ । କାଳ ଭେଦରେ ଏହାର ରୂପ ବଦଳେ ।

ଯୁଗେ ଯୁଗେ ପରିବର୍ତ୍ତନ କଥା ମନେ ରଖି, ଓଡ଼ିଆ କାବ୍ୟଧାରାର ବିଚାର କରିବାକୁ ହେବ । ଏଇ ଭାବରେ ଦେଖିଲେ, ସମୁଦାୟ ଓଡ଼ିଆ କବିତା ଏକ ଅଙ୍ଗୀଭୂତ ହୋଇଚି, ସ୍କେଲିଙ୍କ ଉପନ୍ୟାସର ଚରିତ୍ର ଭଳି ବହୁ ଆତ୍ମିକ । ଏହାର ବହୁଆତ୍ମା ଭିତରେ ଦୁଇଟି ଆତ୍ମାର ସ୍ୱରୂପ ସମଧିକ ବିକଶିତ—ଗୋଟିଏ ପ୍ରାଚୀନ ଭାରତର, ଅନ୍ୟଟି ଆଧୁନିକ ଇଉରୋପର । ସମଗ୍ର ଭାବେ ଭାରତୀୟ ଚିନ୍ତାଧାରା ଓଡ଼ିଆ କବିତାକୁ ଯେ କେବଳ ଜନ୍ମ ଦେଇଥିଲା, ତାହା ନୁହେଁ, ରୂପ ଯୌବନ ଓ ରୁଚି ଦେଇ ଏହାକୁ ବଳିଷ୍ଠ ଓ ସମ୍ଭ୍ରାନ୍ତ କରିଥିଲା, ରସ ଦେଇ ରସାଳ କରିଥିଲା । ହଠାତ୍ ଦିନେ ସର୍ବଗ୍ରାସୀ ଇଉରୋପ ଆସି ଦ୍ୱାର ଦେହଳୀରେ ଧକ୍‌କା ଦେଲା । ସେଇ ଦିନରୁ ଓଡ଼ିଆ କବିତା ଏଇ ନବାଗତଠାରୁ ନୂତନ ଧର୍ମ ଗ୍ରହଣ କଲା । ନୂତନ ବେଶ, ନୂତନ ସାଜରେ ଭୂଷିତ ହେଲା । ତାର ଚେହେରା ଏପରି ବଦଳି ଗଲା ଯେ, ମନେ ହେଲା ଓଡ଼ିଆ କବିତାର ଏ ଏକ ନବଜନ୍ମ ।

## ପ୍ରାଚୀନ ଭାରତ ଓ ଆଧୁନିକ ଇଉରୋପ

କେଉଁ ଆଦର୍ଶ ଘେନି ଓଡ଼ିଆ କବିତା ଗତି କରୁଥିଲା, ଆଉ କପରି ଓ କାହିଁକି ଏହାର ଚେହେରା ସମ୍ପୂର୍ଣ୍ଣ ବଦଳି ଗଲା—ଏହାର ଅବଧାରଣା ଲାଗି ଏହି ଦ୍ୱୈତ ଆତ୍ମାର ସ୍ୱରୂପ ହୃଦୟଙ୍ଗମ କରିବା ଉଚିତ । ଏହାର ସ୍ପଷ୍ଟ ସୂଚନା ଦିଏ ଭାରତ ବନ୍ଦ୍ୟାବନ୍ଦ୍ ପାଶ୍ଚାତ୍ୟ ପଣ୍ଡିତ ମାକ୍ସମୁଲରଙ୍କ ଉକ୍ତି । ପ୍ରାଚୀନ ଭାରତ ଓ ଆଧୁନିକ ଇଉରୋପର ତୁଳନା କରି ସେ କହିଛନ୍ତି—"ସେମାନଙ୍କଠାରେ ଏହି ସାନ୍ତ ଜଗତ କଥା କୁହ, ସେମାନେ କହିବେ ଅନନ୍ତ ବିନା ସାନ୍ତ ଜଗତ ନିରର୍ଥକ, ଅସମ୍ଭବ । ସେମାନଙ୍କୁ ମୃତ୍ୟୁ କଥା କୁହ, ସେମାନେ ତାକୁ ଜନ୍ମ କହିବେ । କାଳ କଥା କୁହ, ସେମାନେ ସେଥିରେ ସନାତନ ତତ୍ତ୍ୱର ରହସ୍ୟ ଅଛି ବୋଲି ବତେଇ ଦେବେ । ଆମ ଇଉରୋପୀୟମାନଙ୍କ ନିକଟରେ ଇନ୍ଦ୍ରିୟ ସାଧନ ଅଛି, ଶାସ୍ତ୍ର ଅଛି, ଜ୍ଞାନ ଲାଭର ଶକ୍ତିଶାଳୀ ଇଞ୍ଜିନ ଅଛି । କିନ୍ତୁ ସେମାନଙ୍କଠାରେ ଏହା ସମ୍ପୂର୍ଣ୍ଣ ମିଥ୍ୟା ନ ହେଲେ ବି, ସର୍ବଦା ଉଣା ଅଧିକେ ଏକ ବନ୍ଧନ, ଆତ୍ମାର ସ୍ୱରୂପୋଲବ୍ଧିର ବାଧକ । ଆମଠାରେ ଏହି ପୃଥିବୀ, ଆକାଶ, ଜୀବନ, ଦୃଶ୍ୟମାନ ପଦାର୍ଥ, ସ୍ପର୍ଶ୍ୟ ବସ୍ତୁ, ଶ୍ରାବ୍ୟଶବ୍ଦ, ନିଶ୍ଚିତ ଓ ଧ୍ରୁବ । ଏହି ଆମର ଗୃହ, ଏଠି ଆମର କର୍ତ୍ତବ୍ୟ ଓ ସୁଖ ସନ୍ତୋଷ ନିହିତ । ସେମାନଙ୍କ ଲାଗି ଏ ପୃଥିବୀ ଏଭଳି ଏକ ପଦାର୍ଥ—ଏକଦା ତାହା ନ ଥିଲା, ଆଉ ଏମିତି ଗୋଟିଏ ସମୟ ଆସିବ, ସେତେବେଳେ ଏହା ରହିବ ନାହିଁ । ଏ ଜୀବନ ଏକ କ୍ଷଣିକ ସ୍ୱପ୍ନ । ଏହା ଶୀଘ୍ର ଭାଙ୍ଗି ଯିବ, ଆଉ ସମସ୍ତେ ଚେଇଁ ଉଠିବେ । ଅନ୍ୟମାନଙ୍କ ନିକଟରେ ଯାହା ନିରାଟ ସତ୍ୟ, ଭାରତୀୟମାନଙ୍କଠାରେ ତାହା ଘୋର ଅସତ୍ୟ । ସେମାନଙ୍କର ଗୃହ ସମ୍ବନ୍ଧ ଆଉ ଯେଉଁଠି ଥାଉନା କାହିଁକି ସେମାନେ ଦୃଢଭାବରେ ବୁଝିଥିଲେ ଏଇ ଧୂଳି, ମାଟିର ଦୁନିଆରେ ନାହିଁ ।" ୬

## ପ୍ରାଚୀନ କବିତାର ପୁଞ୍ଜି ଓ ପ୍ରକୃତି

ପ୍ରାଚୀନ ଓଡ଼ିଆ କାବ୍ୟଧାରାରେ ଦୁଇଟି ଦିଗ ପ୍ରଧାନ—ଧର୍ମ ଓ ଯୌନଶୃଙ୍ଗାର । ପୁରାଣ, ଗୀତା, ସଂହିତା, ମାଳିକା, ସ୍ତୋତ୍ର ଆଦି ପ୍ରଥମ ଦିଗର ସୂଚନା ଦିଏ । ଦ୍ୱିତୀୟ ଦିଗର ଅଭିମୁଖ୍ୟ ଭଞ୍ଜୀୟ କାବ୍ୟ ଓ ଦରବାରୀ ସଙ୍ଗୀତରେ ସ୍ପଷ୍ଟ । ସମଗ୍ର ଭାବରେ ଦେଖିଲେ, କୌଣସି କ୍ଷେତ୍ରରେ କବି ବାସ୍ତବ ଜୀବନର ସୁଖ ଦୁଃଖ ଘେନି କାବ୍ୟ ରଚନା କରୁ ନଥିଲେ । ଜୀବନରେ ଦୁଃଖ ଥିଲା, ସମାଜରେ ଅଭାବ ଦାରିଦ୍ର୍ୟ ପରିପୂର୍ଣ୍ଣ ହୋଇ ରହିଥିଲା । କିନ୍ତୁ ଏହା କବି ଚିତ୍ତକୁ ବିଚଳିତ କରୁ ନଥିଲା । ଏହାର ଊର୍ଦ୍ଧ୍ୱରେ ଥିଲା କବିର ଆସନ । ପ୍ରଥମ କ୍ଷେତ୍ରରେ ଅବଶ୍ୟ ବିଶ୍ୱଜନର ମଙ୍ଗଳାକାଂକ୍ଷା କବିର ଲକ୍ଷ୍ୟ ଥିଲା । କିନ୍ତୁ ଜୀବପରମର ଶାଶ୍ୱତ ରହସ୍ୟ ଉଦ୍‌ଘାଟନ ଦ୍ୱାରା ଏହା ସମ୍ଭବ ବୋଲି ସେ ମନେ କରୁଥିଲା । ଏଥିଲାଗି ଆପଣାର ଅଳୀକ ସତ୍ତା ଓ ପରିବର୍ତ୍ତମାନ

କାଳର ପ୍ରଭାବ ପ୍ରତି କୌଣସି ପ୍ରକାରେ ଅବହିତ ହେବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । ଦ୍ୱିତୀୟ କ୍ଷେତ୍ରରେ ଲୋକୋତ୍ତର ଆନନ୍ଦ ପ୍ରାପ୍ତି ଓ ଶାନ୍ତି ଲାଭ ଥିଲା କବିଙ୍କର ଲକ୍ଷ୍ୟ । ସର୍ବୋପରି ଦୃଷ୍ଟି ଥିଲା ଅତୀତମୁଖୀ, ପ୍ରାଚୀନ ଭାରତର ବେଦ, ପୁରାଣ, ନୀତିଶାସ୍ତ୍ର ଓ କାବ୍ୟ ସାହିତ୍ୟ ଉପରେ କବିଙ୍କର ଅଟଳ ଆସ୍ଥା ଥିଲା । ପୃଥିବୀର ଅନ୍ୟ ଦେଶ ଓ ତାହାର ଧର୍ମ ଓ ସାହିତ୍ୟ ପ୍ରତି ଦୃକପାତ କରିବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ବୈଦେଶିକ ମନୀଷୀ ଆଲବେରୁଣୀଙ୍କ ଭାଷାରେ କହିଲେ—"ହିନ୍ଦୁଠାରେ ନିଜ ଧର୍ମହିଁ ପୃଥିବୀର ଏକମାତ୍ର ଧର୍ମ, ନିଜ ଶାସ୍ତ୍ରହିଁ ପବିତ୍ରତମ ଶାସ୍ତ୍ର, ଦୁନିଆରେ ସମସ୍ତେ ମ୍ଳେଚ୍ଛ, ପାପୀ । ଊନବିଂଶ ଶତକର ଶେଷଭାଗରେ ଆଧୁନିକ କାବ୍ୟଧାରାର ପ୍ରବର୍ତ୍ତନ ପୂର୍ବରୁ ଅଷ୍ଟାଦଶ ଓ ଊନବିଂଶ ଶତକର ପ୍ରଥମାର୍ଦ୍ଧରେ ଏଇଭଳି ଆତ୍ମଶ୍ଳାଘା, ପାରମ୍ପରିକ ଦୃଷ୍ଟି, ବାହ୍ୟବିଶ୍ୱ ପ୍ରତି ବିମୁଖତା, ବାସ୍ତବ ପ୍ରତି ଚେତନା ଶୂନ୍ୟତା ଓ କୃତ୍ରିମତା ଓଡ଼ିଆ କବିତା କ୍ଷେତ୍ରରେ ସମ୍ପୂର୍ଣ୍ଣ ରାଜତ୍ୱ କରୁଥିଲା ।

ଏଇ ବିଗତ ଯୁଗ ସହିତ ନୂତନ ଯୁଗର କବିତାକୁ ତୁଳନାରେ ଦେଖିଲେ—ଏଇ କେତୋଟି କଥା ସ୍ପଷ୍ଟ ଉପଲବ୍ଧ ହୁଏ । ପ୍ରଥମତଃ ପ୍ରାଚୀନ କବି ପ୍ରକୃତ ଜଗତରୁ କାବ୍ୟ ଜଗତକୁ ସ୍ୱତନ୍ତ୍ର ଭାବରେ ଦେଖୁଥିଲେ । ବାସ୍ତବ ଜଞ୍ଜାଳ ପୂର୍ଣ୍ଣ ଜୀବନରୁ କାବ୍ୟାମୋଦୀକୁ ଦୂରକୁ ନେଇ ଯିବା ତାଙ୍କର ଲକ୍ଷ୍ୟ ଥିଲା । ପ୍ରକୃତ ଜଗତକୁ ଆଧୁନିକ କବି କାବ୍ୟ ଜଗତ-ଠାରୁ ଭିନ୍ନରୂପେ ନ ଦେଖି, ପ୍ରକୃତ ଜଗତ ସହିତ ଆତ୍ମୀୟତା ସ୍ଥାପନ କଲେ । ସହୃଦୟ ରସିକ କେବଳ କାବ୍ୟ ପାଠ୍ୟରୁ ଆନନ୍ଦ ପାଆନ୍ତୁ, ଏହା ଆଧୁନିକ କବିଙ୍କର ଲକ୍ଷ୍ୟ ନୁହେଁ । ବାସ୍ତବ ଜୀବନର ଦୁଃଖ, ସୁଖ, ସମସ୍ୟା, ସମାଧାନର ସଙ୍କେତ ଦେବା ତାଙ୍କର ଲକ୍ଷ୍ୟ ।

ଦ୍ୱିତୀୟତଃ ସମାଜ ସମ୍ପର୍କ ଦିଗରୁ ପ୍ରାଚୀନ କବି ଧର୍ମସଂସ୍ଥା ବା ରାଜଦରବାର ଆଶ୍ରୟରେ କବିତା ରଚନା କରୁଥିଲେ । ତାଙ୍କର ନାୟକ ନାୟିକା ଥିଲେ ବହୁ ପୂଜିତ ଦେବଦେବୀ ବା ସମ୍ମାନିତ ରାଜକୁମାର, ରାଜକୁମାରୀ । ଆଧୁନିକ କବି ଗଣଧର୍ମୀ । ସେ ପୋଷକତା ଲାଗି ଅଗଣିତ ସାଧାରଣ ପାଠକଙ୍କ ଉପରେ ନିର୍ଭର କରନ୍ତି ଓ ତାଙ୍କର ଚରିତ୍ର ସାଧାରଣ ଜନ ସମାଜରୁ ଗୃହୀତ ।

ତୃତୀୟତଃ କୃତ୍ରିମତା ଓ ପାରମ୍ପରିକତା ପ୍ରାଚୀନ କବିତାର ପ୍ରାଣଧର୍ମ ଥିଲା । ପ୍ରାଚୀନ ଶାସ୍ତ୍ରବର୍ଣ୍ଣିତ ଜଗତର ବାହାରକୁ ଯାଇ ଇନ୍ଦ୍ରିୟଗ୍ରାହ୍ୟ ଜଗତରେ ପଦସଞ୍ଚାର କରିବା ସେ ଯୁଗ କବି ପକ୍ଷରେ ଅସମ୍ଭବ ଥିଲା । ନାନା ବିଧି ନିଷେଧ, ଅହେତୁକ ବିଶ୍ୱାସ ଓ ପରମ୍ପରା ପରିଧି ଭିତରେ ସେ ଗତି କରୁଥିଲେ । ମଧ୍ୟ ଯୁଗର କବି ପ୍ରେମକାବ୍ୟ ଲେଖୁଥିଲେ । ସେଥିରେ ଷଡ଼ ଋତୁରେ ବିରହ ଦୁଃଖ ଓ ସମ୍ଭୋଗ ଆନନ୍ଦର ଦୀର୍ଘ ବର୍ଣ୍ଣନା ରହୁଥିଲା । ମାତ୍ର ଜୀବନର ସ୍ପର୍ଶ ନ ଥିଲା । ପ୍ରେମିକ ପ୍ରେମିକାଙ୍କ ବିରହ ମିଳନରେ ଭାବପ୍ରବଣ ଜୀବନ୍ତ ମୁହୂର୍ତ୍ତର ସଙ୍କେତ

ନ ଥିଲା । ପ୍ରେମର ଗଭୀରତା ଓ ଚଞ୍ଚଳତା ନ ଥିଲା । ଏ ଯୁଗର କବି ଧର୍ମକୁ ଘେନି କାବ୍ୟ ଲେଖୁଥିଲେ । ମାତ୍ର ସେଥିରେ ଗଭୀର ଆଧ୍ୟାତ୍ମିକତା ଓ ଉଦାର ଦର୍ଶନ ଦୃଷ୍ଟିର ସଙ୍କେତ ନ ଥିଲା, ଥିଲା ଭକ୍ତର ଆଚ୍ଛନ୍ନ ଦୃଷ୍ଟି ଓ ମୋହାବିଷ୍ଟତା । କିନ୍ତୁ ନବଯୁଗର କବି ନିଜେ ନିଜର ପଥସ୍ରଷ୍ଟା । ସୂକ୍ଷ୍ମାତିସୂକ୍ଷ୍ମ ସନ୍ଦର୍ଶନ, ଗଭୀର ଆତ୍ମଚିନ୍ତା ଓ ନିବିଡ଼ ଅନୁଭବ ଉପରେ ତାଙ୍କ କବିତା ପ୍ରତିଷ୍ଠିତ ।

ଚତୁର୍ଥରେ ଅଭିବ୍ୟକ୍ତି । ପ୍ରାଚୀନ କବି ଅଲଙ୍କାର ଶାସ୍ତ୍ରର ନିର୍ଦ୍ଦେଶକୁ ବ୍ୟାକରଣର ନିୟମ ଭଳି ଅନୁସରଣ କରିଥିଲେ । ଅଭିବ୍ୟକ୍ତିରେ ତାଙ୍କର ସ୍ୱାଚ୍ଛନ୍ଦ୍ୟ ବା ସ୍ୱାଧୀନତା ନ ଥିଲା । କାବ୍ୟର ଆଭିମୁଖ୍ୟ, କବିଙ୍କ ରୁଚି ଓ ବ୍ୟକ୍ତିତ୍ୱ ଅନୁସାରେ ବିଭିନ୍ନ ଶୈଳୀ ଓ ବିଧି ବିଚିତ୍ର ଆକୃତିର କବିତା ଲେଖା ହେଉ ନ ଥିଲା । ନବଯୁଗର କାବ୍ୟ ସମ୍ଭାର, ମହାକାବ୍ୟ, ପ୍ରକୃତି କାବ୍ୟ, ଐତିହାସିକ, ସାମାଜିକ, ଖଣ୍ଡକାବ୍ୟ, ଗୀତି କବିତା, ଗାଥା କବିତା ଆଦି ଅଜସ୍ର ରୂପ ବୈଚିତ୍ର୍ୟରେ ସମୃଦ୍ଧ । ଏହା ତୁଳନାରେ ପ୍ରାଚୀନ କବିତା ବଡ଼ ବୈଚିତ୍ର୍ୟହୀନ ।

ପୂର୍ବବର୍ତ୍ତୀ ସଂସ୍କୃତ ସାହିତ୍ୟ ଅନୁକରଣରେ ହିଁ ପ୍ରାଚୀନ ଓଡ଼ିଆ କବିତାର ଏଇ ଆଦର୍ଶ ବିଶ୍ୱ ଭାବରେ ପୁଷ୍ଟ ହୋଇଥିଲା । ସଂସ୍କୃତ କାବ୍ୟ ସାହିତ୍ୟର ସ୍ୱାଭାବିକ ବିକାଶଧାରା ଯେଉଁସବୁ କାରଣରୁ ବାଧାପ୍ରାପ୍ତ ହୋଇଥିଲା, ସେଇସବୁ କାରଣ ମଧ୍ୟଯୁଗର ଓଡ଼ିଆ କବିତା କ୍ଷେତ୍ରରେ କାର୍ଯ୍ୟ କରୁଥିବାର କଳ୍ପନା କରାଯାଇପାରେ । ଦାର୍ଶନିକ ଡାଃ ସୁରେନ୍ଦ୍ର ନାଥ ଦାଶଗୁପ୍ତ ଏହାର ସୁନ୍ଦର ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ ସ୍ମୃତିଶାସ୍ତ୍ରର କଠିନ ବନ୍ଧନ ଜୀବନର ସ୍ୱାଭାବିକ ବିକାଶରେ ବାଧା ଦେଲା । ଜୀବନର ସ୍ୱାଭାବିକ ପ୍ରବାହରୁ ଭିନ୍ନ ହୋଇ ସମାଜ ବିଧି କୃତ୍ରିମ ବିଧି ବ୍ୟବସ୍ଥାରେ ନିର୍ଜୀବ ଓ ଜଡ଼ ହୋଇଗଲା । ସେଇ ଅନୁକ୍ରମେ ସାହିତ୍ୟ ଜୀବନର ସ୍ପର୍ଶ ହରାଇଲା । ଦ୍ୱିତୀୟତଃ ବିଭିନ୍ନ ସଂସ୍କୃତି, ଦେଶ ବିଦେଶର ସାହିତ୍ୟ ଓ ଭାବଧାରା ସମ୍ପର୍କରେ ନ ଆସିବା ହେତୁ ଆହରଣ ବା ଆଦାନ ପ୍ରଦାନ ସମ୍ଭବ ହୋଇ ନାହିଁ । ତୃତୀୟତଃ ରକ୍ଷଣଶୀଳତା ନୂତନ ଚିନ୍ତା ଗ୍ରହଣର ଅନ୍ତରାୟ ହେଲା । ୭

ଏଇ ସମସ୍ତ ପ୍ରବୃତ୍ତିର ବିପରୀତ ଧର୍ମ ଉପରେ ଆଧୁନିକ କବିତା ପ୍ରତିଷ୍ଠିତ ହୋଇଥିଲା । ବ୍ୟକ୍ତି ସର୍ବସ୍ୱ ସମାଜରେ ସ୍ୱାଧୀନ ମନୁଷ୍ୟର ଚିତ୍ର ଏହା ଅଙ୍କନ କଲା । ଦେଶ ବିଦେଶର ଭାବଧାରା ଆହରଣରେ ଏହା ସମୃଦ୍ଧ ହେଲା । ପରମ୍ପରାର ବନ୍ଧନରେ ଆବଦ୍ଧ ନ ହୋଇ, ଆଧୁନିକ କବି ଯୁଗ ପରିବେଶ ଦ୍ୱାରା ପ୍ରଭାବିତ ହେଲା ।

### ଆଧୁନିକ କାବ୍ୟ ଓ ଆଧୁନିକ ଜଗତ—୮

ପାଶ୍ଚାତ୍ୟ ଭାବଧାରା ସଂସ୍ପର୍ଶରେ ଆସିବା ପୂର୍ବ ପର୍ଯ୍ୟନ୍ତ ବିଶ୍ୱ ସଂସାର ବିଷୟରେ ଆମର ଧାରଣା ମଧ୍ୟଯୁଗର ଇଉରୋପୀୟମାନଙ୍କ ଭଳି ଏକାନ୍ତ କାଳ୍ପନିକ ଥିଲା । ଏଇ ଜଗତର

ଚିତ୍ର ସତ୍ୟଦେଶରେ ଧର୍ମଗୁରୁମାନେ ଅଙ୍କନ କରିଥିଲେ । ସେମାନଙ୍କ ଜ୍ଞାନ କୌଣସି ବାସ୍ତବ ପରୀକ୍ଷା ନିରୀକ୍ଷା ଉପରେ ପ୍ରତିଷ୍ଠିତ ନ ଥିଲା । ମାତ୍ର ଆଧୁନିକ କାର୍ଯ୍ୟଧାରା ମୂଳରେ ଯେଉଁ ଜଗତର ଧାରଣା ଥିଲା, ତାହା ଇଉରୋପର ପୁନର୍ଜାଗରଣ ଯୁଗରୁ ୧୯ଶ ଶତକ ପର୍ଯ୍ୟନ୍ତ ଶିଳ୍ପୀ, ଚିନ୍ତାନାୟକ ଓ ବୈଜ୍ଞାନିକମାନେ ବାସ୍ତବ ଜ୍ଞାନବଳରେ ଅଙ୍କନ କରିଥିଲେ । ଏମାନେ ଚର୍ଚ୍ଚର ନିର୍ଦ୍ଦେଶ ମାନି ନ ଥିଲେ । ଈଶ୍ୱରଙ୍କ ପ୍ରତିନିଧି ବୋଲି ନିଜକୁ ଘୋଷଣା କରୁଥିବା ପ୍ରତାପୀ ସମ୍ରାଟଙ୍କୁ ସ୍ୱୀକାର କରି ନ ଥିଲେ । ଏହିମାନଙ୍କ ଜ୍ଞାନର ଦୁର୍ଦ୍ଦାନ୍ତଶକ୍ତି ଇଉରୋପର ଜନସାଧାରଣଙ୍କୁ ଅଦ୍ଭୁତ ଶକ୍ତି ଓ ପ୍ରେରଣା ଦେଇଥିଲା । ତାହାରି ଫଳରେ ଫରାସୀ ବିପ୍ଳବ, ନୂତନ ସମାଜ ଦର୍ଶନ, ସାହିତ୍ୟ ଓ ସଂସ୍କୃତିର ମୂଳଦୁଆ ପଡ଼ିଥିଲା ।

ନୂତନ ଆବିଷ୍କାର, ଉଦ୍ଭାବନ, ମତବାଦ ଓ ପ୍ରକଳ୍ପ ଦ୍ୱାରା ଆଧୁନିକ ସମାଜର ରୂପ ଯେଉଁ ବୈଜ୍ଞାନିକ ଓ ଚିନ୍ତାନାୟକମାନେ ଅଙ୍କନ କରିଥିଲେ, ସେମାନଙ୍କ ସଂଖ୍ୟା ଅନେକ । ସେଥିମଧ୍ୟରୁ କୁପାର ନିକାସ, ଗେଲିଲିଓ, ନିଉଟନ, ଡାରଉଇନଙ୍କଭଳି ବୈଜ୍ଞାନିକ, ଥମାସ୍-ପେନ, ଭଲଟେୟାର, ରୁଷୋଙ୍କ ଭଳି ଚିନ୍ତକଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । କୁପାରନିକାସ୍ ପ୍ରଥମେ ପ୍ରମାଣ କଲେ ପୃଥିବୀ ସୂର୍ଯ୍ୟ ଚତୁର୍ଦ୍ଦିଗରେ ଘୂରୁଛି । ଏହାଦ୍ୱାରା ସେ ପ୍ରଥମେ ବିଶ୍ୱ ବ୍ରହ୍ମାଣ୍ଡର ଆଧୁନିକ ଧାରଣାର ଭିତ୍ତି ପକାଇଲେ । ଗାଲିଲିଓ ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କାର କରିଥିଲେ । ତାଙ୍କ ଆବିଷ୍କାର ଫଳରେ ବିଶ୍ୱ ବ୍ରହ୍ମାଣ୍ଡ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିବାର ପଥ ପ୍ରଶସ୍ତ ହେଲା । ନିଉଟନ୍ ପ୍ରଥମେ ମାଧ୍ୟାକର୍ଷଣ ଶକ୍ତିର ସନ୍ଧାନ କଲେ । ଫଳରେ ବିଶ୍ୱ ବ୍ରହ୍ମାଣ୍ଡର ବିଭିନ୍ନ ନକ୍ଷତ୍ର, ଗ୍ରହ ଓ ଉପଗ୍ରହର ଆପେକ୍ଷିକ ସମ୍ବନ୍ଧ ବିଷୟରେ ଧାରଣା କରିହେଲା । ଏମାନଙ୍କ ଉଦ୍ଭାବନ ଓ ଆବିଷ୍କାର ଫଳରେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଏକ ବିରାଟ ଯନ୍ତ୍ର ବୋଲି ମନେ କରାଗଲା । ବସ୍ତୁଖଣ୍ଡର ଗତି ପ୍ରଗତି ଘଟଣା ଗୁଳିକର ବ୍ୟାଖ୍ୟା କରାଗଲା । ଏହି ବ୍ୟାଖ୍ୟା ଯାହା ଘଟୁଛି, ତହିଁରେ ଆବଦ୍ଧ ନ ରହି, ଯାହା ଘଟିବ ତାହାର ସଙ୍କେତ ଦେଲା । ଏଥିରୁ ଚିନ୍ତାଶୀଳ ଲୋକେ ବାସ୍ତବବାଦୀ ଦର୍ଶନର ରୂପଦେଲେ । ବିଚାରରେ ଯଥାର୍ଥ ହେବାକୁ ହେବ ଓ ବସ୍ତୁତାନ୍ତ୍ରିକ ହେବାକୁ ହେବ - ଏହି ଧାରଣା ମନୁଷ୍ୟର ମନରେ ଦୃଢ଼ ହେଲା । ଏହି ବାସ୍ତବବାଦ ପ୍ରାଣୀ ବିଜ୍ଞାନ, ମନସ୍ତତ୍ତ୍ୱ ଓ ପଦାର୍ଥ ବିଜ୍ଞାନର ଧାରା ପ୍ରଭାବରେ ଅଧିକରୁ ଅଧିକ ବିକଶିତ ହୋଇଥିଲା ।

ଊନବିଂଶ ଶତକର ଚିନ୍ତାଧାରା ଡାରଉଇନଙ୍କ ଦ୍ୱାରା ବିଶେଷ ପ୍ରଭାବିତ ହୋଇଥିଲା । ଏହା ଯେପରି ବୈଜ୍ଞାନିକ ଚିନ୍ତାଧାରାର ଗତି ଫେରେଇଥିଲା, ସେହିପରି କ୍ରମଶଃ ଚିନ୍ତକଙ୍କ ଭାବନାର ଗତି ଫେରେଇଥିଲା । ଏହାର ପ୍ରଭାବ ସମସ୍ତ ପ୍ରକାର କଳ୍ପନା, ସମସ୍ତ ପ୍ରକାର ରୁଚିକୁ ଆଚ୍ଛନ୍ନ କରିଥିଲା । ମାନବ ଚିନ୍ତାର ଇତିହାସରେ ଡାରଉଇନଙ୍କ ପ୍ରାଣୀ ଜଗତର ମୂଳତତ୍ତ୍ୱ ବିଷୟକ ଗ୍ରନ୍ଥର ସ୍ଥାନ ସର୍ବଶ୍ରେଷ୍ଠ । ୯ । ଏହି ଗ୍ରନ୍ଥ କେବଳ ମନୁଷ୍ୟର ଅତୀତ

ବିଷୟରେ ନୁହେଁ, ଭବିଷ୍ୟତ ବିଷୟରେ ମଧ୍ୟ ନୂତନ ଦୃଷ୍ଟି ଖୋଲିଦେଲା । ଡାରଉଇନ ପ୍ରଥମେ ଜୀବକୋଷର ଆଦ୍ୟ ବିକାଶଠାରୁ ମାନବ ଦେହର ଚରମ ବିକାଶ ପର୍ଯ୍ୟନ୍ତ ଇତିହାସ ବର୍ଣ୍ଣନାର ପ୍ରୟାସ କଲେ । ସେ ପ୍ରମାଣ କଲେ, ନିରବଚ୍ଛିନ୍ନ କ୍ରମ ବିବର୍ତ୍ତନ ଫଳରେ ଆଦିମ ଜୀବକୋଷରୁ ମନୁଷ୍ୟର ସୃଷ୍ଟି ହୋଇଅଛି । ଏହି ବ୍ୟାଖ୍ୟାରୁ ସ୍ପଷ୍ଟ ହେଲା— ଅଳ୍ପ ବିକଶିତ ଅବସ୍ଥାରୁ ବହୁ ବିକଶିତ ଅବସ୍ଥା ଦେଖାଦେଇଛି । ଜଡ଼ରୁ ଜୀବନ୍ତ ବସ୍ତୁର ସୃଷ୍ଟି ହୋଇଅଛି, ପରିବେଶରୁ ଶରୀର ଧାରଣ ସମ୍ଭବ ହୋଇଅଛି, ଶରୀରରୁ ମନ ରୂପ ଲାଭ କରିଅଛି । ପ୍ରାଣୀ ବିଜ୍ଞାନର ଏହି ଧାରଣା କ୍ରମଶଃ ମନୋବିଜ୍ଞାନ ଗ୍ରହଣ କଲା ।

ଶରୀର ଓ ମନର ସମ୍ପର୍କ ଧାରଣା କରିବାକୁ ବହୁ ପ୍ରାଚୀନ କାଳରୁ ଉଦ୍ୟମ ହୋଇ ଆସୁଥିଲା । ଊନବିଂଶ ଶତକର ବସ୍ତୁତାନ୍ତ୍ରିକ ବୈଜ୍ଞାନିକ ଚିନ୍ତାର ବିକାଶ ପୂର୍ବରୁ ଶରୀର ଓ ମନକୁ ଦୁଇ ସମାନ୍ତରାଳ ରେଖାରେ ଧାରଣା କରାଯାଉଥିଲା । ୧୭ଶ ଶତକର ଦାର୍ଶନିକ ଦେକାରତ୍ ଏହିଭଳି ବ୍ୟାଖ୍ୟା କରିଥିଲେ । ସେ କହୁଥିଲେ, ଦୁଇଟି ଘଣ୍ଟା ପରସ୍ପର ମଧ୍ୟରେ କୌଣସି ସମ୍ପର୍କ ନ ଥାଇ ଯେପରି ଏକ ସମୟରେ ଏକ ଦିଗରେ ଗତିକରେ ସେହିପରି ପରସ୍ପର ମଧ୍ୟରେ କୌଣସି ସମ୍ପର୍କ ନ ଥିଲେ ବି ଶରୀର ଓ ମନ କୌଣସି ଅଦୃଶ୍ୟ ଈଶ୍ୱର ସଙ୍କେତରେ ଏକମୁଖୀ ହୋଇ ଗତି କରୁଅଛି । ମାତ୍ର ଏପରି ଏକ ରହସ୍ୟକୁ ଅସ୍ୱୀକାର କରାଗଲା । ଶରୀର ଭଳି ମନ ଏକ ପ୍ରତ୍ୟକ୍ଷୀଭୂତ ବସ୍ତୁ ଓ କେତେକ ସ୍ନାୟୁତନ୍ତୁର ସମାହାରରେ ଗଠିତ ।

ପ୍ରାଣୀ ବିଜ୍ଞାନ ଓ ମନୋବିଜ୍ଞାନର ସିଦ୍ଧାନ୍ତକୁ ପଦାର୍ଥ ବିଜ୍ଞାନ ଦୃଢ଼ ସମର୍ଥନ ଜଣାଇଲା । ବସ୍ତୁ କେତେକ ଅଣୁର ସମଷ୍ଟି । ପ୍ରତ୍ୟେକ ଅଣୁ ସ୍ଥୂଳ, ଘନ, ଅବିନାଶୀ, ଏକମାତ୍ର ବିଶିଷ୍ଟ ମୌଳିକ ପଦାର୍ଥ । ଏହା ସମସ୍ତ ଜଗତର ଭିତ୍ତିଶିଳା । ଏହି ବିଚାରରେ ବସ୍ତୁକୁ ଯେ କେବଳ ଯଥାର୍ଥ ବୋଲି ମନେ କରାଗଲା ତାହା ନୁହେଁ, ଯାହା କିଛି ଯଥାର୍ଥ ସେଥିରେ ବସ୍ତୁରୁ ଏହି ସମସ୍ତ ଚରିତ୍ର ଆରୋପ କରାଗଲା ।

ବୈଜ୍ଞାନିକ ଚିନ୍ତାର ଏହି କ୍ରମବିକାଶ ଫଳରେ ଏକ ଦିଗରେ ସଂସାର ଚିତ୍ର ଯେପରି ଯଥାର୍ଥ, ମହାନ, ସମ୍ପୂର୍ଣ୍ଣ ଓ ସମ୍ପନ୍ନ ମନେ ହେଲା, ଅନ୍ୟଦିଗରେ ସେହିପରି କରୁଣ ଓ ଦୟନୀୟ ବୋଧହେଲା । ପ୍ରାଚୀନ ଚିନ୍ତାରେ ଈଶ୍ୱର ବା ଏକ ଅଦୃଶ୍ୟ ଶକ୍ତି ଥିଲା ସର୍ବଶକ୍ତିମାନ ଓ ସର୍ବମୟ । ମାନବ ଥିଲା ଏହି ଈଶ୍ୱରଙ୍କ ପୁତ୍ର । ଏହିଭାବରେ ସମଗ୍ର ସୃଷ୍ଟିରେ ମାନବର ଏକ ଗୌରବମୟ ସ୍ଥାନ ଥିଲା । ସେ ନିଜକୁ କେନ୍ଦ୍ର କରି ସମସ୍ତ ବିଶ୍ୱବ୍ରହ୍ମାଣ୍ଡର ଧାରଣା କରୁଥିଲା । ମନୁଷ୍ୟ ଥିଲା ଆଦି ସୃଷ୍ଟି; ମନୁଷ୍ୟର ବାସଭୂମି ପୃଥିବୀ ଥିଲା ଆଦି ଓ ବୃହତ୍ତମ ଗ୍ରହ । କିନ୍ତୁ ବୈଜ୍ଞାନିକ ଚିନ୍ତା ଓ ମୋହ, ଏହି ଆତ୍ମଶ୍ଳାଘା ମୂଳରେ କୁଠାରାଘାତ କଲା ।

ବୈଜ୍ଞାନିକଙ୍କ ଗଣନା ଅନୁସାରେ ବିରାଟ ବିଶ୍ୱବ୍ରହ୍ମାଣ୍ଡରେ, ପୃଥିବୀ ଏକ କ୍ଷୁଦ୍ର ଗ୍ରହ । ମନୁଷ୍ୟ ଅର୍ବାଚୀନ ସୃଷ୍ଟି । ଗୋଟିଏ କଥାରେ କହିଲେ, ମାନବ ଓ ମାନବ ଜୀବନର ସତ୍ତା ଯେପରି କ୍ଷୀଣରୁ କ୍ଷୀଣତର ମନେ ହେଲା, ସେଇପରି ବିଶ୍ୱଜଗତ ଓ କାଳରେଖାର ଦଶସର ବହୁ ବିସ୍ତୃତ ହେଲା । ବିରାଟ ସ୍ପେସ୍ ବା ସ୍ଥାନ ଓ ବିପୁଳ କାଳ ଗର୍ଭରେ ଜୀବନ ମନେ ହେଲା— ଏକ କ୍ଷୀଣ ଆଲୋକ ଶିଖା ।

ପୃଥିବୀ ଓ ସୃଷ୍ଟିର ଏଇ ନଶ୍ୱରତାରୁ ଊନବିଂଶ ଶତକର ଗଣତନ୍ତ୍ର, ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ସ୍ୱର ଉଠିଲା । କୌଣସି ପ୍ରକାର ଅତିବାସ୍ତବ ବା ଅତିପ୍ରାକୃତ ଶକ୍ତିରେ ମନୁଷ୍ୟ ଯେ ଶକ୍ତିଶାଳୀ ହୋଇପାରେ—ଏହା ମିଥ୍ୟା ବୋଲି ଧାରଣା ହେଲା । ମନୁଷ୍ୟର ମନୁଷ୍ୟକୁ ଶାସନ କରିବା କ୍ଷମତାକୁ ଅସ୍ୱୀକାର କରାଗଲା । ରାଜଶକ୍ତି; ଧର୍ମ ଓ ନୈତିକ ପ୍ରଭାବ ସମ୍ବନ୍ଧରେ କିପରି ବିପରୀତ ଧାରଣା ପ୍ରକାଶ ପାଉଥିଲା—ତାହାର ସ୍ପଷ୍ଟ ସୂଚନା ପୁନର୍ଜାଗରଣ ଯୁଗରୁ ଆରମ୍ଭ କରି ଊନବିଂଶ ଶତକ ପର୍ଯ୍ୟନ୍ତ ବହୁ ଚିନ୍ତାଶୀଳ ଲେଖକଙ୍କ ଉକ୍ତିରୁ ମିଳିଥାଏ ।

ରାଜସତ୍ତାକୁ ସମାଲୋଚନା କରି ପଂଚଦଶ ଶତକର ଡଚ୍ ପଣ୍ଡିତ ଇରାସମସ ଲେଖି- ଥିଲେ—"ବୁଦ୍ଧିମାନ ଲୋକେ, ସବୁ ପକ୍ଷୀଙ୍କ ଭିତରେ ଈଗଲ ହିଁ ରାଜସତ୍ତାର ପ୍ରକୃତ ରୂପ ବୋଲି ବିଚାରୁଥିଲେ—ଏହା ସୁନ୍ଦର ନୁହେଁ, ଭଲ ଗାନ କରିପାରେନା, ଖାଦ୍ୟ ପାଇଁ ଉପଯୁକ୍ତ ନୁହେଁ, ଅଧିକନ୍ତୁ ମାଂସାଶୀ, ଲୋଭୀ, ସମସ୍ତଙ୍କ ଦ୍ୱାରା ଘୃଣିତ, ସମସ୍ତଙ୍କର ଅଭିଶାପ ଏବଂ କ୍ଷତି କରିବାର ପ୍ରବଳ କ୍ଷମତା ସଙ୍ଗେ ସଙ୍ଗେ ଏହା ସେ ସବୁ କାର୍ଯ୍ୟ କରିବାର ଅଭିଳାଷରେ ସେମାନଙ୍କୁ ଅତିକ୍ରମିଯାଏ ।" ୧୦ । ଧର୍ମର ନୈତିକ ଭିତ୍ତିକୁ ଅସ୍ୱୀକାର କରି ଏ ଯୁଗର ଶ୍ରେଷ୍ଠ ରାଜନୀତିଜ୍ଞ ପଣ୍ଡିତ ମେକିଆଭେଲି ନିଜର ପ୍ରିନ୍ସ ଗ୍ରନ୍ଥରେ ଲେଖିଥିଲେ— "ମୁଁ ଜୋର ଦେଇ କହିପାରେ ଯେ, ସାଧୁ ହେବାକୁ ଚେଷ୍ଟା କରିବା ସର୍ବଦା ଅତ୍ୟନ୍ତ ଅସୁବିଧାଜନକ, ବରଂ ଧାର୍ମିକ ଓ ଧର୍ମବିଶ୍ୱାସୀ, ଦୟାଳୁ ଓ ଭକ୍ତ ବୋଲି ନିଜକୁ ପରିଚୟ ଦେବା ଲାଭ ଜନକ । ଧାର୍ମିକ ବୋଲି ଦେଖାଇ ହେବା ଅପେକ୍ଷା ଅଧିକ ଦରକାରୀ ଜିନିଷ କିଛି ନାହିଁ ।"

ବୈଜ୍ଞାନିକ ଚିନ୍ତାକୁ ଅନୁସରଣ କରି ଦାର୍ଶନିକମାନେ ମାନସିକ ବା ବୌଦ୍ଧିକ ବିପ୍ଲବ ପାଇଁ ପଥ ନିର୍ମାଣ କଲାବେଳେ, ବିଜ୍ଞାନର ନବ ନବ ଆବିଷ୍କାର ଓ ଉଦ୍ଭାବନ ଫଳରେ ପ୍ରଥମେ ବିଲାତରେ ଓ ପରେ ସମଗ୍ର ପଶ୍ଚିମ ଇଉରୋପରେ ଶିଳ୍ପ ବିପ୍ଳବର ଅଭ୍ୟୁଦୟ ଘଟିଲା । ବୟନ ଶିଳ୍ପରୁ ପ୍ରଥମେ ଯନ୍ତ୍ର ଶିଳ୍ପର ସୂତ୍ରପାତ ହେଲା । ଏଥି ସଙ୍ଗେ ସଙ୍ଗେ ୧୭୬୫ରେ ଜେମ୍ସ ଓ୍ୱାଟ ବାଷ୍ପୀୟ ଇଞ୍ଜିନ ଉଦ୍ଭାବନ କରିବା ପରେ ଲୁହା ଓ କୋଇଲାକୁ ନେଇ ବୃହତ୍ କାରଖାନାମାନ ଗଢ଼ି ଉଠିଲା ।

ବୌଦ୍ଧିକ ବିପ୍ଳବ ପ୍ରଥମେ ଜୀବନର ପ୍ରତ୍ୟେକ ସ୍ତରରେ ବୈଜ୍ଞାନିକ ଚିନ୍ତା ପ୍ରବେଶ କରାଇଥିଲା । ଧର୍ମ, ରାଜନୀତି, ଶିକ୍ଷା, ବାଣିଜ୍ୟ ଆଦି ସବୁ କ୍ଷେତ୍ରରେ ବହୁ ନୂତନ ପ୍ରଶ୍ନ, ନୂତନ କୌତୂହଳ ଜାଗ୍ରତ ହେଲା । ଅନ୍ଧ ଅନୁସରଣ ଓ ସହଜ ବିଶ୍ୱାସ ମୂଳରେ ଏହା କୁଠାରାଘାତ କଲା । ଏହା ଫଳରେ ଯେଉଁ ଚିନ୍ତା ଶକ୍ତି ଜାଗ୍ରତ ହୋଇଥିଲା, ଶିଳ୍ପ ବିପ୍ଳବ ଦ୍ୱାରା ତାହା କର୍ମ ଶକ୍ତିରେ ରୂପାନ୍ତରିତ ହେଲା । ଯନ୍ତ୍ର ମାନବର ହସ୍ତକୁ ଶକ୍ତିଶାଳୀ କଲା ।

ଅବଶ୍ୟ ଯନ୍ତ୍ର ଯୁଗରେ କଳ୍ପୁଷର ଦାଗ ଥିଲା । ମାନବର ବିଚିତ୍ର ଜ୍ଞାନଶକ୍ତି ଓ ସହ-ଯୋଗ ମନୋବୃତ୍ତିରୁ ଯନ୍ତ୍ରଯୁଗ ଆରମ୍ଭ ହୋଇ କ୍ରମଶଃ ମାନବ ସମାଜକୁ ଅଧିକ ବିଭକ୍ତ, ଦେଶର ମୁଖକୁ ଅଧିକ ବିକଳାଙ୍ଗ କରିଦେଲା । ପୁଞ୍ଜିବାଦ ଓ ଅର୍ଥନୈତିକ ସାମ୍ରାଜ୍ୟବାଦ ପ୍ରଭୃତି ବିଷ ଏଥିରୁ ବାହାରିଲା । ପ୍ରଥମେ ମନେହେଲା, ଏ ଦୋଷ ଯନ୍ତ୍ରର । ମାତ୍ର ପରେ ଏହାର ପ୍ରକୃତ ହେତୁ ଜଣାଗଲା । କଳକୁ ଦୋଷ ନ ଦେଇ ଆପେ ସ୍ୱାର୍ଥଲାଗି ଯେଉଁମାନେ ତାକୁ ବ୍ୟବହାର କରୁଥିଲେ, ସେମାନଙ୍କର ସ୍ୱାର୍ଥ ବୁଦ୍ଧିକୁ ଚିନ୍ତାଶୀଳ ଲୋକେ ଦୋଷ ଦେବାକୁ ଲାଗିଲେ । ଫଳରେ ମାନବ ସେବାରେ ବିଜ୍ଞାନର ଅବଦାନ ଉପରେ ବିଶ୍ୱାସ ଦୃଢ଼ରୁ ଦୃଢ଼ତର ହେଲା । ବିଜ୍ଞାନ ମଧ୍ୟଯୁଗୀୟ ମାନବର ଅହମିକା ଭାଙ୍ଗି, ଅନିର୍ଦ୍ଦିଷ୍ଟ ଭବିଷ୍ୟତର ଯାତ୍ରୀ ମନୁଷ୍ୟ ସମ୍ମୁଖରେ ଯେପରି ଏକ କରୁଣ ଇତିହାସର ଛବି ଅଙ୍କନ କରିଥିଲା, ସେହିପରି ମନୁଷ୍ୟ ଲାଗି ନୂତନ ସୁଖ ସମ୍ଭୋଗର ଉପାଦାନ ସୃଷ୍ଟି କରି ନୂତନ ଆଶାବାଦର ମୂଳଦୁଆ ଦୃଢ଼ କଲା ।

ଏହି ବୈରାଗ୍ୟ ଓ ଆଶାର ନିରନ୍ତର ଦୋଳନ ଭିତରେ ଯେଉଁ ଭାବଧାରା, ସାହିତ୍ୟ ଓ ସଂସ୍କୃତି ପଶ୍ଚିମ ଇଉରୋପରେ ଗଢ଼ି ଉଠିଲା, ତାର ପ୍ରଭାବ ପୃଥିବୀର ସର୍ବତ୍ର ପଡ଼ିଲା । ଫଳରେ ଆମ ଦେଶରେ କାବ୍ୟଧାରା ନୂତନ ରୂପ ଗ୍ରହଣ କଲା । ନୂତନ ଗତିର ଚେତନା ଦୃଢ଼ ହେଲା । ଅନ୍ତିମ ଲକ୍ଷ୍ୟ ଯାହା ହେଉନା କାହିଁକି, ଜୀବନ ଯେ ଏକ ଅପରିହତ, ଅନନ୍ତ ଗତିର ପ୍ରବାହ—ଏହି ଧାରଣା ସ୍ପଷ୍ଟ ହେଲା ।

ଦ୍ୱିତୀୟ ଅଧ୍ୟାୟ

# ଐତିହାସିକ ଭୂମିକା

"ମୁଁ କେବଳ ଦୃଢ଼ ଭାବରେ କହିବାକୁ ଚାହେଁ, ମନୁଷ୍ୟର ସମସ୍ତ କାର୍ଯ୍ୟ ଓ ଚିନ୍ତା ପରସ୍ପର ସଂଯୁକ୍ତ ; ଫଳରେ ସବୁ ଇତିହାସ ଅବିଚ୍ଛିନ୍ନ ବିଷୟ ଘେନି ଗଠିତ ; ଆଉ ଏଥି-ଲାଗି ଏକ ନିର୍ଦ୍ଦିଷ୍ଟ ଯୁଗର କବିତାକୁ ସମ୍ପୂର୍ଣ୍ଣ ରୂପେ ବୁଝିବା ପ୍ରୟାସରେ ତୁମକୁ ଏପରି କେତେକ ବିଷୟରେ ଆଲୋଚନା କରିବାକୁ ପଡ଼ିବ, ତାକୁ ଦେଖିବା ମାତ୍ରେ ମନେହେବ କବିତା ସହିତ ତାହାର ଆଦୌ ସମ୍ପର୍କ ନାହିଁ ।"[୧]

ଡି. ଏସ୍. ଇଲିୟଟ୍

ଜାତି ଜାତି ଓ ଦେଶ ଦେଶ ଭିତରେ ବିନିମୟରେ ସଂସ୍କୃତିର ବିକାଶ ଘଟେ । ଅତୀତରେ ଏହି ଭାବରେ ଭାରତୀୟ ସଂସ୍କୃତି ସମ୍ଭବ ହୋଇଥିଲା । ସହସ୍ର ବର୍ଷର ଇତିହାସ କାଳ ମଧ୍ୟରେ ଗ୍ରୀକ୍, ଶକ, ହୂଣ କେତେ ଜାତି ଏଦେଶକୁ ଜେତା ହୋଇ ଆସିଥିଲେ । ମାତ୍ର ନିଜର ସୁମହାନ୍ ସଂସ୍କୃତି ବଳରେ ଭାରତବର୍ଷ ସେମାନଙ୍କୁ ଜୟ କରି ଆପଣାର କରି ନେଇଥିଲା । ଭାରତବାସୀ କେବେ ବିଦେଶୀ ସଭ୍ୟତା ବା ସଂସ୍କୃତି ଆଗରେ ଆତ୍ମବିଶ୍ୱାସ ହରେଇବା ଭଳି ଅବସ୍ଥାର ସମ୍ମୁଖୀନ ହୋଇ ନଥିଲେ । ଇଂରେଜ ଅଧିକାର ପରେ ଏହି ଇତିହାସର ପଞ୍ଚ ପରିବର୍ତ୍ତନ ଘଟିଲା । ପ୍ରଥମେ ଆମ ମନରେ ଏକ ଗୌଣ ମନୋଭାବ ଜାତ ହେଲା । କାରଣ, ଭାରତ ରାଜନୈତିକ ଏକତା ହରାଇ ଦୁସ୍ଥ ସାମାଜିକ ଅବସ୍ଥା ଭିତରେ ଗତି କରୁଥିଲାବେଳେ ଏକ ଉନ୍ନତ ବୈଜ୍ଞାନିକ ସଭ୍ୟତାର ଅଧିକାରୀ ରୂପେ ଇଂରେଜମାନେ ଏଦେଶକୁ ବିଜେତା ଓ ଅଖଣ୍ଡ କ୍ଷମତାଧାରୀ ଶାସକଭାବରେ ଆସିଥିଲେ ।

ଊନବିଂଶ ଶତାବ୍ଦୀର ଆଦ୍ୟପାଦରୁ ଭାରତରେ ଇଂରେଜ ଶାସନ ପ୍ରତିଷ୍ଠିତ ହେଲା । ସେ ସମୟର ଇଉରୋପରେ ଯେଉଁ ମାନବପ୍ରେମୀ ଉଦାରପନ୍ଥୀ ଆନ୍ଦୋଳନ ଶକ୍ତି ସଞ୍ଚୟ କରୁଥିଲା,

ତାହାଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ ଥିଲା । ମଧ୍ୟଯୁଗୀୟ ଭାରତୀୟ ସମାଜକୁ ସଂସ୍କୃତ ଓ ଆଧୁନିକ କରିବା ଏହି ଶାସନର ଲକ୍ଷ୍ୟ ଥିଲା । ଅଗ୍ରଗାମୀ ଭାରତୀୟ ଚିନ୍ତାନାୟକମାନେ ଏହାର ସମର୍ଥକ ଥିଲେ । ଇଂରେଜ ଶାସନରେ ଭାରତୀୟ ଜୀବନଧାରା ଓ ସମାଜର କ୍ରମ ପରିବର୍ତ୍ତନ ପ୍ରଧାନ ଦୁଇଟି ଉପାୟରେ ସାଧିତ ହୋଇଥିଲା । ପ୍ରଥମତଃ ଦ୍ରୁତ ଯୋଗାଯୋଗ ବ୍ୟବସ୍ଥା, ଦ୍ୱିତୀୟତଃ ଆଧୁନିକ ଶିକ୍ଷା ବିସ୍ତାର । ଏହା ଫଳରେ ଦେଶର ଆର୍ଥିକ ଜୀବନ ନୂତନ ଦିଗରେ ଗତି କଲା, ଯୁଗ ଯୁଗର ପୁଞ୍ଜିଭୂତ ଅବିଶ୍ୱାସ ଓ କୁସଂସ୍କାରର ଅନ୍ଧକାର ଜାତିର ସାମାଜିକ ଜୀବନରୁ ଲୋପ ପାଇବାକୁ ଲାଗିଲା । ଭାରତୀୟ ସମାଜ ସଂସ୍କାର ଆନ୍ଦୋଳନରେ ଇଂରେଜ ଶାସନର ପ୍ରତ୍ୟକ୍ଷ ସହଯୋଗ ୧୮୫୭ରେ ସିପାହୀ ବିଦ୍ରୋହର ପ୍ରତିକ୍ରିୟା ଫଳରେ କେତେକ ପରିମାଣରେ ବ୍ୟାହତ ହୋଇଥିଲା । କିନ୍ତୁ ମାତ୍ର ଇଉରୋପୀୟ ବିଜ୍ଞାନର ଜୟଯାତ୍ରାର ପ୍ରଭାବ ଅପ୍ରତିହତ ଗତିରେ ଆଧୁନିକ ଶିକ୍ଷା ବିସ୍ତାର ମାଧ୍ୟମରେ ଆମ ସମାଜକୁ ପରିବର୍ତ୍ତନ ଦିଗରେ ନେଇ ଯାଇଥିଲା ।

## ସମାଜ ଓ ଧର୍ମ ଜୀବନରେ ନବଚେତନା

ସିପାହୀ ବିଦ୍ରୋହ ପରେ ଭାରତୀୟ ବୁଦ୍ଧିଜୀବୀଙ୍କ ମନରେ ଏକ ପ୍ରକାର ମାନସିକ ଦ୍ୱନ୍ଦ୍ୱ ଦେଖାଦେଲା । ଦଳେ ପାଶ୍ଚାତ୍ୟ ରୀତିର ଅନ୍ଧଭାବେ ଅନୁକରଣ କଲେ, ଆଉ ଦଳେ ନୂତନ ପରିସ୍ଥିତି ଅନୁକ୍ରମେ ପ୍ରାଚୀନ ଭାରତୀୟ ପରମ୍ପରା, ସମାଜ ପଦ୍ଧତି ଓ ଧର୍ମର ପ୍ରବର୍ତ୍ତନ ଲାଗି ଉଦ୍ୟମ କଲେ । ଏମାନଙ୍କ ଉଦ୍ୟମ ମୁଖ୍ୟତଃ ସମାଜ ସଂସ୍କାରମୂଳକ ଥିଲା । ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ, ପ୍ରାର୍ଥନା ସମାଜ ଆଦି ଧର୍ମ ସଂସ୍ଥା ଏହି ଉଦ୍ଦେଶ୍ୟରେ ଗଠିତ ହୋଇ ଶିକ୍ଷିତ ବୁଦ୍ଧିଜୀବୀଙ୍କ ଉପରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା ।

ପଲ୍ଲୀର ଜନସାଧାରଣଙ୍କ ଭିତରେ ଏହି ନୂତନ ଆଦର୍ଶ ସହଜରେ ପହଞ୍ଚିପାରୁ ନ ଥିଲା । ସେଠାରେ ପରିବାର, ପୌରହିତ୍ୟ, ଜାତିପ୍ରଥା, ବାଲ୍ୟବିବାହ ଆଦି କୁପ୍ରଥା ଓ ନାନା ଅହେତୁକ ଅନ୍ଧବିଶ୍ୱାସ ପୂର୍ବ ପରି ଦୃଢ଼ ରହିଥିଲା । ଯେଉଁ ନବ ଶିକ୍ଷିତମାନେ ସହରର ସ୍ୱଚ୍ଛନ୍ଦ ଓ ସ୍ୱାଧୀନ ଜୀବନର ସ୍ୱାଦ ଚାଖିଲେ, ସେମାନେ ଆଉ ଗ୍ରାମର ବଦ୍ଧ ବାତାବରଣ ଭିତରକୁ ଫେରିଲେ ନାହିଁ । ଆଧୁନିକ ଶିକ୍ଷା, କର୍ମପଦ୍ଧତି ଓ ଆର୍ଥିକ କାରଣରୁ ଏକାନ୍ନବର୍ତ୍ତୀ ପରିବାରର ଆଦର୍ଶରେ କେତେକ ପରିମାଣରେ ବାଧା ପଡ଼ିଲା । ଏକ ପରିବାରର ଲୋକେ ବିଭିନ୍ନ କର୍ମରେ ନିଯୁକ୍ତ ହୋଇ ଭିନ୍ନ ଭିନ୍ନ ସୂତ୍ରରୁ ଅର୍ଥ ଉପାର୍ଜନ କରି ବହୁ ସ୍ଥାନରେ ରହିବାକୁ ଲାଗିଲେ । ଏହି ଭାବରେ ପ୍ରାଚୀନ ବିଶ୍ୱାସ ଓ ଜୀବନ ପଦ୍ଧତିର ମୂଳଦୁଆ ସହରର ନବଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀଙ୍କୁ ନେଇ ଦୋହଲି ଯିବାକୁ ଲାଗିଲା । ନୂତନ ଶିକ୍ଷାନୁଷ୍ଠାନ ସବୁ ଏହି ନୂଆ ଜୀବନର ଆଦର୍ଶ ତରୁଣଙ୍କ ଭିତରେ ପ୍ରଚାର କଲେ ।

ଭାରତୀୟ ସଂସ୍କୃତି ପ୍ରତି ଗଭୀର ଶ୍ରଦ୍ଧାଶୀଳ ଓ ପାଶ୍ଚାତ୍ୟ ସଂସ୍କୃତିର ସୃଷ୍ଟିଧର୍ମୀୟ ସକଳ ଉପାଦାନ ଆହରଣରେ ଆଗ୍ରହୀ ନବ ଶିକ୍ଷିତ ସମାଜର ସଂହତ ଚିନ୍ତା ୧୮୮୫ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ଜାତୀୟ କଂଗ୍ରେସ ମଧ୍ୟରେ ପ୍ରକାଶ ପାଇଥିଲା । ଏମାନେ ସ୍ୱାଧୀନଚେତା ଓ ହେତୁବାଦୀ ଥିଲେ । ଦେଶର ଶାସନରେ ଏମାନେ ଉପଯୁକ୍ତ ସ୍ଥାନ ଲୋଡ଼ିଥିଲେ । ମାତ୍ର ନୂତନ ସମାଜ ଗଠନରେ ଏମାନଙ୍କ ବିପୁଳ ଉଦ୍ୟମ ତୁଳନାରେ ଏହି ରାଜନୈତିକ ଉଦ୍ଦେଶ୍ୟ ଯେପରିକି ଗୌଣଥିଲା ।'

ଏମାନଙ୍କ ବ୍ୟତୀତ ଇଂରେଜ ଶାସକଙ୍କ କୃପାକାଂକ୍ଷୀ ଅମଲା, ବ୍ୟବସାୟୀଙ୍କ ଭିତରୁ ଏକ ନୂତନ ଅଭିଜାତ ଶ୍ରେଣୀ ବାହାରିଲେ । ସମସ୍ତ ଦିଗରେ ଏମାନେ ଶାସକଙ୍କର ଅନୁଗାମୀ, ଅନୁକରଣପ୍ରିୟ ଥିଲେ । ଏମାନଙ୍କଠାରେ ଏକ ପ୍ରକାର ମାନସିକ ଦାସତ୍ୱ ପ୍ରବଳ ଥିଲା । ପ୍ରାଚୀନ ଭାରତୀୟ ବଣିକ ଓ ସାମନ୍ତ ଶ୍ରେଣୀର ଉଦାରତା ଓ ସ୍ୱଜାତୀୟ ମନୋଭାବ ଏମାନଙ୍କର ନ ଥିଲା । ଇଂରେଜ ଶାସନ ସଂସ୍ଥା ଓ ବାଣିଜ୍ୟ ପ୍ରତିଷ୍ଠାନର ଅଂଶ ବିଶେଷ ରୂପେ ଏମାନେ କାର୍ଯ୍ୟ କରୁଥିଲେ । ଫକୀର ମୋହନଙ୍କ ଗଳ୍ପର ସଭ୍ୟ ଜମିଦାର ଓ ରାଧାନାଥଙ୍କ ଦରବାରର ଲକ୍ଷଶୋଷୀ ସାମନ୍ତମାନେ ଏହି ଶ୍ରେଣୀର । ଇଂରେଜ ଶାସନରେ ଦେଶର ଆର୍ଥିକ ଦୁର୍ଗତି ପ୍ରତି ଧ୍ୟାନଦେଲେ, ଏମାନଙ୍କ ଭୂମିକା ସହଜରେ ଧାରଣା କରିହୁଏ ।

## ଆର୍ଥିକ ଦୁର୍ଗତି

ଭାରତ ଥିଲା ପଲ୍ଲୀ ପ୍ରଧାନ ଦେଶ । ଏହାର ଗ୍ରାମୀଣ ଅର୍ଥନୀତି ଦୃଢ଼ କୌଳିକ ପ୍ରଥା ଉପରେ ଅବଲମ୍ବିତ ଥିଲା । ଗ୍ରାମଗୁଡ଼ିକ ପରସ୍ପରଠାରୁ ବିଚ୍ଛିନ୍ନ ଅଥଚ ଆର୍ଥିକ ଦିଗରୁ ଆତ୍ମନିର୍ଭରଶୀଳ ଥିଲା । ଦେଶରେ ଶାସନର ପରିବର୍ତ୍ତନ ଘଟୁଥିଲା, ରାଜ୍ୟ ସାମ୍ରାଜ୍ୟ ଗଢୁଥିଲା, ଭାଙ୍ଗୁଥିଲା । ମାତ୍ର ସେଥିରେ ଗ୍ରାମ ଜୀବନରେ କିଛି ପରିବର୍ତ୍ତନ ଘଟୁ ନ ଥିଲା । ଏଥିଲାଗି ଭାରତର ଗ୍ରାମକୁ କେହି କେହି ସ୍ୱତନ୍ତ୍ର ଏକ ଏକ ରାଜ୍ୟବୋଲି କହିଥାନ୍ତି । ଏହି ଗ୍ରାମର ଚିତ୍ର ଦେବାକୁ ଯାଇ ଇଂରେଜ ଗଭର୍ଣ୍ଣର ସାର ଚାର୍ଲସ ମେଟକାଫ୍ କହିଥିଲେ, 'ଗ୍ରାମ ପଞ୍ଚାୟତ ସବୁ ଛୋଟ ଛୋଟ ପ୍ରଜାତନ୍ତ୍ର ପରି, ସେମାନଙ୍କର ନିଜର ଦରକାରୀ ପ୍ରତ୍ୟେକ ଜିନିଷ ସେମାନଙ୍କ ପାଖରେ ଥିଲା, ବିଦେଶୀ ସମ୍ପର୍କରୁ ଏହା ପ୍ରାୟ ମୁକ୍ତଥିଲା ।'[୨୩] ଅବଶ୍ୟ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ରହିବାରେ ଯେପରି ଲାଭଥିଲା, ସେଇପରି କ୍ଷତି ମଧ୍ୟ ଥିଲା । ପ୍ରାଚୀନକାଳରେ ଏକଚ୍ଛତ୍ର ଶାସନ ଏହି ବ୍ୟବଚ୍ଛିନ୍ନ ଗ୍ରାମକୁ କେନ୍ଦ୍ରକରି ତିଷ୍ଠି ରହିଥିଲା । ସବୁ ପ୍ରକାର କୁସଂସ୍କାର ଓ ପ୍ରାଚୀନ ପରମ୍ପରାର ଚେର ଏଥିରେ ଦୃଢ଼ ହୋଇ ରହିଥିଲା । ସମଗ୍ର ଦେଶର ଭୌଗୋଳିକ ବୈଶିଷ୍ଟ୍ୟ ବା ଐତିହାସିକ ଗୌରବବୋଧରୁ ଏହା ଜନସମାଜକୁ ବଞ୍ଚିତ କରି କ୍ଷୁଦ୍ର ସୀମା ଭିତରେ ମନୁଷ୍ୟର ମନକୁ ଆବଦ୍ଧ କରି ରଖିଥିଲା ।[୪]

ଇଂରେଜ ଶାସନ ଗ୍ରାମର ଆର୍ଥିକ ଜୀବନର ଭିତ୍ତି ଦୋହଲାଇ ଦେଲା । ଏହି ଗ୍ରାମରୁ ଉତ୍ପନ୍ନ କୁଟୀର ଶିଳ୍ପଜାତ ପଦାର୍ଥକୁ ଘେନି ଇଂରେଜ, ଫରାସୀ ଆଦି ପାଶ୍ଚାତ୍ୟ ଦେଶର ଲୋକେ ବାଣିଜ୍ୟ ଆରମ୍ଭ କରିଥିଲେ । ଊନବିଂଶ ଶତକରେ ଇଂଲଣ୍ଡର ଶିଳ୍ପ ବିପ୍ଳବ ଏହି ଧାରା ବଦଳାଇ ଦେଲା । ଅଷ୍ଟାଦଶ ଶତକ ପର୍ଯ୍ୟନ୍ତ ଭାରତ ଥିଲା ମୁଖ୍ୟତଃ ଏକ ଉତ୍ପାଦନକାରୀ ଦେଶ । ଏଠାରୁ କେବଳ ତିଆରି ପଦାର୍ଥ ବିଦେଶକୁ ରପ୍ତାନୀ ହେଉଥିଲା । ମାତ୍ର ଇଂରେଜମାନେ ବିଲାତର କାରଖାନାଗୁଡ଼ିକୁ ପୁଷ୍ଟି କରିବା ଲାଗି ଭାରତକୁ କଞ୍ଚାମାଲର ଅସୀମ ଭଣ୍ଡାର ଓ ତିଆରି ମାଲର ମୁକ୍ତ ବଜାର ରୂପେ ପରିଣତ କରିବାକୁ ଚେଷ୍ଟାକଲେ । ସେଥିଲାଗି ଏଠି ତନ୍ତୀଙ୍କ ଅଙ୍ଗୁଳି କଟାଗଲା । ଲୁଣ ମାରିବାକୁ ନିଷେଧ କରାଗଲା । ବିଲାତି ଲୁଣ, ଲୁଗା ଓ ଅନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଏ ଦେଶର ବଜାର ଅଧିକାର କଲା । ଅଷ୍ଟାଦଶ ଶତକର ମଧ୍ୟ ଭାଗରେ ବିଲାତର ସମୁଦାୟ ରପ୍ତାନୀ ଦ୍ରବ୍ୟର ଶତକଡ଼ା ୩୨ ଭାଗରୁ ଭାଗେ ଭାରତକୁ ଆସୁଥିଲା, ମାତ୍ର ଊନବିଂଶ ଶତକର ଅର୍ଦ୍ଧଭାଗରେ ଶତକଡ଼ା ଆଠଭାଗରୁ ଭାଗେ ଆସିବାକୁ ଲାଗିଲା । *

ବିଲାତର ଏହି ଆର୍ଥିକ ସାମ୍ରାଜ୍ୟବାଦ ଫଳରେ ଏ ଦେଶରେ ଗୁରୁତର ସାମାଜିକ ଓ ଆର୍ଥିକ ପରିବର୍ତ୍ତନ ଦେଖାଦେଲା । କାରିଗର ଓ ବଣିକମାନେ କର୍ମହୀନ ହେଲେ । ଗ୍ରାମର କୃଷି ସମସ୍ତଙ୍କର ଏକମାତ୍ର ସମ୍ବଳ ହେଲା । କୃଷି ନିର୍ଭର ଗ୍ରାମ ଜୀବନର ଆନ୍ତର୍ଜାତିକ ବାଣିଜ୍ୟ ବଜାର ସହିତ ସମ୍ପର୍କ ପ୍ରତିଷ୍ଠା ହେଲା । ଭାତ ସାଙ୍ଗକୁ ଲୁଣ ଟିକକ ଲାଗି ଗାଁର ଚାଷୀକୁ ବିଲାତର ବଜାର ଉପରେ ନିର୍ଭର କରିବାକୁ ପଡ଼ିଲା । ନଗଦ ଟଙ୍କାର ପ୍ରଚଳନ ଏହା ପୂର୍ବରୁ ଗ୍ରାମରେ ପ୍ରାୟ ନ ଥିଲା । ଏବେ ସମସ୍ତ କିଣାବିକା ଲାଗି ଲୋଡ଼ାହେଲା ମୁଦ୍ରା । ଏଥି ସଙ୍ଗେ ପୁଣି କୃଷକର ଜମି ସହିତ ପୂର୍ବ ସମ୍ପର୍କ ରହିଲା ନାହିଁ । ଜମି ପୂର୍ବେ କିଣାବିକା ହେବାଭଳି ଏକ ପଦାର୍ଥ ନଥିଲା । ଏହା ଉପରେ ବ୍ୟକ୍ତିଗତ ସତ୍ତ୍ୱ କାହାରି ନଥିଲା । ଯେତେ ପାରୁଥିଲେ ଚାଷୀ ଚାଷ କରୁଥିଲେ । ଯିଏ ଦେଶ ଶାସନ କରୁଥିଲେ, ସେ ଗ୍ରାମର ମୁଖ୍ୟଙ୍କଠାରୁ ଫସଲର କିଛି ଅଂଶ ନେଉଥିଲେ । ଜମି ତୁଳନାରେ ଚାଷୀଙ୍କ ସଂଖ୍ୟା ସବୁବେଳେ ପ୍ରାୟ ଊଣାଥିଲା । ସେଥିଲାଗି ଜମିରୁ ଉଚ୍ଛେଦ ହେବା ପ୍ରଶ୍ନ ନଥିଲା । ଇଂରେଜ ଆର୍ଥିକ ସାମ୍ରାଜ୍ୟବାଦ ଫଳରେ ସମସ୍ତେ କୃଷି ନିର୍ଭର ହେବାରୁ ଜମି ଉପରେ ଭିଡ଼ ପଡ଼ିଲା । ଇଂରେଜମାନେ ନୂତନ ଭୂସ୍ୱାମୀଶ୍ରେଣୀ ସୃଷ୍ଟିକଲେ । ଏମାନଙ୍କର ଆର୍ଥିକ ଚେତନା ଉଗ୍ରଥିଲା । ଅନିଶ୍ଚୟତା ଆର୍ଥିକ ବାଣିଜ୍ୟ ବଜାରର ଏକ ବଡ଼ ଦୁର୍ଗୁଣ । ଏଥିରୁ ସଞ୍ଚୟ ମନୋବୃତ୍ତି ଦେଖାଦେଲା । ଏହାକୁ କେନ୍ଦ୍ରକରି ନାନା ପ୍ରକାର ଶଠତା ଓ ନୀଚତା ଭୂସ୍ୱାମୀ ଓ ବଣିକଙ୍କଠାରେ ଆତ୍ମପ୍ରକାଶ କଲା । ଗ୍ରାମର ସରଳ ପବିତ୍ର ଜୀବନ ଧାରା ଏକାବେଳକେ କଳୁଷିତ ହୋଇଗଲା ।

ଯେଉଁ ବଣିକ ଓ ଶାସକଗଣ ଊନବିଂଶ ଶତକରେ ଭାରତ ବର୍ଷକୁ ଆସିଥିଲେ, ନିଜ ଦେଶରେ ସେମାନେ ନିଶ୍ଚୟ ପ୍ରଗତିଶୀଳ ଥିଲେ, ଫରାସୀ ବିପ୍ଳବର ବିଶ୍ୱମାନବିକ ଆଦର୍ଶରେ

ଉଦ୍‌ବୁଦ୍ଧ ଥିଲେ, ବିଜ୍ଞାନ ଓ ଯନ୍ତ୍ରଶିଳ୍ପର ପ୍ରୟୋଗରେ ଅଗ୍ରଣୀ ଥିଲେ । ତେଣୁ ବହୁଦିନ ପର୍ଯ୍ୟନ୍ତ ଆଶା କରି ଯାଉଥିଲା, ଏହିସବୁ ପ୍ରଗତିର ଧାରା ସେମାନେ ଏ ଦେଶକୁ ପ୍ରବାହିତ କରି ଆଣିବେ । ମାତ୍ର ତାହା ସମ୍ଭବ ହୋଇ ନ ଥିଲା । କାରଣ, ଇଂରେଜମାନେ ପ୍ରଥମେ ବଣିକଭାବରେ ଆସିଥିଲେ, ଆଉ ବାଣିଜ୍ୟ ଓ ରାଜ୍ୟଶାସନ ସେମାନଙ୍କୁ ଏକା ସାଙ୍ଗରେ କରିବାକୁ ହୋଇଥିଲା । ସବୁ ସମସ୍ୟାକୁ ସେମାନେ ଭାରତର ଜନସାଧାରଣଙ୍କ ଦୃଷ୍ଟିକୋଣରୁ ନ ଦେଖି ନିଜ ବାଣିଜ୍ୟର ଲାଭ ଦିଗରୁ ବିଚାର କରୁଥିଲେ । ଏହାହିଁ ଥିଲା ସମସ୍ତ ଦୁଃଖ ଓ ଦୁର୍ଦ୍ଦଶାର କାରଣ ।

ଇଂରେଜ ଲେଖକ ଆଡାମ ସ୍ମିଥ୍‌ଙ୍କୁ ଅର୍ଥନୀତି ବିଜ୍ଞାନର ପିତା ବୋଲି କୁହାଯାଏ । ସେ ଇଂରେଜ କମ୍ପାନୀ ଶାସନର ଏହି ଭୂମିକା ବୁଝାଇବାକୁ ଯାଇ ୧୭୭୬ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ, "କେବଳ ବଣିକ କମ୍ପାନୀ ପରିଚାଳିତ ସରକାର ସମ୍ଭବତଃ ଯେ କୌଣସି ଦେଶର ସରକାର ଅପେକ୍ଷା ଖରାପ । ଶାସନକର୍ତ୍ତା ରୂପେ ବିଚାର କରାଯାଉଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର ସ୍ୱାର୍ଥ ହେବା ଉଚିତ, ଭାରତବର୍ଷକୁ ଯେଉଁ ଇଉରୋପୀୟ ମାଲ ସବୁ ଯିବ, ତାହା ଶସ୍ତାରେ ବିକ୍ରୀ କରାଯିବ ଏବଂ ଯେଉଁ ଜିନିଷ ସବୁ ଅଣାଯିବ ତାହା କିପରି ଅତି ମହଙ୍ଗା ଦରରେ ବିକ୍ରୀହେବ ; କିନ୍ତୁ ବଣିକଭାବରେ ସେମାନଙ୍କର ସ୍ୱାର୍ଥ ଠିକ ବିପରୀତ । ଶାସନକର୍ତ୍ତା ରୂପେ ଯେଉଁ ଦେଶ ଶାସନ କରିବ, ତାହାର ସ୍ୱାର୍ଥ ଯାହା ତମର ଠିକ ତାହା ହେବା ଉଚିତ । କିନ୍ତୁ ବଣିକ ରୂପେ ତାଙ୍କ ସ୍ୱାର୍ଥ ପ୍ରତ୍ୟକ୍ଷ ରୂପେ ଏହି ସ୍ୱାର୍ଥର ବିରୋଧୀ ।" ୬

ଇଂରେଜ ଶାସନରେ ଆର୍ଥିକ ଦୁରବସ୍ଥାର ଏତିକି ମାତ୍ର କାରଣ ନ ଥିଲା । ଏହାର ଆଉ ଏକ ଦିଗ ପ୍ରତି, ବାସ୍ତବବାଦୀ ଅର୍ଥନୀତିଜ୍ଞ ମାର୍କ୍‌ସ ଦୃଷ୍ଟି ଆକର୍ଷଣ କରି ଲେଖିଥିଲେ, 'ବହୁ ପୂର୍ବକାଳରୁ ଏସିଆରେ ଶାସନର ତିନୋଟି ବିଭାଗ ଥିଲା । ତାହା ହେଉଛି, ଯୁଦ୍ଧ ବା ବହିଃଲୁଣ୍ଠନ ; ରାଜସ୍ୱ ବିଭାଗ ବା ଆଭ୍ୟନ୍ତରୀଣ ଲୁଣ୍ଠନ ; ଶେଷରେ ପୂର୍ତ୍ତବିଭାଗ । ବିଶେଷ ଭାବରେ ଆରବ, ପାରସ୍ୟ, ଭାରତ, ତାତାରଠାରୁ ଏସିଆର ସୁଉଚ୍ଚ ମାଳଭୂମି ପର୍ଯ୍ୟନ୍ତ ଦେଶର ଓ ଜଳବାୟୁର ଅବସ୍ଥା ଯୋଗୁ କେନାଲ ଓ ଅନ୍ୟଭାବରେ କୃତ୍ରିମ ଜଳସେଚନ ବ୍ୟବସ୍ଥା ଉପରେ କୃଷି ନିର୍ଭର କରୁଥିଲା ।......ବର୍ତ୍ତମାନ ପୂର୍ବ ଭାରତରେ ବ୍ରିଟିଶ ସରକାର ପୂର୍ବବର୍ତ୍ତୀ ସରକାରଠାରୁ ଯୁଦ୍ଧ ଓ ରାଜସ୍ୱ ବିଭାଗ ହାତକୁ ନେଇଛନ୍ତି । କିନ୍ତୁ ସେମାନେ ପୂର୍ତ୍ତ ବିଭାଗର କାର୍ଯ୍ୟରେ ସମ୍ପୂର୍ଣ୍ଣରୂପେ ଅବହେଳା କରୁଛନ୍ତି । ତେଣୁ କୃଷିର ଅବନତି ଘଟୁଛି । ସରକାରୀ ହସ୍ତକ୍ଷେପ ବିନା ମୁକ୍ତ ପ୍ରତିଯୋଗିତା ଉପରେ ଛାଡ଼ିଦେବା ନୀତିରେ କୃଷିକାର୍ଯ୍ୟ ଚଳାଇବା ସେଠାରେ ସମ୍ଭବ ହେଉନାହିଁ । ଖାଲି ଏତିକି ନୁହେଁ, ବ୍ରିଟିଶ ବାଷ୍ପୀୟ ଇଞ୍ଜିନ ଓ ବିଜ୍ଞାନ ସମଗ୍ର ହିନ୍ଦୁସ୍ଥାନର କୃଷି ଓ ନିର୍ମାଣ ଶିଳ୍ପ ମଧ୍ୟରେ ଥିବା ସ୍ୱାଭାବିକ ସମ୍ବନ୍ଧକୁ ସମୂଳେ ଛେଦନ କରି ଦେଇଛି ।' ୭

ଏକେତ ଜଳସେଚନ ଅଭାବରେ କୃଷିକାର୍ଯ୍ୟ ଅବହେଳିତ ହୋଇପଡ଼ିଥିଲା । ଏଥିରେ ପୁଣି ଏତେ ଉଚ୍ଚହାରରେ କୃଷକଙ୍କ ଉପରେ କର ଧାର୍ଯ୍ୟ କରାଯାଉଥିଲା ଯେ, ସେଥିରେ ଚାଷୀର ମେରୁଦଣ୍ଡ ଭାଙ୍ଗି ଯାଉଥିଲା । ପୃଥିବୀର ଯେ କୌଣସି ସରକାରଠାରୁ ଭାରତ ସରକାରଙ୍କର କର ହାର ଉଚ୍ଚ ଥିଲା ବୋଲି ଭାରତୀୟ ଅର୍ଥନୀତି ଇତିହାସରେ ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ଦତ୍ତ ଲେଖିଛନ୍ତି ।[୮] ମାନବିକ ଆଦର୍ଶ ଦୃଷ୍ଟିରୁ କୃଷକ ଉପରେ ଏପରି କରଭାର ଲଦି ଦେବାକୁ ସେ ସମୟରେ ଅନେକ ସିଭିଲିୟାନ ଅଫିସର ମଧ୍ୟ ପସନ୍ଦ କରି ନାହାନ୍ତି । ୧୮୭୭ ଖ୍ରୀଷ୍ଟାବ୍ଦରେ ଉଇଲିୟମ ହଣ୍ଟାର ଲେଖିଥିଲେ, 'ସରକାରଙ୍କ ଖଜଣା ଦେଇ ସାରିବା ପରେ ବର୍ଷସାରା ନିଜ ପରିବାର ପାଇଁ ଯଥେଷ୍ଟ ଖାଦ୍ୟ ଚାଷୀ ହାତରେ ରହେ ନାହିଁ । ବ୍ରିଟିଶ ସାମ୍ରାଜ୍ୟରେ ରାଇୟତ ସବୁଠାରୁ କରୁଣ ମୂର୍ତ୍ତି ହୋଇ ରହିବ । କାରଣ ତାର ପ୍ରଭୁମାନେ ତାହା ପ୍ରତି ସବୁବେଳେ ଅନ୍ୟାୟ କରିଥାନ୍ତି ।'[୯]

କୃଷକଙ୍କ ଭଳି କାରିଗର ଓ ବେପାରୀଙ୍କ ଅବସ୍ଥା ମଧ୍ୟ ଶୋଚନୀୟ ହୋଇଥିଲା । ପ୍ରଥମରୁ ଆଡ଼ାମ ସ୍ମିଥଙ୍କ ଲେଖାରେ ଯେପରି ସୂଚନା ଦିଆଯାଇଛି, ବ୍ରିଟିଶ ଶାସକମାନେ ଭାରତର ଜାତୀୟ ସମ୍ପଦ ବୃଦ୍ଧିର ସମ୍ପୂର୍ଣ୍ଣ ବିରୋଧାଚରଣ କରୁଥିଲେ । ଏ ଦେଶରେ ବଣିକମାନେ ଇଂରେଜଙ୍କ କ୍ରମପରିବର୍ତ୍ତିମାନ ଅନିଶ୍ଚିତ ମୂଲ୍ୟ ନୀତି ସହିତ ସାମଞ୍ଜସ୍ୟ ରକ୍ଷି ପାରିଲେ ନାହିଁ । ସ୍ୱାଧୀନ ବ୍ୟବସାୟ ଛାଡ଼ି ସେମାନେ କ୍ରମଶଃ ଇଂରେଜ ବଣିକମାନଙ୍କର ଗୁମାସ୍ତା ବା ଏଜେଣ୍ଟ ହୋଇ କୌଣସି ପ୍ରକାର ଆତ୍ମରକ୍ଷା କଲେ । ମାତ୍ର ପ୍ରକୃତ ଲାଭ ଇଂରେଜ ବଣିକଙ୍କ ହାତକୁ ଗଲା ।

କ୍ଷମତାକୁ ଆସିବା ମାତ୍ରେ କମ୍ପାନୀ କର୍ତ୍ତୃପକ୍ଷ ଅବଶ୍ୟ ଭାରତୀୟ ଜିନିଷର ମୂଲ୍ୟ ନିଜ ସୁବିଧା ଅନୁସାରେ ନିୟନ୍ତ୍ରଣ କରୁଥିଲେ । ତଥାପି ପରୋକ୍ଷରେ ସେମାନେ ଭାରତୀୟ ଶିଳ୍ପର ବିକାଶରେ ସାହାଯ୍ୟ କରିଥିଲେ । ବିଶେଷଭାବରେ ଭାରତରୁ ଲୁଗା ନେଇ ସେମାନେ ଇଉରୋପର ବଜାରରେ ବିକ୍ରୀ କରୁଥିଲେ । ଏଥିରୁ ସେମାନେ ପ୍ରଚୁର ଧନ ପାଉଥିଲେ । ମାତ୍ର ଇଂଲଣ୍ଡରେ ଯନ୍ତ୍ର ଶିଳ୍ପର ପ୍ରତିଷ୍ଠା ହେବାରେ ଇଂରେଜ ଶିଳ୍ପପତିଗଣ ଏହାର ବିରୋଧ କଲେ । ଏକଦା ଭାରତରୁ ଯାଉଥିବା ବସ୍ତ୍ର ଉପରେ ଇଂରେଜ ସରକାର ଶତକଡ଼ା ଅଶୀଭାଗ ଶୁଳ୍କ ବସାଇଥିଲେ । କ୍ରମେ ଭାରତୀୟ ତନ୍ତୀଙ୍କୁ ପେଶା ଛାଡ଼ିବାକୁ ହେଲା । ବିଲାତି ତିଆରି ଲୁଗା ଆମ ବଜାର ପୂର୍ଣ୍ଣ କଲା । ଭାରତୀୟ ଶିଳ୍ପ ବାହାରର ବିସ୍ତୀର୍ଣ୍ଣ ବଜାର ଖାଲି ହରେଇଲା ନାହିଁ, ସ୍ୱଦେଶରେ ମଧ୍ୟ ସ୍ଥାନ ହରେଇଲା । ବସ୍ତ୍ର ଶିଳ୍ପୀଙ୍କ ଅବସ୍ଥା ଏପରି କରୁଣ ହୋଇଥିଲା ଯେ, ସ୍ୱୟଂ ଇଂରେଜ ପ୍ରଧାନ ଶାସନକର୍ତ୍ତା ବିଚଳିତ ହୋଇ ୧୮୩୪ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ, 'ବାଣିଜ୍ୟ ଇତିହାସରେ ଏପରି ଦୁର୍ଗତିର ବୋଧହୁଏ ତୁଳନା ନାହିଁ । କପାଲୁଗା ବୁଣାଳୀ ତନ୍ତୀଙ୍କ ହାଡରେ ଭାରତର ସମତଳଭୂମି ଧଳା ଦିଶୁଅଛି ।'[୧୧]

୧୮୩୮ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ପାର୍ଲିଆମେଣ୍ଟ ଆଇନ କରି ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ବାଣିଜ୍ୟ କ୍ଷମତା ଉଠାଇ ଦେଲେ । ୧୮୫୮ରେ କମ୍ପାନୀ ଶାସନ ଲୋପ ପାଇଲା, ପ୍ରତ୍ୟକ୍ଷ ଭାବରେ ବ୍ରିଟିଶ ପାର୍ଲିଆମେଣ୍ଟ ହାତକୁ ଭାରତ ଶାସନ ଗଲା । ମାତ୍ର ଏଥିରେ ଭାରତର ଦୁର୍ଦ୍ଦଶା କମିଲା ନାହିଁ । କାରଣ ଶାସନର ମୂଳନୀତି ଥିଲା ଅପରିବର୍ତ୍ତିତ । ଏହାକୁ ଲକ୍ଷ୍ୟ କରି ଶ୍ରୀଯୁକ୍ତ ରମେଶ ଚନ୍ଦ୍ର ଦତ୍ତ ଯଥାର୍ଥରେ ଲେଖିଛନ୍ତି, '୧୮୩୮ରେ କମ୍ପାନୀ ବାଣିଜ୍ୟ ଓ ୧୮୫୮ରେ ଶାସନ ଗଲା, ମାତ୍ର ସେମାନଙ୍କ ନୀତି ବଦଳିଲା ନାହିଁ । ......ଭାରତ ସାମ୍ରାଜ୍ୟ କମ୍ପାନୀ ହାତରୁ ବ୍ରିଟିଶ ସାମ୍ରାଜ୍ଞୀଙ୍କ ହାତକୁ ଗଲା । କିନ୍ତୁ, ଭାରତକୁ ଏହାର ମୂଲ୍ୟ ଦେବାକୁ ହେଲା ।' [୧୨]

**ଊନବିଂଶ ଶତକର ଓଡ଼ିଶା**

ବ୍ରିଟିଶ ଶାସନରେ ସମଗ୍ର ଭାରତର ଅବସ୍ଥା ତୁଳନାରେ ଓଡ଼ିଶାର ଚିତ୍ର ଅଧିକ କରୁଣ ଦିଶେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଅକ୍ଟୋବର ୧୪ ତାରିଖ ଦିନ ଅତି ସାମାନ୍ୟ ଚେଷ୍ଟାରେ ଇଂରେଜମାନେ ମରହଟ୍ଟାମାନଙ୍କଠାରୁ ଓଡ଼ିଶାର ହୃତପିଣ୍ଡ ବାରବାଟି ଦୁର୍ଗ ଅଧିକାର କଲେ । ସେଇଦିନଠାରୁ ଇଂରେଜ ହେଲେ ଓଡିଶାର ଏକଛତ୍ର ଶାସକ । ଓଡିଶା ଆକ୍ରମଣ ଓ ଅଧିକାରର ବିସ୍ତୃତ ବିବରଣ ଦେଇ ହଣ୍ଟର ଲେଖିଛନ୍ତି, 'ଓଡ଼ିଶା ଆକାରରେ ସ୍କଟ୍‌ଲାଣ୍ଡ ସହିତ ସମାନ ଓ ଏହାଠାରୁ କୋଡ଼ିଏ ଗୁଣ ଅଧିକ ଉର୍ବର । ଏହି ରାଜ୍ୟ ଲାଗି ଆମକୁ ମାତ୍ର ପଚିଶ ଜଣ ସୈନ୍ୟ, ୩୦୦୦୦ ପାଉଣ୍ଡ ହରାଇବାକୁ ହୋଇଥିଲା ।' [୧୩]

ଇଂରେଜମାନେ ଓଡ଼ିଶାର ଶାସନ ବ୍ୟବସ୍ଥା ସଂଗଠନ କଲେ । ସେମାନଙ୍କର ପ୍ରଧାନ ଲକ୍ଷ୍ୟ ହେଲା, ଅଧିକରୁ ଅଧିକ କର ଆଦାୟ କରିବା ଓ କୌଣସିଠାରେ ଏହାର ବିରୋଧ ହେଲେ, ତାକୁ କଠୋର ହସ୍ତରେ ଦମନ କରିବା । ଅର୍ଥ ଲାଭର ସମସ୍ତ ଉପାୟ ଇଂରେଜମାନେ ଆବିଷ୍କାର କଲେ । ଏପରି କି ପୁରୀ ମନ୍ଦିର ମଧ୍ୟ ବାଦ ଗଲା ନାହିଁ । ଏହାର ପରିଚାଳନା ଭାର ପ୍ରଥମେ ଜଣେ ହିନ୍ଦୁ ସିପାହୀ ହାତରେ ଓ ପରେ ଖୋର୍ଦ୍ଧା ରାଜାଙ୍କୁ ଦେଇ ଯାତ୍ରୀ କର ଆଦାୟ ପାଇଁ ଜଣେ ଇଂରେଜ କର୍ମଚାରୀ ନିଯୁକ୍ତ କରିଥିଲେ । ଏହା ଜାଣି କମ୍ପାନୀ ପରିଚାଳକମାନେ ସ୍ଥାନୀୟ ଶାସନକର୍ତ୍ତାଙ୍କୁ ସତର୍କ କରି ଲେଖିଥିଲେ । 'ଯାତ୍ରୀ କରକୁ ଏକ ଆୟର ପନ୍ଥାରୂପେ ମନେ କର ନାହିଁ । ମନ୍ଦିର ମରାମତି ପାଇଁ ଏହା ଏକ ପାଣ୍ଠି ବୋଲି ବିଚାର କର ।' [୧୪]

ଇଂରେଜଙ୍କ ଭୂରାଜସ୍ୱ ନୀତି ଓଡ଼ିଶାକୁ ଅନ୍ତଃସାର ଶୂନ୍ୟ କରିଦେଲା । ବଙ୍ଗଦେଶ ଭଳି ଏଠାରେ ଯଥାର୍ଥ ଅନୁସନ୍ଧାନ କରାଯାଇ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇ ନ ଥିଲା । ଓଡ଼ିଶାର ଅବସ୍ଥା ଭଲଭାବରେ ଜଣା ନ ଥିବାର ଆଳ ଦେଖାଇ ଶାସକମାନେ ଚିରସ୍ଥାୟୀ ବନ୍ଦୋବସ୍ତ କରିବାକୁ ରାଜି ହେଉ ନ ଥିଲେ । ୧୮୧୧ ଖ୍ରୀଷ୍ଟାବ୍ଦରେ କମ୍ପାନୀ କର୍ତ୍ତୃପକ୍ଷ ଓଡ଼ିଶା

ଶାସନ କରୁଥିବା ବଙ୍ଗ ସରକାରଙ୍କୁ ଲେଖିଥିଲେ, 'ଭୂରାଜସ୍ୱ ହିଁ ଆମ ସେଠା ସରକାରଙ୍କ ମୂଳପିଣ୍ଡ । ତେଣୁ ତାକୁ ଚିରକାଳ ପାଇଁ ସୀମାବଦ୍ଧ କରିବା ଆମ ସ୍ୱାର୍ଥ ଦୃଷ୍ଟିରୁ ସମୀଚୀନ ନୁହେଁ ।' ୧୫ ଇଂରେଜମାନେ ପୂର୍ବ **ଭଳି** ଫସଲର ଅଂଶ ନ ନେଇ ରୂପା ଟଙ୍କା ଆକାରରେ ଖଜଣା ଆଦାୟ କଲେ । ଏହି କର ଭାର ଏତେ ଦୁର୍ବହ ଥିଲା ଯେ ଏହା ବହନ କରିବା ପ୍ରଜାଙ୍କ ପକ୍ଷରେ ବଡ଼ କଠିନ ଥିଲା । ଅଧିକ ଖଜଣା ଆଦାୟ କରି ଦେବାକୁ ପ୍ରତିଶ୍ରୁତି ଦେଉଥିବା ଲୋକଙ୍କୁ ଜମିଦାରୀ ପଟ୍ଟା ଦିଆ ଯାଉଥିଲା । ଖଜଣାର ଏକ ବଡ଼ ଅଂଶ ଜମିଦାର ନେଉଥିଲେ । ଗୁମାସ୍ତାମାନେ ଅବୈଧ ଉପାୟରେ ନିର୍ଦ୍ଧାରିତ ହାରରୁ ଅଧିକ ଆଦାୟ କରୁଥିଲେ । ଅଧିକରୁ ଅଧିକ ଖଜଣା ପାଇବା ଲୋଭରେ ସରକାର ବାରମ୍ବାର ଜମିଦାରୀସବୁ କଲିକତାରେ ନିଲାମ କରୁଥିଲେ । ସରକାରୀ ଅମଲା, କିରାଣୀମାନେ ଏହି ଜମିଦାରୀ ନିଲାମ ଧରୁଥିଲେ । ସରକାରୀ କର୍ତ୍ତୃପକ୍ଷଙ୍କ ସମର୍ଥନ ଏମାନଙ୍କ ପଛରେ ଥିବାରୁ ଏମାନେ ନିର୍ଦ୍ଦୟଭାବରେ ମନ ଇଚ୍ଛା କର ଆଦାୟ କରୁଥିଲେ ଓ ନାନା ଅବୈଧ ଉପାୟରେ ଲୋକଙ୍କୁ ଶୋଷଣ କରୁଥିଲେ । ଏହାର ଅନ୍ୟାୟ ପ୍ରଭାବ ଏପରି ଉତ୍କଟ ଥିଲା ଯେ, ୧୮୧୭ରେ କୋର୍ଟ ଅଫ୍ ଡାଇରେକ୍ଟରସ ବଙ୍ଗ ସରକାରଙ୍କୁ ସତର୍କ କରାଇ ଲେଖିଥିଲେ, 'ସରକାର ଯେଉଁ ଜମିଦାରୀ ନିଲାମ ଉଠାଉଛନ୍ତି, ସେସବୁକୁ ସରକାରୀ କର୍ମଚାରୀମାନେ ନିଲାମ ଧରିବା ନିତାନ୍ତ ଆପତ୍ତିଜନକ । ତୁମ ଅଧୀନରେ ଥିବା ସମସ୍ତ ଅଞ୍ଚଳରେ ଏ ପ୍ରଥା ଏତେ ବେଶୀ ଚାଲିଛି ଯେ, ସମସ୍ତ ଅଞ୍ଚଳ ଶେଷରେ ଦେଶୀ କର୍ମଚାରୀଙ୍କ ଜମିଦାରୀ ହୋଇ-ଯିବା କିଛି ଅସମ୍ଭବ ନୁହେଁ ।' ୧୬ ।

ଭୂରାଜସ୍ୱ ନୀତି ସାଙ୍ଗକୁ ଶିଳ୍ପନୀତିର ବହିଷ୍କାର ମିଶିଲା । ଲବଣ ଓ ବସ୍ତ୍ର ଶିଳ୍ପ ଓଡ଼ିଶାର ବଡ଼ ସମ୍ପଦ ଥିଲା । ଚିଲିକା ଓ ବାଲେଶ୍ୱରର ସମୁଦ୍ରକୂଳରୁ ବହୁ ପରିମାଣରେ ଲୁଣ ମରା ହେଉଥିଲା । ସମଗ୍ର ପୂର୍ବଭାରତ ଏକଦା ଏହି ଲୁଣ ଉପରେ ନିର୍ଭର କରୁ-ଥିଲା । ପ୍ରଥମେ ଇଂରେଜମାନେ ଲୁଣ ମାରିବାର ଏକଚାଟିଆ ଅଧିକାର ନେଲେ । ବହୁ ଆନ୍ଦୋଳନ ପରେ ୧୮୬୧ ଖ୍ରୀଷ୍ଟାବ୍ଦରେ କର ଦେଇ ପଟ୍ଟାଦାରମାନେ ଲୁଣ ମାରିବାର ଅଧିକାର ପାଇଲେ । ଏହି ଲୁଣକର ହାର ଏତେ ଅଧିକ ଥିଲା ଯେ ଜଣେ ସାଧାରଣ ଚାଷୀକୁ ନିଜ ଆୟର ସାତ ଭାଗରୁ ଭାଗେ କେବଳ ଲୁଣକର ଦେବାକୁ ହେଉଥିଲା । ଏହି କରର ବିରୋଧରେ ହଣ୍ଟାର ସାହେବ ୧୮୭୨ ଖ୍ରୀଷ୍ଟାବ୍ଦରେ ଲେଖିଥିଲେ—'ଆମର ଲୁଣକର ପ୍ରଦେଶର ଯେଉଁ ଅସୀମ କ୍ଷତି କରୁଛି, ସେଥିପ୍ରତି ମୁଁ ଆଖିବୁଜି ଦେଇ ନ ପାରେ । ପ୍ରଥମତଃ ଏହା ଦରିଦ୍ର ଚାଷୀକୁ ଗୋଟିଏ ପ୍ରଧାନ ଖାଦ୍ୟରୁ ବଞ୍ଚିତ କରିଛି ।' ...ଲୁଣ କର ଲାଗି ମହାନଦୀର ବାଣିଜ୍ୟ ପଥ କିପରି ବନ୍ଦ ହୋଇ ଯାଇଥିଲା ତାହା ବର୍ଣ୍ଣନା କରି ପୁଣି ହଣ୍ଟର ଲେଖିଥିଲେ, 'ଆମର ଓଡ଼ିଶାର ଲୁଣକର ବାସ୍ତବିକ ମହାନଦୀର ଜଳପଥ ଅବରୋଧ କରି-ଦେଇଛି, ଯଦିଓ ଯେମିତି ଆଟମ ପଥର ପକାଇ ପୃଥିବୀର ଏକ ସୁନ୍ଦର ଜଳପଥ**କୁ** ବନ୍ଦ

କରିଦେଇନ୍ତି ।' ୧୭ କୃତ୍ରିମ ଉପାୟରେ ଇଂରେଜ ସରକାର ଲବଣ ଶିଳ୍ପରେ ବାଧା ଦେଇ ସନ୍ତୁଷ୍ଟ ନ ଥିଲେ । ଇଂରେଜ ବାଣିଜ୍ୟ ଜାହାଜରେ ଭରଣୀ ରୂପେ ବିନା ଭଡ଼ାରେ ବିଲାତରୁ ଲୁଣ ଆଣି ଏହି ଦେଶୀୟ ଶିଳ୍ପକୁ ଏକାବେଳକେ ଧ୍ୱଂସ କରି ଦେଇଥିଲେ । ଲବଣ ପରି ବସ୍ତ୍ରଶିଳ୍ପ ମଧ୍ୟ ଲୋପ ପାଇ ଯାଇଥିଲା ।

ଇଂରେଜମାନେ ପ୍ରଥମେ ଓଡ଼ିଶାକୁ ଆସିଲା ବେଳେ ଅନେକ ପ୍ରତିପତ୍ତିଶାଳୀ ସାମନ୍ତ ସେମାନଙ୍କୁ ସ୍ୱାଗତ କରିଥିଲେ । ସେମାନେ ମରହଟ୍ଟାମାନଙ୍କର କୁଶାସନରୁ ମୁକ୍ତ ହୋଇ ଥିଲେ । ମାତ୍ର ବ୍ରିଟିଶମାନଙ୍କ ଆର୍ଥିକ ଶୋଷଣନୀତି ଓ ଅସାଧୁ କର୍ମଚାରୀଙ୍କ ଅତ୍ୟାଚାର ଶତ ବର୍ଷର ମରହଟ୍ଟା ଶାସନ ଅପେକ୍ଷା ଲୋକଙ୍କୁ ଅଧିକ ବାଧିଲା । ସେଥିଲାଗି ୧୮୧୭ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାକୁ କେନ୍ଦ୍ର କରି ପାଇକ ବିଦ୍ରୋହ ଜେଳ ଉଠିଲା ।

ସିପାହୀ ବିଦ୍ରୋହର ଚାଳିଶ ବର୍ଷ ପୂର୍ବରୁ ପାଇକ ବିଦ୍ରୋହ ଆରମ୍ଭ ହୋଇଥିଲା । ସିପାହୀ ବିଦ୍ରୋହ ମୂଳରେ ଯେଉଁ ଭଳି କାରଣ ସବୁ ଥିଲା, ତାହାଠାରୁ ବ୍ୟାପକତର କାରଣମାନ ଏହା ପଛରେ ଥିଲା । ସରକାରଙ୍କ ମୁଦ୍ରାନୀତି, ଭୂରାଜସ୍ୱ ବ୍ୟବସ୍ଥା, ଲବଣ କର ଓ ବସ୍ତ୍ରଶିଳ୍ପ ବିରୋଧୀ କାର୍ଯ୍ୟ ଜନସାଧାରଣଙ୍କ ଆର୍ଥିକ ଜୀବନର ଭିତ୍ତି ଦୋହଲାଇ ଦେଇଥିଲା । ସେମାନେ ବିଦେଶୀ ଶାସନ ବିରୋଧରେ ଉତ୍ତେଜିତ ହୋଇଥିଲେ । ମେଜର ଫ୍ଲେଚର ନାମକ ଜଣେ ଇଂରେଜ ଶାସନକର୍ତ୍ତା ପାଇକମାନଙ୍କ ଜାଗିରି ଉଠେଇ ଦେବାରୁ ସେମାନେ ଏହି ଉତ୍ତେଜନାର ସୁଯୋଗରେ ସରକାରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । ଏହା ୧୮୧୭ରୁ ୧୮୫୭ ପର୍ଯ୍ୟନ୍ତ ଲାଗି ରହିଥିଲା । ସିପାହୀ ବିଦ୍ରୋହର ବାତା-ବରଣରେ ସମ୍ବଲପୁର ଓ ସିଂହଭୂମି ଅଞ୍ଚଳରେ ବିଦ୍ରୋହ ଦେଖା ଦେଇଥିଲା । ଏହି ସମସ୍ତ ବିଦ୍ରୋହ କେତେବେଳେ ଶକ୍ତି ପ୍ରୟୋଗ କରି, ପୁଣି କେତେବେଳେ କୂଟନୀତି ଅବଲମ୍ବନ କରି ଇଂରେଜମାନେ ଦମନ କରିଥିଲେ । ୧୮୬୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହିପରି ଖଣ୍ଡ ବିଦ୍ରୋହ ଲାଗି ରହିଥିଲା । ଏଥିରେ ଶାସକଙ୍କର ଅପକର୍ମ ବିରୋଧରେ ଲୋକଙ୍କ ତୀବ୍ର ଅସନ୍ତୋଷହିଁ ପ୍ରକାଶ ପାଇଥିଲା । କିନ୍ତୁ ଏହା ପଛରେ କୌଣସି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନ ଥିଲା । ଇଂରେଜ ଶାସନ ପ୍ରତି ବିରାଗ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଲୋକଙ୍କ ମନରେ ଇଂରେଜୀ ଶିକ୍ଷା ପ୍ରତି ସନ୍ଦେହ ଜନ୍ମିଥିଲା । ଅନ୍ୟ ଦିଗରେ ଓଡ଼ିଆଙ୍କ ପ୍ରତି ମଧ୍ୟ ଇଂରେଜ ଶାସକଙ୍କ ମନରେ ଅବିଶ୍ୱାସ ଭାବ ବଢ଼ିଥିଲା । କଠୋର ଶାସନ ଲାଗି ପ୍ରାକୃତିକ ଓଡ଼ିଶାକୁ ସେମାନେ ଖଣ୍ଡ ଖଣ୍ଡ କରି ବିଭିନ୍ନ ପ୍ରାନ୍ତୀୟ ରାଜ୍ୟ ସହିତ ଯୋଡ଼ି ଦେଇଥିଲେ । ବହୁ ସଂଖ୍ୟାରେ ସାମନ୍ତ ଶାସକ ସୃଷ୍ଟି କରି ଆତ୍ମରକ୍ଷଣ ସହିତ ଭାଙ୍ଗି ଦେଇଥିଲେ ।

ଊନବିଂଶ ଶତକ ସାରା ଦୁର୍ଭିକ୍ଷ ମହାମାରୀ ଦେଶଯାକ ଲାଗି ରହିଥିଲା । ଏସବୁ ଏକ ପ୍ରକାର ମନୁଷ୍ୟକୃତ ଥିଲା । ଅତି ପ୍ରାଚୀନ କାଳରୁ କୃଷି ଜଳସେଚ

ବ୍ୟବସ୍ଥା ଏ ଦେଶରେ ହୋଇଥିଲା । ଏହାର ଦାୟିତ୍ୱ ଗ୍ରାମର ମୁଖ୍ୟଙ୍କ ହାତରେ ଥିଲା, ମାତ୍ର ଇଂରେଜସୃଷ୍ଟ ସାମନ୍ତଗଣ କେବଳ ଚଢ଼ା ହାରରେ ଖଜଣା ଆଦାୟ୍ରୁଭାର ବହିଥିଲେ । ଜଳସେଚନ ପ୍ରତି କୌଣସି ଦୃଷ୍ଟି ଦେବାର ଅବକାଶ ସେମାନଙ୍କର ନଥିଲା । ଜଳସେଚନ ଅଭାବରେ କୃଷିକର୍ମ ଅନିଶ୍ଚିତ ଅବସ୍ଥାରେ ପଡ଼ିଥିଲା । ଫସଲହାନି ଲାଗି ରହିଥିଲା । ଲୋକେ ଖାଇବାକୁ ନ ପାଇ ମରୁଥିଲେ । ୧୮୬୫-୬୬ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ସବୁଠାରୁ ଭୟଙ୍କର ଆକାର ଧରିଥିଲା । ଏଥିରେ ତ୍ରିଭାଗରୁ ଭାଗେ ଓଡ଼ିଆ ମରିଥିଲେ । ଲୋକ ଅଭାବରେ ଚାଷଜମି ପଡ଼ିଆ ପଡ଼ିଥିଲା । ହଣ୍ଟର ନିଜ ବିବରଣୀରେ ଲେଖିଛନ୍ତି—'ବାଲେଶ୍ୱର ଜିଲ୍ଲା ଭଲ ଜନବହୁଳ ଅଞ୍ଚଳରେ ୧୮୬୫-୬୬ସାଲ ଦୁର୍ଭିକ୍ଷ ପୂର୍ବରୁ ଚାଷଯୋଗ୍ୟ ଜମି ପଡ଼ିଆ ପଡ଼ିନ ଥିଲା । ମାତ୍ର ଲୋକ ଅଭାବରୁ ଏହି ଦୁର୍ଭିକ୍ଷ ପରେ ବହୁ ଜମି ପଡ଼ିଆ ପଡ଼ି ରହିଥିଲା । ବାଲେଶ୍ୱର ଜିଲ୍ଲାର ମୋଟ ସାତଲକ୍ଷ ବତିଶ ହଜାର ଲୋକଙ୍କ ମଧ୍ୟରୁ ପ୍ରାୟ ଦୁଇଲକ୍ଷ ସତଚାଳିଶ ହଜାର ଏହି କରାଳ ଦୁର୍ଭିକ୍ଷରେ ମରିଥିଲେ ।' ୧୮

## ଶିକ୍ଷା ସଂସ୍କୃତି ଓ ସାହିତ୍ୟ

ସମଗ୍ର ଊନବିଂଶ ଶତକରେ ଜାତୀୟ ଜୀବନ ଘୋର ଅନ୍ଧକାର ଓ ଅବସାଦ ଭିତରେ ଗତି କରୁଥିଲା ବେଳେ ନୂତନ ଶିକ୍ଷାର ଆଲୋକ ଅତି ମନ୍ଥର ଗତିରେ ପ୍ରବେଶ କରିଥିଲା । ପ୍ରାଚୀନ ପଦ୍ଧତି ଅନୁସାରେ ଆରବୀ ଓ ଫାର୍ସୀ ଶିକ୍ଷା ପାଇଁ ସହରରେ ମକ୍ତବ ଓ ଧନୀ ସାମନ୍ତଙ୍କ ପୃଷ୍ଠପୋଷକତାରେ ସଂସ୍କୃତ ଚଉପାଢ଼ି ଉଚ୍ଚଶିକ୍ଷା ଦାନ କରୁଥିଲା । ସାନ ବଡ଼ ଅନେକ ଗାଁରେ ଅସଂଖ୍ୟ ଚାଟଶାଳୀ ଥିଲା । ସରଳ ଗଣିତ, ଅକ୍ଷର ଓଷଧ, ଚଉପଦୀ ଏଥିରେ ଶିକ୍ଷା ଦିଆ ଯାଉଥିଲା । ଏହି ପ୍ରାଚୀନ ଧାରାରେ ଶିକ୍ଷାଲାଭ କରି ଅନେକ କବି କାବ୍ୟଚର୍ଚ୍ଚା କରିଥିଲେ । ଏମାନଙ୍କ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ଯଦୁମଣି ଓ ଭୀମଭୋଇ ଅତି ପରିଚିତ । କବିସୂର୍ଯ୍ୟ ଓ ଗୋପାଳକୃଷ୍ଣଙ୍କ ଚମ୍ପୂ ଓ ଓଡ଼ଶୀ ସଙ୍ଗୀତ ପ୍ରାଚୀନ ଶୈଳୀରେ ଲେଖା ହୋଇ ବି ଆଧୁନିକ ପ୍ରାଣଧର୍ମରେ ଉଜ୍ଜ୍ୱଳ । ଉଚ୍ଚକୋଟୀର ଗୀତ କବିତା ରୂପେ ଏହାର ମହତ୍ତ୍ୱ ଖଣ୍ଡିତ ହେବାର ଆଶଙ୍କା ନାହିଁ ।

ଓଡ଼ିଶାକୁ ଆସିବାର ପ୍ରାୟ ଶହେ ବର୍ଷ ପୂର୍ବରୁ ଇଂରେଜମାନେ ବଙ୍ଗ, ମାନ୍ଦ୍ରାଜ ଆଦି ଶାସନ କରିଥିଲେ । ଊନବିଂଶ ଶତକର ଦ୍ୱିତୀୟ ପାଦ ବେଳକୁ ଭାରତବାସୀଙ୍କ ଲାଗି ଏକ ସୁପରିକଳ୍ପିତ ଶିକ୍ଷା ପଦ୍ଧତିର ପରିକଳ୍ପନା ପ୍ରକାଶ ପାଇଥିଲା । ବିଶେଷଭାବରେ ରାଜନୀତିକ ଓ ଧାର୍ମିକ ଦୃଷ୍ଟିରୁ ଏହାର ଆବଶ୍ୟକତା ବିଚାର କରି ଯାଉଥିଲା । କେତେକ ମନେ କରୁଥିଲେ ସୁଶାସନ ପାଇଁ ଶିକ୍ଷା ଏକାନ୍ତ ପ୍ରୟୋଜନ । ଆଧୁନିକ ପାଶ୍ଚାତ୍ୟ ଶିକ୍ଷା ପ୍ରସାର ଫଳରେ ଭାରତୀୟଙ୍କ ମନରେ ଇଂରେଜ ଶାସନ ପ୍ରତି ଅସନ୍ତୋଷ

ଭାବ ପ୍ରକାଶ ପାଇବ ବୋଲି ଆଉ କେତେକ ଆଶଙ୍କା କରୁଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାରରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ମିଶନାରୀମାନେ ଶିକ୍ଷା ବିସ୍ତାର ସପକ୍ଷରେ ଥିଲେ । ମାତ୍ର ଏହା ଧର୍ମ ନିରପେକ୍ଷ ହେଲେ ସେମାନେ ପ୍ରମାଦ ଗଣୁଥିଲେ । ୧୯ ଏହି ସମସ୍ତ ଭୂମିକା ଘେନି ଓଡ଼ିଶାରେ ପ୍ରଥମେ ଖ୍ରୀଷ୍ଟୀୟାନ ଧର୍ମ ପ୍ରଚାରକ ଓ ପରେ ସରକାରଙ୍କ ଚେଷ୍ଟାରେ ନୂତନ ପଦ୍ଧତିରେ ଶିକ୍ଷା ପ୍ରସାର ଆରମ୍ଭ ହୋଇଥିଲା । ଏଥିପ୍ରତି ଲୋକଙ୍କଠାରେ କୌଣସି ଆଗ୍ରହ ନଥିବାରୁ ସରକାରଙ୍କ ପକ୍ଷରୁ ବିଶେଷ ତତ୍ପରତା ପ୍ରକାଶ ପାଇ ନଥିଲା । ୧୮୨୨ ଖ୍ରୀଷ୍ଟାବ୍ଦରେ ରେଭରେଣ୍ଡ କ୍ୟାମ୍ପବେଲ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ ଓଡ଼ିଶା ଆସି ମୁଦ୍ରାଯନ୍ତ୍ର ଓ ଆଧୁନିକ ଶିକ୍ଷା ପ୍ରବର୍ତ୍ତନ ଚେଷ୍ଟା କରିଥିଲେ । ୧୮୨୨-୨୩ ମଧ୍ୟରେ ମିସ୍‌ନାରୀଙ୍କ ଚେଷ୍ଟାରେ କେତେଗୁଡ଼ିଏ ସ୍କୁଲ ବସିଥିଲା । ମାତ୍ର ଏହି ବିଦ୍ୟାଳୟକୁ କେତେକ ନୀଚ ଜାତି ଓ ଅନାଥ ବାଳକ ବ୍ୟତୀତ କେହି ପଢ଼ିବାକୁ ଆସୁ ନଥିଲେ ।

ଏହି ସମୟର ଶିକ୍ଷାର ଅବସ୍ଥା ଘେନି ପୂର୍ଣ୍ଣ ବିବରଣୀ ଦେବାକୁ ଯାଇ ହଣ୍ଟର ଲେଖିଛନ୍ତି—'୧୮୩୮ ପର୍ଯ୍ୟନ୍ତ ଓଡ଼ିଶାରେ ଯଥାର୍ଥରେ ସ୍କୁଲ ପଦବାଚ୍ୟ କୌଣସି ଅନୁଷ୍ଠାନ ନଥିଲା । ସେହି ବର୍ଷ ପୁରୀରେ ସରକାରୀ ସାହାଯ୍ୟରେ ଗୋଟିଏ ସ୍କୁଲ ଓ ଗୋଟିଏ ଟୋଲ ବସିଲା । ଏହା ପୂର୍ବରୁ ସରକାରଙ୍କ କୌଣସି ଶିକ୍ଷା ବିଭାଗ ନଥିଲା । ଏହିଠାରୁ ଶିକ୍ଷା ବିଭାଗ କୋଡ଼ିଏ ବର୍ଷ କାମ କଲାପରେ ୧୮୫୯ ପର୍ଯ୍ୟନ୍ତ ଅଣତିରିଶ ଗୋଟିଏ ବିଦ୍ୟାଳୟ ଓଡ଼ିଶାରେ ବସି ପାରିଥିଲା ।' ତିରିଶ ଲକ୍ଷ ଲୋକସଂଖ୍ୟା ବିଶିଷ୍ଟ ପ୍ରତ୍ୟକ୍ଷ ବ୍ରିଟିଶ ଶାସନାଧୀନ ଅଂଚଳରେ ଶିକ୍ଷାର ଏହି କ୍ଷୀଣ ଅଗ୍ରଗତି ଏକାନ୍ତ ହାସ୍ୟକର ଥିଲା । ଏହାର କାରଣ ବିଶ୍ଳେଷଣ କରି ହଣ୍ଟର ଲେଖିଛନ୍ତି - 'ସତକଥା ହେଉଛି, ସମଗ୍ର ଜାତି ଆମ ବିରୋଧରେ ଥିଲେ । ଏହି ଯେଉଁତିକ ସଫଳତା ଆମ ସ୍କୁଲ ହାସଲ କରିଥିଲା, ସେଥିରେ ଓଡ଼ିଆ-ମାନଙ୍କର କିଛି ଦାନ ନ ଥିଲା । ମାତ୍ର ଯେଉଁ ବଙ୍ଗାଳୀ ପରିବାର ଆମ କୋର୍ଟ କଚେରୀରେ କାମ କରିବାକୁ ଅଣା ହୋଇଥିଲେ, ସେଇମାନଙ୍କଠାରେ ଏହି ସ୍କୁଲ ଭର୍ତ୍ତି ଥିଲା । ୧୮୬୮ ଖ୍ରୀଷ୍ଟାବ୍ଦରେ କଲିକତା ବିଶ୍ୱବିଦ୍ୟାଳୟର ସାମାନ୍ୟ ପ୍ରବେଶିକା ପରୀକ୍ଷାରେ ୫୮ ଜଣ ଛାତ୍ର ଉତ୍ତୀର୍ଣ୍ଣ ହୋଇଥିଲେ । ଏମାନଙ୍କ ମଧ୍ୟରୁ ପ୍ରକୃତରେ ୧୦ ଜଣ ଓଡ଼ିଆ ଓ ଅବଶିଷ୍ଟ ୪୮ ଜଣ ଏହି ବିଦେଶାଗତ ପରିବାର ଛାତ୍ର ଥିଲେ । ତଥାପି ଊନବିଂଶ ଶତକର ଶେଷଆଡ଼କୁ କଟକ, ପୁରୀ ଓ ବାଲେଶ୍ୱରକୁ କେନ୍ଦ୍ରକରି ଆଧୁନିକ ଶିକ୍ଷାର କ୍ରମବିକାଶ ଘଟିଥିଲା ।' ୨୦

ମୁଦ୍ରାଯନ୍ତ୍ରର ଦାନ ଏଯୁଗର ଶିକ୍ଷା ଓ ସଂସ୍କୃତି ବିସ୍ତାରରେ ଅନସ୍ୱୀକାର୍ଯ୍ୟ । ପ୍ରଥମେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ଓଡ଼ିଆ ମୁଦ୍ରାଯନ୍ତ୍ର ସ୍ଥାପନ କରିଥିଲେ । ୧୮୩୭ ଖ୍ରୀଷ୍ଟାବ୍ଦରେ କଟକରେ ମିସନ୍ ପ୍ରେସ ସ୍ଥାପିତ ହୋଇଥିଲା । ମାତ୍ର ଶ୍ରୀରାମପୁରରୁ ୧୮୧୧ରୁ ଏମାନେ

ବାଇବେଲ ମୁଦ୍ରିତ ଆକାରରେ ପ୍ରଚାର କରିଥିଲେ । କୃଷ୍ଣଦାସ ନାମକ ଜଣେ ଖ୍ରୀଷ୍ଟିୟାନ ଓଡ଼ିଆ ପଣ୍ଡିତ ବାଇବେଲ ଅନୁବାଦରେ ସାହାଯ୍ୟ କରିଥିଲେ । ୧୮୩୮ରେ ସଟନ୍ ସାହେବଂକ ଦ୍ୱାରା ଜନ୍‌ବ୍ରୁନ୍ୟାନ୍‌ଙ୍କ ପିଲ୍‌ଗ୍ରିମ୍‌ସ ପ୍ରୋଗ୍ରେସ୍ ଓଡ଼ିଆରେ ପ୍ରକାଶ ପାଇଥିଲା । ଏହା ଦ୍ୱିତୀୟ ଓଡ଼ିଆ ଗଦ୍ୟ ପୁସ୍ତକ । ଏହି ଏବୁ କାର୍ଯ୍ୟ ଲାଗି ମିସନାରୀମାନଙ୍କୁ କୃତଜ୍ଞତା ଜଣାଇ ଫକୀରମୋହନ ଉତ୍କଳ ଭ୍ରମଣ'ରେ ଲେଖିଛନ୍ତି

ଆଗେ ଆଗେ ଆସିଥିଲେ ଯେତେ ମିସ୍‌ନାରୀ
ସେହି ସବୁ ସାହେବଙ୍କୁ ପୂଜା କରେଁ ଭାରି ।
ପ୍ରଥମରେ ପଢ଼ାଇଲେ ଇସ୍କୁଲିଆ ପାଠ,
ପ୍ରଥମରେ ଦେଖାଇଲେ ଛାପାଖାନା ବାଟ ।
ଛାପା ପୋଥି ଆଣି ଦେଖାଇଲେ ପ୍ରଥମରେ,
ଔଷଧ ବାଣ୍ଟିଲେ ପ୍ରଥମରେ ଘରେ ଘରେ ।' ୨୧

ନୂତନ ଶିକ୍ଷା ପ୍ରଚଳନ ଲାଗି ପାଠ୍ୟ ପୁସ୍ତକ ଓ ସାଧାରଣ ଛପା ପୁସ୍ତକର ଅଭାବ ଏକ ବଡ଼ ସମସ୍ୟା ଥିଲା । ପୂର୍ବେ ଗ୍ରାମର ପୋଥି ଗାଦି ଗ୍ରନ୍ଥାଗାର ଓ ପୋଥି ଉଚପାଠ୍ୟ ପୁସ୍ତକର କାର୍ଯ୍ୟ କରୁଥିଲା । ମାତ୍ର ନୂତନ ବିଦ୍ୟାଳୟରେ ଏହା କୌଣସି କାମରେ ଲାଗିଲା ନାହିଁ । ପୁଣି ସରକାରୀ ବା ମିସ୍‌ନାରୀ ସ୍କୁଲର ଅଧିକାଂଶ ଛାତ୍ର ବଙ୍ଗଦେଶା-ଗତ ଥିଲେ । ସେମାନଙ୍କୁ ବଙ୍ଗଭାଷାରେ ଶିକ୍ଷାଦାନ ଲାଗି ଦାବୀ ହେଉଥିଲା । ଏହାକୁ କାର୍ଯ୍ୟକାରୀ କରିବା ଲାଗି ମଧ୍ୟ କିଛି ବାଧା ନ ଥିଲା । ଶିକ୍ଷା ଓ ଶାସନ କ୍ଷେତ୍ରରେ ବଙ୍ଗୀୟ ମାନେ ପ୍ରତିଷ୍ଠିତ ଥିଲେ । ଓଡ଼ିଆ ସାହିତ୍ୟର ଐତିହ୍ୟ ବିଷୟରେ ଏମାନେ ସଚେତନ ନ ଥିଲେ । କତିପୟ ଉଚ୍ଚ ଇଂରେଜ କର୍ମଚାରୀଙ୍କଠାରୁ ମଧ୍ୟ ଏହା ଆଶା କରାଯାଉ ନ ଥିଲା । ଏହି ସମୟରେ ୧୮୬୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ବଙ୍ଗବାସୀଙ୍କ ପକ୍ଷରୁ ବିଦ୍ୟାଳୟରେ ଓଡ଼ିଆ ପରିବର୍ତ୍ତିରେ ବଙ୍ଗଳା ଚଳାଇବା ଲାଗି ଆନ୍ଦୋଳନ ହୋଇଥିଲା । ଏହା ଓଡ଼ିଆମାନଙ୍କ ମଧ୍ୟରେ ତିକ୍ତତା ସୃଷ୍ଟି କରିଥିଲା । ୨୨ ବାଲେଶ୍ୱର ଭଣ୍ଡାରୀକୁଲର ସ୍କୁଲର ପଣ୍ଡିତ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ମହାଶୟ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ବୋଲି ଏକ ଗ୍ରନ୍ଥ ପ୍ରଚାର କରିଥିଲେ । କଲିକତାରୁ ପ୍ରକାଶିତ ଇଣ୍ଡିଆନ ମିରର୍ ଭଳି ପ୍ରତିଷ୍ଠିତ ସମ୍ବାଦପତ୍ର ଏ ମତର ସମର୍ଥନ କରୁଥିଲେ । ବିଖ୍ୟାତ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ରଙ୍କ ଭଳି ବଙ୍ଗୀୟ ପଣ୍ଡିତଙ୍କର ମଧ୍ୟ ଏହାହିଁ ମତଥିଲା । ୧୮୬୫ ଖ୍ରୀଷ୍ଟାବ୍ଦରେ କଟକ ଡିବେଟିଂ ସୋସାଇଟିର ଏକ ସଭାରେ ଭାଷଣ ପ୍ରସଙ୍ଗରେ ସେ କହିଥିଲେ, 'ଯେବେ ଉତ୍କଳରେ ବଙ୍ଗଭାଷା ପ୍ରଚଳିତ ହୁଏ, ତେବେ ବଙ୍ଗଭାଷାର ପୁସ୍ତକମାନ ଏଠାରେ ଚଳିବ ; ଆଉ ଏଠା ଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇ ପାରିବେ ।' ପୁଣି ସେ ଦୃଷ୍ଟାନ୍ତ ଦେଇଥିଲେ, 'ଏହି ଛଅମାସ ମଧ୍ୟରେ

ପ୍ରାୟ ତିନିଶହ ଖଣ୍ଡ ବଙ୍ଗଳା ପୁସ୍ତକ ମୁଦ୍ରିତ ହୋଇଅଛି । କିନ୍ତୁ ଉତ୍କଳରେ ତିନି ଚାରିଖଣ୍ଡରୁ ଅଧିକ ପୁସ୍ତକ ମୁଦ୍ରିତ ହୋଇନାହିଁ । ଏଥିରୁ ପ୍ରମାଣିତ ହେଉଛି, ଉତ୍କଳଭାଷା କଦାପି ଉନ୍ନତ ହୋଇ ନ ପାରେ ।' ୨୩ ପ୍ରକାଶିତ ପୁସ୍ତକ ସ୍ୱଳ୍ପତା ସମ୍ବନ୍ଧରେ ଶ୍ରୀଯୁକ୍ତ ମିତ୍ରଙ୍କ ଉକ୍ତିରେ କିଛିହେଲେ ଅତିରଞ୍ଜନ ନ ଥିଲା । ୧୮୬୬ରେ ଉତ୍କଳ ଦୀପିକାରେ ବିଜ୍ଞାପିତ ଓଡ଼ିଆ ଗ୍ରନ୍ଥର ତାଲିକାରୁ ଜଣାଯାଏ, ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥ ଓ ବାଇବେଲ ବ୍ୟତୀତ ଏହି କେତୋଟି ଗ୍ରନ୍ଥ ଓଡ଼ିଆରେ ପ୍ରକାଶିତ ହୋଇଥିଲା । ଯଥା—(୧) ଓକିଲ ଓ ମୁକ୍ତାରଙ୍କ ନୂତନ ଦସ୍ତୁର ଅମଲ ; (୨) ୧୮୫୯ ମସିହାର ୧୪ ଧାରା, (୩) ରେଜିଷ୍ଟ୍ରେସନ ଫି ସିଡୁଲ, (୪) ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଶକୁନ୍ତଳା ଉପଖ୍ୟାନର ଓଡ଼ିଆ ଅନୁବାଦ । ଶେଷୋକ୍ତ ଗ୍ରନ୍ଥଟି ମାତ୍ର ସାହିତ୍ୟର ଅନ୍ତର୍ଗତ । ୨୪

ପୁସ୍ତକ ପ୍ରକାଶର ସ୍ୱଳ୍ପତା ସତ୍ତ୍ୱେ ଊନବିଂଶ ଶତକର ଶେଷ ଆଡ଼କୁ ଯଥାର୍ଥରେ ଆଧୁନିକ ଓଡ଼ିଆ ସଂସ୍କୃତିର ସଂଗଠନ ଲାଗି ଉଦ୍ୟମ ଆରମ୍ଭ ହୋଇଥିଲା । ସହରରେ ଆଧୁନିକ ଶିକ୍ଷାପ୍ରାପ୍ତ ସଂସ୍କୃତି ପ୍ରେମୀ ବ୍ୟକ୍ତିଙ୍କ ଦଳ ବଢ଼ିଲା । ଏମାନଙ୍କ ଯତ୍ନରେ ବିଶେଷଭାବରେ ବାଲେଶ୍ୱର ଓ କଟକକୁ କେନ୍ଦ୍ର କରି ସାହିତ୍ୟ ସଭାମାନ ଗଠିତ ହୋଇଥିଲା । ସାହିତ୍ୟର ବିକାଶ ଲାଗି ଏହିମାନଙ୍କ ଚେଷ୍ଟାରେ ପତ୍ରିକା ପ୍ରକାଶ ଓ ମୁଦ୍ରାଯନ୍ତ୍ର ସ୍ଥାପନ ସମ୍ଭବ ହୋଇଥିଲା । ଏମାନଙ୍କ ପୂର୍ବରୁ ସାଧୁ ସୁନ୍ଦର ଦାସଙ୍କ କୁଞ୍ଜବର ପତ୍ରିକା ବା ମିସ୍‌ନାରୀଙ୍କ ଅରୁଣୋଦୟ ପତ୍ରିକା କେବଳ ଧର୍ମ ପ୍ରଚାର ଲାଗି କଳ୍ପିତ ହୋଇଥିଲା । ୧୮୬୬ ଖ୍ରୀଷ୍ଟାବ୍ଦ-ରେ ଗୌରୀଶଙ୍କରଙ୍କ ଉତ୍କଳଦୀପିକା ଓ ୧୮୬୮ରେ ଫକୀରମୋହନଙ୍କ ଉଦ୍ୟମରେ ବାଲେ-ଶ୍ୱରରୁ ପ୍ରକାଶିତ ସମ୍ବାଦବାହିକା ଜାତୀୟ ସଂସ୍କୃତିର ବିକାଶ ଲକ୍ଷ୍ୟ ପୋଷଣ କରିଥିଲା । ଓଡ଼ିଶାରେ ଓଡ଼ିଆ ଭାଷାର ପ୍ରାଧାନ୍ୟ ବଜାୟ ରଖିବାକୁ ଏମାନେ ଆନ୍ଦୋଳନ କରିଥିଲେ ।

ବାସ୍ତବ ପକ୍ଷରେ ୧୮୬୬ ଓଡ଼ିଶାର ଇତିହାସରେ ଏକ ସ୍ମରଣୀୟ ବର୍ଷ । କେବଳ ଭୟାବହ ନଅଙ୍କ ଦୁର୍ଭିକ୍ଷ ପାଇଁ ଏହା ସ୍ମରଣୀୟ ନୁହେ । ବ୍ରିଟିଶ୍ ଶାସନକର୍ତ୍ତାଙ୍କ ଦୃଷ୍ଟି ଏହି ଦୁର୍ଭିକ୍ଷ ପରଠାରୁ ଓଡ଼ିଶାର ସମସ୍ୟାବଳୀ ପ୍ରତି ସ୍ୱତନ୍ତ୍ର ଭାବରେ ଆକୃଷ୍ଟ ହୋଇଥିଲା । ଫକୀରମୋହନ ନିଜ ଅନୁଭୂତିରୁ ଊନବିଂଶ ଶତକର ଶେଷବର୍ଷ ଲେଖିଥିଲେ, 'ଯଦ୍ୟପି ଅଦ୍ୟାବଧି ୯୭ ବର୍ଷକାଳ ଯାବତ ଉତ୍କଳ ଭୂମି ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କ କରତଳନ୍ୟସ୍ତ ହୋଇଅଛି, ମାତ୍ର ସାକ୍ଷାତ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଆଶାନୁରୂପ ସାହାଯ୍ୟ ପ୍ରାପ୍ତି ଏହା ଅଦୃଷ୍ଟରେ ଘଟି ନ ଥିଲା । ଏହା ବଙ୍ଗଳା ହତାର ଗୋଟିଏ ବାଜେ ରପୋର୍ଟ ଜମିଦାରୀ ସ୍ୱରୂପ ଥିଲା । ଗତ ନଅଙ୍କର ଭୟଙ୍କର ଲୋକକ୍ଷୟକର ଦୁର୍ଭିକ୍ଷ ଉତ୍ତାରେ ଏହା ଉପରେ ଗଭର୍ଣ୍ଣମେଣ୍ଟଙ୍କର କୃପାଦୃଷ୍ଟି ପଡ଼ିବାର ସୂତ୍ରପାତ ।' ୨୫

ଏହି ସମୟରେ ଟି ଇ. ରେଭେନ୍‌ସା ଓଡ଼ିଶାରେ କମିଶନର ଥିଲେ । ତାଙ୍କ

ଉତ୍ସାହ ଓ ଆୟୋଜନରେ ଶିକ୍ଷା ବିସ୍ତାର କିଞ୍ଚିତ ଦ୍ରୁତ ହୋଇଥିଲା । ସାହିତ୍ୟର ବିକାଶ ପାଇଁ ସରକାରୀ ପୃଷ୍ଠପୋଷକତା ମିଳିଥିଲା । ରେଭେନ୍ସାଙ୍କ ଉଦ୍ୟମରେ ସଂକଳିତ ଓଡ଼ିଆ ସାହିତ୍ୟର ବିବରଣୀ ୧୮୭୦ରେ ପ୍ରକାଶିତ ହଣ୍ଟରଙ୍କ ଇତିହାସରେ ସମାବେଶିତ ହୋଇ ରାଜକର୍ମଚାରୀଙ୍କ ଦୃଷ୍ଟିକୁ ଆସିଥିଲା । ସାଧାରଣ ଶିକ୍ଷା କ୍ଷେତ୍ରରେ ଓ କଚେରିରେ ଓଡ଼ିଆ ଭାଷା ପ୍ରଚଳିତ ହେଲା । ଫଳରେ ସାହିତ୍ୟର ବିକାଶ ଲାଗି ଅନୁକୂଳ ପରିବେଶ ସୃଷ୍ଟି ହେଲା ।

## ସାଂସ୍କୃତିକ ସମନ୍ୱୟର ଧାରା

ଊନବିଂଶ ଶତକର ଭାରତୀୟ ପୃଷ୍ଠଭୂମିରେ ଓଡ଼ିଶାର ସାଂସ୍କୃତିକ ଇତିହାସ ବର୍ଣ୍ଣନା ଏଠାରେ ଲକ୍ଷ୍ୟ ନୁହେଁ । ମାତ୍ର ଆଧୁନିକ କାବ୍ୟଧାରା ଓ ସେଥିସହିତ ଓତଃପ୍ରୋତଃ ଭାବରେ ଜଡ଼ିତ ଭାବଧାରାକୁ ଧାରଣାରେ ଆଣିବା ଲାଗି ଏହି ପ୍ରସଙ୍ଗର ଅବତାରଣା କରା ଯାଇଅଛି । ପ୍ରସଙ୍ଗ ଶେଷ କରିବା ପୂର୍ବରୁ ଇଂରେଜ ଶାସନର ଶିକ୍ଷାନୀତି, ପାଶ୍ଚାତ୍ୟ ସଭ୍ୟତାର ଆହରଣ, ତଥା ଦେଶର ସାମୂହିକ ସାଂସ୍କୃତିକ ବିକାଶରେ ଏହାର ଭୂମିକାର ସାମାନ୍ୟ ସୂଚନା ଦେବା ପ୍ରୟୋଜନ ।

ଭାରତୀୟ ଶିକ୍ଷା ନୀତି ପ୍ରସିଦ୍ଧ ଇଂରେଜ ଐତିହାସିକ ଓ ଲେଖକ ମ୍ୟାକଲେ ସ୍ଥିର କରିଥିଲେ । ସେ ନିଜ ଉଦ୍ଦେଶ୍ୟ ବ୍ୟକ୍ତ କରିବାକୁ ଯାଇ ଥରେ କହିଥିଲେ, 'ଆମେ ଯେଉଁ ନିୟୁତ ଭାରତବାସୀଙ୍କୁ ଶାସନ କରୁଛୁ, ତାଙ୍କ ଓ ଆମ ମଧ୍ୟରେ ପରସ୍ପରକୁ ବୁଝି ବୁଝାଇଲା ଭଳି ଏକ ଶ୍ରେଣୀ ସୃଷ୍ଟି କରିବାକୁ ଆମେ ବର୍ତ୍ତମାନ ଯେତେ ବେଶୀ ସମ୍ଭବ ଉଦ୍ୟମ କରିବା ଉଚିତ । ବ୍ୟକ୍ତିଭାବରେ ସେମାନେ ରକ୍ତ ଓ ବର୍ଣ୍ଣରେ ଭାରତୀୟ ହେବେ ; ମାତ୍ର ରୁଚି, ବିଚାର, ନୈତିକତା ଓ ମନରେ ହେବେ ଇଂରେଜ ।' ୨୬ ଏଥି ସହିତ ବିଖ୍ୟାତ ଫରାସୀ ଲେଖକ ଓ ଚିନ୍ତାନାୟକ ରୋମାଁ ରୋଲାଁ ବିଂଶ ଶତକର ଆଦ୍ୟପାଦରେ ଏହି ଶିକ୍ଷା ନୀତି ଫଳ ଘେନି ଯେଉଁ ସୂଚନା ଦେଇଥିଲେ ତାହା ପ୍ରଣିଧାନ ଯୋଗ୍ୟ । 'ଶତାବ୍ଦୀ ବ୍ୟାପୀ ଇଂରେଜ ଶାସନ ଫଳରେ ପାଶ୍ଚାତ୍ୟ-କରଣ ବହୁଦୂର ଗତି କରିଥିଲା । ମାତ୍ର ଏହାର ଭଲ ଦିଗ ପ୍ରକଟିତ ହୋଇ ନ ଥିଲା । ମାନସିକ ଶକ୍ତି ଦିଗରୁ ବିଚାର କଲେ, ଏହା ନିର୍ବୋଧ ଚପଳତାରେ ପରିଣତ ହୋଇଥିଲା । ଏହା ଚିନ୍ତାର ସ୍ୱାଧୀନତା ହରଣ କରିଥିଲା । ତରୁଣ ଚିନ୍ତାଧାରାକୁ ପ୍ରକୃତି ପରିବେଶରୁ ବିଚ୍ଛିନ୍ନ କରି ଦେଇଥିଲା । ସ୍ୱଜାତୀୟ ପ୍ରତିଭାକୁ ଘୃଣା କରିବାକୁ ଶିଖାଇ ଥିଲା ।' ୨୭

ଗୋଟିଏ ଦେଶ ଆଉ ଏକ ଦେଶର ସଭ୍ୟତା ଓ ସଂସ୍କୃତିରେ ପ୍ରଭାବିତ ହେବା କିଛି ନୂଆ କଥା ନୁହେଁ । ଆହରଣକାରୀ ଜାତି ପକ୍ଷରେ ଏଥିରେ ଅସ୍ପୃହଣୀୟ ବା ନିନ୍ଦାର କଥା ମଧ୍ୟ କିଛି ନାହିଁ । ମାତ୍ର ଦୁଇଟି କାରଣରୁ ଏହି ପ୍ରକାର ଆହରଣରୁ ଯେଉଁ ସୁଫଳ ଆଶା କରାଯାଏ, ତାହା ବ୍ୟାହତ ହୁଏ । ପ୍ରଥମତଃ ଆହରଣ ଯଦି ଚିନ୍ତାଶୂନ୍ୟ ଅନୁକରଣ

ହୁଏ—ତେବେ ତାହାର ଉଦ୍ଦେଶ୍ୟ ବିଫଳ ହୁଏ । ଦ୍ୱିତୀୟତଃ ଭାବ କ୍ଷେତ୍ରରେ ଆହରଣ ଯଦି ଜାତୀୟ ଜୀବନର ବାସ୍ତବ ପରିବେଶରେ ପ୍ରତିବିମ୍ବିତ ନ ହୁଏ, ବାସ୍ତବ ଜୀବନକୁ ରୂପାନ୍ତରିତ ନ କରେ, ତାହାହେଲେ ବିପରୀତ ଫଳ ଦେଖାଏ ।

ଆଧୁନିକ ଭାରତୀୟ ଚିନ୍ତାଧାରା ଓ ଇଉରୋପର ପୁନର୍ଜାଗରଣ ପରବର୍ତ୍ତୀ ଚିନ୍ତାଧାରାର ମୌଳିକ ପ୍ରେରଣା, ଆଦର୍ଶ ଏକ ଓ ଅଭିନ୍ନ । ସ୍ୱରୂପରେ ସାମଞ୍ଜସ୍ୟ ପ୍ରଚୁର । ତଥାପି ଏହାର ଆହରଣ ଭୂମି ଓ କ୍ରମବିକାଶର ସୋପାନରେ ଯଥେଷ୍ଟ ଭିନ୍ନତା ପରିଲକ୍ଷିତ ହୋଇଥାଏ । ଯେଉଁ ଇଉରୋପୀୟ ଭାବଧାରା ଷୋଡ଼ଶ ଶତକରୁ ଆରମ୍ଭ କରି ବିଂଶ ଶତକ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷର ବହୁ ସାଧନା, ନବ ନବ ଉଦ୍‌ଭାବନ ଓ ଆବିଷ୍କାର ଫଳରେ ସମ୍ଭବ ହୋଇଥିଲା, ତାହାର ସାରାଂଶ ଭାରତବର୍ଷର ଅଗ୍ରଗାମୀ ଶିକ୍ଷିତ ସମାଜ ଗୋଟିଏ ଶତାବ୍ଦୀ ବା ତାହାଠାରୁ ଆହୁରି ଊଣାକାଳ ମଧ୍ୟରେ ଗ୍ରହଣ କରିଥିଲେ । ଇଉରୋପର ବୈଜ୍ଞାନିକ, ଚିନ୍ତାନାୟକମାନଙ୍କୁ ଯେପରି ପ୍ରାଣପଣ କରି ଯୁଗ ଯୁଗର ଜମାଟ ଅନ୍ଧକାର, କୁସଂସ୍କାର, ଗୀର୍ଜାର ନିର୍ମମ ଶାସନ, ଓ ଦମନର ସମ୍ମୁଖୀନ ହେବାକୁ ହୋଇଥିଲା, ଆମ ଦେଶର ଏହି ନବ ଭାବଧାରାର ଧାରକ ଓ ପୋଷକମାନଙ୍କୁ ସେପରି ପ୍ରତିକୂଳ ଶକ୍ତି ବିରୋଧରେ ଆସିବାକୁ ପଡ଼ି ନ ଥିଲା । ଖୁବ୍ ବେଶି ହେଲେ ପ୍ରାଚୀନ ସମାଜର ବନ୍ଧନ ଗ୍ରାମରେ ଦୃଢ଼ ଥିଲା । ମାତ୍ର ନବ ଶିକ୍ଷିତଗଣ ସହରରେ ଠୁଳ ହେଉଥିଲେ । ସେଠାରେ କୁସଂସ୍କାରଗ୍ରସ୍ତ ସମାଜର କୌଣସି ବନ୍ଧନ ନଥିଲା । ଇଂରେଜ ଆଇନ୍ ସେମାନଙ୍କୁ ଆଗ୍ରହ ବିଗ୍ରହରେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲା । ସେମାନେ ଏହିରୂପେ ଦେଶର ବୃହତ୍ତର ଜୀବନରୁ ଏକ ପ୍ରକାର ବିଚ୍ଛିନ୍ନ ହୋଇ ପଡ଼ିଥିଲେ । ତେଣୁ ଆଧୁନିକ ବୈଜ୍ଞାନିକ ଭାବଧାରା କ୍ରମବିକାଶର ସୋପାନ ପଂକ୍ତିରେ ଯେପରି ବୃହତ୍ତର ଇଉରୋପୀୟ ସମାଜ ଜୀବନରେ ବ୍ୟାପକତର ପ୍ରଭାବ ବିସ୍ତାର କରିପାରିଥିଲା ; ବୃହତ୍ତର ସମାଜର ପ୍ରତିକୂଳ ଓ ଅନୁକୂଳ ବାତାବରଣରୁ ଶକ୍ତି ସଂଚୟ କରି ପାରିଥିଲା ; ତାହା ଆମ ଦେଶରେ ସମ୍ଭବ ହୋଇ ନଥିଲା । ଗୋଟିଏ କଥାରେ କହିଲେ, ଆଧୁନିକ ଭାବଧାରା ଇଉରୋପୀୟ ଜନସମାଜ ଭଳି ଭାରତୀୟ ଜନସମାଜରେ ପ୍ରବଳ ପ୍ରଭାବ ପକାଇ ପାରି ନଥିଲା । ଦେଶରେ ଅନେକ ତ ଅନ୍ଧାରରେ ରହିଲେ, ଯେଉଁମାନେ ଆଲୋକିତ ବୋଲି ପରିଗଣିତ ହେଉଥିଲେ, ସେମାନେ ଏକ ପ୍ରକାର ଛାୟାଲୋକ ବା ଆଲୋକ ଅନ୍ଧକାରର ଚପଳ ତରଙ୍ଗିତ ବେଳାଭୂମିରେହିଁ ରହିବାକୁ ବାଧ୍ୟ ହୋଇଥିଲେ ।

ଅସଙ୍ଗତିର ଆଉ ଏକ ଦିଗ ଥିଲା । ଆମ ଦେଶରେ କେତେକଙ୍କ ଚିନ୍ତାରେ ଯେପରି ଦ୍ରୁତ ପରିବର୍ତ୍ତନ ଘଟିଲା, ଜୀବନରେ ସେଇପରି ପରିବର୍ତ୍ତନ ଘଟିଲା ନାହିଁ । ଦେଶର ଦୁସ୍ଥ ବାସ୍ତବ ପରିବେଶ ସହିତ ଅଗ୍ରଗାମୀ ଚିନ୍ତାର ଦୃଢ଼ ଯୋଗସୂତ୍ର ସ୍ଥାପିତ ହେଲାନାହିଁ । ଇଉରୋପରେ ଚିନ୍ତା ବିପ୍ଳବ ଘଟିଲା, ସେଥି ସହିତ ଶିଳ୍ପ ବିପ୍ଳବ ବାସ୍ତବ

ଉତ୍ସାହ ଓ ଆୟୋଜନରେ ଶିକ୍ଷା ବିସ୍ତାର କାଙ୍କ୍ଷିତ ଦ୍ରୁତ ହୋଇଥିଲା । ସାହିତ୍ୟର ବିକାଶ ପାଇଁ ସରକାରୀ ପୃଷ୍ଠପୋଷକତା ମିଳିଥିଲା । ରେଭେନ୍‌ସାଙ୍କ ଉଦ୍ୟମରେ ସଙ୍କଳିତ ଓଡ଼ିଆ ସାହିତ୍ୟର ବିବରଣୀ ୧୮୭୦ରେ ପ୍ରକାଶିତ ହଣ୍ଟରଙ୍କ ଇତିହାସରେ ସମାବେଶିତ ହୋଇ ରାଜକର୍ମଚାରୀଙ୍କ ଦୃଷ୍ଟିକୁ ଆସିଥିଲା । ସାଧାରଣ ଶିକ୍ଷା କ୍ଷେତ୍ରରେ ଓ କଚେରୀରେ ଓଡ଼ିଆ ଭାଷା ପ୍ରଚଳିତ ହେଲା । ଫଳରେ ସାହିତ୍ୟର ବିକାଶ ଲାଗି ଅନୁକୂଳ ପରିବେଶ ସୃଷ୍ଟି ହେଲା ।

## ସାଂସ୍କୃତିକ ସମନ୍ୱୟର ଧାରା

ଊନବିଂଶ ଶତକର ଭାରତୀୟ ପୃଷ୍ଠଭୂମିରେ ଓଡ଼ିଶାର ସାଂସ୍କୃତିକ ଇତିହାସ ବର୍ଣ୍ଣନା ଏଠାରେ ଲକ୍ଷ୍ୟ ନୁହେଁ । ମାତ୍ର ଆଧୁନିକ କାବ୍ୟଧାରା ଓ ସେଥିସହିତ ଓତଃପ୍ରୋତଃ ଭାବରେ ଜଡ଼ିତ ଭାବଧାରାକୁ ଧାରଣାରେ ଆଣିବା ଲାଗି ଏହି ପ୍ରସଙ୍ଗର ଅବତାରଣା କରା ଯାଇଅଛି । ପ୍ରସଙ୍ଗ ଶେଷ କରିବା ପୂର୍ବରୁ ଇଂରେଜ ଶାସନର ଶିକ୍ଷାନୀତି, ପାଶ୍ଚାତ୍ୟ ସଭ୍ୟତାର ଆହରଣ, ତଥା ଦେଶର ସାମୂହିକ ସାଂସ୍କୃତିକ ବିକାଶରେ ଏହାର ଭୂମିକାର ସାମାନ୍ୟ ସୂଚନା ଦେବା ପ୍ରୟୋଜନ ।

ଭାରତୀୟ ଶିକ୍ଷା ନୀତି ପ୍ରସିଦ୍ଧ ଇଂରେଜ ଐତିହାସିକ ଓ ଲେଖକ ମ୍ୟାକଲେ ସ୍ଥିର କରିଥିଲେ । ସେ ନିଜ ଉଦ୍ଦେଶ୍ୟ ବ୍ୟକ୍ତ କରିବାକୁ ଯାଇ ଥରେ କହିଥିଲେ, 'ଆମେ ଯେଉଁ ନିୟୁତ ଭାରତବାସୀଙ୍କୁ ଶାସନ କରୁଛୁ, ତାଙ୍କ ଓ ଆମ ମଧ୍ୟରେ ପରସ୍ପରକୁ ବୁଝି ବୁଝାଇଲା ଭଳି ଏକ ଶ୍ରେଣୀ ସୃଷ୍ଟି କରିବାକୁ ଆମେ ବର୍ତ୍ତମାନ ଯେତେ ବେଶୀ ସମ୍ଭବ ଉଦ୍ୟମ କରିବା ଉଚିତ । ବ୍ୟକ୍ତିଭାବରେ ସେମାନେ ରକ୍ତ ଓ ବର୍ଣ୍ଣରେ ଭାରତୀୟ ହେବେ ; ମାତ୍ର ରୁଚି, ବିଚାର, ନୈତିକତା ଓ ମନରେ ହେବେ ଇଂରେଜ ।' ୨୨ ଏଥି ସହିତ ବିଖ୍ୟାତ ଫରାସୀ ଲେଖକ ଓ ଚିନ୍ତାନାୟକ ରୋମାଁ ରୋଲାଁ ବିଂଶ ଶତକର ଆଦ୍ୟପାଦରେ ଏହି ଶିକ୍ଷା ନୀତି ଫଳ ଦେଇ ଯେଉଁ ସୂଚନା ଦେଇଥିଲେ ତାହା ପ୍ରଣିଧାନ ଯୋଗ୍ୟ । 'ଶତାବ୍ଦୀ ବ୍ୟାପୀ ଇଂରେଜ ଶାସନ ଫଳରେ ପାଶ୍ଚାତ୍ୟ-କରଣ ବହୁଦୂର ଗତି କରିଥିଲା । ମାତ୍ର ଏହାର ଭଲ ଦିଗ ପ୍ରକଟିତ ହୋଇ ନ ଥିଲା । ମାନସିକ ଶକ୍ତି ଦିଗରୁ ବିଚାର କଲେ, ଏହା ନିର୍ବୋଧ ଚପଳତାରେ ପରିଣତ ହୋଇଥିଲା । ଏହା ଚିନ୍ତାର ସ୍ୱାଧୀନତା ହରଣ କରିଥିଲା । ତରୁଣ ଚିନ୍ତାଧାରାକୁ ପ୍ରକୃତ ପରିବେଶରୁ ବିଚ୍ଛିନ୍ନ କରି ଦେଇଥିଲା । ସ୍ୱଜାତୀୟ ପ୍ରତିଭାକୁ ଘୃଣା କରିବାକୁ ଶିଖାଇ ଥିଲା ।' ୨୨

ଗୋଟିଏ ଦେଶ ଆଉ ଏକ ଦେଶର ସଭ୍ୟତା ଓ ସଂସ୍କୃତିରେ ପ୍ରଭାବିତ ହେବା କିଛି ନୂଆ କଥା ନୁହେଁ । ଆହରଣକାରୀ ଜାତି ପକ୍ଷରେ ଏଥିରେ ଅସ୍ପୃହଣୀୟ ବା ନିନ୍ଦାର କଥା ମଧ୍ୟ କିଛି ନାହିଁ । ମାତ୍ର ଦୁଇଟି କାରଣରୁ ଏହି ପ୍ରକାର ଆହରଣରୁ ଯେଉଁ ସୁଫଳ ଆଶା କରାଯାଏ, ତାହା ବ୍ୟାହତ ହୁଏ । ପ୍ରଥମତଃ ଆହରଣ ଯଦି ଚିନ୍ତାଶୂନ୍ୟ ଅନୁକରଣ

ହୁଏ—ତେବେ ତାହାର ଉଦ୍ଦେଶ୍ୟ ସଫଳ ହୁଏ । ଦ୍ୱିତୀୟତଃ ଭାବ କ୍ଷେତ୍ରରେ ଆହରଣ ଯଦି ଜାତୀୟ ଜୀବନର ବାସ୍ତବ ପରିବେଶରେ ପ୍ରତିବମ୍ବିତ ନ ହୁଏ, ବାସ୍ତବ ଜୀବନକୁ ରୂପାନ୍ତରିତ ନ କରେ, ତାହାହେଲେ ବିପରୀତ ଫଳ ଦେଖାଏ ।

ଆଧୁନିକ ଭାରତୀୟ ଚିନ୍ତାଧାରା ଓ ଇଉରୋପର ପୁନର୍ଜାଗରଣ ପରବର୍ତ୍ତୀ ଚିନ୍ତାଧାରର ମୌଳିକ ପ୍ରେରଣା, **ଆଦର୍ଶ** ଏକ ଓ ଅଭିନ୍ନ । ସ୍ୱରୂପରେ ସାମଞ୍ଜସ୍ୟ ପ୍ରଚୁର । ତଥାପି ଏହାର ଆହରଣ ଭୂମି ଓ କ୍ରମବିକାଶର ସୋପାନରେ ଯଥେଷ୍ଟ ଭିନ୍ନତା ପରିଲକ୍ଷିତ ହୋଇଥାଏ । ଯେଉଁ ଇଉରୋପୀୟ ଭାବଧାରା ଷୋଡ଼ଶ ଶତକରୁ ଆରମ୍ଭ କରି ବିଂଶ ଶତକ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷର ବହୁ ସାଧନା, ନବ ନବ ଉଦ୍‌ଭାବନ ଓ ଆବିଷ୍କାର ଫଳରେ ସମ୍ଭବ ହୋଇଥିଲା, ତାହାର ସାରାଂଶ ଭାରତବର୍ଷର ଅଗ୍ରଗାମୀ ଶିକ୍ଷିତ ସମାଜ ଗୋଟିଏ ଶତାବ୍ଦୀ ବା ତାହାଠାରୁ ଆହୁରି ଊଣାକାଳ ମଧ୍ୟରେ ଗ୍ରହଣ କରିଥିଲେ । ଇଉରୋପର ବୈଜ୍ଞାନିକ, ଚିନ୍ତାନାୟକମାନଙ୍କୁ ଯେପରି ପ୍ରାଣପଣ କରି ଯୁଗ ଯୁଗର ଜମାଟ ଅନ୍ଧକାର, କୁସଂସ୍କାର, ଗୀର୍ଜାର ନିର୍ମମ ଶାସନ, ଓ ଦମନର ସମ୍ମୁଖୀନ ହେବାକୁ ହୋଇଥିଲା, ଆମ ଦେଶର ଏହି ନବ ଭାବଧାରାର ଧାରକ ଓ ପୋଷକମାନଙ୍କୁ ସେପରି ପ୍ରତିକୂଳ ଶକ୍ତି ବିରୋଧରେ ଆସିବାକୁ ପଡ଼ି ନ ଥିଲା । ଖୁବ୍ ବେଶି ହେଲେ ପ୍ରାଚୀନ ସମାଜର ବନ୍ଧନ ଗ୍ରାମରେ ଦୃଢ଼ ଥିଲା । ମାତ୍ର ନବ ଶିକ୍ଷିତଗଣ ସହରରେ ଠୁଳ ହେଉଥିଲେ । ସେଠାରେ କୁସଂସ୍କାରଗ୍ରସ୍ତ ସମାଜର କୌଣସି ବନ୍ଧନ ନଥିଲା । ଇଂରେଜ ଆଇନ୍ ସେମାନଙ୍କୁ ଆଗ୍ରହ ବିଚାରରେ ପୂର୍ଣ୍ଣ ସ୍ୱାଧୀନତା ଦେଇଥିଲା । ସେମାନେ ଏହିରୂପେ ଦେଶର ବୃହତ୍ତର ଜୀବନରୁ ଏକ ପ୍ରକାର ବିଚ୍ଛିନ୍ନ ହୋଇ ପଡ଼ିଥିଲେ । ତେଣୁ ଆଧୁନିକ ବୈଜ୍ଞାନିକ ଭାବଧାରା କ୍ରମବିକାଶର ସୋପାନ ପଂକ୍ତିରେ ଯେପରି ବୃହତ୍ତର ଇଉରୋପୀୟ ସମାଜ ଜୀବନରେ ବ୍ୟାପକତର ପ୍ରଭାବ ବିସ୍ତାର କରିପାରିଥିଲା ; ବୃହତ୍ତର ସମାଜର ପ୍ରତିକୂଳ ଓ ଅନୁକୂଳ ବାତାବରଣରୁ ଶକ୍ତି ସଂଚୟ କରି ପାରିଥିଲା ; ତାହା ଆମ ଦେଶରେ ସମ୍ଭବ ହୋଇ ନଥିଲା । ଗୋଟିଏ କଥାରେ କହିଲେ, ଆଧୁନିକ ଭାବଧାରା ଇଉରୋପୀୟ ଜନସମାଜ ଭଳି ଭାରତୀୟ ଜନସମାଜରେ ପ୍ରବଳ ପ୍ରଭାବ ପକାଇ ପାରି ନଥିଲା । (ଦେଶରେ ଅନେକ ତ ଅନ୍ଧାରରେ ରହିଲେ, ଯେଉଁମାନେ ଆଲୋକିତ ବୋଲି ପରିଗଣିତ ହେଉଥିଲେ, ସେମାନେ ଏକ ପ୍ରକାର ଛାୟାଲୋକ ବା ଆଲୋକ ଅନ୍ଧକାରର ଚପଳ ତରଙ୍ଗିତ ବେଳାଭୂମିରେହିଁ ରହିବାକୁ ବାଧ୍ୟ ହୋଇଥିଲେ ।)

ଅସଙ୍ଗତିର ଆଉ ଏକ ଦିଗ ଥିଲା । ଆମ ଦେଶରେ କେତେକଙ୍କ ଚିନ୍ତାରେ ଯେପରି ଦ୍ରୁତ ପରିବର୍ତ୍ତନ ଘଟିଲା, ଜୀବନରେ ସେଇପରି ପରିବର୍ତ୍ତନ ଘଟିଲା ନାହିଁ । ଦେଶର ଦୁସ୍ଥ ବାସ୍ତବ ପରିବେଶ ସହିତ ଅଗ୍ରଗାମୀ ଚିନ୍ତାର ଦୃଢ଼ ଯୋଗସୂତ୍ର ସ୍ଥାପିତ ହେଲାନାହିଁ । ଇଉରୋପରେ ଚିନ୍ତା ବିପ୍ଳବ ଘଟିଲା, ସେଥି ସହିତ ଶିଳ୍ପ ବିପ୍ଳବ ବାସ୍ତବ

ଜୀବନ ଧାରାକୁ ବଦଳାଇ ଦେଲା । ମାତ୍ର ଇଂରେଜଙ୍କ ଆର୍ଥିକ ସାମ୍ରାଜ୍ୟବାଦର ଶୋଷଣ ଫଳରେ ଶିଳ୍ପ ବିପ୍ଳବ ପଛକୁ ପଡ଼ିଗଲା । ଆଧୁନିକ ଚିନ୍ତାର କେନ୍ଦ୍ର ଥିଲା ନଗର, ମାତ୍ର ଦେଶରେ ଗ୍ରାମ ତୁଳନାରେ ଏହାର ସଂଖ୍ୟା ଥିଲା ମୁଷ୍ଟିମେୟ । ନୂତନ ଚିନ୍ତାର ପ୍ରଧାନ ବାହକ ହେଲା ଲିଖିତ ଅକ୍ଷର । କିନ୍ତୁ ଅକ୍ଷର ପରିଚୟ ସୌଭାଗ୍ୟ ସମସ୍ତଙ୍କର ନ ଥିଲା । ପୁଣି ଯେଉଁମାନେ ସାଧାରଣ ଶିକ୍ଷା ପାଇଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଏପରି ଗ୍ଳାନିକର ପରିବେଶରେ କାର୍ଯ୍ୟ କରିବାକୁ ହେଲା ଯେ ସ୍ୱାଧୀନ ଚିନ୍ତାର ବିକାଶ ତାଂକଠାରେ ଦେଖା ଦେଲାନାହିଁ । ଏହି ଭାବରେ ଦେଶର ଜନସମାଜର ଏକ ବିରାଟ ଅଂଶକୁ ଦୂରରେ ରଖି ଆଧୁନିକ ଭାବଧାରା ଗତିକଲା । ସାହିତ୍ୟ ଓ ସଂସ୍କୃତିର କ୍ଷେତ୍ର ସଂକୁଚିତ ହୋଇଗଲା । ଏହି ବ୍ୟବଚ୍ଛେଦ ଓ ଅସଙ୍ଗତି ଆମ ଜାତୀୟ ଜୀବନରୁ ଏବେ ବି ଲୋପ ପାଇନାହିଁ ।

ଊନବିଂଶ ଶତକର ଶେଷ ପାଦକୁ ଜନସାଧାରଣ ଓ ଶିକ୍ଷିତ ଶ୍ରେଣୀର ଦୃଷ୍ଟିକୋଣରେ ସାମଞ୍ଜସ୍ୟ ଆଣିବା—ଏକ ଦିଗରେ ଅଶିକ୍ଷା ଓ କୁସଂସ୍କାର ଅନ୍ଧକାରରେ ସଢ଼ୁଥିବା ଜନସାଧାରଣଙ୍କ ଜୀବନ ଓ ମାନସିକ ଶକ୍ତିକୁ ଉନ୍ନତ କରିବା, ଅପର ଦିଗର ଅନୁକରଣ ପ୍ରିୟ, ଅହମିକାଗ୍ରସ୍ତ ପାଶ୍ଚାତ୍ୟ ଶିକ୍ଷିତଙ୍କ ମାନସିକ ବିକାରର ଅବସାନ ଘଟାଇବା ପ୍ରଚେଷ୍ଟା ପ୍ରତ୍ୟେକ ଦେଶପ୍ରେମୀ ଚିନ୍ତାନାୟକଙ୍କ ମନରେ ସ୍ଥାନ ପାଇଥିଲା । ଏ ବିଭେଦର ଅବସାନ ଲାଗି ଚିନ୍ତାନାୟକ ଦେଶନେତାଙ୍କ ସହିତ କବି ଓ ସାହିତ୍ୟିକଗଣ ଏକ ପ୍ରାଣରେ ଉଦ୍‌ବୋଧନ ଦେଇଥିଲେ । ଏହି ଭାବ ସଂଘର୍ଷ ଯୁଗରେ ନିଜ ନିଜ ମହନୀୟ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ସ୍ୱାକ୍ଷର ସର୍ଜନା-ସାହିତ୍ୟର ବରେଣ୍ୟ ସ୍ରଷ୍ଟାଗଣ ରଖିପାଇଛନ୍ତି । ପ୍ରାଚୀନ ଭାରତର ଭାବସମ୍ପଦ ଓ ଆଦର୍ଶବାଦ ସହିତ ଆଧୁନିକ ଇଉରୋପର କର୍ମ ପ୍ରେରଣା ଓ ବାସ୍ତବ ଦୃଷ୍ଟିର ସମନ୍ୱୟ ଘଟାଇ, ନବଯୁଗ ଅଭ୍ୟୁଦୟର ମାର୍ଗ କବିମାନେ ରଚନା କରି ଯାଇଛନ୍ତି । ଇତିହାସର ଗତିଧାରା ସହିତ ସେମାନଙ୍କ ବିପୁଳ ଜୀବନବୋଧ ପ୍ରତି ଦୃଷ୍ଟିପାତ କଲେ ଯଥାର୍ଥରେ ମନେହୁଏ, ସେମାନଙ୍କ ବାଣୀ ଆରାଧନା ଏକ ମାନସିକ ବିଳାସ ନ ଥିଲା ; ଥିଲା ଜୀବନ ସାଧନାର ଅଙ୍ଗ ।

ତୃତୀୟ ଅଧ୍ୟାୟ

# ସମାଜ

"କବିତା ସହିତ ସାମାଜିକ ଜୀବନର ସମ୍ପର୍କ—ବିଶଦ କଥାରେ ରାଜନୀତିର ସମ୍ପର୍କ ଖୁବ୍ ବେଶି ଜଟିଳ ବିଷୟ ନୁହେଁ ; ମାତ୍ର ସମୟ ସମୟରେ ବିଷୟଟିକୁ ଯେତେ ଲଘୁ ବୋଲି ମନେ କରାଯାଏ, ଏହା ତାହାଠାରୁ ପ୍ରକୃତରେ ଅଧିକ ଗମ୍ଭୀର ଓ ଜଟିଳ ।" ୧

ହେନ୍‌ରି ନଉବୋଲ୍ଟ

୨

କାବ୍ୟ ସବୁ ଯୁଗରେ ପରିବେଶ ଦ୍ୱାରା ପ୍ରଭାବିତ ହୁଏ । ଧାର୍ମିକ, ପ୍ରାକୃତିକ ପରିବେଶ ଭଳି ସାମାଜିକ ପରିବେଶ, ମାନବ ଚିନ୍ତାକୁ ରୂପ ଦେବାରେ ଏହାର କ୍ଷମତା ଅସୀମ । କାବ୍ୟ ସହିତ ସମାଜ ଜୀବନର ସମ୍ପର୍କ ଏକ ସହଜ ସମ୍ପର୍କ । କାବ୍ୟରେ ସମାଜ ଜୀବନର ପ୍ରକାଶ, ସମାଜ ବିକାଶରେ କାବ୍ୟର ଗଠନାତ୍ମକ ଭୂମିକା ଗମ୍ଭୀର ଅନୁଧ୍ୟାନର ବସ୍ତୁ ।

ଆମ ପ୍ରାଚୀନ କାବ୍ୟ ଓ ପୁରାଣ ସାହିତ୍ୟରେ ସାମାଜିକ ଚିନ୍ତନର ପରମ୍ପରା ଥିଲା । ରାଜ୍ୟର ଅବସ୍ଥା, ରାଜା ପ୍ରଜାଙ୍କ ସମ୍ପର୍କ, ଜାତି ଜାତି ମଧ୍ୟରେ ଓ ଧର୍ମ ସମ୍ପ୍ରଦାୟ ମଧ୍ୟରେ ପାରସ୍ପରିକ ସମ୍ପର୍କ ଯେବେ ପ୍ରାଚୀନ ଲେଖକଗଣ ବହୁ ଆଦର୍ଶ ଓ କାଳ୍ପନିକ ଚିତ୍ର ଅଂକନ କରିଥିଲେହେଁ, ସେଥିରେ ବାସ୍ତବତା ପ୍ରଚ୍ଛନ୍ନ ଭାବରେ ପୂରି ରହିଥିଲା । ସମାଜ ବିକାଶ ଲାଗି ଆଦର୍ଶର ଅଭାବ ଏଥିରେ ନଥିଲା । ତଥାପି, ଊନବିଂଶ ଶତକରେ ଆଧୁନିକ କାବ୍ୟଧାରାର ଅଭ୍ୟୁଦୟ ପୂର୍ବରୁ କାବ୍ୟରେ ସାମାଜିକ ଚିନ୍ତାର ଗତି ସ୍ୱାଭାବିକ ନଥିଲା । ତୁଳନାରେ ଦେଖିଲେ, ଆଧୁନିକ କବିର ସମାଜ ଚିନ୍ତା ଓ ଆଧୁନିକ ସାହିତ୍ୟର ସମାଜ ସମ୍ପର୍କ, ପ୍ରାଚୀନ ଓ ମଧ୍ୟଯୁଗଠାରୁ କିପରି ସ୍ୱତନ୍ତ୍ର ଥିଲା ତାହା ସହଜରେ କଳନା କରିହୁଏ । ଏହାର ପ୍ରଧାନ କାରଣ ଆଧୁନିକ ସମାଜ ବିଜ୍ଞାନର ବ୍ୟାପ୍ତି ଓ ଆଦର୍ଶ ମଧ୍ୟରେ ଅନୁସନ୍ଧାନ

କରାଯାଇପାରେ । ଆଧୁନିକ ଅର୍ଥରେ ସମାଜର ଧାରଣା ପ୍ରାଚୀନ ଯୁଗରେ ନଥିଲା । ସାମାଜିକ ଚିନ୍ତାର ସ୍ୱତନ୍ତ୍ର ପ୍ରକାଶ ଘଟି ନଥିଲା । ସାମାଜିକ ଚିନ୍ତା ନୀତିଶାସ୍ତ୍ରର ପରିଧିରେ ଆବଦ୍ଧ ଥିଲା । ପୁଣି ଏ ନୀତିଶାସ୍ତ୍ର ଥିଲା ବିଭିନ୍ନ ଧର୍ମଧାରାର ଅଂଶ ବିଶେଷ ।

## ସମାଜ ବିଜ୍ଞାନର ପ୍ରଭାବ

ଏବେ କାବ୍ୟରେ ଯେଉଁ ସାମାଜିକ ଚିନ୍ତାର ପ୍ରକାଶ ଦେଖିବାକୁ ମିଳେ, ସେଥିରେ ସମାଜ ବିଜ୍ଞାନର ପ୍ରଭାବ ସ୍ପଷ୍ଟ । ସାମାଜିକ ବ୍ୟକ୍ତିର ଅଭ୍ୟୁଦୟ ପରେ ଧର୍ମ ନିରପେକ୍ଷ ରାଷ୍ଟ୍ରର ନୈତିକ ଶକ୍ତି ଓ ବ୍ୟକ୍ତିର ସ୍ୱାଧିକାର ପ୍ରଶ୍ନ ଯୋଗିଁ ଗତ ଶତକରେ ଇଉରୋପୀୟ ଚିନ୍ତା-ନାୟକଙ୍କ ତର୍କ ଭିତରୁ ସମାଜ ବିଜ୍ଞାନ ବା ସ୍ୱତନ୍ତ୍ର ସାମାଜିକ ଦର୍ଶନ ଚର୍ଚ୍ଚାର ଏକ ଧାରା ଫୁଟି ଉଠିଲା । ଅବଶ୍ୟ ପ୍ରାଚୀନ ଗ୍ରୀସରେ ଆରିଷ୍ଟୋଟ୍‌ଲ ଓ ପ୍ଲେଟୋଙ୍କ ଭଳି ଦାର୍ଶନିକ ଓ ଆମ ଦେଶରେ ଚାଣକ୍ୟ, ଶୁକ୍ରାଚାର୍ଯ୍ୟଙ୍କ ଭଳି ବାସ୍ତବ ଦୃଷ୍ଟିସମ୍ପନ୍ନ ମନୀଷୀଙ୍କ ମନରେ ସ୍ୱାଧୀନ ସାମାଜିକ ଚିନ୍ତାର ଅଭ୍ୟୁଦୟ ଘଟିଥିଲା । ମାତ୍ର ସମୟର ଗତିରେ ଏହାର ପ୍ରକାଶ ମଳିନ ହୋଇ ଯାଇଥିଲା । ଚତୁର୍ଦ୍ଦଶ ଶତକର ନବ ଜାଗରଣ ଯୁଗରୁ ଆରମ୍ଭ କରି ଉନବିଂଶ ଶତକର ଫରାସୀ ବିପ୍ଳବ ପର୍ଯ୍ୟନ୍ତ ଇଉରୋପରେ ସମାଜ ବିଜ୍ଞାନର ଯେଉଁ ବିପୁଳ ଚର୍ଚ୍ଚା ହୋଇଥିଲା, ତାର ପ୍ରଭାବ ଇଉରୋପୀୟ ଜୀବନ, ସମାଜ ଓ ରାଷ୍ଟ୍ରୀଶକ୍ତିରେ କେବଳ ଅନୁଭୂତ ହୋଇ ନ ଥିଲା ; ନୂତନ ପାଶ୍ଚାତ୍ୟ ଚିନ୍ତା, ମାନସିକ ସର୍ଜନା ଶକ୍ତି ଓ କାବ୍ୟଧାରାରେ ପ୍ରତିବିମ୍ବିତ ହୋଇଥିଲା । ଆଧୁନିକ ଓଡ଼ିଆ କାବ୍ୟଧାରା ଏହି ପ୍ରଭାବ ପରମ୍ପରା ସହିତ ପ୍ରତ୍ୟକ୍ଷ ସମ୍ପର୍କର ଫଳ । ସୁତରାଂ ଏଥିରେ ସାମାଜିକ ଚିନ୍ତାର ପ୍ରକାଶଧାରା ତଥା ସମାଜ ଚିନ୍ତାର ପୁଙ୍ଖାନୁପୁଙ୍ଖ ପ୍ରକାଶ ଅନୁଧ୍ୟାନ କରିବା ପୂର୍ବରୁ ଏହି ନବ ସମାଜ ଦର୍ଶନର ପ୍ରତିପାଦ୍ୟ ରୀତି ନୀତିପ୍ରତି ଦୃଷ୍ଟିପାତ କରିବା ଉଚିତ ।

## ଆଧୁନିକ ସମାଜ ବିଜ୍ଞାନ ଚର୍ଚ୍ଚାର ଧାରା

ଆରିଷ୍ଟୋଟ୍‌ଲ ଓ ପ୍ଲେଟୋଙ୍କ ଆଦର୍ଶ ସମ୍ମୁଖରେ ରଖି ନବ ଜାଗରଣ ଯୁଗରେ ସମାଜ ଦର୍ଶନର ଚର୍ଚ୍ଚା କ୍ରମଶଃ ଦେଖା ଦେଇଥିଲା । ମାକିଆଭେଲିଙ୍କ 'ପ୍ରିନ୍‌ସ' ଏ ଦିଗରେ ବାସ୍ତବ ବସ୍ତୁବାଦୀ ସମ୍ପନ୍ନ ପ୍ରଥମ ଗ୍ରନ୍ଥ । ଏହାର ପ୍ରଭାବ ସେ ଯୁଗର ରାଜନୀତି ଓ ସାହିତ୍ୟ ଉପରେ ଖୁବ୍ ପଡ଼ିଥିଲା । ଫରାସୀଦେଶରେ ଶାର୍ଲ ବୋଦାଁଙ୍କଠାରୁ ମଁତେସ୍କୁଙ୍କ ପର୍ଯ୍ୟନ୍ତ, ଇଂଲଣ୍ଡରେ ହବ୍‌ସଙ୍କଠାରୁ ବର୍କଙ୍କ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ସମାଜ ବିଜ୍ଞାନର ଆଲୋଚନା ଚାଲିଥିଲା । ଏହି ଆଲୋଚନା ଫଳରେ ରାଜ୍ୟ, ରାଜ୍ୟର ନୈତିକ ଶକ୍ତିର ଏକ ସ୍ପଷ୍ଟ ଧାରଣା ଫୁଟି ଉଠିଲା । ସପ୍ତଦଶ ଶତକର ଡଚ୍ ଲେଖକ ଗ୍ରୋଟିଅସ୍ ରାଜ୍ୟ ରାଜ୍ୟ ମଧ୍ୟରେ ସମ୍ପର୍କ ବା ଆନ୍ତର୍ଜାତୀୟ ରାଜନୀତି ଯୋଗିଁ ଆଲୋଚନା କରିଥିଲେ । ମୋଟ ଉପରେ

ନବଜାଗରଣ ଯୁଗରୁ ଫରାସୀ ବିପ୍ଳବ ପର୍ଯ୍ୟନ୍ତ ସମାଜ ଦର୍ଶନର ଆଲୋଚନାରେ କିମ୍ବା କେତୋଟି ଧାରା ବିଶେଷଭାବରେ ପ୍ରକଟିତ ହୋଇଥିଲା । ପ୍ରଥମେ ହ୍ୟୁମଙ୍କ ଦର୍ଶନର ପ୍ରଭାବ ପ୍ରବଳ ଥିଲା । ଏହାର ମୂଳତତ୍ତ୍ୱ ଥିଲା ଅନୁଭବସିଦ୍ଧ ପ୍ରଜ୍ଞାବାଦ । ଯେ କୌଣସି ପ୍ରକାର ଶାସ୍ତ୍ର ବଚନ ବା ପାରମ୍ପରିକ ଆଦର୍ଶର ଏହା ବିରୋଧ କରୁଥିଲା । ସମ୍ମୁଖର ବସ୍ତୁ ସ୍ଥିତିକୁ ଅଭିନିବେଶର ସହିତ ପରୀକ୍ଷା କରି କୌଣସି ସିଦ୍ଧାନ୍ତରେ ଉପନୀତ ହେବା ଥିଲା ଏହାର ଏକମାତ୍ର ନୀତି । ଏହା ପ୍ରଭାବରେ ଦାର୍ଶନିକମାନେ ରାଜ୍ୟ ଶରୀରର ବିଭିନ୍ନ ଅଙ୍ଗ ବିଷୟରେ ବିଶେଷ ଅଧ୍ୟୟନ ଆରମ୍ଭ କରିଥିଲେ । ଏମାନଙ୍କ ଆଲୋଚନା ଧାରାକୁ ଶରୀରତତ୍ତ୍ୱର ଧାରା ବା ଫିଜିଓଲଜିକ୍ୟାଲ ମେଥଡ୍ କୁହାଯାଇଥାଏ । ଦ୍ୱିତୀୟରେ କ୍ୟାଣ୍ଟଙ୍କ ଫରାୟବାଦ ଓ ହେଗେଲଙ୍କ ଦ୍ୱନ୍ଦାତ୍ମକ ଆଦର୍ଶର ପ୍ରଭାବ ଥିଲା ଅପ୍ରତିହତ । ଏହି ଜର୍ମାନ ଚିନ୍ତା ନାୟକଙ୍କ ବିଶ୍ଳେଷଣ କ୍ରମେ ରାଜ୍ୟ ଉପରେ ଏକ ଜୀବନ୍ତ ବ୍ୟକ୍ତି ସତ୍ତା ଆରୋପିତ ହେଲା । ରାଜ୍ୟକୁ ଜଣେ ବ୍ୟକ୍ତି ଓ ତାହାର ବିଭିନ୍ନ ଅଙ୍ଗକୁ ଏହି ବ୍ୟକ୍ତିର କ୍ରିୟାଶୀଳ ଅଙ୍ଗ ପ୍ରତ୍ୟଙ୍ଗ ରୂପେ କଳ୍ପନା କରାହେଲା । ରାଜ୍ୟକୁ ସମସ୍ତ ଶକ୍ତିର ଉତ୍ସ ବୋଲି କ୍ରମେ ବିଗ୍ରହ କରାହେଲା । ଏହି ଚିନ୍ତାରୁ ଲଭରେପରେ ସର୍ବ ଶକ୍ତିସମ୍ପନ୍ନ ରାଜ୍ୟର ବିକାଶ ପାଇଁ ନୈତିକ ଶକ୍ତି ମିଳିଲା । ତୃତୀୟ ଧାରାର ବିକାଶ ଫରାସୀ ବିପ୍ଳବର ପରିପ୍ରେକ୍ଷୀରେ ସମ୍ଭବ ହୋଇଥିଲା । ଏହାର ମୂଳରେ ଥିଲା ମାନବିକ ଆବେଦନର ଅପରାହତ ଶକ୍ତି । ରୁଷୋ, ଭଲ୍‌ଟେୟାର ଆଦିଙ୍କ ବିପ୍ଳବୀ ମନ ଏହାକୁ ଜନ୍ମ ଦେଇଥିଲା । ଇଂଲଣ୍ଡର ବେନ୍ଥାମ, ଜନଷ୍ଟୁଆର୍ଟ୍ ମିଲ୍ଆଦିଙ୍କ ଚିନ୍ତା ଥିଲା ଏହି ଶ୍ରେଣୀର । ଜନମଙ୍ଗଳକାମୀ ରାଷ୍ଟ୍ର ଗଠନ ଏମାନଙ୍କର ଆଦର୍ଶ ଥିଲା । ଏହି ଆଦର୍ଶରୁ ଅଗ୍ରଗାମୀ ମାନବ ଚିନ୍ତା ମାର୍କ୍ସୀୟ ସାମ୍ୟବାଦୀ ଦର୍ଶନ ଆଡ଼କୁ ଗତି କରିଥିଲା ।

ଆଧୁନିକ ସମାଜଚିନ୍ତା ବ୍ୟକ୍ତିର ଏକାଧିପତ୍ୟକୁ ଅସ୍ୱୀକାର କରୁଛି ; ଯଦିବା ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ବିକାଶ ଏହାର ପ୍ରଧାନ ଲକ୍ଷ୍ୟ ରୂପେ ସ୍ୱୀକୃତ ହୋଇଅଛି । ସ୍ୱେଚ୍ଛାଗ୍ରସ୍ତ ବ୍ୟକ୍ତି ମନ ଉପରେ ସାମାଜିକ ଶୃଙ୍ଖଳାର ବିଜୟ ଘୋଷିତ ହୋଇଛି । ବ୍ୟକ୍ତିର ବିକାଶ କେବଳ ସମାଜର ବିକାଶ ଉପରେ ନିର୍ଭର କରେ । ବ୍ୟକ୍ତିର ବିକାଶ ଲାଗି ସମାଜକୁ ଆଦର୍ଶ ରୂପେ ଗଢ଼ିବାହିଁ ଏକାନ୍ତ କାମ୍ୟ । ପ୍ରଚଳିତ ସମାଜର ଅନ୍ୟାୟ, ଅନାଚାର କୁପ୍ରଥା ଓ ଅନ୍ଧ ବିଶ୍ୱାସ ସବୁ ଦୂରକରି ଏକ ସୁସ୍ଥ ଓ ଶକ୍ତିଶାଳୀ ସମାଜ ଗଠନ ଲାଗି ଅନୁକୂଳ ପରିବେଶ ସୃଷ୍ଟିର ଉଦ୍ୟମ ଆଧୁନିକ ସାହିତ୍ୟର ସମସ୍ତ ବିଭାଗ ଭଳି କାବ୍ୟରେ ମଧ୍ୟ ଦେଖା ଦେଇଛି । ସେଥିଲାଗି କବିମାନେ କାବ୍ୟର ବର୍ଣ୍ଣିତ ବିଷୟ ଭିତରେ ଦୁର୍ନୀତି ପରାୟଣ ଶାସକ ଓ ବ୍ୟଭିଚାରଗ୍ରସ୍ତ ଅଭିଜାତ ଗୋଷ୍ଠୀର ନିନ୍ଦା କରିବା ସଙ୍ଗେ ସଙ୍ଗେ ନିପୀଡ଼ିତ ଜନସାଧାରଣଙ୍କ ପ୍ରତି ସମବେଦନାର ବାଣୀ ଉଚ୍ଚାରଣ କରିଛନ୍ତି ।

## ପାଶ୍ଚାତ୍ୟ ଐତିହାସିକଙ୍କ ଦୃଷ୍ଟିରେ ଓଡ଼ିଆ ସମାଜର ଚିତ୍ର :

କବିଙ୍କ ଦୃଷ୍ଟିରେ ସମାଜର ଚିତ୍ର ଦେଖିବା ପୂର୍ବରୁ ପାଶ୍ଚାତ୍ୟ ଐତିହାସିକଙ୍କ ବିବରଣୀ ପ୍ରତି ଟିକିଏ ଧ୍ୟାନ ଦେବା ଉଚିତ । ଗତ ଶତକରେ ଷ୍ଟାର୍ଲିଂ ହଣ୍ଟରଆଦି ଇଂରେଜ ପଣ୍ଡିତମାନେ ଓଡ଼ିଶାର ଇତିହାସ ରଚନା କରିଛନ୍ତି । ସେମାନଙ୍କ କୃତିରେ ବିଶେଷ ଭାବରେ ସମକାଳୀନ ସାମାଜିକ ଅବସ୍ଥାର ଚିତ୍ର ପ୍ରଦତ୍ତ ହୋଇଅଛି । ଓଡ଼ିଶାର ଅତୀତ ଗୌରବ କିଛି ନଥିବାରୁ କେବଳ ବର୍ତ୍ତମାନ ଘେନି ନିଜ ଗ୍ରନ୍ଥରେ ଆଲୋଚନା କରିଥିବା କଥା ହଣ୍ଟର ନିଜ ଇତିହାସର ମୁଖବନ୍ଧରେ ଲେଖିଛନ୍ତି । ୨ ଏ ବିବରଣୀରେ କେତେକ ପରିମାଣରେ ଏକଦେଶଦର୍ଶିତା ଓ ଅଜ୍ଞତାର ସଙ୍କେତ ଥିଲେ ମଧ୍ୟ, ମାନବିକ ଆବେଦନ ଓ ଯଥାର୍ଥ ଦୃଷ୍ଟିର ଅଭାବ ବିଶେଷ ଅନୁଭୂତ ହୁଏନାହିଁ । ଜନସାଧାରଣଙ୍କ ଆର୍ଥିକ ଓ ସାମାଜିକ ଜୀବନର ଯଥା ସମ୍ଭବ ପ୍ରକୃତ ଚିତ୍ର ଦେବା ଲାଗି ଏହି ଐତିହାସିକମାନେ ଉଦ୍ୟମ କରିଛନ୍ତି । ଯେଉଁ ପରିଶ୍ରମୀ ଓ ସହାନୁଭୂତିଶୀଳ ସ୍ଥାନୀୟ ଇଂରେଜ ଅଫିସରଗଣ ଜନସାଧାରଣଙ୍କ ଅବସ୍ଥା ଅନୁସନ୍ଧାନ କରି, ସେମାନଙ୍କ ଦୁଃଖ ଦୁର୍ଦ୍ଦଶାର ପ୍ରତିକାର ବିଧାନ ପାଇଁ ବିଶେଷ ଚେଷ୍ଟିତ ଥିଲେ, ତାଙ୍କଠାରୁ ନିର୍ଭରଯୋଗ୍ୟ ବିବରଣୀ ସଂଗ୍ରହ କରିଛନ୍ତି ।୩

ଲୋକଙ୍କ ଦାରିଦ୍ର୍ୟ ରକ୍ଷଣଶୀଳତା, ଗ୍ରାମ୍ୟ ଜୀବନ ପ୍ରତି ଆସକ୍ତି ଓ ନଗର ଜୀବନ ପ୍ରତି ବିମୁଖତା, ଶିକ୍ଷା ଓ ବାଣିଜ୍ୟରେ ଅନାଦର ଫଳରେ ସମାଜ ଜୀବନ ଯେପରି ବିକଳାଙ୍ଗ ହୋଇ ପଡ଼ିଥିଲା ତାହାର କରୁଣ କାହାଣୀ ଏହି ଇତିହାସରେ ଜୀବନ୍ତ ହୋଇଅଛି । ଆଧୁନିକ ସମାଜକୁ ନଗରର ବାଣିଜ୍ୟ ଓ ଶାସନ ସଂସ୍ଥା ନିୟନ୍ତ୍ରଣ କରେ । ଓଡ଼ିଶାରେ ନଗର ନ ଥିଲା । କଲିକତାରୁ ଓଡ଼ିଶାର ଭାଗ୍ୟ ନିୟନ୍ତ୍ରିତ ହେଉଥିଲା । ଏକମାତ୍ର କଟକରେ ଯତ୍‌ସାମାନ୍ୟ ସହରର ପରିବେଶ ଥିଲା । ସେଠାରେ ଆଧୁନିକ ଶିକ୍ଷା ଓ ଜୀବନଧାରାର ବିକାଶ ଘଟିଥିଲା । ମାତ୍ର 'ସାରା ଓଡ଼ିଶାର ଲୋକଙ୍କ ଭଳି କଟକ ଜିଲ୍ଲାର ଲୋକେ ସହରରେ ରହିବାକୁ କୌଣସି ଆଗ୍ରହ ପ୍ରକାଶ କରୁ ନଥିଲେ । ନିତାନ୍ତ ବାଧ୍ୟ ନହେଲେ ସେମାନେ ନିଜ ପୁରୁଷାନୁକ୍ରମେ ରହିଥିବା ଘର ଛାଡ଼ିବାକୁ ରାଜି ନଥିଲେ ।୪ ଏଥିଲାଗି ସବୁକ୍ଷେତ୍ରରେ ଓଡ଼ିଶା ବାହାରର ଲୋକଙ୍କ ଆଧିପତ୍ୟ ଥିଲା । 'ସମଗ୍ର ଲୋକ-ସଂଖ୍ୟାର ଚାରିଭାଗରୁ ତିନିଭାଗ ଲୋକ ଚାଷକରି ଚଳୁଥିଲେ । ବଙ୍ଗଳାର କୃଷକଙ୍କ ତୁଳନାରେ ଏମାନେ ବିଶେଷ ଦରିଦ୍ର ଥିଲେ । ବାଣିଜ୍ୟ ବ୍ୟବସାୟ କରୁଥିବା ଲୋକେ ଏମାନଙ୍କଠାରୁ ଅଧିକ ସ୍ୱଚ୍ଛନ୍ଦରେ ରହୁଥିଲେ । ବହୁ ପରିମାଣରେ ପଶୁପାଳକ ଓ କୃଷକ ଶ୍ରେଣୀର ଲୋକେ କଲିକତାକୁ କାମ କରିବାକୁ ଯାଉଥିଲେ । ସେମାନେ ଉଚ୍ଚ ପରିବାରରେ ଘରୋଇ ଚାକର, ପାଲିଙ୍କି ବେହେରା, ରାସ୍ତା ନିର୍ମାଣକାରୀ କୁଲି ଭାବରେ କାମ କରୁଥିଲେ । ତିନିଚାରି ବର୍ଷରେ ଥରେ ସେମାନେ ନିଜ ଗାଁକୁ ଫେରୁଥିଲେ । କୁଲି କଣ୍ଟ୍ରାକ୍ଟରମାନେ ତଳଶ୍ରେଣୀର ଲୋକଙ୍କୁ

ପୂର୍ବାଂଚଳରେ ଥିବା ଗୃହା ବଗିଗୁଡ଼ିକୁ ଦଳେ ଦଳେ ପଠାଉଥିଲେ । ସେମାନଙ୍କ ଭିତରୁ ଅତି ଅଳ୍ପ ଲୋକ ନିଜ ଗାଁକୁ ଫେରୁଥିଲେ । ସମଗ୍ର ଭାବରେ ଦେଖିବାକୁ ଗଲେ, ଓଡ଼ିଆ-ମାନେ ଶାନ୍ତ ପ୍ରକୃତିର ଲୋକ । ସେମାନେ ସହଜରେ ଅନ୍ୟର ବଶୀଭୂତ ହୁଅନ୍ତି । ନିଜ ଅଧିକାର ଓ ସୁଖ ସୁବିଧା ବିଷୟରେ କିଛି ଜାଣନ୍ତି ନାହିଁ । କ୍ଷମତାର ଆବରଣ ତଳେ ହେଉଥିବା ଅତ୍ୟାଚାର ନୀରବରେ ସହି ନିଅନ୍ତି ।' ୫

## କବିଙ୍କ ଦୃଷ୍ଟିରେ ଏହି ସମାଜର ଚିତ୍ର

କାବ୍ୟ ସୃଷ୍ଟିର ପ୍ରଧାନ ଅବଲମ୍ବନ ପ୍ରେରଣା । ପ୍ରେରଣାର ଉତ୍ସ କବିଙ୍କ ଅନ୍ତର ଲୋକର ଅଜ୍ଞାତ ପ୍ରଦେଶରେ । ମାତ୍ର ବହିର୍ଜଗତରେ ମନୁଷ୍ୟର ସୁଖଦୁଃଖ କବି ହୃଦୟକୁ ଯେପରି ଆନ୍ଦୋଳିତ କରେ, ସେଥିରୁ କାବ୍ୟ ସୃଷ୍ଟିର ଅନୁକୂଳ ମାନସିକ ଭାବାବେଗ ରୂପଲାଭ କରେ । ଏହା ଧାର୍ମିକ ବା ଆଧ୍ୟାତ୍ମିକ କବିତା ପକ୍ଷରେ ଯେପରି ସତ୍ୟ, ସମାଜ ଚିତ୍ର ସମ୍ବଳିତ ବା ସାମାଜିକ ଚିନ୍ତାପୂର୍ଣ୍ଣ କବିତା ପକ୍ଷରେ ସେହିପରି ସତ୍ୟ । ମାତ୍ର କବିତାର ସମାଜ ଚିତ୍ର ଇତିହାସର ତଥ୍ୟ ନୁହେଁ । ବରଂ ତଥ୍ୟ ଗତ ଇତିହାସର ସୀମା ବାହାରକୁ ଗଲେହିଁ କବିତାର ଯଥାର୍ଥ ଆଭିମୁଖ୍ୟ ଧାରଣା କରିହୁଏ । ଏଥିଲାଗି ଯୁଗ ବିଶେଷରେ କବିତାରେ ଅଭିବ୍ୟକ୍ତ ସମାଜ ଚିତ୍ର ପ୍ରସଙ୍ଗରେ ଆଲୋଚନା କଲାବେଳେ କବିଙ୍କ ଆଦର୍ଶ ଓ କାବ୍ୟିକ ସତ୍ୟ ପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଉଚ୍ଚବର୍ଣ୍ଣର ଲୋକଙ୍କର ସାମାଜିକ ଶୃଙ୍ଖଳା ରକ୍ଷା ନାମରେ ଅହେତୁକ ଅତ୍ୟାଚାର ଶ୍ରମିକ, କୃଷକ ଓ ନାରୀଙ୍କ ଦୁର୍ଦ୍ଦଶା ବିଷୟରେ ଏହି ଯୁଗର କାବ୍ୟ କବିତାରେ ଯେଉଁ ମର୍ମସ୍ପର୍ଶୀ ଚିତ୍ର ପ୍ରକାଶ ପାଇଅଛି, ବାସ୍ତବତା ଦୃଷ୍ଟିରୁ ଐତିହାସିକଙ୍କ ଚିତ୍ର ସହିତ ଏହାର ଗଭୀର ସାମ୍ୟ ଅଛି । ମାତ୍ର କବି ଓ ଇତିହାସ ଲେଖକଙ୍କ ଦୃଷ୍ଟିକୋଣରେ ଯଥେଷ୍ଟ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । କବିମାନେ କେବଳ ବାସ୍ତବବାଦୀ ନୁହନ୍ତି, ଜାତୀୟବାଦୀ । ତେଣୁ ସେମାନେ ଜାତିକି ବଂଚେଇ କହିଛନ୍ତି । ଜାତୀୟ ଦୁର୍ଦ୍ଦଶାର ପ୍ରତିକାର ବିଧାନ ପାଇଁ ଜାତିର ଗର୍ବ ଓ ଗୌରବର ଚିତ୍ର ଏଥି ସହିତ ପ୍ରଦାନ କରି ଆତ୍ମବିଶ୍ୱାସ ଜାତ କରିବାକୁ ପ୍ରୟାସ କରିଛନ୍ତି । ହୀନ ଦରିଦ୍ରଂକ ପ୍ରତି ବେଦନା ବୋଧ ସହିତ 'ଲକ୍ଷପୋଷୀ' ଆସନରେ ଥିବା 'ଲକ୍ଷଶୋଷୀ' ବଡ଼ଲୋକଂକ ପ୍ରତି ବିଦ୍ରୂପ ବାଣୀ ପ୍ରହାର କରିଛନ୍ତି । ଯୁଗର ମୁଖ୍ୟ ଓ ଗୌଣ ସବୁ କବିଙ୍କଠାରେ ଏହି ଦୃଷ୍ଟିକୋଣ ପ୍ରକାଶ ପାଇଅଛି ।

ଚିତ୍ରଣ ଶୈଳୀ ଦିଗରୁ କାବ୍ୟରେ ସମାଜ ଚିତ୍ର ଦୁଇ ଭିନ୍ନ ଉପାୟରେ ସନ୍ନିବେଶିତ ହୋଇପାରେ । ପ୍ରଥମତଃ ଅପ୍ରତ୍ୟକ୍ଷ ସଙ୍କେତରେ, ଦ୍ୱିତୀୟତଃ ସ୍ପଷ୍ଟ ବର୍ଣ୍ଣନାରେ । ବିଶେଷଭାବରେ କଥା କାବ୍ୟ ବା ପ୍ରବନ୍ଧକାବ୍ୟରେ ଯେଉଁ ପରିବେଶ ଓ ସମାଜ ଭିତରେ

କାବ୍ୟର ନାୟକ ନାୟିକା ବିଚରଣ କରନ୍ତି, ବା ଯେଉଁ ଆଦର୍ଶ ଓ ସାମାଜିକଶୃଙ୍ଖଳା ପ୍ରତିଷ୍ଠା ପାଇଁ ଏହି ନାୟକ ନାୟିକାଗଣ ଆତ୍ମନିୟୋଗ କରିଥାନ୍ତି—ସେଥିରୁ କବିଙ୍କର ସମାଜ ପ୍ରତି ଦୃଷ୍ଟିକୋଣ ଜଣାଯାଏ । ଦ୍ୱିତୀୟ କ୍ଷେତ୍ରରେ ପ୍ରତ୍ୟକ୍ଷଭାବରେ ନିଜେ କବି ସମାଜ ଅବସ୍ଥା ବା ଅବସ୍ଥାନ୍ତରର ଚିତ୍ର ପ୍ରଦାନ କରିଥାନ୍ତି ।

ପ୍ରଥମ ପର୍ଯ୍ୟାୟରେ ଦେଖିଲେ, ରାଧାନାଥହିଁ କଥା କାବ୍ୟର ଏକମାତ୍ର କବି । କେଦାରଗୌରୀ, ଚନ୍ଦ୍ରଭାଗାଠାରୁ ଆରମ୍ଭ କରି ଉଷା, ପାର୍ବତୀ, ନନ୍ଦିକେଶ୍ୱରୀ, ମହାଯାତ୍ରା ପର୍ଯ୍ୟନ୍ତ ତାଙ୍କର ପ୍ରାୟ ସମସ୍ତ କାବ୍ୟ ଐତିହାସିକ ପୃଷ୍ଠଭୂମିରେ କଳ୍ପିତ । ଏହିସବୁ କାବ୍ୟରେ ଯେଉଁ ସମାଜ ଚିତ୍ର ରହିଅଛି, ତାହା ପାରମ୍ପରିକ, ବହୁ ପରିମାଣରେ କୃତ୍ରିମ । ସେଥିରୁ ସମକାଳୀନ ସମାଜର ଚିତ୍ର ତ ସହଜରେ ମିଳେନାହିଁ ; ପୁଣି କବିଙ୍କ ସମାଜ ଚିନ୍ତାର ସ୍ୱରୂପ ଖୋଜିବାକୁ ଗଲେ ନିରାଶ ହେବାକୁ ପଡ଼େ । ସମ୍ଭବତଃ ଏହି କାବ୍ୟଗୁଡ଼ିକୁ ଦୃଷ୍ଟିରେ ରଖି ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ କହିଛନ୍ତି—'ରାଧାନାଥଙ୍କ ସମାଜ ଚିତ୍ର ବିଶେଷ ଉନ୍ନତ ଓ ଆଦର୍ଶ ସ୍ଥାନୀୟ ନୁହେ । ରାଧନାଥ ସେହି କୁସଂସ୍କାର ଜଡ଼ିତ ସମାଜକୁ ଆଗରେ ରଖି, ସେହି ଖଡ଼ିକାର, ସେହି ମାଜଣା, ସେହି ଦେବାର୍ଚ୍ଚନର ଚିତ୍ର ବାରମ୍ବାର ଆଗତ କରିଥିବାରୁ କାବ୍ୟ ସବୁ ଟିକିଏ ଭାରାକ୍ରାନ୍ତ ହେଲାପରି ବୋଧ ହେଉଅଛି ।' ୬

ମାତ୍ର ଦ୍ୱିତୀୟ ପର୍ଯ୍ୟାୟରେ ଅର୍ଥାତ୍, ସ୍ପଷ୍ଟ ବର୍ଣ୍ଣନା ଭିତରେ ଦେଖିଲେ ସମକାଳୀନ ସମାଜର ଚିତ୍ର, ଦୁଃଖ ଦୁର୍ଦ୍ଦଶା ଓ ତାହାର ପ୍ରତିକାରର ଉପାୟ ଆଦିର ବିଶ୍ଳେଷଣ ଅତି ପ୍ରାଞ୍ଜଳ ; ରାଧାନାଥଙ୍କ ଦରବାର, ଫକୀରମୋହନଙ୍କ ଉତ୍କଳ ଭ୍ରମଣଂ, ବିହୃ ଖଣ୍ଡ କବିତା ଓ ମଧୁସୂଦନଙ୍କ କେତେକ କବିତାହିଁ ଏହାର ନିଦର୍ଶନ ।

## ଦୀନ ଦରିଦ୍ରଙ୍କ ପ୍ରତି ବେଦନାବୋଧ

ରାଧାନାଥ, ଫକୀରମୋହନ ତଥା ମଧୁସୂଦନଙ୍କ ସମାଜ ଚିନ୍ତାପ୍ରତି ଲକ୍ଷ୍ୟ କଲେ, ସହଜରେ କଳନା କରିହୁଏ—ଦୀନ ଦରିଦ୍ର, ନିପୀଡ଼ିତ ଓ ଅତ୍ୟାଗ୍ରିତଙ୍କ ପ୍ରତି ଗଭୀର ବେଦନାବୋଧହିଁ ଏହାର କେନ୍ଦ୍ରବିନ୍ଦୁ ଥିଲା । ଏକ ପ୍ରକାର ଧ୍ୟାନସ୍ତିମିତ କରୁଣ ନେତ୍ରରେ ସେମାନେ ପରିବେଶକୁ ଦେଖୁଥିଲେ । ଗଣଧର୍ମୀ କବି ଓ୍ୟାର୍ଡ଼ସଓ୍ୟାର୍ଥଙ୍କ ଭଳି, ଏମାନଙ୍କ ଠାରେ 'ମଣିଷ ରୂପେ ମଣିଷଠାରେ ସମବେଦନାର ଅଭିବ୍ୟକ୍ତି ପ୍ରତ୍ୟକ୍ଷ ଓ ପ୍ରାଞ୍ଜଳ ।' ଏ ସମବେଦନା ଭାବୁକର, ସମଦୁଃଖୀର ନୁହେଁ । ଭାବନା ନେତ୍ରରେ ସବୁ ମଣିଷଙ୍କୁ କବି ଏକା ଭାବରେ ଦେଖନ୍ତି । ଭେକ, ପଦବୀର ଆଚ୍ଛାଦନ ଭିତରେ ଅମନୁଷ୍ୟତା ତାଂକ ଦୃଷ୍ଟି ଏଡ଼ାଇ ପାରେନାହିଁ । ଭାବ ପ୍ରବାହରେ ସତେ ଯେପରି କବି ଓ ଜନସାଧାରଣଙ୍କ ସ୍ୱତନ୍ତ୍ର ସତ୍ତା ହଜିଯାଏ । ଜନସାଧାରଣଙ୍କ ଭିତରେ କବି ନିଜକୁ ଦେଖନ୍ତି । କବିଙ୍କ

ଅନ୍ତର୍ଲୋକରେ ଜନସାଧାରଣଙ୍କ ରୂପ ଭାସି ଉଠେ । ଏହି ଜନ୍ୟ ଏକାତ୍ମଭାବ କବିତାକୁ କରୁଣ ମଧୁର କରେ । ଆମ ହୃଦୟକୁ ବିଗଳିତ ଓ ମାନସଲୋକକୁ ବିହ୍ୱଳିତ କରିଦିଏ । ମନୁଷ୍ୟର ଦୁର୍ଭାଗ୍ୟ ଓ ଅପକର୍ମ ଜଡ଼ିତ ଆତ୍ମାର ଅଧୋଗତିରେ ସମ୍ପ୍ରାଣତା ଓ ଗଭୀର ସମବେଦନାର କରୁଣ ସ୍ୱରରେ ରାଧାନାଥଙ୍କ ଦରବାରର ପ୍ରତ୍ୟେକ ପଂକ୍ତି ଝଂକୃତ ।

ମନେହୁଏ, ରାଧାନାଥ ଆପଣା ସମାଜକୁ ଗଭୀରଭାବରେ ଅନୁଧ୍ୟାନ କରି ଗୋଟିଏ ସ୍ଥିର ସତ୍ୟରେ ଉପନୀତ ହୋଇଥିଲେ । ତାହା ହେଉଚି, ଯହିଁ ଧନ, ତହିଁ ପାପ । ଏଇ ପାପରୁ ମୂଳ ଉପରେ ସମାଜର ଉନ୍ନତି ନିର୍ଭର କରେ । ଧନ ଓ କ୍ଷମତାର ସୁବ୍ୟବହାରଦ୍ୱାରା ସମାଜର ଉନ୍ନତି ଓ ଅପବ୍ୟବହାରଦ୍ୱାରା ଅଧୋଗତି ଘଟେ । ଯେଉଁମାନେ ଧନ ଓ କ୍ଷମତାର ଅପବ୍ୟବହାର କରନ୍ତି, ସେମାନେ ପ୍ରକୃତରେ ଅମନୁଷ୍ୟ । ଏଇମାନେହିଁ ଜନସାଧାରଣଙ୍କ ଦୁର୍ଦ୍ଦଶାର ମୂଳହେତୁ । ଅବଶ୍ୟ କେତେକ ଉଦାର ଧର୍ମୀ ଏହାର ଅନ୍ୟ ଦିଗ ଦେଖନ୍ତି । ଜନସାଧାରଣ ଦୁର୍ଦ୍ଦଶାର କାରଣ କେବଳ ଶକ୍ତିଧର ବା କ୍ଷମତାଶାଳୀ ପୁରୁଷମାନେ ନୁହନ୍ତି । ଦୁର୍ବଳ ଜନସାଧାରଣହିଁ ଏଇ ବିପଦ ନିଜେ ବରଣ କରିଆଣି, ସବଳର ଆତ୍ମାକୁ କଳୁଷିତ କରିଦିଅନ୍ତି । ଏଇ କଥା ଗୋଟିଏ ସୁନ୍ଦର ରୂପକରେ ରବୀନ୍ଦ୍ରନାଥ କହିଛନ୍ତି—"ଯେ ଦୁର୍ବଳ, ସେ ସବଳ ପକ୍ଷରେ ସେଇପରି ଭୟଂକର ଯେପରି ହାତୀ ପକ୍ଷରେ ଚୋରାବାଲି । ଏଇବାଲି ବାଧା ଦେଇ ପାରେନାହିଁ ବୋଲି ଆଗକୁ ଯିବାକୁ ଦିଏ ନାହିଁ । ତଳକୁ ତଳକୁ ଟାଣି ନିଏ । ଯାହାର ଶକ୍ତିର ଆୟତନ ଯେତେବଡ଼, ତାର ଭାର ଯେତେ ବେଶୀ ଶକ୍ତିହୀନର ତଳଆଡ଼କୁ ଆକର୍ଷଣ ତାହା ପ୍ରତି ସେତେ ଭୟଙ୍କର । ଯେଉଁ ମାଟି ବାଧା ଦିଏନାହିଁ, ତାକୁ ଯେତେ ଜୋରରେ ପଦାଘାତ କରିବ, ପାଦକୁ ସେତେ ବିପଦ ପଡ଼ିବ ।"[୮] ଦରବାରରେ କବି ଏ ଆଦର୍ଶ ଅନୁସରଣ କରିନାହାନ୍ତି । ସବଳ ସମ୍ମୁଖରେ ଦୁର୍ବଳର ଭୂମିକାକୁ ସ୍ୱତନ୍ତ୍ରଭାବରେ ବିଗ୍ରହ କରି ନାହାନ୍ତି । ଦୁର୍ବଳର ଶକ୍ତି ସଂଚୟ ଓ ପ୍ରତିରୋଧ କ୍ଷମତା କଥା ଚିନ୍ତା ନ କରି ସେ ସବଳକୁ ବିବେକର ବାଣୀ ଶୁଣେଇଛନ୍ତି । ସେ ଗଭୀର ଆଧ୍ୟାତ୍ମିକ ଦୃଷ୍ଟିରେ ସବଳ ଓ ଦୁର୍ବଳଠାରେ ଏକ ଅଖଣ୍ଡ ମାନବାତ୍ମାର ସ୍ୱରୂପ ଉପଲବ୍ଧି କରିଛନ୍ତି । କବିଙ୍କ ଭାଷାରେ—

> ଗୃହିଁଲେ ଯେସନେ ଶଇଳ-ଶିଖରୁ
> ସମ ଦିଶେ ମହୀସ୍ଥିତ ତୃଣ ତରୁ,
> ଧର୍ମନେତ୍ରେ ସାନ ବଡ଼ ଦୁନିଆର
> ଦୂରୁ ସବୁ ସିନା ଦିଶେ ଏକାକାର,
> ଧର୍ମ-ଶୈଳେ ବସି ନିରତେ ନିଃସଙ୍ଗ
> ହୋଇ ଦେଖ ଦୁନିଆର ନାଟ ରଙ୍ଗ । ୯

ରାଧାନାଥଙ୍କ ବିଦ୍ରୂପବାଣୀ ଭିତରେ ଏହି ଭାବରେ ସମାଜକୁ ସାମ୍ୟ ଧର୍ମରେ ଦୀକ୍ଷିତ କରିବାର ପ୍ରୟାସ ହୋଇଅଛି । ଧନ ଓ କ୍ଷମତାର ଅଧିକାରୀ ଦେଶୀୟ ରାଜ୍ୟର ନରପତି, ସାମନ୍ତତନ୍ତ୍ରର ଅଧିନାୟକ, କ୍ଷମତା ଗର୍ବୀ ସରକାରୀ ଅମଲା, ବିଦ୍ୟାଭିମାନୀ ଇଂରେଜୀ ଶିକ୍ଷିତମାନଂକ ବିବେକକୁ କବି ସ୍ପର୍ଶ କରିଛନ୍ତି ।

## ଦେଶୀୟ ରାଜ୍ୟର ନରପତି

ଊନବିଂଶ ଶତକରେ ଆମ ଦେଶରେ ଦୁଇଟି ଶ୍ରେଣୀ ବିଦେଶୀ ଶାସକଂକର ଏକାନ୍ତ ଅନୁଗତ ଥିଲେ । ପ୍ରଥମତଃ ସାମନ୍ତ, ଦ୍ୱିତୀୟତଃ ଅମଲା । ଦେଶୀୟ ରାଜ୍ୟର ରାଜାମାନେ ପ୍ରଥମ ଶ୍ରେଣୀର ପୁରୋଭାଗରେ ଥିଲେ । ଇଂରେଜମାନଙ୍କ ପ୍ରତି ଆନୁଗତ୍ୟ ଫଳରେ ସେମାନେ ଶାସନର ଅଖଣ୍ଡ କ୍ଷମତା ଉପଭୋଗ କରୁଥିଲେ । ମାତ୍ର ଯେଉଁମାନଙ୍କୁ ଶାସନ କରୁଥିଲେ, ସେମାନଙ୍କ ପ୍ରତି ତାଙ୍କର କିଛି ଦାୟିତ୍ୱ ନଥିଲା । ଇଂରେଜ ଶାସନ ଶକ୍ତିର ଆଶ୍ରୟରେ ରହି, ଇଂରେଜ ପଦସ୍ଥ କର୍ମଚାରୀଙ୍କୁ ତୋଷାମୋଦ କରି ସେମାନେ ନିଜ କ୍ଷମତାର ଅପବ୍ୟବହାର କରୁଥିଲେ । ନିଜର ବିଳାସ ବ୍ୟସନ ପାଇଁ ପ୍ରଜାମାନଙ୍କୁ ନାନାଭାବରେ ଲୁଣ୍ଠନ କରୁଥିଲେ । ଏମାନେ କିପରି ଖିଆଲୀ, ବ୍ୟଭିଚାରୀ ଓ ପ୍ରଜାପୀଡ଼କ ଥିଲେ ଫକୀରମୋହନ ନିଜର ପ୍ରତ୍ୟକ୍ଷ ଅନୁଭୂତିରୁ ଆତ୍ମଜୀବନ ଚରିତରେ ବର୍ଣ୍ଣନା କରିଯାଇଛନ୍ତି । ଦରବାରରେ ରାଧାନାଥଙ୍କ ବର୍ଣ୍ଣନା ଏହି ଚିତ୍ରର ସମଧର୍ମୀ ।

ରାଧାନାଥ ରାଜାମାନଙ୍କୁ ସମାଲୋଚନା କରିଛନ୍ତି, ମାତ୍ର ଅନୁଷ୍ଠାନ ଭାବରେ ରାଜଦଣ୍ଡର ସମାଲୋଚନା କରି ନାହାନ୍ତି । ରାଜତନ୍ତ୍ରର କଳ୍ପିତ ପ୍ରାଚୀନ ରୂପରେ ଯେଉଁ ଆଦର୍ଶ ସେ ଚିତ୍ର କରିଛନ୍ତି, ସେଥିରୁ ମନେହୁଏ, ସମାଜ ଗଠନରେ ଓ ଜାତୀୟ ବିକାଶରେ ସେ ରାଜା ଓ ଭୂସ୍ୱାମୀମାନଙ୍କର ସହଯୋଗର ମୂଲ୍ୟ ବେଶ୍ ହୃଦୟଙ୍ଗମ କରିଥିଲେ । ସାହିତ୍ୟ ଓ ସଂସ୍କୃତି ପ୍ରେମୀ ବାମଣ୍ଡା ରାଜା ସାର୍ ସୁଢ଼ଳଦେବ ଓ ମୟୂରଭଞ୍ଜର ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ ପ୍ରତି କବିଂକ ପ୍ରଶସ୍ତି ବାକ୍ୟରୁ ଏହା ବୁଝି ହୁଏ । ୧୯୦୭ ଖ୍ରୀଷ୍ଟାବ୍ଦରେ ଉତ୍କଳସାହିତ୍ୟ ସମାଜର ଏକ ଅଧିବେଶନରେ ସଭାପତି ଭାଷଣରେ ରାଧାନାଥ ସାହିତ୍ୟ ବିକାଶରେ ଜର୍ମାନ ଓ ଇଟାଲୀର ସାମନ୍ତ ରାଜାମାନଂକର ଦାନ କଥା ଉଲ୍ଲେଖ କରି, ଏଥିପ୍ରତି ଦେଶୀୟ ରାଜାମାନଂକର ଦୃଷ୍ଟି ଆକର୍ଷଣ କରିଥିଲେ ।

ଅଲ୍ପବିଦ୍ୟା ଭୟଂକରୀ କଥାଟି ଅଧିକାଂଶ ରାଜାଂକଠାରେ ସତ୍ୟ ଥିଲା । ଆଧୁନିକ ଦୁନିଆଠାରୁ ଅନେକ ବହୁଦୂରରେ ଥିଲେ । ରେଳଗାଡ଼ି ଦେଖି ନ ଥିଲେ । ମେଟ୍‌କାଫ ସାହେବଂକଠାରୁ ଖଡ଼ଗପୁରରୁ ବାଲେଶ୍ୱର ପର୍ଯ୍ୟନ୍ତ ରେଳପଥ ପଡ଼ିବା ସମ୍ବାଦ ଶୁଣି ଆଶ୍ଚର୍ଯ୍ୟଭାବ ପ୍ରକାଶ କରି ଏହିପରି ଜଣେ ରାଜା କହିଥିଲେ, 'ଆଚ୍ଛା, ସାହେବ, ସେ ଶଗଡ ତ ଏପରି ବାଲିବାଟରେ ଚାଲିପାରିବ ନାହିଁ ।' ସେ ପୁଣି ମହାବିଦ୍ୟାଳୟ ପରିଦର୍ଶନ କରିବାକୁ ଯାଇ ପରିଦର୍ଶକଙ୍କ ମନ୍ତବ୍ୟ ବହିର ପୃଷ୍ଠା ନିଜନାମ ଦସ୍ତଖତରେ ପୂରାଇ ଦେଇଥିଲେ ।[୧୦]

୧୮୬୮ରେ କେତେକ ଏଇପରି ରାଜାଙ୍କ ବିଷୟରେ ନିଜର ଅନୁଭବ ବର୍ଣ୍ଣନା କରି ହଣ୍ଟର ସାହେବ ନିଜ ଇତିହାସରେ ଲେଖିଛନ୍ତି—'ପ୍ରାଚୀନ ହିନ୍ଦୁ ରାଜାର ମୂର୍ତ୍ତ ପ୍ରତିନିଧି ରୂପେ ଜଣେ ରାଜାଙ୍କୁ ଦେଖିଲି । ସେ ବ୍ରାହ୍ମଣଙ୍କ କଥାରେ ଚଳୁଥିଲେ । ନିଜର ପାଞ୍ଜିଆ ଓ ଜ୍ୟୋତିଷଙ୍କୁ ଘେନି ଖୁବ୍ ଗର୍ବ କରୁଥିଲେ । ମାତ୍ର ଆମ ଇଂରେଜ ଶାସନର ଯାହା ମୂଳମନ୍ତ୍ର ନିଜ ଲୋକଙ୍କ ପ୍ରତି କର୍ତ୍ତବ୍ୟ, ସେ ବିଷୟ ଆଦୌ ଭାବୁନଥିଲେ । ଆଉ କେତେକ ଇନ୍ଦ୍ରିୟପରାୟଣ ଓ ନିର୍ଦ୍ଦୟ । ସମତଳ ଅଂଚଳରେ ଧନୀ ଜମିଦାରଙ୍କ ଭିତରେ ଏଇପରି ବ୍ୟକ୍ତିଙ୍କ ସହିତ ଇଂରେଜ ଭାରତୀୟ ଅଫିସରମାନଙ୍କୁ ମିଶିବାକୁ ପଡେ । ଏହା ଖୁବ୍ ଯନ୍ତ୍ରଣାଦାୟକ ।' ୧୧

ରାଧାନାଥ ଏହି ରାଜାମାଂନଙ୍କ ଚିତ୍ର ଦରବାରରେ ଦେଇଅଛନ୍ତି । ଏମାନେ ମୂର୍ଖ, ଦୂରଦୃଷ୍ଟିହୀନ । ଶାସନର ଗୁରୁଦାୟିତ୍ୱ ନ ବୁଝି ବିଳାସରେ ଆକଣ୍ଠ ମଗ୍ନ ଥାନ୍ତି । ଯଥାର୍ଥ ଉପଦେଷ୍ଟା ମନ୍ତ୍ରୀ ବା ପଣ୍ଡିତଂକ ପରାମର୍ଶ ଗ୍ରହଣ ନ କରି, ତୋଷାମୋଦକାରୀ ଖଳ ଓ ଖଣ୍ଡ ପାଖଲୋକଂକ ଦ୍ୱାରା ସଦା ଗ୍ରାସିତ ହୁଅନ୍ତି । ପରମ୍ପରା କ୍ରମେ ଏମାନଂକ ଦରବାରରେ କେତେକ ଅର୍ଥଗୃଧ୍ନୁ ବ୍ରାହ୍ମଣ, ପୁରାଣପଣ୍ଡି ପୁରାଣ ପଣ୍ଡା, ଗଳ୍ପସାଗର ଆଦି ଥାନ୍ତି । ଏମାନେ ପ୍ରାଚୀନ ଯୁଗର ପ୍ରକୃତ ଆଦର୍ଶ ବିଷୟରେ କିଛି ଜାଣି ନଥାନ୍ତି । କେବଳ କେତେକ ବାହ୍ୟାଡ଼ମ୍ବରହୀନ ଆଚାର ପାଳନରେ ରାଜାଙ୍କୁ ପ୍ରବର୍ତ୍ତାଇ ଥାନ୍ତି ।

ନିଜ କାଳର ଏଇ ଦୁଷ୍ଟ ଚିତ୍ର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କବି ପ୍ରାଚୀନ ଭାରତର ରାଜତନ୍ତ୍ରର ଆଦର୍ଶ ବ୍ୟାଖ୍ୟାନ କରିଛନ୍ତି । ପ୍ରାଚୀନ ରାଜାମାନେ ପୁତ୍ର ଦୃଷ୍ଟିରେ ପ୍ରଜାଙ୍କୁ ପାଳନ କରୁଥିଲେ । ନିଜ ଭୋଗ କଥା ନ ଭାବି ରାଜ୍ୟର ମଙ୍ଗଳ ଲାଗି ନିର୍ଲିପ୍ତ ଭାବରେ ଶାସନ ପରିଚାଳନା କରୁଥିଲେ । ଏହି ପ୍ରାଚୀନ ଆଦର୍ଶ **ସହିତ ସମୟୁଗୀୟ ବାସ୍ତବ ଚିତ୍ର** ତୁଳନା କରି ଅନନୁକରଣୀୟ ଭାଷାରେ କବି ଲେଖିଛନ୍ତି—

'ଥିଲେ ଆଗେ ଯେହୁ ଉତ୍କଳର ସ୍ୱାମୀ,
ବହ୍ନିଶିଖା ପରି ସଦା ଊର୍ଦ୍ଧ୍ୱଗାମୀ,
ତୁମ୍ଭେ ହୋଇ ସେହି ବଂଶର ସନ୍ତତି
ଜଳଧାରା ପରି ହେଲ ଅଧୋଗତି ।
ତୁମ୍ଭ ପିତୃଗଣ ପରମ ଉଦାର
ରାଜ୍ୟ ମଣୁଥିଲେ ଏକ ପରିବାର ।
କାହିଁ ଗଲା ସେହି ପ୍ରାଚୀନ ସୁଧାର ।
ରାଜାପ୍ରଜା ଏବେ ହେଲେ ବାଜପାର ।୧୨

## ଅମଲା ଓ ସରକାରୀ କର୍ମଚାରୀ

ଶାସନ ଓ ବାଣିଜ୍ୟରେ ସାହାଯ୍ୟ କରିବାକୁ ଇଂରେଜମାନେ ଏକ ଶିକ୍ଷିତ ଶ୍ରେଣୀ ସୃଷ୍ଟି କରିଥିଲେ । ଏହି ଶିକ୍ଷା ମୂଳରେ ଇଂରେଜ ପରିକଳ୍ପନାକାରୀଙ୍କ ମନରେ କି ଉଦ୍ଦେଶ୍ୟଥିଲା ଓ ତାହା କି ଫଳ ପ୍ରଦାନ କରିଥିଲା, ତାହା ପୂର୍ବ ଅଧ୍ୟାୟରେ ଆଲୋଚିତ ହୋଇଛି । ଏମାନେ ପରମୁଖାପେକ୍ଷୀ, ଅନୁକରଣ ପ୍ରିୟ, ଦାସଭାବାପନ୍ନ ଓ ଅହଂକାରୀ ଥିଲେ । ପ୍ରଭୂଙ୍କ ଅନୁଗ୍ରହ ଉପରେ ଏମାନଙ୍କ ସୌଭାଗ୍ୟ ନିର୍ଭର କରୁଥିଲା । ଇଂରେଜ ପ୍ରଭୁଙ୍କ ମନସ୍ତୁଷ୍ଟି ପାଇଁ ଏମାନେ ଯେ କୌଣସି ଅପକର୍ମ କରିବାକୁ ଶ୍ଲାଘ୍ୟ ମଣୁଥିଲେ ।

ଦରବାରରେ ରାଧାନାଥ ଯେପରି ଏମାନଙ୍କୁ ବିଦ୍ରୂପ କରିଛନ୍ତି, ଫକୀରମୋହନ ମଧ୍ୟ ସେହିପରି ଉତ୍କଳଭ୍ରମଣଂରେ ଏମାନଙ୍କୁ ସମାଲୋଚନା କରିଛନ୍ତି । ଅନ୍ୟ ଦେଶରୁ ଶିଖିବା ଭଲ । ମାତ୍ର ଯଥାର୍ଥ ଜ୍ଞାନର ଆହରଣ ଅନୁକରଣ ନୁହେ । ଏହା ନିଜ ଭୂମିର ପରମ୍ପରା ଉପରେ ପ୍ରତିଷ୍ଠିତ ହୋଇ ନଥିବାରୁ, ଅନୁକରଣରେ ଜାତୀୟ ମନୀଷା ପୁଷ୍ଟ ନ ହୋଇ ବିକଳାଙ୍ଗ ହୁଏ । ଏହି ତଥାକଥିତ ଆଧୁନିକମାନେ ନିଜ ଦେଶର ସାହିତ୍ୟ, ଦର୍ଶନ, ଇତିହାସରେ କୌଣସି ପରିଚୟ ନ ଥାଇ ବି ପାଶ୍ଚାତ୍ୟ ଦେଶର ସାହିତ୍ୟ ଇତିହାସ ଜ୍ଞାନର ବଡ଼ିମା ଦେଖାଇବାକୁ ସଙ୍କୋଚ କରନ୍ତି ନାହି । ବିଦେଶୀ ସଂସ୍କୃତି ପ୍ରବାହ ଆସେ, ଯାଏ । ଏଥିରେ କିଛି ମହତ୍ତ୍ୱର ଉପାଦାନ ଥିଲେ, ସେଥିରେ ଦେଶର ସଂସ୍କୃତି ପୁଷ୍ଟ ହୁଏ । ମାତ୍ର ଉଦ୍‌ଭିଦର ରସ ଗ୍ରହଣ ଶକ୍ତି ଭଳି, ଦେଶୀୟ ସଂସ୍କୃତିରେ ଗ୍ରାହିକା ଶକ୍ତିର ଅଭାବ ହେଲେ ବିଦେଶୀ ସଂସ୍କୃତିର ପ୍ରଭାବରେ ଏହା ପୁଷ୍ଟ ନ ହୋଇ ଝଡ଼ ମୁଖର ଶୁଖିଲା ଗଛ ଭଳି ବିଲୁପ୍ତ ହୁଏ । ଏହା ଫକୀରମୋହନ ଭଲ ବୁଝିଥିଲେ । ତାଙ୍କ ନିଜ କାଳରେ ରାଜଭାଷା ରୂପେ ଏକଦା ପ୍ରଚଳିତ ପାର୍ଶୀର ବିଲୟ ଘଟିଥିଲା ଓ ତାହା ସ୍ଥାନରେ ଇଂରେଜୀ ପ୍ରତିଷ୍ଠିତ ହୋଇଥିଲା । ଏହି ଘଟଣା ପ୍ରତି ଲକ୍ଷ୍ୟକରି ଫକୀରମୋହନ ଜାତୀୟ ଭାଷା ଓ ସାହିତ୍ୟର ଉନ୍ନତି ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଯାଇ ଲେଖିଥିଲେ—

> 'ଆଗେ ଥିଲା ଦେଶେ ଗୋଲସ୍ତାନ ବୋଲସ୍ତାନ୍
> ଏବେବେଳେ ଶବ୍ଦ ନାହିଁ ଆଖୁନ୍‌ଜୀ ଆସ୍ଥାନ୍
> ଇଂରେଜ ଇଂରେଜୀ ବିଦ୍ୟା ରଖି ଯିବେନାହିଁ
> ତେତେବେଳେ ରହିଥିବ ଜଳଜଳ ଗୁହିଁ । ୧୩

ଶିକ୍ଷିତମାନଙ୍କର ମାନସିକ ଦାସତ୍ୱ ନାନା ଭାବରେ ପ୍ରକାଶ ପାଉଥିଲା । ସେମାନେ ନିଜ ଭାଷା ଶୁଦ୍ଧ ରୂପେ କହିପାରୁ ନଥିଲେ । ତିନିଭାଗ ଓଡ଼ିଆରେ ଭାଗେ ଇଂରେଜୀ ମିଶାଇ କହୁଥିଲେ । ନିଜ ଦେଶର ଜଳବାୟୁର ଉପଯୋଗୀ ଜାତୀୟ ପୋଷାକ ନ ପିନ୍ଧି ବିଦେଶୀ ପୋଷାକ ପିନ୍ଧୁଥିଲେ । ଜାତୀୟ ଜୀବନର ବିକାଶ ଲାଗି ଏହି ଶିକ୍ଷିତଗଣଙ୍କର

ମାନସିକ ସ୍ୱାସ୍ଥ୍ୟ ଆନୟନ କପରି ଏକାନ୍ତ ପ୍ରୟୋଜନ ଥିଲା, ତାହା ଉପଲବ୍ଧି କରି କବିମାନେ ବ୍ୟଥିତ ହୋଇଥିଲେ ।

## ପଲ୍ଲୀର ଅଶିକ୍ଷିତ କୃଷକ ଓ ନାରୀ ସମାଜର ଚିତ୍ର

ଏକ ଦିଗରେ ପୁରୋହିତ ଧର୍ମର ବନ୍ଧନ, କୁସଂସ୍କାର ଓ ବ୍ୟଭିଚାରର ଅନ୍ୟ ଦିଗରେ ଇଂରେଜ ଆର୍ଥିକ ସାମ୍ରାଜ୍ୟବାଦର ଶୋଷଣ ଭିତରେ ପଲ୍ଲୀ ଜୀବନ କରୁଣ ଭଗ୍ନ ଦଶାର ସମ୍ମୁଖୀନ ହୋଇଥିଲା । କୃଷକ ଘୋର ଦାରିଦ୍ର୍ୟ ଓ ଅଶିକ୍ଷା ଅନ୍ଧକାରରେ ସଢ଼ୁଥିଲା । ନାରୀ ପରାଙ୍ଗପୁଷ୍ଟ ସମାଜର ବ୍ୟଭିଚାରର ଉପାଦାନ, କୁସଂସ୍କାରର ଶୀକାର ଥିଲା ।

ଏହି ସମୟରେ କୃଷକସମାଜର ଦୁର୍ଦ୍ଦଶା ବର୍ଣ୍ଣନା କରି ଇଂରେଜ ଐତିହାସିକ ହଣ୍ଟର ଲେଖିଛନ୍ତି – 'ଦୁର୍ଭାଗ୍ୟକୁ କୃଷକ ଋଣରେ ବୁଡ଼ିଥାଏ । ଜମିଦାର, ମହାଜନ ସମସ୍ତେ ଫସଲ ଅମଳ ସମୟରେ ତା ଉପରକୁ ଝାମ୍ପି ପଡ଼ନ୍ତି । ସେମାନଙ୍କ ଦାବୀ ପୂରଣ କରିବାରେ ତାହାର ବହୁତ ଶସ୍ୟ ଚାଲିଯାଏ । ତା'ଛଡ଼ା ସେ ପରିବାର ପାଇଁ ଲୁଗାପଟା କରେ, ପୁରୋହିତକୁ ଦାନ ଦକ୍ଷିଣା ଦିଏ, ବନ୍ଧୁବାନ୍ଧବଙ୍କୁ କର୍ମ କାର୍ଯ୍ୟରେ ନିମନ୍ତ୍ରଣ କରି ଭୋଜିଦିଏ । ଏହାପରେ ପୁଣି ଫସଲ ଅମଳ ପର୍ଯ୍ୟନ୍ତ ଖାଇବା ପାଇଁ ତା ଘରେ ଖୁବ୍ ଅଳ୍ପ ଖାଦ୍ୟ ରହେ । ପ୍ରାୟ ଜୁନ୍‌ମାସ ଆଡ଼କୁ ସେ କରଜ କରିବାକୁ ଆରମ୍ଭ କରେ । ଯେତେ କରଜ କରେ ପୁଣି ଡିସେମ୍ବର ମାସରେ ଫସଲ ଅମଳ କଲାବେଳକୁ ତାହା ଚକ୍ରବୃଦ୍ଧି ସୁଧରେ ଅନେକ ବେଶୀ ହୋଇଯାଏ ।' ୧୪

ସ୍ୱାଧୀନ ପ୍ରକୃତି ପୁତ୍ର କୃଷକ ସମାଜ କପରି ଭୂମିହୀନ, ଛିନ୍ନମୂଳ ଶ୍ରମିକ ଶ୍ରେଣୀରେ ପରିଣତ ହେଲେ ତାହା ଫକୀରମୋହନ ନିଜ ଆଖିରେ ଦେଖିଥିଲେ । ଏହି ଦୃଶ୍ୟରେ ତାଙ୍କର ଉଦାର ମାନବପ୍ରେମୀ ଆଖିରୁ ଯେପରି ଏକାଧାରରେ ଝରିଛି ଅଗ୍ନି ଓ ଅଶ୍ରୁ । କୃଷକ କଙ୍କାଳସାର, ମଳିନ ବସନ, ଜୀର୍ଣ୍ଣ ଦରବା ଖଣ୍ଡିକରେ ତାର ଆଣ୍ଠୁ ଲୁଚେନାହିଁ । ଘରଣୀ ତାର କଙ୍କାଳିନୀ, ଅର୍ଦ୍ଧ ଅନଶନରେ ହୃତଯୌବନା । ଧନଯାକ ଖର୍ବବର୍ଷା ସହି କାଦୁଅ ଚକଟି କାମରେ ଲାଗିଥାଏ । ତଥାପି ଗୃହ ଉପରେ ତାହାର ହାତ ନଥାଏ । ପ୍ରକୃତି ଅନୁକୂଳ ହେଲେ ଫସଲ ଫଳେ । ପୁଣି ଫଳିଲା ଫସଲ ଉପରେ ମଧ୍ୟ ତାହାର ପୂର୍ବ ଅଧିକାର ନଥାଏ । କାରଣ—

ଦେବତା କୃପାରେ ଯଦି କାଟେ ଗୃହ ଛେଲା,
କି ହେବ ସେଥିରେ, ପର ପାଇଁ ଘର ମେଲା ।
ଖଳା ମୁଣ୍ଡେ ଆସି ଜଗି ବସିଥାଏ ସାହୁ,
ଘେନିଯାଏ ଅଧେ, ମୂଳ କଳନ୍ତ୍ରର ଆଉ ।
ପାଂଚପଣୁ ଅଧିକରେ ଯାଏ ବାଜ କରେ,

ବାଳିକା ମୁଠାକ ମାତ୍ର ପଣେ ଆସିଥିରେ ।
ଲୁଗା-ପଟା ତେଲଲୁଣ ଗଲା ଦୁଇପଣି,
ଫାଗୁଣ ପାହାନ୍ତ ପଡ଼ିଗଲା ଠଣାଠଣି ।
ଆହାରେ, କି ପାପ କରିଥିଲୁ ଜଣାନାହିଁ,
ଚଷାକୁଳେ ଜନ୍ମ ଦେଲା ବିଧାତା କି ପାଇଁ ?" ୧୫

ବର୍ଷର ଅର୍ଦ୍ଧେକ ଦିନ ଖାଲି ହାତରେ ଚଷା ବାର ଦୁଆର ଶୁଣ୍ଢି ପିଣ୍ଡା ହୁଏ । ଏଥିରେ ଅପମାନ ମିଳେ, ଆର୍ଥିକ କ୍ଷତି ମଧ୍ୟ ସହିବାକୁ ହୁଏ । ତଥାପି ତାକୁ ଋଣ କରିବାକୁ ପଡ଼େ । ଜଗତଯାକକୁ ଅନ୍ନ ଯୋଗାଇ କୃଷୀ ଅଧା ଉପାସରେ ରହେ । ତାର ଏହି ଦୁଃଖରେ କେହି ଭାଗ ନିଅନ୍ତି ନାହିଁ । ଦେଶ ସେବକ ଦେଶର ଶିଳ୍ପ, କୃଷି, ସାହିତ୍ୟର ଉନ୍ନତି ଲାଗି ବକ୍ତୃତା ଦେଇ ବୁଲନ୍ତି । ମାତ୍ର କୃଷକର ଦୁର୍ଦ୍ଦଶା ପ୍ରତି କାହାରି ଦୃଷ୍ଟି ପଡ଼େନାହିଁ ।

ସମାଜ ପଛକେ ତାକୁ ହୀନ କରି ରଖିଥାଉ, କୃଷକ ବାହାରେ ସରଳ ବେଶ, ଅନ୍ତରର ସରଳତା ଘେନି ନିଜର ପିତୃ ପିତାମହର ଭୂମି ଖଣ୍ଡିକ ସମ୍ବଳ କରି ପଡ଼ି ରହିଥିଲା । ଏହା ଉପରେ ତାର ଅଖଣ୍ଡ ଅଧିକାର ଥିଲା । କିନ୍ତୁ, ବିଦେଶୀ ସରକାରଙ୍କ ଦୟାରୁ ତାହା ପାଇଁ ପ୍ରଜାସତ୍ତ୍ୱ ଆଇନ୍ ଜାରି ହେଲା । ଫଳରେ ସାତ ପୁରୁଷର ଭୂମି ଘର ଛାଡ଼ି ନିତି ମଜୁରିଆ ହୋଇ ଦାଣ୍ଡକୁ ବାହାରିବା ବ୍ୟତୀତ ତାହାର ଅନ୍ୟ ଉପାୟ ରହିଲା ନାହିଁ । ଫକୀରମୋହନଙ୍କ ସ୍ୱଭାବସିଦ୍ଧ ବର୍ଣ୍ଣନାରେ—

"ପାଂଚ ପୁରୁଷର ଜମି ଖଣ୍ଡ ଥିଲା ପୁଞ୍ଜି
ତେତିକ ବଳରେ ପଡ଼ିଥିଲା ମୁଣ୍ଡଗୁଞ୍ଜି ।

ସରକାର ବାହାଦୁର ଦୟାକଲେ ଭାରି
ପ୍ରଜାସତ୍ତ୍ୱ ଆଇନଟା କରିଦେଲେ ଜାରି ।
କୃଷକର ବଢ଼ିଗଲା ଗୋଟିଏ ଜୀବିକା
ରେଜଷ୍ଟ୍ରି ଅଫିସରେ ଜମି କିଣା ବିକା ।

ଶେଷରେ—
ବାହାରିଲା ଘର ଛାଡ଼ି ଲାଗିବାକୁ ମୂଲ,
ଜୟ୍, ଜୟ୍ ପ୍ରଜା ସତ୍ତ୍ୱ ହରି ହରି ବୋଲ ।" ୧୬

କୃଷକର ଏହି ଦୁର୍ଦ୍ଦଶା ସାଙ୍ଗକୁ ନାରୀର ନିର୍ଯ୍ୟାତନା ଏଯୁଗର କବିଙ୍କୁ ସବୁଠାରୁ ବେଶୀ ବିଚଳିତ କରିଥିଲା । ବିଦେଶୀ ଶାସନ, ଶୋଷଣ ଓ ଆର୍ଥିକ ସାମ୍ରାଜ୍ୟବାଦ ଥିଲା କୃଷକ ନିପୀଡ଼ନର ଭୂମିକା । ମାତ୍ର ନାରୀର ନିର୍ଯ୍ୟାତନାର ଭୂମିକା ଥିଲା

ଆମର ଏହି ଜରାଗ୍ରସ୍ତ ସମାଜ । ସାମାଜିକଶୃଙ୍ଖଳା ନାମରେ ବହୁ ଅହେତୁକ ଶୃଙ୍ଖଳରେ ସମାଜ ଜୀବନ ବନ୍ଧା ହୋଇଥିଲା । ପୁରାତନ ପନ୍ଥୀଙ୍କ ପକ୍ଷରେ ଏହି କୃତ୍ରିମ ବିଧି ନିଷେଧ ବିହୀନ ସମାଜର ଧାରଣା କରିବା ଅସମ୍ଭବ ଥିଲା । ଏମାନେ ଧର୍ମ, ଜାତି, ତଥା ସ୍ୱର୍ଗ ନରକର ଭୟ ଦେଖାଇ ଦେବତା ଓ ବ୍ରାହ୍ମଣଙ୍କ ଆଧିପତ୍ୟ ବଜାୟ ରଖୁଥିଲେ । ଏହି ଆଚ୍ଛାଦନ ଭିତରେ ବହୁ ବ୍ୟଭିଚାର, ଅମାନବିକ ଓ ଅସାମାଜିକ କାର୍ଯ୍ୟ ଅବାଧରେ ଚାଲିଥିଲା ।

ଫକୀରମୋହନଙ୍କ କବିତାର ରାମରଥ ଏହି ବ୍ୟଭିଚାରୀ ଦଳର ଜୀବନ୍ତ ପ୍ରତୀକ । ବାଳୁତ ଝିଅ, ସ୍ୱାମୀ କଣ, ସଂସାର କ'ଣ ନବୁଝୁଣୁ ବିଭା ହୁଏ, ପୁଣି ସେଇ ସମାଜର ଇଙ୍ଗିତରେ ବିଧବା ହୁଏ । ଚିରଦିନ ଲାଗି ସ୍ୱାମୀ ସଂସାରର ସୁଖ ହରାଇ ସେ ଭାଇ ଭାଉଜଙ୍କ ନିର୍ଯ୍ୟାତନା ଭୋଗକରେ, ବହୁ କଳଙ୍କର ବୋଝ ବହେ । ଏଥିଲାଗି ରାମରଥଙ୍କ ଦଳର ଅନ୍ତର କାନ୍ଦେନାହିଁ । ଯଦି କେହି ସମାଜ ସଂସ୍କାରକ ପ୍ରକୃତ ଶାସ୍ତ୍ର ଜ୍ଞାନର ଅନୁସରଣ କରି ଏହି କଳଙ୍କ ଅପନୋଦନ କରିବାକୁ ଆଗଭର ହୁଅନ୍ତି, ତେବେ ଏହି ପୁରାତନପନ୍ଥୀଦଳ ପ୍ରସ୍ତାବ କରନ୍ତି,—'ରାଣ୍ଡି ଝିଅ, ବୋହୂ ବେଶ୍ୟା ହୋଇଯାଉ ତାହାକୁ ନଦେବା ବିଭା ।' ୧୭

ଧନ ସମ୍ପଦ ଆଗରେ ସମାଜର ସବୁ ଆଇନ, ମନୁଷ୍ୟର ସକଳ ପ୍ରକାର ମନୁଷ୍ୟତା ପରାଜୟ ସ୍ୱୀକାର କରୁଥିଲା । ଧନୀ ବିଶୁ ରଥ଼ଙ୍କ ବୟସ ଷାଠିଏ । ଘରେ ଦୁଇ ଭେଣ୍ଡିଆ ପୁଅ । ସେ ଯେତେବେଳେ କନ୍ୟାସୁନା ଦେଇ ଆଠବର୍ଷର ଝିଅ ଚନ୍ଦ୍ରପ୍ରଭାକୁ ବିଭା ହୁଅନ୍ତି, ତାହାକୁ ସମାଜ ଅନୁମୋଦନ କରେ । ମାତ୍ର ନଅ ବରଷରେ ଚନ୍ଦ୍ରପ୍ରଭା ବିଧବା ହେଲେ, ଆଉ ଥରେ ବାହା ହୋଇ ଘର ସଂସାର କରି ସୁଖରେ ରହିବାକୁ ତାକୁ ସମାଜ ଦିଏନାହିଁ । ସମାଜର ଏଇ ନିର୍ମମ ଅବିଚାର ପ୍ରତି ଶ୍ଳେଷବାକ୍ୟ ପ୍ରକାଶ କରି ଫକୀରମୋହନ ଲେଖିଛନ୍ତି—

'ବୁଢ଼ା ବିଭା ବେଳେ ଥିଲ ମୁଖେ କନା ତାଙ୍କି
ରାଣ୍ଡି ବେଳେ ବାହାରିଲ କାଖେ ଶାସ୍ତ୍ର ଯାଞ୍ଚି ।
ଧନ୍ୟ ଧନ୍ୟ ହେ ସମାଜ ଜୁହାର ତୁମ୍ଭଙ୍କୁ
ଜୁହାରୁଛୁ ପୁଣି ତୁମ୍ଭ ବିଧି ବିଧାନକୁ ।
ଜାଣିଥିବ ଚନ୍ଦ୍ରପ୍ରଭା ପ୍ରତ୍ୟେକ ନିଶ୍ୱାସ
କରି ପକାଇବ କେତେ କୁଳକୁ ବିନାଶ ।'୧୮

'ବିଧବାର ଅଭିଶାପ' କବିତାରେ ଏକ ବାଳ ବିଧବାର କରୁଣ ଚିତ୍ର ଫକୀରମୋହନ ଦେଇଛନ୍ତି । ବାପ ଘରେ ବିଧବା କନ୍ୟାର ଦୁର୍ଦ୍ଦଶା ବର୍ଣ୍ଣନା କରିବାକୁ ଯାଇ ଉପରେ

ସୂଚିତ କବିତା ଦୁଇଟି ଭଳି ଲେଖକ ଓ ଅଗ୍ନି ବର୍ଷଣ କରିଛନ୍ତି । ସ୍ୱାମୀକୁ ହରେଇଲେ ବିଧବାର ଶ୍ୱଶୁର ଘରେ କେହି ଆଦର କରିବାକୁ ନଥାଏ । ସେ ବହୁ ଆଶା ଘେନି ଅତି ଆପଣାର ବାପ ଘରକୁ ଫେରିଆସେ । ଜନ୍ମଦାତ୍ରୀ ମା ତାକୁ କୋଳକୁ ଆଦରି ନିଅନ୍ତି । ତାହାର ଉପସ୍ଥିତିକି ଭାଇ ଓ ବାପା ଅନାବଶ୍ୟକ ମଣୁଥିଲେ ବି ଗୌରବରେ ସହିଯାନ୍ତି । ଦୁଇଜଣଯାକ ଅଳ୍ପବୟସ୍କୀ ଭାଉଜ କୌଣସିମତେ ବିଶେଷ ଆପତ୍ତି କରନ୍ତି ନାହିଁ । ତେବେ ଏମାନଙ୍କ ଗୌରବତା ନିଃସ୍ୱାର୍ଥପର ନୁହେଁ । ଯେଉଁ କାମ କୌଣସି ପୋଇଲି ବି କରିବ ନାହିଁ, ସେ ସବୁ କାମ ଅକୁଣ୍ଠ ଚିତ୍ତରେ ଏହି ବିଧବା କରେ । ପାଛିରେ ପଦେ ବୋଲି ପ୍ରତିବାଦର ବାଣୀ ଫୁଟେ ନାହିଁ । ଯେମିତି ଅନେକ ଦିନରୁ ସେ ମୂକ । ଗ୍ରୀଷ୍ମ ମଧ୍ୟାହ୍ନର ଦାରୁଣ ଖରାରେ ଯେତେବେଳେ ଘରର ବିରାଡ଼ିଟି ବି ଆରାମରେ ଶୋଇଥାଏ, ସେତେବେଳେ ମଧ୍ୟ ଏହି ଦୁଃଖୀ ବିଧବାର ବିଶ୍ରାମ ନଥାଏ । ବାର ପାଇଟି ଧନ୍ଦାରେ ସେ ଗୃହଆଡ଼େ ଚରଖି ପରି ଘୂରୁଥାଏ । ଅତିବେଶୀ ଥକାହେଲେ, ବାଡ଼ିଦୁଆରେ ବା ଢେଙ୍କିଶାଳରେ ନିମିଷେ ଆଖିବୁଜି ପଡ଼ିଯାଏ । ଏଥିଲାଗି ପୁଣି ତାକୁ ଭାଇ ଭାଉଜଙ୍କ ପାଖରୁ ଅନେକ କଥା ଶୁଣିବାକୁ ପଡ଼େ । ତାହାର ଏହି ଦୁଃଖରେ କେହି ଆହା କରନ୍ତି ନାହିଁ । କେବଳ ଗର୍ଭଧାରିଣୀ ମାଆ ଆଖିରୁ ଅଲକ୍ଷ୍ୟରେ ଦୁଇଟୋପା ଲୁହ ଝରିପଡ଼େ । ୧୯

ନିଜର ଏହି ସମସ୍ତ ଦୁର୍ଦ୍ଦଶାର କାରଣ ଅବୋଧ ନାରୀ କିଛି ବୁଝେନାହିଁ । ସେ ନିଜର ଭାଗ୍ୟକୁ ଦୋଷଦେଇ ପଡ଼ିରହେ । ତାର ଚଉପାଖରେ ଯେଉଁ ଅସଂଖ୍ୟ ଶତ୍ରୁ ପୂରି ରହିଛନ୍ତି, ସେ ବୁଝି ବୁଝେନାହିଁ । ଯେଉଁ ବ୍ରାହ୍ମଣ ଗୋସାଇଁମାନେ ପୁରୁଷକୁ ସାତଥର ବିଭାଲାଗି ବ୍ୟବସ୍ଥା କରନ୍ତି, ସେମାନେ ଏହି ବାଳିକାର ଦୁଃଖ ଦେଖି ଦେଖନ୍ତିନାହିଁ, ଶାସ୍ତ୍ରର ନିର୍ଦ୍ଦେଶକୁ ସ୍ପଷ୍ଟ ଦିବାଲୋକରେ ଅସ୍ୱୀକାର କରନ୍ତି, ଧର୍ମ ନାମରେ ସବୁ ଅଧର୍ମ ଆଚରଣ କରନ୍ତି । ଅକୁଂଠ ଚିତ୍ତରେ ସମାଜ ଶରୀରରେ ଭ୍ରୁଣହତ୍ୟା, ବେଶ୍ୟାବୃତ୍ତିଆଦି ପାପପଙ୍କ ବାଳି ଦିଅନ୍ତି । ଏ ସବୁ ବ୍ୟଭିଚାରଲାଗି ଏମାନେ ଯୁବତୀ ବିଧବାକୁ ଦୋଷ ଦିଅନ୍ତି । ମାତ୍ର ଯେଉଁ ପ୍ରବୃତ୍ତିର ଶକ୍ତି ଆଗରେ ବହୁ ତପସ୍ୱୀ ସାଧକ ପରାଜୟ ମାନିଚନ୍ତି, କି ଶକ୍ତି ବଳରେ ବା ସରଳ, ନିରୀହ ଅଜ୍ଞାନ ବାଳିକା ଚଉପାଶର ପ୍ରବଞ୍ଚନା ଲୋଲ ଚକ୍ଷୁରୁ ନିଜକୁ ରକ୍ଷା କରନ୍ତା । ଏହି ପ୍ରସଙ୍ଗରେ କବିଙ୍କ ଆତ୍ମିକ ଅନୁଚିନ୍ତନରେ ଯେଉଁ ବ୍ୟାକୁଳତା ପ୍ରକାଶ ପାଇଛି, କାଳେ କାଳେ ତାହା ପ୍ରତ୍ୟେକ ବିଚାରବନ୍ତ ମାନବର ପ୍ରାଣକୁ ଛୁଇଁବ—

'ଅସହ୍ୟ ହେବାରୁ ଗାଇଗଲି ଏତେକଥା
କରିବାର ନାହିଁ ମୋର କିଛିହିଁ ଯୋଗ୍ୟତା !
ଜ୍ଞାନହୀନ ଧନହୀନ ଦେହେ ନାହିଁ ବଳ
ବୃଥାରେ କରିବ ସିନା କ୍ରନ୍ଦନ ସମ୍ବଳ ।

ଦେହେଥିଲେ ବଳ ଦ୍ୱାରେ ଦ୍ୱାରେ କର ଭିକ୍ଷା
ହାତଯୋଡ଼ି ସମାଜକୁ ଦେଉଥାନ୍ତି ଶିକ୍ଷା ।' ୨୦

ସମାଜରେ ନାରୀ ନିର୍ଯାତନାର ଏହି ବାସ୍ତବ ଚିତ୍ର ସହିତ, ମଧୁସୂଦନଙ୍କ 'ପତିତା ରମଣୀ', 'ନରନାରୀ', କନ୍ୟା ଫକୀରମୋହନଙ୍କ 'ନାରୀ' ପ୍ରଭୃତି କବିତା ପଢ଼ିଲେ, ଗଭୀର ବେଦନା ବୋଧ ବ୍ୟତୀତ ଏ ଯୁଗର କବି ପ୍ରାଣରେ ନାରୀର ବ୍ୟକ୍ତିତ୍ୱ, ସାମାଜିକ ମର୍ଯ୍ୟାଦା ଲାଗି କପରି ଉଚ୍ଚ ସମ୍ମାନ ଥିଲା, ତାହା ସହଜରେ କଳନା କରିହୁଏ । ପତିତା ରମଣୀର ଦୁଃଖରେ ମଧୁସୂଦନଙ୍କ ହୃଦୟ କାନ୍ଦିବା ସଙ୍ଗେ ସଙ୍ଗେ, ସେ ନାରୀର ଲଲାଟରେ ଦେବୀତ୍ୱ ଓ ସତୀତ୍ୱର ଲାଂଛନ ଦେଖିଛନ୍ତି ।

"କେ ଗୃହିବ ଗୃହୁଁ ତଡେ ଗର୍ବ ଅବଜ୍ଞାରେ
କନ୍ଦୁ ଲେ ଭଗିନୀ ମୁହିଁ ତୋ ଦୁଃଖେ କାତର,
ଆହତ ମୋ ପ୍ରାଣ ତୋର ମର୍ମ ହାହାକାରେ
କାନ୍ଦଇ ବିକଳେ ମୋର ବ୍ୟଥିତ ଅନ୍ତର"...

ମତ ସହିତ—'ସତୀତ୍ୱ, ଦେବୀତ୍ୱ ତାର ଲଲାଟେ ଲିଖିତ

"କେ ତାକୁ ସେଥିରୁ ବଣ୍ଟେ କରିବ ବଞ୍ଚିତ ?"—ଉକ୍ତିକୁ ମିଳେଇ ପଢ଼ିଲେ ବେଶ ବୁଝିହୁଏ ।" ୨୧

ନାରୀ ବ୍ୟତୀତ ମାନବ ସୃଷ୍ଟିର ଧାରଣା ଅସମ୍ଭବ । ନାରୀ ଯୁଗେ ଯୁଗେ ସତ୍ୟ, ନ୍ୟାୟ, ଧର୍ମ, ପବିତ୍ରତା ଓ ଶାନ୍ତିର ଆଧାର । ଏହି ଭାବରେ ନାରୀକୁ ଯୁଗ ନମିତା କବିମାନେ ସମ୍ମାନ କରିଛନ୍ତି । 'ସତୀବ୍ରତ ସତୀଦ୍ରୋହୀ ପତିର ଉକ୍ତି' କବିତାରେ ରାଧାନାଥ ଶୁଦ୍ଧ ପବିତ୍ର ନାରୀ ମୂର୍ତ୍ତିର ଆରାଧନା କରିଛନ୍ତି । ଏହି କବିତାର ଭାବ ମନ୍ତ୍ରର ବାଣୀପରି ଗମ୍ଭୀର, ଭାଷା ଉଦାତ୍ତ । ପାର୍ବତୀ, ସାବିତ୍ରୀଭଳି ନାରୀ ଚରିତ୍ରରେ ସତ୍ୟ ଲାଗି ଚରମ ତ୍ୟାଗ ଓ ପରମ ନିଷ୍ଠାର ନିଦର୍ଶନ ଦେଖାଇଛନ୍ତି । ନାରୀ ନରର ସଙ୍ଗିନୀ, ନର ନାରୀର ସଖା । ଏକର ଅଭାବ ବିପରୀତ ଧର୍ମରେ ଅପର ପୂର୍ଣ୍ଣ କରିଦିଏ । ବିଶ୍ୱପରିବାରରେ ଜୀବନର ବିକାଶ ଓ ପୂର୍ଣ୍ଣତା ଲାଗି ନର ଓ ନାରୀର ମିଳନ ଏକାନ୍ତ କାମ୍ୟ । ମଧୁସୂଦନଙ୍କ ଉକ୍ତିରେ ଏଇକଥା ସୁନ୍ଦର ପ୍ରକାଶ ପାଇଛି ।

'ପରସ୍ପର ପାଶେରହି ବିଶ୍ୱ ପରିବାରେ
ଜ୍ଞାନ-ପ୍ରେମ-କର୍ମ ଯୋଗେ ଲଭିଣ ଏକତା
ନରନାରୀ ସତ୍ୟ-ଶିବ-ସୁନ୍ଦର ସେବାରେ
ଦେଖାଇବେ ଜୀବନର ପୂର୍ଣ୍ଣ ସାର୍ଥକତା । ୨୨

## ପ୍ରଚଳିତ ଧର୍ମଜୀବନର ଚିତ୍ର

ଏହି ଅନ୍ଧକାର ଓ ଅସଙ୍ଗତି ଭିତରେ ଆଲୋକ ଦେଖାଇବାକୁ ପ୍ରଚଳିତ ଧର୍ମ ଏକା ବେଳେକେ ଅସମର୍ଥ ଥିଲା । ପୌରହିତ୍ୟ ଧର୍ମର ଅଧୋଗତି ଭଳି, ମଠ, ମନ୍ଦିର ଆଦି ସାଧାରଣ ଧର୍ମାନୁଷ୍ଠାନରେ ବ୍ୟଭିଚାର ଅବାଧ ଗତିରେ ଚାଲିଥିଲା । ରାଧାନାଥ 'ମହାଯାତ୍ରା'ରେ, ଫକୀରମୋହନ 'ଉତ୍କଳଭ୍ରମଣଂ'ରେ ଓ ଅନେକ କ୍ଷୁଦ୍ର କବିତାରେ ପୁରୋହିତ, ପଣ୍ଡା ଓ ମହନ୍ତଙ୍କର ଚରିତ୍ରର ବିସ୍ପଷ୍ଟ ଚିତ୍ର ଦେବା ସଙ୍ଗେ ସଙ୍ଗେ ଏମାନଙ୍କ କବଳରୁ ସମାଜକୁ ମୁକ୍ତ କରିବା ଲାଗି ଉପାୟ ବତାଇଛନ୍ତି ।

ସମାଜ ଶୃଙ୍ଖଳାରେ ବ୍ରାହ୍ମଣ ଓ ପୁରୋହିତଙ୍କର ପ୍ରାଚୀନ ଯୁଗର ମହତ୍ତ୍ୱ ଦାନକୁ ଏମାନେ କେହି ଅସ୍ୱୀକାର କରି ନାହାନ୍ତି । ମାତ୍ର ପ୍ରଚଳିତ ସମାଜ ବ୍ୟବସ୍ଥାରେ ଧର୍ମ ନାମରେ ଏମାନଙ୍କ ବ୍ୟଭିଚାରକୁ ସମସ୍ତେ ତୀବ୍ର ସମାଲୋଚନା କରିଛନ୍ତି । ପ୍ରାଚୀନ ଭାରତର ଗୌରବ ବର୍ଣ୍ଣନା କରିବାକୁ ଯାଇ ମହାଯାତ୍ରାରେ ରାଧାନାଥ ଲେଖିଛନ୍ତି, ବ୍ରାହ୍ମଣମାନେ ଥିଲେ ଜ୍ଞାନସେବୀ । ସମାଜ ଜୀବନରୁ ଅଜ୍ଞାନତାର ଅନ୍ଧକାର ଦୂର କରୁଥିଲେ । ସେମାନେ ନିଜେ ଜ୍ଞାନଚର୍ଚ୍ଚା କରି ଯେପରି ଜ୍ଞାନର ବିକାଶ ସାଧନ କରିଥିଲେ, ସେହିପରି ଗୁରୁ ଭାବରେ ଅଧୀତ ଜ୍ଞାନର ପ୍ରଚାର କରୁଥିଲେ । ମାତ୍ର କାଳର ପ୍ରଭାବରେ ଏହି ଆଦର୍ଶ ବ୍ରାହ୍ମଣ ଜାତି ବହୁ ପୂର୍ବରୁ ଲୋପ ପାଇ ଯାଇଥିଲେ । ସେମାନଙ୍କ ସ୍ଥାନରେ ଯେଉଁମାନେ ଥିଲେ, ସେମାନେ ନାମକୁ ମାତ୍ର ବ୍ରାହ୍ମଣ । ଷଡ଼କର୍ମ ଭିତରୁ କେବଳ ପ୍ରତିଗ୍ରହହିଁ ସେମାନଙ୍କ ପେଶା ଥିଲା । ବ୍ରାହ୍ମଣତ୍ୱର ଶେଷ ସଙ୍କେତ ରୂପେ ଧାରଣ କରୁଥିବା ଉପବୀତକୁ ଜୀବିକାର ଅଙ୍ଗରୂପେ ସେମାନେ ବ୍ୟବହାର କରନ୍ତି । ସେମାନେ କୂପମଣ୍ଡୂକ । ନିଜ ଅନ୍ଧ ଜ୍ଞାନର ବାହାରକୁ ଦୃଷ୍ଟି ପକାନ୍ତି ନାହିଁ । ନିରର୍ଥକ ପରମ୍ପରାର ବିଧି ବିଧାନରେ ସମାଜକୁ ବାନ୍ଧି ନିଜେବି ସେହି ବନ୍ଧନରେ ପଡ଼ନ୍ତି । ମାନବିକ ଉଦାରତାର ଏମାନେ ଏକାନ୍ତ ବିରୋଧୀ । ଏମାନଙ୍କ ଭେଦବୁଦ୍ଧିରେ ମଣିଷ ମଣିଷକୁ ଅପବିତ୍ର ମଣେ ।

ସ୍ପଷ୍ଟ ବର୍ଣ୍ଣନାରେ ଯେପରି ରାଧାନାଥ, ସେହିପରି ଫକୀରମୋହନ ଅଧୋଗତ ବ୍ରାହ୍ମଣ ସମାଜର କରୁଣ ଚିତ୍ର ଅଂକନ କରିଛନ୍ତି । 'ଅବସର ବାସରେ' କବିତା ସଂଗ୍ରହରେ 'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ' ଓ 'ରାମରଥ' ଭଳି କବିତାରେ ଏହାର ସୁନ୍ଦର ନିଦର୍ଶନ ରହିଛି ।

ମଠ ଓ ମନ୍ଦିରର ବ୍ୟଭିଚାର ଫକୀରମୋହନଙ୍କୁ ସବୁଠାରୁ ବିବ୍ରତ କରିଛି । ଅତୀତରେ ଏଗୁଡ଼ିକ ଦେଶର ସାଂସ୍କୃତିକ ଜୀବନର ମୂଳଦୁଆ ଥିଲା । ମାତ୍ର ଏ ଯୁଗରେ ତାହା ବ୍ୟଭିଚାରର କେନ୍ଦ୍ର ହୋଇଥିଲା । ଓଡ଼ିଶାର ଶ୍ରେଷ୍ଠ, ଜଗନ୍ନାଥ ମନ୍ଦିର ଓ ପୁରୀର ବିଖ୍ୟାତ ମଠ ଗୁଡ଼ିକରେ ପଣ୍ଡା ଓ ମହନ୍ତମାନଙ୍କ ଭିତରେ ବି ନିରକ୍ଷର ଥିଲେ । ଏମାନଙ୍କ ବିଦ୍ୟା ଚର୍ଚ୍ଚା

ଆଖଡ଼ା ଘର ମଧ୍ୟରେ ସୀମାବଦ୍ଧ । ମନ୍ଦିର ପଣ୍ଡାଙ୍କୁ ଆଟ୍‌କାଏ ଭୋଗ ଦେଲେ, ସେମାନେ ଯାତ୍ରୀଙ୍କ ମୁକ୍ତିର ସମସ୍ତ ବ୍ୟବସ୍ଥା କରି ଦିଅନ୍ତି । ପୁରୀର ମୁକ୍ତି ମଣ୍ଡପର ପଣ୍ଡିତମାନେ ପ୍ରକୃତରେ ଯେଉଁକି ବିଦ୍ୟାବନ୍ତ ନୁହନ୍ତି, ତାହାର ବହୁଗୁଣ ଆସ୍ଫାଳନ କରିଥାନ୍ତି । ମନ୍ଦିରରେ ଯେଉଁ ଦ୍ୱାରୀ ପଢ଼ୀଆରୀ ଅଛନ୍ତି, ସେମାନେ ପଇସାରେ ଯାତ୍ରୀଙ୍କ ପାପପୁଣ୍ୟ ମାପନ୍ତି । ମନ୍ଦିର ପ୍ରକୃତରେ ପବିତ୍ର ଦେବ ମନ୍ଦିର ହୋଇ ନଥିଲା । ଏହା ଥିଲା ସବୁ ପ୍ରକାର ଶଠତାର କ୍ଷେତ୍ର । ମଠର ମହନ୍ତମାନେ ଖୁବ୍ ଧନୀ ଥିଲେ । ସେମାନେ ଧର୍ମଦ୍ୱାର କର୍ମଦ୍ୱାର ବୋଲି ଛଳନାରେ ଧୁରନ୍ଧର ଥିଲେ । ୨୩

ପୁରୋହିତ, ପଣ୍ଡା ଓ ମହନ୍ତଙ୍କ ବ୍ୟତୀତ ଧର୍ମନାମରେ ଗାଁ ଗହଳରେ ବ୍ୟଭିଚାର ବିସ୍ତାର କରିବା ଭଣ୍ଡ ସନ୍ନ୍ୟାସୀଂକ କାର୍ଯ୍ୟଥିଲା । ଯେଉଁ ସବୁ ସାମାଜିକ କାରଣରୁ ସରଳ ଲୋକେ ସନ୍ନ୍ୟାସୀ ସାଜି ନାନା ପ୍ରକାର କୁକର୍ମରେ ମାତନ୍ତି, ତାହା ନିଜ ଗଳ୍ପପରି କବିତାରେ ଫକୀରମୋହନ ପ୍ରକାଶ କରିଛନ୍ତି । ଏ ସମ୍ବନ୍ଧରେ ଗୋଟିଏ ପ୍ରବାଦ ଏବେ ବି ଲୋକରେ ପ୍ରଚଳିତ ଅଛି—"ଅନ୍ତାରୁ, କନ୍ତାରୁ, ପେଟବିକଳିଆ ବଅଁଶମାରୁ ।" ଦୁର୍ଭିକ୍ଷ ଓ ଦାରିଦ୍ର୍ୟ କବଳରେ ପଡ଼ି, ନୋହିଲେ କୌଣସି ଅସାମାଜିକ କାର୍ଯ୍ୟ କରି ଅଥବା ଆଳସ୍ୟ ଯୋଗୁଁ ସୁସ୍ଥଲୋକେ ଭଣ୍ଡ ସନ୍ନ୍ୟାସୀ ହୁଅନ୍ତି । ବିଶେଷଭାବରେ କୁସଂସ୍କାରାଚ୍ଛନ୍ନ ପଲ୍ଲୀ ବାସୀଂକ ଧର୍ମଭୀରୁତା ସହଜ ଜୀବନୋପାୟର ସୁଯୋଗ ଦେଉଥିବାରୁ କେତେକ ଚତୁରଲୋକ ସନ୍ନ୍ୟାସୀ ଭେକ ଧରିଥାନ୍ତି । ଏହାର ଏକ ସୁନ୍ଦର ଚିତ୍ର 'ଅବସର ବାସରେ' ଗ୍ରନ୍ଥର ଭଣ୍ଡସନ୍ନ୍ୟାସୀ କବିତାରେ ଫକୀରମୋହନ ଦେଇଛନ୍ତି ।

## ଦେଶୀୟ ଚିକିତ୍ସା

ପ୍ରାଚୀନ ଭାରତରେ ଚିକିତ୍ସା ଶାସ୍ତ୍ରର ଖୁବ୍ ଆଦର ଥିଲା । ବହୁବିଦିତ ଚରକ ଓ ସୁଶ୍ରୁତଙ୍କ ନିଦାନ ଓ ଶଲ୍ୟବିଦ୍ୟା ଗ୍ରନ୍ଥ କୁଷାଣ ରାଜତ୍ୱରେ ରଚିତ ହୋଇଥିଲା । ୨୪ ମାତ୍ର ଏହାର ବହୁ ପୂର୍ବରୁ ତକ୍ଷଶୀଳାରେ ଚିକିତ୍ସା ବିଦ୍ୟାର ଚର୍ଚ୍ଚା ପ୍ରତିଷ୍ଠା ଲଭିଥିଲା । ବାସ୍ତବ ପରୀକ୍ଷା ଉପରେ ଏହି ଶିକ୍ଷା ପ୍ରତିଷ୍ଠିତ ଥିଲା । ତକ୍ଷଶୀଳାର ଚିକିତ୍ସା ଶାସ୍ତ୍ର ଉପାଧ୍ୟାୟମାନେ କେନ୍ଦ୍ର ଏସିଆ, ଉତ୍ତର ଆଫ୍ରିକା, ପ୍ରାଚୀନଗ୍ରୀସ୍, ଚୀନ ଓ ଭାରତରେ ସମ୍ମାନିତ ହେଉଥିଲେ । ବୁଦ୍ଧଯୁଗରେ ଏହି ବୈଦ୍ୟମାନେ ଧର୍ମ ପ୍ରଚାରକଂକ ସହିତ ବିଦେଶକୁ ଯାଉଥିଲେ । ଏମାନଙ୍କୁ ଥେରପୁତ୍ତ ବୋଲି କୁହା ଯାଉଥିଲା । ଏମାନଂକର କାର୍ଯ୍ୟଥିଲା ମାନବସେବା ଓ ଜୀବର କଲ୍ୟାଣ ସାଧନ । ମାତ୍ର ବିଜ୍ଞାନର ଦାନକୁ ମାନବ ସବୁବେଳେ ଉପଯୁକ୍ତ ଭାବେ ବ୍ୟବହାର କରି ପାରିନାହିଁ । କୁସଂସ୍କାର ଓ ଅନ୍ଧ ବିଶ୍ୱାସର ମରୁଭୂମିରେ ଏହାର ଧାରା ଶୁଖିଯାଏ । ବିଶେଷ ଭାବରେ ଭାରତୀୟ ଚିକିତ୍ସା ବିଜ୍ଞାନର ଭାଗ୍ୟରେ ଏହାହିଁ ଘଟିଥିଲା । କ୍ରମେ ଏହା ବାସ୍ତବ ପରୀକ୍ଷା ପଦ୍ଧତି ହରାଇ

ଥିଲା । ବାସ୍ତବ ଦୃଷ୍ଟି ସମ୍ପନ୍ନ ବୈଜ୍ଞାନିକଙ୍କ ପରୀକ୍ଷା ଉପରେ ପ୍ରତିଷ୍ଠିତ ନ ହୋଇ, କ୍ରମେ ପୁରୁଣା ବୈଦ୍ୟଂକ ବିଶ୍ୱାସ ପରମ୍ପରାରେ ପ୍ରଚଳିତ ହେବାକୁ ଲାଗିଲା । ସେଥିଲାଗି ନବ ଶିକ୍ଷିତଂକର ପ୍ରାଚୀନ ଚିକିତ୍ସା ପ୍ରଣାଳୀ ପ୍ରତି ତାଚ୍ଛଲ୍ୟଭାବ ପ୍ରକାଶ ପାଇଥିଲା । ତଥାପି କେତେକ ବୈଦ୍ୟ ସେମାନଙ୍କ ଅନୁଭୂତି, ପ୍ରବୀଣତା, ନିଷ୍ଠା, ଓ ଆଦର୍ଶ ମାନବିକତା ପାଇଁ ଆଦୃତ ହେଉଥିଲେ । ଉତ୍କଳଭ୍ରମଣଂରେ 'ଗନ୍ଦେଇ ମିଆଁ ନନା' ଏହିପରି ଜଣେ ବୈଦ୍ୟ । ତାଙ୍କ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଫକୀରମୋହନ ଲେଖିଥିଲେ—

"ହନେ ବାବୁମାନଙ୍କର ଫିଟପାରେ ଜ୍ଞାନ
ସେହିନ ପାଇବ ପୂଜା ଚରକ ନିଦାନ ।" ୨୫

## ତିନି ପ୍ରଧାନ କବିଙ୍କ ସମାଜ ଚିନ୍ତା

ଓଡ଼ିଆ କବିତାର ଆଦ୍ୟ ଅଭ୍ୟୁଦୟ ଯୁଗର ତିନିପ୍ରଧାନ ନିର୍ମାତା—ଫକୀରମୋହନ, ରାଧାନାଥ ଓ ମଧୁସୂଦନ । ସମସ୍ତେ ଓଡ଼ିଆ ଜୀବନର କମ୍ର କଳାକାର । ନିଜ ନିଜ ଶିଳ୍ପ ମୁକୁରରେ ଏମାନେ ନିଜ ଦେଶ ଓ କାଳର ମୁଖ ଦେଖିଛନ୍ତି । କେବଳ ସୁନ୍ଦର ନୁହେଁ, କୁତ୍ସିତ ଅଂଶତକ ବି ସେମାନଂକ ଦୃଷ୍ଟିରେ ଧରା ଦେଇଛି । ସର୍ବୋପରି କୁତ୍ସିତକୁ ସୁନ୍ଦରରେ ପରିଣତ କରିବାଲାଗି ଏମାନେ ଇଙ୍ଗିତ ଦେଇଛନ୍ତି । ଏହା ଯୁଗଜନ୍ମା କବିତ୍ରୟଙ୍କ ସମାଜ ଚିନ୍ତାରେ ସାମ୍ୟ । ବୈଷମ୍ୟ—ଏମାନଙ୍କ ଅନ୍ତର୍ଗତ ମାନସିକ ଭାବଭଙ୍ଗୀରେ । (ଯଦି ସମୁଦାୟ ଓଡ଼ିଆ ସମାଜକୁ ଏକ ଉଦ୍ୟାନ ଓ ଏହି ତ୍ରୟୀଙ୍କୁ ଏହାର ମାଳାକାର ରୂପେ କଳ୍ପନା କରୁ, ତାହେଲେ ଦେଖିବୁ, ସମସ୍ତେ ପରସ୍ପରର ପରିପୂରକ ହୋଇ ଏହି ଉଦ୍ୟାନଟିକୁ ଶୁଦ୍ଧ ଓ ଶୋଭନ ରୂପେ ଗଢ଼ିବାକୁ ଉଦ୍ୟମ କରିଛନ୍ତି । ରାଧାନାଥ ବଡ ମହୀରୁହ ପ୍ରତି ଦୃଷ୍ଟି ଦେଇଛନ୍ତି । ଏମାନେ ସୁଫଳପ୍ରସୂ ହେଲେ ଉଦ୍ୟାନର ଉଦ୍ଦେଶ୍ୟ ସଫଳ ହେବ । ଏମାନେ ସମସ୍ତ ଧନ ଓ କ୍ଷମତାର ଅଧିକାରୀ । ଏହି ଧନ ଓ କ୍ଷମତାର ସଦ୍‌ବ୍ୟବହାର ହେଲେ ଦେଶର ମଙ୍ଗଳ ଓ ଦଶର ମଙ୍ଗଳ । ଫକୀରମୋହନଙ୍କ ଦରଦୀ ରସଦୃଷ୍ଟି କେବଳ ମହୀରୁହରେ ଆବଦ୍ଧ ନାହିଁ । ତାହା ଉଦ୍ୟାନର ସମସ୍ତ ଗୁଳ୍ମଲତାର ସୁଖ ଦୁଃଖ ବୁଝେ । ଉପଯୁକ୍ତ ସାର ବା ଆଲୋକ ନପାଇ, ତାହା ଯଦି ଝାଉଁଳି ପଡ଼େ, ସେଥିରେ ସେ ଅଧୀର ହୁଅନ୍ତି ; ତାହାର ଟିକିନିଖି ଖବର ବୁଝନ୍ତି, ଆରୋଗ୍ୟର ଉପାୟ ବତେଇ ଦିଅନ୍ତି । ମଧୁସୂଦନ ସବୁକଥା ଆଧ୍ୟାତ୍ମିକ ଦୃଷ୍ଟିରେ ବିଚାର କରୁଥିଲେ । ଦିବ୍ୟ ଦୃଷ୍ଟିରେ ସେ କେବଳ ଏହି ଉଦ୍ୟାନର ଶୁଚି ଓ ବାତାବରଣର ପବିତ୍ରତା ପାଇଁ ସଦା ଚିନ୍ତିତ ଥିଲେ । (ଏହି ତିନି ମାଳାକାରଙ୍କ ଯତ୍ନରେ ଓଡ଼ିଆ ସମାଜକୁ ଶୁଦ୍ଧ ଓ ଶୋଭନ କରି ଗଢ଼ିବାକୁ ଦେଶମୟ ଏକ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା । ଏମାନେ ଥିଲେ ଯୁଗର ଆଦର୍ଶ, ସମାଜ ସଂସ୍କାରକ ନେତା । )

ଚତୁର୍ଥ ଅଧ୍ୟାୟ

# ଜାତୀୟତା ଓ ସ୍ୱଦେଶପ୍ରେମ

"କବିତା କେବଳ କବିଙ୍କ ଉପରେ ନିର୍ଭର କରେ ନାହିଁ । ଜାତିର ମାନସ ଓ ଏହି ଜାତୀୟ ମାନସ ସୃଷ୍ଟି ଆଧ୍ୟାତ୍ମିକ, ବୌଦ୍ଧିକ ତଥା ନନ୍ଦନତାତ୍ତ୍ୱିକ ପରମ୍ପରା ଓ ପରିବେଶ ଉପରେ ନିର୍ଭର କରେ ।"

ଶ୍ରୀ ଅରବିନ୍ଦ

ଭୂମିଖଣ୍ଡ ପ୍ରତି ଆସକ୍ତି ଓ ଗୋଷ୍ଠୀ ପ୍ରତି ଆକର୍ଷଣ ସଭ୍ୟତାର ଆଦ୍ୟ ବିକାଶ ଦିନରୁ ଚାଲିଆସିଛି । ଭାଷାର ଜନ୍ମ ପରେ ଭୂମି ଚେତନା ସହିତ ଏକ ଭାଷାଭାଷୀ ସମାଜ ମଧ୍ୟରେ ଗୋଷ୍ଠୀ ଚେତନା ପ୍ରାଞ୍ଜଳ ଭାବରେ ପ୍ରକାଶ ପାଇ ଆସିଛି । ଏହି ଭୂମି ଓ ଗୋଷ୍ଠୀ ଚେତନାହିଁ ଜାତୀୟତାର ମୂଳଦୁଆ । ଏହି ଜାତୀୟ ଚେତନା ପ୍ରଭାବରେ ମନୁଷ୍ୟ ପ୍ରଥମେ ଆତ୍ମୋତ୍ସର୍ଗ କରିବାକୁ ଶିଖିଛି, ନିଜର ସୀମିତ ବ୍ୟକ୍ତି ସତ୍ତାକୁ ଦେଶ ବା ଜାତିର ବୃହତ୍ତର ସତ୍ତାରେ ଉପଲବ୍ଧି କରିଛି । ଏଇଥିରେ ପ୍ରକାଶ ପାଇଛି ପୁରାଣ, ଧର୍ମ, ଦର୍ଶନ ଓ ସାହିତ୍ୟ । ଏଇଥିରୁ ବିକଶିତ ହୋଇଛି ବିଜ୍ଞାନ, ପ୍ରଯୁକ୍ତି, କଳା, ଭାସ୍କର୍ଯ୍ୟ । ଏଥିଲାଗି ଯଥାର୍ଥରେ କୁହାଯାଇଛି— "ଗୋଟିଏ ଜାତିର ସାଂସ୍କୃତିକ ତଥା ରାଜନୈତିକ କ୍ରିୟାକଳାପ, ଆକାଂକ୍ଷା ଓ ଅଭିରୁଚିର ଚରିତ୍ର ପ୍ରକାଶହିଁ ଜାତୀୟତା" ।[୧]

## ଇତିହାସର ଦୃଷ୍ଟାନ୍ତ

ଦେଶପ୍ରେମ ଓ ଜାତୀୟତା ଯେତେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଆଲୋଚନା ବିସ୍ତୃତ ଓ ଗଭୀର । ଆଧୁନିକ ଇଉରୋପୀୟ ଜୀବନ, ସାହିତ୍ୟ, ରାଜନୀତିକୁ ଏହି ଜାତୀୟଭାବନା ସର୍ବତୋଭାବେ ସ୍ପର୍ଶ କରିଛି । ଏଥିଲାଗି ଅନେକ ଐତିହାସିକ ପଣ୍ଡିତ ଆଧୁନିକ ଯୁଗର ଇଉରୋପୀୟ ଇତିହାସକୁ ଜାତୀୟତାର ଇତିହାସ ବୋଲି କହିଥାନ୍ତି । ମାତ୍ର ଏହି ଇତିହାସ ଆଲୋଚନା କେବଳ ଆଧୁନିକ କାଳର ସୀମା ଭିତରେ ଆବଦ୍ଧ ହୋଇ ରହିନାହିଁ । ପୁଣି ଏହାକୁ ପୂର୍ଣ୍ଣାଙ୍ଗ

କରିବା ଲାଗି ନୃତତ୍ତ୍ୱ, ସାମାଜିକ ଓ ସାଂସ୍କୃତିକ ଇତିହାସର ସୂତ୍ର ଅବଲମ୍ବିତ ହୋଇଅଛି । ଆଜି ମାନବର ଚିନ୍ତା ଚରିତ୍ରରେ, ସମାଜର କ୍ରମବିକଶିତ ସ୍ତର ଭେଦରେ, ଇତିହାସରେ ଘଟଣା ପର୍ଯ୍ୟାୟରେ, ଭାଷା, ଧର୍ମ, ସାହିତ୍ୟ ଦର୍ଶନ, କଳା ଓ ବିଜ୍ଞାନର କ୍ରମବିକଶିତ ସୋପାନ ସଂକ୍ରରେ ଜାତୀୟ ଜୀବନର ବିକାଶ ସୂତ୍ର ଖୋଜା ହେଉଅଛି ।

ଅନେକେ ମନେ କରନ୍ତି—ଆମଦେଶକୁ ଜାତୀୟତା ପଶ୍ଚିମରୁ ଆମଦାନୀ ହୋଇଛି । ପାଶ୍ଚାତ୍ୟ ସମ୍ପର୍କ ପୂର୍ବରୁ ତାହାର କୌଣସି ଅସ୍ତିତ୍ୱ ଏ ଦେଶର ସାହିତ୍ୟ ଓ ସଂସ୍କୃତିରେ ଖୋଜିବା ନିରର୍ଥକ । ଏଭଳି ମତରେ ଆଂଶିକ ସତ୍ୟତା ଅଛି । ଆଧୁନିକ ଇଉରୋପୀୟ ଚିନ୍ତାରୁ ଜାତୀୟତାର ଯେଉଁ ବିଶଦ ଅର୍ଥ ମିଳେ, ତାହା ଆମ ପ୍ରାଚୀନ ଚିନ୍ତାଜଗତରୁ ମିଳେନାହିଁ । କାରଣ ଆଧୁନିକ ଇଉରୋପୀୟ ସମାଜ ଓ ଜୀବନ ଉନ୍ନତିର ଯେଉଁ ସୋପାନରେ ଉପନୀତ ହୋଇଛି ଆମ ସମାଜ ସେଇ ସୋପାନରେ କେବେ ପହଞ୍ଚି ନାହିଁ ।

ତଥାପି ଇତିହାସକୁ ଫେରି ଗ୍ରହିଁଲେ ଆମ ଜାତୀୟତାର ଆକାଂକ୍ଷା ଓ ଆଦର୍ଶ ପାଶ୍ଚାତ୍ୟ ମାନଙ୍କଠାରୁ ନିକୃଷ୍ଟତର ବୋଲି କହିବାର ଉପାଦାନ ନାହିଁ । ଅନ୍ୟ ଦେଶମାନଙ୍କରେ ଏକ ନିର୍ଦ୍ଦିଷ୍ଟ ସାମାଜିକ ଅବସ୍ଥାରେ ଜାତୀୟତାର ଆଦର୍ଶ ଯାହା ହୋଇଛି, ଆମ ଦେଶରେ ମଧ୍ୟ ତଦନୁରୂପ ହୋଇଛି । ସଭ୍ୟ ସମାଜର ପ୍ରାଚୀନ ଇତିହାସରେ ଓ ସଭ୍ୟତାରୁ ଦୂରରେ ଥିବା ଏବର ଆଦିମ ଅଧିବାସୀଙ୍କ ମଧ୍ୟରେ ଜାତୀୟତା ଥାଏ ଭୂଗୋଳ କୈନ୍ଦ୍ରିକ ତଥା ଗଣ ବା ଗୋଷ୍ଠୀ କୈନ୍ଦ୍ରିକ । ମଧ୍ୟଯୁଗରେ ଆମ ଦେଶ ଭଳି ଇଉରୋପର ଜାତୀୟତା ଧର୍ମମୂଳକ ଥିଲା । ଇଂରେଜୀ, ଫରାସୀ, ଜର୍ମାନୀ ପ୍ରଭୃତି ବିଭିନ୍ନ ଆଂଚଳିକ ଭାଷାର ବିକାଶ ଘଟିବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ଜାତୀୟ ଚରିତ୍ରର ବିକାଶ ଘଟିଲା । ଜନ୍ମଭୂମି ଓ ମାତୃଭାଷାର ଆକର୍ଷଣ ଯେ କି ପ୍ରବଳ, ତାହା ଦେଶଛାଡ଼ି ବିଦେଶକୁ ଗଲେ ବେଶ ଧାରଣା ହୋଇଥାଏ । ସେରାସାନ୍‌ମାନଙ୍କ ବିରୋଧରେ ପାଲେଷ୍ଟାଇନ୍‌ରେ ଇଉରୋପର ବିଭିନ୍ନ ଦେଶରୁ ସୈନ୍ୟ ଯାଇ ଏକତ୍ର ଯୁଦ୍ଧ କଲାବେଳେ ସେମାନଙ୍କ ମନରେ ନିଜ ଦେଶ ଓ ଜାତିର ଗୌରବ ଭାବନା ଉଦୟ ହୋଇଥିଲା । ସେଥିଲାଗି ଐତିହାସିକମାନେ କହନ୍ତି—ଧର୍ମଯୁଦ୍ଧରୁ ଜାତିପାଇଁ ଯୁଦ୍ଧ ମାତ୍ର ଗୋଟିଏ ସୋପାନ ଦୂରରେ ଥିଲା । ତା ପରେ ଆସିଲା— ପୁନର୍ଜାଗରଣ, ଶିଳ୍ପବିପ୍ଳବ, ଆନ୍ତର୍ଜାତୀୟ ବାଣିଜ୍ୟରେ ଜାତୀୟ ଅର୍ଥନୀତି କଳନାର ଯୁଗ । ସ୍ତରେ ସ୍ତରେ ଜାତିଗତ ବିଭେଦର ବୀଜ ବୁଣାଗଲା । ଊନବିଂଶ ଶତକ ଯାକ ଓ ବିଂଶ ଶତକର ଆଦ୍ୟପାଦରେ ପ୍ରଥମ ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ପୃଥିବୀରେ ଯେଉଁଠି ଥରେ ନା ଥରେ ଏଇ ଜାତୀୟତାର ମହାମନ୍ତ୍ର ଉଚ୍ଚାରିତ ହେଲିଚ, ସେଠି ସମର ଯଜ୍ଞରେ ଆହୁତି ଢଳା ହୋଇଛି । ଦାର୍ଶନିକ ଓ ଚିନ୍ତାନାୟକଙ୍କ ଦୃଷ୍ଟିରେ ଏଇ ଜାତୀୟତା ଯେତେ ଘୃଣିତ ବିବେଚିତ ହେଉଥିଲେହେଁ ଏହାର ମୋହାଚ୍ଛନ୍ନ ପ୍ରଭାବରୁ ପୃଥିବୀ ଏବେ ବି ମୁକ୍ତିପାଇନାହିଁ ।

## ଆଧୁନିକ ଯୁଗରେ ଜାତୀୟତାର ଉପାଦାନ ?

ଆଧୁନିକ ଯୁଗରେ ମାନବର ଚନ୍ତା ଓ ସାଧନା ଯେଉଁସବୁ ଦଗରେ ଧାବତ ହୋଇଅଛୁ ସେଇ ସକଳ ଦଗରୁ ଜାତୀୟତା ପାଇଁ ଉପାଦାନ ମିଳଅଛୁ । ଏକ ଦଗରେ ବୈଜ୍ଞାନକ ଉଦ୍ଭାବନ ଓ ଯନ୍ତ୍ର ଶକ୍ତର ବକାଶ ଅନ୍ୟ ଦଗରେ ଇତହାସ ଚେତନା, ଆର୍ଥିକ ସଂଗଠନ ଜାତୀୟତା ଓ ଦେଶପ୍ରେମ ବକାଶରେ ସାହାଯ୍ୟ କରଅଛୁ । ପ୍ରଥମତଃ ଭୌଗୋଳକ ଆବଷ୍କାର ଫଳରେ ପୃଥିବୀର ଧାରଣା ସ୍ପଷ୍ଟହେଲ । ଭୌଗୋଳକ ସ୍ଥିତରୁ ଦେଶର ଭୂମିଭାଗ ପ୍ରତ ସହଜ ଆକର୍ଷଣ ଦୃଢ଼ହେଲ । ଦ୍ୱିତୀୟତଃ ଯାନ ବାହନ ଓ ଭାବ ଆଦାନ ପ୍ରଦାନର ସୁବଧା ହେବାରୁ ଦେଶକାଳର ବ୍ୟବଧାନ ଦୂରୀଭୂତ ହେଲ । ଦେଶ ଭତରେ ଜାତୀୟତା ସଂହତ ରୂପ ଧାରଣ କଲ । ଆନ୍ତର୍ଜାତୀୟ କ୍ଷେତ୍ରରେ ଏହା ଅନ୍ୟ ପଡ଼ୋଶୀ ଦେଶ ସହତ ପ୍ରତଦ୍ୱନ୍ଦ୍ୱତାରେ ଅବତୀର୍ଣ୍ଣ ହେଲ । ଆଧୁନିକ ଶିକ୍ଷା ପ୍ରଣାଳୀ,ମୁଦ୍ରାଯନ୍ତ୍ର, ସମ୍ବାଦ ପତ୍ର ବେତାର ଆଦ ସାଧାରଣ ସାର୍ବଜନୀନ ଶିକ୍ଷାର ମାଧ୍ୟମରେ ଜାତୀୟ ଜୀବନର ସକଳ ସ୍ତରରେ ଏହାର ପ୍ରଭାବ ପ୍ରବେଶ କଲ । ଯୁଦ୍ଧ, ପ୍ରାକୃତକ ବପଦ, ବାଣିଜ୍ୟ ବା ଶିଳ୍ପ ସଂଗଠନ ଆଦ ସକଳ ଦଗରେ ଦେଶର ସର୍ବଶ୍ରେଣୀର ଜନସାଧାରଣଙ୍କ ଶକ୍ତ ଏକୀଭୂତ କରବା ସମ୍ଭବ ହେଲ । ପୂର୍ବେ ଯୁଦ୍ଧ ବା ସନ୍ଧ ହେଲେ କେବଳ ପ୍ରତଷ୍ଠିତ ସରକାରଙ୍କ ଭତରେ ହେଉଥିଲ । ମାତ୍ର ବର୍ତ୍ତମାନ ଦୁଇ ସରକାରଙ୍କ ଭତରେ ଯୁଦ୍ଧ ହେଲେ, ଦୁଇଜାତ ଅର୍ଥାତ୍ ଦେଶମୟ ଲୋକଙ୍କ ପ୍ରତ୍ୟକ୍ଷ ସାହାଯ୍ୟ ସମର୍ଥନରେ ହେଲ । ଏଭଳ ଯୁଦ୍ଧକୁ ଭନ୍ନ ରୁଚ, ଧର୍ମ, ପେଶା ଓ ମତବାଦର ଲୋକେ ଆଗଭର ହେଲେ । ଫଳରେ ଜାତୀୟ ସମ୍ମାନ ମନୁଷ୍ୟର ସମସ୍ତ ସାଧନାର ଊର୍ଦ୍ଧ୍ୱରେ ପ୍ରତଷ୍ଠିତ ହେଲ । ଐତହାସିକ, ଦାର୍ଶନକ, ସାହିତ୍ୟକ, ବୈଜ୍ଞାନକ, ବ୍ୟବସାୟୀ, ଶ୍ରମିକଆଦ ପ୍ରତ୍ୟେକ ଶ୍ରେଣୀର ଲୋକ ଜାତୀୟ ଉନ୍ନତ ଦଗରୁ କାର୍ଯ୍ୟ କରବାର ସୁଯୋଗ ଲାଭକଲେ । ପ୍ରୟୋଜନ ଅନୁସାରେ ଏଥିଲାଗି ସମସ୍ତ ତ୍ୟାଗ ସ୍ୱୀକାର କଲେ ।

ଯନ୍ତ୍ରଶକ୍ତର ଅଭ୍ୟୁଦୟ ଓ ଶିଳ୍ପ ବପ୍ଳବ ପୂର୍ବରୁ ଦେଶ ଦେଶ ମଧ୍ୟରେ ଜୀବନ ଧାରଣ ମାନର ବଶେଷ ବୈଷମ୍ୟ ନ ଥିଲ । ପୁଣି ସମାଜ ଓ ଜୀବନ ପ୍ରତ ମଣିଷର ଦୃଷ୍ଟିକୋଣ ସବୁ ଦେଶରେ ପ୍ରାୟ ଏକା ଧରଣର ଥିଲ । ସାଂସାରକ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ତୀବ୍ର ବାସନା, ଜୀବନ ସଂଗ୍ରାମରେ ଜୟୀ ହେବାକୁ ଆପ୍ରାଣ ଉଦ୍ୟମ ପ୍ରତ୍ୟେକ ସାମାଜକ ବ୍ୟକ୍ତର ମନକୁ ବଚଳତ ଓ ବକ୍ଷୁବ୍ଧ କରୁ ନ ଥିଲା । ଗୋଟିଏ ଜାତ ବା ଦେଶ ଶିଳ୍ପ ଓ ବାଣିଜ୍ୟରେ ସାମାନ୍ୟ ପଛରେ ପଡ଼ଗଲେ, ସେମାନଙ୍କ ଶ୍ରମର ମୂଲ୍ୟରେ ଆଉ ଏକ ଦେଶ କପର ନଜର ସୁଖ ସ୍ୱାଚ୍ଛନ୍ଦ୍ୟ ଗଢ଼ିପାରେ—ଏ କୌଶଳ ପୂର୍ବେ ଜଣା ନ ଥିଲ । ତେଣୁ ଗୋଟିଏ ଦେଶର ଅନ୍ତରତମ ପ୍ରଦେଶରେ ପ୍ରତ୍ୟେକ ନାଗରକଙ୍କ ମନରେ ଆଉ ଏକ ଦେଶପ୍ରତ ଘୃଣା ବା ଦ୍ୱେଷ ଜନ୍ମିବାର କାରଣ ନ ଥିଲ । ଆଧୁନିକ ଜାତୀୟତାର ବକାଶ ପାଇଁ ଆନ୍ତର୍ଜାତୀୟ ସହଯୋଗ ଅପେକ୍ଷା ଆନ୍ତର୍ଜାତୀୟ ପ୍ରତଦ୍ୱନ୍ଦ୍ୱତା ଓ ସଂଘର୍ଷର ଦାନ ଅଧିକ । ଏହା ଏତ

ବାସ୍ତବ ସତ୍ୟ । ହାବାର୍ଡ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଜନ୍ ଇଭ ନେଫ୍ ଯଥାର୍ଥ କହିଛନ୍ତି—“ବିଭିନ୍ନ ଦେଶରେ ଶିଳ୍ପ ବିକାଶର ପ୍ରକୃତିଗତ ସ୍ୱାତନ୍ତ୍ର୍ୟ, ପରିମାଣଗତ ପାର୍ଥକ୍ୟ ଓ ସମୟ-ଗତ ତାରତମ୍ୟର ପ୍ରଭାବ ଦେଶ ଦେଶ ମଧ୍ୟରେ ବୌଦ୍ଧିକ ଓ ସାଂସ୍କୃତିକ ଅଭିଜ୍ଞତାରେ ବୈଷମ୍ୟ ବୃଦ୍ଧି କରିଥିଲା । ଏହି କ୍ରମବର୍ଦ୍ଧମାନ ବୈଷମ୍ୟ ହିଁ ଜାତି ଜାତି ମଧ୍ୟରେ ବିଦ୍ୱେଷର ପ୍ରଧାନ କାରଣ । ଜାତୀୟ ଭାବ ପ୍ରବଳ ହେବାରେ ଏହାର ଦାନ ଯଥେଷ୍ଟ ।” ୩

## ଆମ ଦେଶରେ ଜାତୀୟତା ଓ ଦେଶପ୍ରୀତିର ପରମ୍ପରା

ଗତ ପାଂଚଶହ ବର୍ଷ ଭିତରେ ଓଡ଼ିଆ ସାହିତ୍ୟର ବିକଶିତ ରୂପ ଦେଖିବାକୁ ମିଳେ । ଏଥିରେ ଜାତୀୟତାର ଶଙ୍ଖ ସୂଚନା, ଜାତୀୟ ଚରିତ୍ରର ବୈଶିଷ୍ଟ୍ୟ ଖୋଜି ପାଇବା ସହଜ । ମାତ୍ର ପରମ୍ପରାର ସୂତ୍ର ଧରି ଦେଖିଲେ, ବହୁ ସହସ୍ର ବର୍ଷ ଅନ୍ତରାଳର ଧାରଣା କରିହେବ । କୌଣସି ନଦୀ, ପର୍ବତ, ଝରଣା ଓ ଦୃଶ୍ୟ ପୂର୍ଣ୍ଣସ୍ଥାନରେ ପବିତ୍ରତା ଓ ତୀର୍ଥତ୍ୱ ଆରୋପ ବହୁ ପ୍ରାଚୀନ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିଲେ, “ଓଡ଼ିଶା ବହୁକାଳରୁ ପ୍ରତିଷ୍ଠିତ ଭୂମି । ସେକାଳର ମୂଳ ପୁଣି କେତେ ଦୂରରେ—କାହିଁ—ତା କିଏ କହିବ ?” ୪ ଏହି ଦୀର୍ଘ ଅତୀତ ପରମ୍ପରା ଭିତରେ ବହୁ ମାନବ ଗୋଷ୍ଠୀର ଆଦର୍ଶ ଓ ବିଶ୍ୱାସ ମିଶି ରହିଅଛି—ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟ ଯାହା ବର୍ତ୍ତମାନ ମିଳୁଛି, ଆଦ୍ୟ ପ୍ରକାଶ ଦିନରୁ ତାହା ଏହି ଜାତୀୟତାର ଅବିଚ୍ଛିନ୍ନ ସଙ୍କେତ ବହନ କରିଅଛି । ସାରଳା, ବଳରାମ ଆଦିଙ୍କ ମହାପୁରାଣ ଗୁଡ଼ିକ ପଢ଼ିଲେ ଏହାର ସତ୍ୟତା ବେଶ ଉପଲବ୍ଧି କରିହୁଏ । ସାରଳା ଦାସଙ୍କ ମହାଭାରତରେ ଜାତୀୟତା ଓ ସ୍ୱଦେଶ ପ୍ରୀତିର ନିଦର୍ଶନ ସମ୍ବନ୍ଧରେ ନିମ୍ନ ମନ୍ତବ୍ୟ ବଳରାମ, ଅଚ୍ୟୁତାନନ୍ଦ ଆଦିଙ୍କର କୃତି ବିଷୟରେ ମଧ୍ୟ ବହୁ ପରିମାଣରେ ସତ୍ୟ । ପଣ୍ଡିତ ନୀଳକଣ୍ଠ ସ୍ପଷ୍ଟ ଭାଷାରେ କହିଛନ୍ତି—“ସାରଳା ଦାସଙ୍କ ରାଷ୍ଟ୍ରପ୍ରୀତି ଓ ଦେଶାତ୍ମକ ମଧ୍ୟ ଦେଖିବାର କଥା । ଓଡରାଷ୍ଟ୍ରହିଁ ତାଙ୍କର ଉପାସ୍ୟ, ତାଙ୍କର ସବୁ । ଏହି ଭୂମିରେ ମୁନି ସବୁ ଦେବତା । ଏଇ ଭୂମିରେ ସବୁ ତୀର୍ଥ । ଏହି ଭୂମିରେ ଗ୍ରାମ, ବଣ, ଏପରିକି, ମାଟି ବାଲି ପର୍ଯ୍ୟନ୍ତ ତାଙ୍କ ପାଖେ ପବିତ୍ର ଓ ସ୍ମରଣୀୟ ।” ୫ ଏହି ଯୁଗରେ କ୍ଷେତ୍ର ମହିମା ବର୍ଣ୍ଣନା ହିଁ ଜାତି ଓ ଦେଶ ପ୍ରେମର ଶ୍ରେଷ୍ଠ ସଙ୍କେତ । କାରଣ ଏହି ଦେଶପ୍ରୀତିରେ ଦେବଦେବୀ, ପ୍ରାଚୀନ ଧର୍ମ ଧାରଣାର ପ୍ରଭାବ ଅପ୍ରତିହତ ଥିଲା । ସଂସାରରେ ମନୁଷ୍ୟ ପ୍ରାଣ ଧାରଣ ଲାଗି ଏହା ଫଳରେ ଏକ ବିଶ୍ୱାସ ସମ୍ଭୂତ ବିଶ୍ୱ ରଚନା ସମ୍ଭବ ହୋଇଥିଲା । ସାହିତ୍ୟରେ ଏହି ଭାବର ପ୍ରଭାବ ଏକ ଭାଷାଭାଷୀ ଜନଗୋଷ୍ଠୀଙ୍କୁ ଏକ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ ପ୍ରତି ଆକୃଷ୍ଟ କରି ରଖିଥିଲା । ଅଷ୍ଟାଦଶ ଶତକର କବି ବ୍ରଜନାଥ ବଡ଼ଜେନାଙ୍କ ପୂର୍ବରୁ ସ୍ୱଦେଶ ପ୍ରୀତିର ରାଜନୈତିକ ରୂପ ପ୍ରାୟ ଦେଖିବାକୁ ମିଳେନାହିଁ ।

ବ୍ରଜନାଥଙ୍କ ବର୍ଣ୍ଣନାରେ ମିଳେ ଓଡ଼ିଆ ସେନାଙ୍କର ବୀରତ୍ୱରେ ଅତ୍ୟଳ୍ପମାତ୍ର ଗୌରବ ବୋଧ । ତଥାପି ପାଶ୍ଚାତ୍ୟ ସମ୍ପର୍କ ପୂର୍ବ ଯୁଗର ଏହି ଜାତୀୟତା ଓ ଦେଶପ୍ରୀତିକୁ ଆଧୁନିକ କାଳର ଦେଶାତ୍ମବୋଧ ସହିତ ତୁଳନା କରିବା ଉଚିତ ନୁହେଁ । (କାରଣ ଆଧୁନିକ ଯୁଗର ଯେଉଁ ଜାତୀୟତା, ଭୂଗୋଳ ଓ ଇତିହାସ ଚେତନା ତଥା ଆର୍ଥିକ ସଂଘର୍ଷମୟ ଜୀବନ ଉପରେ ପ୍ରତିଷ୍ଠିତ, ତାହାର ଚରିତ୍ର ଭାଗ୍ୟ ଭଗବାନ ବିଶ୍ୱାସୀ, ଆଧୁନିକ ଜ୍ଞାନ ବିଜ୍ଞାନ ପରିପନ୍ଥୀଙ୍କଠାରୁ ବହୁ ଦୂରରେ ଥିବା ମଧ୍ୟଯୁଗୀୟ ସମାଜଠାରୁ ଆଶା କରିବା ଅସମ୍ଭବ ।)

## ଆଧୁନିକ ପୃଷ୍ଠଭୂମି

ଇଂରେଜମାନଙ୍କ ସମ୍ପର୍କରେ ଆସିବା ପରେ ପ୍ରଥମେ ଆମ ଦେଶରେ ଏକ ପ୍ରକାର ଗୌଣ ମନୋଭାବର ଉଦୟ ହୋଇଥିଲା । ସେଥିରୁ ଦେଶବାସୀଙ୍କ ମନକୁ ମୁକ୍ତ କରିବା ଜାତୀୟତାବାଦୀମାନଙ୍କର ପ୍ରଥମ କାର୍ଯ୍ୟ ହୋଇଥିଲା । ସେଥିଲାଗି ପାଶ୍ଚାତ୍ୟମାନଙ୍କଠାରୁ ପାରମ୍ପରିକ ଭାବରେ ଆମେ କେଉଁ ପରିମାଣରେ ସ୍ୱତନ୍ତ୍ର ତାହା ଦେଖାଇବାର ଉଦ୍ୟମ ହେଲା । ଆମ ଚିନ୍ତାନାୟକମାନେ ଆମର ଗୌରବାବହ ଅତୀତ ଉପରେ ଦୃଷ୍ଟି ପକାଇଲେ । ମାତ୍ର ଅତୀତ ବହୁ ପ୍ରକାର ଦର୍ଶନ ପରମ୍ପରାପୁଷ୍ଟ ଧାର୍ମିକ ଚିନ୍ତାରେ ଆଚ୍ଛନ୍ନ ଥିଲା । ଏହି ଧାର୍ମିକ ଚିନ୍ତାକୁ ଆଧୁନିକ ଯୁଗର ବୈଜ୍ଞାନିକ ଚିନ୍ତା ସହିତ ଖାପ ଖୁଆଇବାର ଚେଷ୍ଟା ହେଲା । ତେଣୁ ନୂତନ ଭାରତୀୟ ଜାତୀୟତା ବୋଧରେ ଆଧୁନିକ ଜଗତର ମନୋଭୂମି ଓ ବସ୍ତୁସ୍ଥିତି ପୂର୍ଣ୍ଣତଃ ଧରାଦେଲା ନାହିଁ । ଯେଉଁଠି ବା ଏଥିଲାଗି ସାମାନ୍ୟ ପ୍ରୟାସ ହେଲା ତାହା ସ୍ୱୀକୃତ ବିପରୀତ ଧର୍ମୀ ଚିନ୍ତାଧାରା ସଂଘର୍ଷରେ ଆସିଲା । ଏହାର ଅତି ସୁନ୍ଦର ବିଶ୍ଳେଷଣ ଶ୍ରୀ ନେହେରୁ ନିଜ ବିଶ୍ୱଇତିହାସ ଗ୍ରନ୍ଥରେ କହିଛନ୍ତି– "ଊନବିଂଶ ଶତାବ୍ଦୀରେ ଭାରତରେ ଜାତୀୟତାର ପ୍ରଥମ ତରଙ୍ଗ ଧାର୍ମିକ ବିଶେଷତଃ ହିନ୍ଦୁଧର୍ମାତ୍ମକ ଥିଲା, ଦେଖିଲେ କୌତୁକ ଲାଗେ । "ଆହୁରି ଗୋଟିଏ ମଜାର କଥା ହେଉଛି ହିନ୍ଦୁ ମୁସଲମାନ ଧର୍ମର ଏହି ସଂସ୍କାର ଓ ପ୍ରଗତି ମୂଳକ ଆନ୍ଦୋଳନ । ସେମାନେ ପାଶ୍ଚାତ୍ୟର ନୂତନ ବୈଜ୍ଞାନିକ ଓ ରାଜନୀତିକ ଚିନ୍ତାଧାରା ସହିତ ପୁରାତନ ଧାର୍ମିକ ଧାରଣା ଓ ଆଚରଣକୁ ମିଳେଇବା ଲାଗି ଚେଷ୍ଟାକଲେ । ସେମାନେ ଏହି ପୁରୁଣା ଧାରଣା ଓ ଆଚରଣକୁ ନିର୍ଭୀକ ଭାବରେ ପରୀକ୍ଷା କରିବା ଓ ଏହାର ସମ୍ମୁଖୀନ ହେବା ନିମନ୍ତେ ପ୍ରସ୍ତୁତ ନଥିଲେ, ଅଥବା ଚାରିଆଡ଼େ ଯେଉଁ ବିଜ୍ଞାନ ଓ ସାମାଜିକ ଭାବଧାରାର ନୂତନ ଦୁନିଆ ଦେଖା ଦେଉଥିଲା, ତାହାକୁ ଅବଜ୍ଞା କରି ପାରିଲେନାହିଁ । ତେଣୁ ସେମାନେ ଏ ଦୁହିଁଙ୍କି ମିଳେଇବାକୁ ଚେଷ୍ଟାକଲେ, ଆଉ ନିଜ ନିଜ ଧର୍ମର ପୁରୁଣା ଶାସ୍ତ୍ର ସବୁ ବାହାର କରି ଦେଖାଇବାକୁ ଲାଗିଲେ ଯେ, ସମସ୍ତ ଆଧୁନିକ ଭାବଧାରା ଓ ପ୍ରଗତି ବିଷୟ ଏହିସବୁ ଗ୍ରନ୍ଥରେ ରହିଅଛି । ଏପରି ଚେଷ୍ଟା ବିଫଳ ହେବାର କଥା । ଏହା ମୁକ୍ତ ଚିନ୍ତାରେ ବାଧା ଦେଲା । ଯେଉଁ ସବୁ ନୂତନ ଶକ୍ତି ଓ ଭାବଧାରା ଦୁନିଆକୁ ବଦଳାଉଛି. ତାକୁ ବୁଝିବାକୁ ଚେଷ୍ଟା କରିବା ପରିବର୍ତ୍ତେ ସେମାନେ ପୁରାତନ

ଆଚରଣ ଓ ସଂସ୍କାରରେ ଘାଣ୍ଟି ହେବାକୁ ଲାଗିଲେ । ଆଗକୁ ଦୃଷ୍ଟି ପକେଇ ମାଡ଼ିଯିବା ପରିବର୍ତ୍ତେ, ସେମାନେ ଅଜଣା ଭାବରେ ପଛକୁ ଦୃଷ୍ଟି ପକେଇଲେ । ଯଦି ଜଣେ ମୁଣ୍ଡକୁ ସର୍ବଦା ଫେରାଇ ପଛକୁ ଚାହୁଁଥିବ ତେବେ ତାହାପକ୍ଷରେ ଆଗକୁ ମାଡ଼ି ଚାଲିବା କିଛି ସହଜ ନୁହେଁ ।" ୬

## ହିନ୍ଦୁ ଜାତୀୟତା ୭

ଆମ ଜାତୀୟ ଜାଗରଣରେ ଏଇ ପଶ୍ଚାତ୍ ଦୃଷ୍ଟି ଆଧୁନିକ କାବ୍ୟଧାରାର ଏକ ବଡ଼ ପ୍ରେରଣା । ଏଇ ଜାତୀୟତା ପୁଣି ଥିଲି ହିନ୍ଦୁ ଭାବ ଭାବିତ । ଏଭଳି ଏକ ଜାତୀୟ ପୁନର୍ଜାଗରଣର ପରିବେଶ ଇଂରେଜମାନେ ଭାରତକୁ ଆସିବା ପୂର୍ବରୁ ଥିଲି ଓ ମରହଟ୍ଟା ଆଉ ଶିଖ୍‌ମାନେ ଏଥିରେ ନେତୃତ୍ୱ ନେଇଥିଲେ । ଏଇ ନେତୃତ୍ୱ ଭାରତରେ ମୁସଲମାନଙ୍କର ପତନ ପାଇଁ ପ୍ରବଳ ସଫଳ ଚେଷ୍ଟା କରିଥିଲି । ଇଂରେଜମାନଙ୍କ ଆଗମନ ପରେ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଗ୍ରହଣ କରିବାରେ ଏଇ ହିନ୍ଦୁମାନେ ପ୍ରଥମେ ଆଗ୍ରହ ଦେଖାଇଥିଲେ । ଉଚ୍ଚ ଅଭିଜାତ ମୁସଲମାନ ଶ୍ରେଣୀ ପ୍ରବଳ ପ୍ରତିକୂଳ ପରିସ୍ଥିତିରେ ପଡ଼ି ପ୍ରାୟ ଧ୍ୱଂସ ହୋଇଯାଇଥିଲି । ଏମାନେ ଅଭିଜାତ ସାମନ୍ତ ବିଶ୍ୱାସ ପରମ୍ପରା ଭିତରେ ଥାଇ ନୂତନ ଶିକ୍ଷା, ସାମାଜିକ ଭାବଧାରା ଗ୍ରହଣ କରିବାକୁ ଉନ୍ମୁଖ ନଥିଲେ ।

ଊନବିଂଶ ଶତକରେ ଧର୍ମ ସମାଜ ସଂସ୍କାର ଓ ସାଂସ୍କୃତିକ ସଂଗଠନ କ୍ଷେତ୍ରରେ ହିନ୍ଦୁମାନଙ୍କ ମଧ୍ୟରେ ଅନେକ ବରିଷ୍ଠ ବ୍ୟକ୍ତି ଜନ୍ମଗ୍ରହଣ କରିଥିଲେ । ସିପାହି ବିଦ୍ରୋହ ପରେ ଭାରତରେ ଇଂରେଜ ଶାସନ ଦୃଢ଼ ହୋଇଗଲି । ଏହି ସମୟରେ ଭାରତୀୟ ଚିନ୍ତା ଜଗତରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଥିଲି ତାହା ହିନ୍ଦୁମାନେ ଉପନିଷଦର ଦର୍ଶନଦୃଷ୍ଟି, ପ୍ରାଚୀନ ଭାରତର ଗୌରବମୟ ଇତିହାସ ଓ ତାର ପୁନଃପ୍ରତିଷ୍ଠା ଭାବନାରେ ପୂର୍ଣ୍ଣ କରି ଦେଇଥିଲେ । ଏ ଦିଗରେ ରାମମୋହନ, ଦୟାନନ୍ଦ ଓ ବିବେକାନନ୍ଦ ଭଳି ଚିନ୍ତାନାୟକଙ୍କ ନାମ ସ୍ମରଣୀୟ । ଏଇମାନଙ୍କ ଚିନ୍ତାଧାରା ପ୍ରଭାବିତ ଜାତୀୟ ଜାଗରଣ ଆନ୍ଦୋଳନରେ ମୁସଲମାନ ସଂସ୍କୃତିର ଦାନ ବିଷୟରେ କିଛି ଉଲ୍ଲେଖ ନ ଥିଲି । ତେଣୁ ବ୍ରିଟିଶ ଶାସନରେ ରାଜନୈତିକ ଏକତା ପ୍ରତିଷ୍ଠିତ ହୋଇଥିଲେହେଁ ଭାରତବର୍ଷର ଅନ୍ତର୍ନିହିତ ଭାବ ଜଗତରେ ଦୁଇଧାରା ସୃଷ୍ଟି ହୋଇଥିଲି । ବ୍ରିଟିଶ ଶାସକମାନେ ଏଇ ବିଭାଜନରେ ସାହାଯ୍ୟ କରିଥିଲେ । ଏପରିକି ବିଂଶ ଶତକର ଆଦ୍ୟପାଦ ପର୍ଯ୍ୟନ୍ତ ଅତି ଅଳ୍ପ ସଂଖ୍ୟକ ମୁସଲମାନ ଭାରତୀୟ ଜାତୀୟ ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିଲାବେଳେ, ଅନ୍ୟ ବୁଦ୍ଧିଜୀବୀମାନେ ସେରାସାନମାନଙ୍କ ରାଜ୍ୟ ସାମ୍ରାଜ୍ୟ, କନ୍‌ଷ୍ଟାଣ୍ଟିନୋପଲ୍, ବାଗଦାଦ୍ ମକ୍କା, ମଦିନା କଥା ଭାବୁଥିଲେ ।

ହିନ୍ଦୁଭାବ ପ୍ରଭାବିତ ଜାତୀୟତା କିପରି ଓଡ଼ିଆ କବିତାରେ ପ୍ରତିଫଳିତ ହୋଇଥିଲା—ତାହା ରାଧାନାଥଙ୍କର "ଶିବାଜୀଙ୍କ ଉତ୍ସାହବାଣୀ" ଓ 'ମହାଯାତ୍ରା' ପାଠକଲେ ଜଣାଯାଏ । ଫକୀରମୋହନ ଓ ମଧୁସୂଦନ ଅତୀତର ଗୌରବ ଗାନକରି ଯେଉଁ ଉଦ୍‌ବୋଧନ କବିତା ସବୁ ଲେଖିଛନ୍ତି ତାହା ଏହି ଦୃଷ୍ଟିରୁ ହିନ୍ଦୁଭାବ ଭାବିତ । ଅବଶ୍ୟ ସେଇସବୁ କବିତାରେ ଭାରତବର୍ଷର ଅଧଃପତନ ଚିତ୍ର ପ୍ରସଙ୍ଗରେ ଇସ୍‌ଲାମ ବିଦ୍ୱେଷ ଭାବନା ଏପରି ତୀବ୍ର ବା ସ୍ପଷ୍ଟ ନୁହେଁ । ତେବେ ଏ ଦୋଷ କବିମାନଙ୍କର ବିଶେଷ ମାନସିକ ଭଙ୍ଗୀର ବୋଲି ମନେ କରିବା ଉଚିତ ନୁହେଁ । ଉପର ଆଲୋଚନା କ୍ରମେ ଦେଖିଲେ, ଏହା ସମକାଳୀନ ଚିନ୍ତାଧାରାର ପ୍ରଭୂତ ପ୍ରଭାବର ଫଳ ।

ଜାତି, ଧର୍ମ, ଗୋଷ୍ଠୀ ଓ ସମ୍ପ୍ରଦାୟ ନିର୍ବିଶେଷରେ ଏକ ଅଖଣ୍ଡଭାରତ ଜାତୀୟତାର ବିକାଶଲାଗି ଯେଉଁ ବାତାବରଣ ବିଂଶଶତକରେ ସୃଷ୍ଟି ହୋଇଥିଲା, ଊନବିଂଶ ଶତକରେ ତାର ସ୍ୱରୂପ ପ୍ରକାଶ ପାଇ ନଥିଲା । ଇଂରେଜ ସାମ୍ରାଜ୍ୟବାଦର ଅସଲ ରୂପ ଏତେବେଳେ ଜଣା ଯାଇ ନଥିଲା ! ଭାରତବର୍ଷର ସମସ୍ତ ଗୌରବ ମୁସଲମାନମାନଙ୍କ ଆକ୍ରମଣ ଓ ବିଜୟ ଫଳରେ ଲୋପ ପାଇଥିଲା ବୋଲି ଧାରଣା କରାଯାଉଥିଲା । ଭାରତର ଗୌରବ ରକ୍ଷାପାଇଁ ସମଗ୍ର ହିନ୍ଦୁ ଜାତୀୟ ଶକ୍ତିର ପ୍ରତୀକ ରୂପେ ଶିବାଜୀ ମୋଗଲ ଶକ୍ତି ବିରୋଧରେ ଲଢ଼ିଥିଲେ ବୋଲି ମନେ କରା ହେଉଥିଲା । ଏଇ ହିନ୍ଦୁଭାବ ପ୍ରେରିତ ଜାତୀୟତାବାଦୀଙ୍କ ମତରେ ଭାରତ ଥିଲା ହିନ୍ଦୁର ଦେଶ । ଶିଳ୍ପ, ଭାସ୍କର୍ଯ୍ୟ, ଦର୍ଶନ ଓ ଜ୍ଞାନ ବିଜ୍ଞାନର ଚରମ ଉନ୍ନତି ସ୍ୱାଧୀନ ହିନ୍ଦୁ ଭାରତରେ ସମ୍ଭବ ହୋଇଥିଲା । 'ଶିବାଜୀଙ୍କ ଉତ୍ସାହବାଣୀ' କବିତାରେ ରାଧାନାଥ ସ୍ପଷ୍ଟଭାଷାରେ କହିଛନ୍ତି—

"ଏଦେଶ କୀରତି ଏଦେଶ ଗୌରବ ଏଦେଶ ବିଭବ ଏ ରବି ତଳେ
ଆଉ କାହିଁ ନାହିଁ ସମସ୍ତ ନଷ୍ଟ ଭ ହେଲାଟି ମନୁଷ୍ୟ କରମ ଫଳେ ।"

× × ×

ଏମାନ ଆମ୍ଭଙ୍କୁ ପ୍ରଭୁ ଦେଇଥିଲେ ଦେଇଥିଲେ ବାହୁ ଦେଶ ରକ୍ଷଣେ
ଯେ ଦିନୁ ହିନ୍ଦୁଏ ଏକତା ଛାଡ଼ିଲେ ପ୍ରମାଦ ପାଇଲେ ଦୁଷ୍ଟ ଯବନେ ।
ସେହିଦିନୁ ଆର୍ଯ୍ୟ—ଗୌରବ ତପନ ଦାସ୍ୟ ତମଃ ସିନ୍ଧୁ ନୀରେ ବୁଡ଼ିଲେ ।
ସେହିଦିନୁ ଆର୍ଯ୍ୟେ ଲଭିଲେ ବନ୍ଧନ ଅନ୍ଧ ହୋଇ ଆର୍ଯ୍ୟ ଧର୍ମ ଛାଡ଼ିଲେ ।
ଦୁରନ୍ତ ଯବନ ହେଲା ଏକେଶ୍ୱର କ୍ଷତ୍ରିୟ ପ୍ରଭାବ ହେଲା ଅଲୀକ
ଆମ୍ଭର ସ୍ୱଦେଶ ନୁହେ ଏ ଆମ୍ଭର ଧିକ ଧିକ ଆମ୍ଭ ବାହୁକୁ ଧିକ ।"[୮]

'ମହାଯାତ୍ରା'ରେ ହିନ୍ଦୁ ଜାତୀୟତାର ଏଇ ରୂପ ରାଧାନାଥ ଆହୁରି ତୀବ୍ର ଭାଷାରେ ପ୍ରକାଶ କରିଛନ୍ତି । ମୁସଲମାନମାନଙ୍କ ଚରିତ୍ର ବର୍ଣ୍ଣନା କରିବାକୁ ଯାଇ ଅମନୁଷ୍ୟତାର ସମସ୍ତ କଳଙ୍କ ସେମାନଙ୍କଠାରେ ଆରୋପ କରିଛନ୍ତି । ସେମାନେ ଶ୍ୱାପଦ ପରି ମାଂସାଶୀ, ନୃଶଂସ, କ୍ରୋଧୀ । ପୁଣି କୂଟଯୁଦ୍ଧ ଓ କୁଟ ରାଜନୀତିରେ ପଟୁ । ଧର୍ମଯୁଦ୍ଧ ନାମରେ

ଏମାନେ ଦସ୍ୟୁବୃତ୍ତି ଚରିତାର୍ଥ କରିଥାନ୍ତି । ଏମାନେ ତମୋଃଗୁଣର ବଶବର୍ତ୍ତୀ ହୋଇ ହିନ୍ଦୁ ମନ୍ଦିର, ମଠ ଲୁଣ୍ଠନ କରିଥିଲେ, ହିନ୍ଦୁ ସମାଜର ନୀତି ଓ ଆଚାର ଭ୍ରଷ୍ଟ କରିଥିଲେ । ଏକତା ଓ ଆତ୍ମଶକ୍ତିରେ ଦୃଢ଼ବିଶ୍ୱାସ ନଥିବାରୁ ହିନ୍ଦୁମାନେ ସମସ୍ତ ସହିଥିଲେ । ନିଜର ପରାଧୀନତାକୁ ବିଧି ନିର୍ଦ୍ଦିଷ୍ଟ ବୋଲି ମାନି ନେଇ ଥିଲେ । ହୀନ ସେବାକୁ ଶ୍ଳାଘ୍ୟ ମଣିଥିଲେ ।

ସେଥିଲାଗି ଏଇ ମୃତକଳ୍ପ ଜାତି ନିଜ ଦେଶର ବିଭବ ଭୋଗ କରିବାକୁ ସମର୍ଥ ହୋଇ ନଥିଲା । ଫୁଲର ମହୁ କୀଟ ଭୋଗ ନକରି ଦୂରାଗତ ଭ୍ରମର ଭୋଗ କଲା ଭଳି, ଭାରତବର୍ଷର ସାର ସମ୍ପଦ ବିଜେତା ମୁସଲମାନଙ୍କ ଭୋଗରେ ଆସିଲା । ରାଧାନାଥଙ୍କ ଅନନୁକରଣୀୟ ଭାଷାରେ—

"ତରୁରେ କୁସୁମ ସାର, କୁସୁମେ ତା ମଧୁ
ସେ ମଧୁ ନ ଲଭେ ଯଥା ସେ ପୁଷ୍ପର କୀଟ
ସେହି ରୂପେ ଆର୍ଯ୍ୟେ ହେବେ ବଂଚିତ ସ୍ୱଦେଶେ
ଦୂରୁ ଆସି ମଧୁଲିଟେ ଲୁଣ୍ଠନ୍ତି ଆହ୍ଲାଦେ
ସେ ମଧୁ ଯେସନେ, ଏହି ଧରା ସାରଭୂତ
ଭାରତର ସାର ଯାହା ଆସିବ ସେ ସବୁ
ଯବନର ଉପଭୋଗେ ଆର୍ଯ୍ୟ କର୍ମ ଫଳେ ।" ୯

ପ୍ରକୃତରେ ହିନ୍ଦୁ ଜାତୀୟତାର ଏହା ଏକ ଦୁର୍ବଳତମ ଦିଗ । ଭାରତର ଅଧଃପତନ କେବଳ ବାହାର ଆକ୍ରମଣ ଫଳରେ ହୋଇନଥିଲା । ବହୁ ପରିମାଣରେ ଆନ୍ତରୀଣ ପ୍ରତିଦ୍ୱନ୍ଦ୍ୱିତା ଫଳରେ ହୋଇଥିଲା । ଏ ସତ୍ୟ ହିନ୍ଦୁଭାବ ପ୍ରଭାବିତ ଜାତୀୟବାଦୀମାନଙ୍କୁ ଦେଖା ଯାଇନଥିଲା । ସେମାନଙ୍କର ଏଇ ସଂକୀର୍ଣ୍ଣ ଦୃଷ୍ଟିକୋଣ ଫଳରେ ଆଧୁନିକ ଭାରତର ସଂହତି ବିରୋଧୀ ସାମ୍ପ୍ରଦାୟିକତାର ବୀଜ ବୁଣା ହୋଇଥିଲା ।

## ପ୍ରାଚୀନ ଇତିହାସରେ ଗୌରବବୋଧ

ଆଧୁନିକ କବିତାରେ ଇତିହାସ ପ୍ରୀତି ଏକ ପ୍ରକାର ସ୍ୱୈରବାଦୀ ଭାବକଳ୍ପର ପ୍ରତୀକ । ଅତୀତକୁ ବହୁମାନ ଦେବାର ପ୍ରବଣତା ଏହାର ପ୍ରତିଚ୍ଛନ୍ଦରେ ଫୁଟି ପଡୁଥିଲେ ବି କୌଣସି ଏକ ଜାତୀୟ ଅତୀତ ପରମ୍ପରାକୁ ଫେରିଯିବା ଏହାର ଲକ୍ଷ୍ୟ ନୁହେଁ । କାରଣ କାଳଚେତନା ଓ ପରିବର୍ତ୍ତିତ ଯୁଗରୁଚି ସବୁବେଳେ ଏପରି ପଛକୁ ଫେରିବା ମନୋବୃତ୍ତିରେ ବାଧା ଦିଏ । ମାତ୍ର ଯେତେବେଳେ କବି ଅତୀତକୁ ଜୀବନ୍ୟାସ ଦେବାକୁ ସ୍ୱପ୍ନ ଦେଖନ୍ତି, ସେତେବେଳେ କେବଳ ଅତୀତରେ ନିହିତ ଜାତୀୟ ଚରିତ୍ର ବା ଗୁଣାବଳୀ ତାଙ୍କ ମନରେ ନଥାଏ । ଅତୀତର ଆଦର୍ଶ, ନୈତିକ ମହତ୍ତ୍ୱହିଁ ତାଙ୍କୁ ଅତୀତ ପ୍ରତି ଆକୃଷ୍ଟ କରିଥାଏ । ପ୍ରାଣର ଯାହା ଶ୍ରେୟ ଓ

ସ୍ୱାଦ୍ୟ ତାକୁ ଫେରି ପାଇବା ପାଇଁ ବର୍ତ୍ତମାନର ବିଷଣ୍ଣ କବି ଯେପରିକି ଅତୀତକୁ ନିଜର ମୁକ୍ତ କଳ୍ପନାରେ **ଆବିଷ୍କାର** କରନ୍ତି । ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ କବିତାରେ ଏଇ ଆବିଷ୍କାର ଏକାନ୍ତ ଦରଦୀ ଜାତୀୟବାଦୀ ଦୃଷ୍ଟିରେ ହୋଇଅଛି । ଅତୀତର କଳଙ୍କ କାଳିମା ନୁହେଁ, ଗୌରବ ଗରିମାହିଁ ଏମାନଙ୍କ ଦୃଷ୍ଟିରେ ଅଧିକ ବିଶଦ ଭାବରେ ଧରା ଦେଇଅଛି । ବର୍ତ୍ତମାନର ଜାତୀୟ ଜୀବନରେ ଥିବା କଳଙ୍କ, ଅସାରତା ଓ ଦୁର୍ଗତିର ଚିତ୍ର ତୁଳନାରେ ଏମାନେ ଅତୀତକୁ ଭବିଷ୍ୟତର ପ୍ରତୀକ ରୂପେ ଦେଖିଛନ୍ତି । ରାଧାନାଥଙ୍କ ବର୍ଣ୍ଣନାରେ ଗରିମୟ ଅତୀତ ଯେପରିକି ପ୍ରତି ମୁହୂର୍ତ୍ତରେ ଦୁଃସ୍ଥ ବର୍ତ୍ତମାନକୁ ଉପହାସ କରୁଛି । 'ଦରବାର'ର ନିମ୍ନ ପଂକ୍ତି ସ୍ମରଣୀୟ—

"ପୂର୍ବ ନରପତି— ପ୍ରେତ ଆତ୍ମା ମାନ
ବ୍ୟୋମେ ବ୍ୟୋମଯାନେ ହୋଇ ଅଧିଷ୍ଠାନ
ଦେଖନ୍ତି ସଖେଦେ ତାଙ୍କର ଦୁର୍ଦ୍ଦୈବ
ଉତ୍କଳର ଏଇ ଦଶା ବିପର୍ଯ୍ୟୟ
ଏହି ଶିଳାବନ୍ଧ ଯାଙ୍କର କୀରତି
ପୁଣ୍ୟ ଶ୍ଳୋକ ମର୍-କତମହୀପତି
ଦେଖି ନାହାନ୍ତିକି ମନେ ବହି ଲଜ
କଥିଲି ଏ ରାଜ୍ୟ କି ହୋଇଛି ଆଜ ।" ୧୦

ନିଜର ଐତିହାସିକ କାବ୍ୟ ଗୁଡ଼ିକରେ ରାଧାନାଥ ପ୍ରାଚୀନ ଉତ୍କଳକୁ କେବଳ ମହିମାନ୍ୱିତ କରିବାକୁ ନୁହେଁ, କବିଦୃଷ୍ଟିରେ ଜୀବନ୍ୟାସ ଦେବାକୁ ଚେଷ୍ଟା କରିଚନ୍ତି । ଏଇ ଅତୀତର ପୃଷ୍ଠଭୂମିରେ କାବ୍ୟର ନାୟକ ନାୟିକା, କଳ୍ପନାର ପ୍ରେମିକ ପ୍ରେମିକା, ଇତିହାସର ଶୂର, ବୀର, ସେନା ଓ ସେନାପତିମାନଙ୍କୁ ସଶରୀରେ ବିଚରଣ କରେଇଛନ୍ତି । ଭୁବନେଶ୍ୱରର ଐତିହାସିକ ପୀଠ, କୋଣାର୍କ, ପୁରୀ ଓ ଯାଜପୁରର କ୍ଷେତ୍ର ମହିମା ତାଙ୍କ ବର୍ଣ୍ଣନାରେ ଜୀବନ୍ତ ହୋଇ ଉଠିଅଛି । (ଉଷା ଓ ନନ୍ଦିକେଶ୍ୱରୀ ଭଳି କାବ୍ୟ ପାଠ କଲେ ମନେ ହୁଏ କବି ସମଗ୍ର ଉତ୍କଳକୁ ଅସଂଖ୍ୟ ନଗର, କ୍ଷାତ୍ରଧର୍ମରେ ପ୍ରମତ୍ତ ରାଜା, ଯୋଦ୍ଧା ଓ ଧର୍ମବୀରଙ୍କ ରଙ୍ଗସ୍ଥଳୀ ରୂପେ କଳ୍ପନା କରିଅଛନ୍ତି । ଏ କଳ୍ପନା ସତ୍ୟାଶ୍ରୟୀ ନୋହିଲେ ବି ଶୋଭନ । ସମସାମୟିକ ସମାଜର ଦୁଃସ୍ଥ ଚିତ୍ର ସଙ୍ଗରେ ଅତୀତର ଏଇ ଚିତ୍ରକୁ ତୁଳନା କରି ଦେଖିଲେ, ଜାତୀୟ ଅଧଃପତନରେ ବିଚଳିତ ଓ ବିକ୍ଷୁବ୍ଧ ଚିତ୍ତକୁ ଯଥେଷ୍ଟ ସାନ୍ତ୍ୱନା ଓ ସନ୍ତୋଷ ମିଳିଥାଏ । ତ୍ୟାଗ, ବୀରତ୍ୱ ଓ ପ୍ରବଳ ଜୀବଧର୍ମରେ ଯେଉଁ ଜାତିର ଅତୀତ ଏଡ଼େ ମହାନ୍ ଓ ଉଦାର ତାହାର ଭବିଷ୍ୟତ ଯେ ଉଜ୍ଜ୍ୱଳ ହେବ – ଏ ବିଶ୍ୱାସ ମନରେ ଦୃଢ଼ ହୁଏ । ରାଧାନାଥ ଜୀବନରେ ଦୁଃଖବାଦୀଥିଲେ । ତାଙ୍କର ଦେହ ବର୍ତ୍ତମାନରେ ବିଚରଣ କରୁଥିଲେ

ନ୍ହେଁ ତାଙ୍କର ମନ କଳ୍ପନାର ଅତୀତରେ ବିଚରଣ କରୁଥିଲା । ଏଇ ଅତୀତ ପ୍ରୀତି ଓ ଅତୀତ ଦୃଷ୍ଟି ତାଙ୍କ ଭାବନାର ନିତ୍ୟ ସହଚର ଥିଲା । ମନୋରାଜ୍ୟରେ ସେ ସର୍ବଦା ଅତୀତ କଳ୍ପିତ ବର୍ତ୍ତମାନରେ ବିହାର କରୁଥିଲେ । 'ମହେନ୍ଦ୍ରଗିରି' କବିତାରେ ନିଜର ଅତୀତ ପ୍ରୀତି ବର୍ଣ୍ଣନା କରି ଲେଖିଛନ୍ତି—

"ଅତୀତର ଲୀଳା ଖେଳା ଦେଖି ରଙ୍ଗେ
ଏକୀଭୂତ ହୋଇ ଯାଏ ତହିଁ ସଙ୍ଗେ,
ବୀର, ଯୋଗୀ, ଋଷି ଆଦି ମହାଜନ
ସଙ୍ଗେ କଳ୍ପନାରେ କରେ ସମ୍ଭାଷଣ
ଅତୀତର ବେଶ ଭୂଷା ରୀତି ନୀତି
ଦେଖି ଭୁଲିଥାଇ ନିରବଦ୍ୟ ପ୍ରୀତି
ଅତୀତର ଧ୍ୟାନେ ହୋଇ ଏକତାନ
ଅତୀତକୁ ମଣେ ଯେହ୍ନେ ବର୍ତ୍ତମାନ ।" ୧୧

ରାଧାନାଥ ଯେଉଁ ଐତିହ୍ୟର ଚିତ୍ରମୟ ବର୍ଣ୍ଣନା ଦେଇଛନ୍ତି, ସେହି ଇତିହାସର ଆଦର୍ଶ ଓ ଆତ୍ମାର ମହିମା ମଧୁସୂଦନ ମୁକ୍ତକଣ୍ଠରେ ଗାନ କରିଅଛନ୍ତି । ମଧୁସୂଦନଙ୍କ ଅତୀତ ଉପାସକ ମନର ପରିପୂର୍ଣ୍ଣ ପ୍ରକାଶ 'ଭାରତ ଭାବନା' କବିତାନ୍ତରେ ଦେଖିବାକୁ ମିଳେ । ଭାରତର ଅତୀତକୁ ଆବିଷ୍କାର କରିବାକୁ ଏକ ଚକିତ କୌତୂହଳ ଦୃଷ୍ଟି ଘେନି ସେ ଅଗ୍ରସର ହୋଇଛନ୍ତି । ବର୍ତ୍ତମାନର ଦୈନ୍ୟ ଓ ଦୁସ୍ଥିତିର ପୃଷ୍ଠପଟରେ ଯେପରିକି ଗୌରବର ଉନ୍ନତ ଶିଖରେ ଅଧିଷ୍ଠିତ ପ୍ରାଚୀନ ଭାରତର ସ୍ୱରୂପ କଳ୍ପନା କେତେକ ପରିମାଣରେ ଅବାସ୍ତବ, ବହୁ ପରିମାଣରେ ଅଦ୍‌ଭୁତ ମନେହୁଏ । ସେଥିଲାଗି ପ୍ରଶ୍ନ ବିହ୍ୱଳ କଣ୍ଠରେ ସେ ଗାଇଛନ୍ତି—

"ଏହି କି ସେ ପୁଣ୍ୟଭୂମି ଭୁବନ ବିଦିତ
ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ ଗୌରବର ।"

× × × ×

ଏହିକି ସେ ବସୁଧାର ସମୁଜ୍ଜ୍ୱଳ ମଣି
ଏହିକି ଅମୃତମୟ ମୃତ୍ୟୁଞ୍ଜୟ ସନ୍ତାନ ଜନନୀ । " ୧୨

ମଧୁସୂଦନ ଯେଉଁ ଭାରତକୁ ନିଜ ମନଶ୍ଚକ୍ଷୁରେ ଦେଖିଛନ୍ତି, ତାହା ପରମ୍ପରା ପୀଡ଼ିତ, ଆହେତୁକ ସାମ୍ପ୍ରଦାୟିକ ଧର୍ମ ଭାରରେ ଅବନତ ମଧ୍ୟଯୁଗର ଭାରତ ନୁହେଁ । ତାହା ପ୍ରାଚୀନ ଭାରତ, ପୁରାଣ ପ୍ରସିଦ୍ଧ ମୁନି ଋଷି, ରାଜା ଓ ବୀରଙ୍କ ଭାରତ । ଏଇ ପ୍ରାଚୀନ ଭାରତର ନର ଓ ନାରୀ ଉଭୟଙ୍କ ଦାନରେ ବିଶ୍ୱରେ ଏକ ଶ୍ରେଷ୍ଠ ସଭ୍ୟତା ଗଢି

ଉଠିଥିଲା । କ୍ଷତ୍ରିୟ ବୀର ଓ ଜୀତେନ୍ଦ୍ରିୟ ଋଷିଙ୍କ ଭଳି ଋଷି ପତ୍ନୀ, ଋଷି କନ୍ୟା, ବୀରପତ୍ନୀ-ମନ୍ତ୍ରୀ କ୍ଷତ୍ରିୟ ଲଳନାଙ୍କ ଛବି ମଧ୍ୟ କବିଙ୍କ ମାନସ ଚକ୍ଷୁରେ ପ୍ରତିଭାତ ହୋଇଅଛି । ଏଇ ଋଷିକୁମାରୀମାନେ ପୁଣ୍ୟମୟୀ, ଦୟା, ପବିତ୍ରତା ଓ ସରଳତାର ପ୍ରତିମୂର୍ତ୍ତି ଥିଲେ । ସେଇପରି କ୍ଷତ୍ରିୟ ତରୁଣୀକୁଳ ସାହସ ବୀରତ୍ୱର ଅବତାର ଯେପରି ଜନ୍ମିଥିଲେ । ଏମାନେ ନିଜର ଅସଂଖ୍ୟ ପ୍ରଣୟାସକ୍ତ ତରୁଣଙ୍କୁ ଅବ୍ୟର୍ଥସନ୍ଧାନୀ କଟାକ୍ଷରେ ଯେଉଁ ବୀରତ୍ୱ ଓ ଆତ୍ମଦାନର ଦୀକ୍ଷା ଦେଇଥିଲେ, ତାହାର ଯଶ ସମଗ୍ର ବିଶ୍ୱରେ ଉଦ୍‌ଘୋଷିତ ହୋଇଥିଲା । ଏଇ ପ୍ରସଙ୍ଗରେ କବି ପୁଣି ହସ୍ତିନା, ଇନ୍ଦ୍ରପ୍ରସ୍ଥ ପ୍ରଭୃତି ପୁରାଣ ବିଖ୍ୟାତ ସମୃଦ୍ଧ ନଗରରାଜିର ବାର୍ଣ୍ଣାଢ୍ୟ ଛବି ସ୍ମରଣ କରିଛନ୍ତି, ଭାରତ ଇତିହାସର ଗୌରବମୟ ବୁଦ୍ଧଯୁଗ, ବୁଦ୍ଧ ନରପତିମାନଙ୍କର ଅମର କୀର୍ତ୍ତି ସ୍ମରଣ କରିଛନ୍ତି ।

ଉତ୍କଳଗାଥା ମଧୁସୂଦନଙ୍କର ଉତ୍କଳ ଜାତୀୟତାର ପ୍ରତୀକ । ସମଗ୍ର ଭାରତ ଇତିହାସରେ ଉତ୍କଳର ସଂସ୍କୃତି ଓ ଇତିହାସ ଯେଉଁ ସ୍ୱତନ୍ତ୍ର ଆସନର ଅଧିକାରୀ, ତାହାରି ଶଙ୍ଖ ସୂଚନାରେ ଏଇ କବିତାଗୁଡିକ ପରିପୂର୍ଣ୍ଣ । ଭାରତ ତୀର୍ଥର ଦେଶ, ଉତ୍କଳ ମହାତୀର୍ଥ ଶୋଭିତ ପୁଣ୍ୟଭୂମି । ଭାରତ ଶିଳା ଶିଳ୍ପର ଦେଶ, ଉତ୍କଳ ଶିଳା ଶିଳ୍ପର ଶ୍ରେଷ୍ଠ ଦୃଷ୍ଟାନ୍ତସ୍ଥଳ । ଭାରତ ବହୁ ମହାମାନବଙ୍କର ଲୀଳାଭୂମି, ଉତ୍କଳ ସେମାନଙ୍କର ସାଧନାର ପୀଠ । ଅଶୋକ, ଶଙ୍କର ଚୈତନ୍ୟ ସମସ୍ତେ ଏଇ ଭୂମିକୁ ଆରାଧନା କରିଛନ୍ତି । ଏଇ ଭୂମିର ପ୍ରତି ଧୂଳିକଣା କୀର୍ତ୍ତିଭାସ୍ୱର । କଟକ, ଭଗ୍ନ ବାରବାଟୀ, ଝାଡଖଣ୍ଡ, ଭଞ୍ଜଭୂମି—ଯେଉଁ ଦିଗକୁ ଚାହିଁଲେ ଅତୀତର ଲୁପ୍ତଗୌରବ ସ୍ମରଣରେ ଆସେ । ଏଇ ସ୍ମୃତି ପ୍ରାଣକୁ ବେଦନା ବ୍ୟଥିତ କରେ । 'ଉତ୍କଳ ବନ୍ଦନା' କବିତାରେ କବି ପ୍ରାଚୀନ ଉତ୍କଳର ଯଶଗୌରବ ଗାନ କରିବା ସଙ୍ଗେ ସଙ୍ଗେ, ପ୍ରାଚୀନ ଉତ୍କଳୀୟ ସାଧକ, ବୀର, କବି ଓ ଶିଳ୍ପୀଙ୍କ ଯଶୋଗୀତି ଗାନ କରିଛନ୍ତି । ଜନ୍ମ ଭୂମି ଚରଣ ପ୍ରାନ୍ତରେ ନିଜ ଅନ୍ତରର ନତି ଜଣାଇଲା ବେଳେ କବି ଯେପରିକି ଲୁପ୍ତ ଗୌରବମୟ ଅତୀତକୁ ଉପହାର ଦେଇଛନ୍ତି—

ତୋ ମହିମା ତୋ ଗୌରବ ତୋହର ପୁଣ୍ୟ ବିଭବ
ସୁମରି ମା ମାତୃଭୂମି ତୋର ଅତୀତେ
ନମଇଁ ମା ଭକତି ଭରେ
ଅଧମ ଅକ୍ଷମ ସୁତ ତୋ ଚରଣରେ । ୧୩

ମଧୁସୂଦନ ଅତୀତର ସ୍ତବ କରିଚନ୍ତି ସତ, ମାତ୍ର ଅହେତୁକ ମୋହରେ ତାଙ୍କର ଦୃଷ୍ଟି ଆଚ୍ଛନ୍ନ ହୋଇନାହିଁ । କାଳଚେତନା ତାଙ୍କୁ ପରିପ୍ରେକ୍ଷୀରେ ପୂର୍ବଦୃଷ୍ଟିର ଅଧିକାରୀ କରେଇଅଛି । ନୂତନ ଭବିଷ୍ୟତ ଗଠନ ପାଇଁ ପୁରାତନର ଯାହା ଗଠନାତ୍ମକ ଭୂମିକା—ତାହା ତାଙ୍କ ଦୃଷ୍ଟିରେ ସୁନ୍ଦର ଧରା ଦେଇଚି । ବଳିଷ୍ଠ ଅତୀତ କେବଳ ବଳିଷ୍ଠତର ଭବିଷ୍ୟତ

ଗଠନର ଇଙ୍ଗିତ ଦିଏ ନାହିଁ । ଅଧିକ ଉନ୍ନତ ସଭ୍ୟତା ଓ ସଂସ୍କୃତିର ସଂସର୍ଗରେ ଆସି ଏକ ଦୁଃସ୍ଥ ଜାତି ଆତ୍ମ ଦୈନ୍ୟରେ ଭାଙ୍ଗି ପଡ଼ିଲା ବେଳେ, ଏହା ଆତ୍ମପ୍ରତିଷ୍ଠ ହେବାକୁ ଶକ୍ତି ଦିଏ । କୌଣସି ନୂତନ ପରିସ୍ଥିତିରେ ନିଜକୁ ଖାପ ଖୁଆଇ ନେବାକୁ ହେଲେ, ନିଜର ଅନ୍ତର୍ନିହିତ ଶକ୍ତିରେ ବିଶ୍ୱାସଥିବା ପ୍ରୟୋଜନ । ଏ ବିଶ୍ୱାସ ମହାନ୍ ଅତୀତର ମହିମା ସ୍ମରଣରୁ ମିଳେ । ଏହି ଭାବରେ ପ୍ରଗତିଶୀଳ ଦୁନିଆର ଆହ୍ୱାନର ଉପଯୁକ୍ତ ହେବାକୁ 'ନବଯୁଗର ଆହ୍ୱାନ' କବିତାରେ କବି ଉଦ୍‌ବୋଧନ ଦେଇଅଛନ୍ତି । ଅତୀତ ଦେହରେ କଳ୍ପନାର ପ୍ରଲେପ ବୋଳି ମଧୁସୂଦନ କିପରି ଆତ୍ମହରା ହେଉଥିଲେ 'ଏକାମ୍ର କାନନ' କବିତାଟି ତାହାର ସୁନ୍ଦର ନିଦର୍ଶନ ।

"ସ୍ୱର୍ଗ-ପାରିଜାତ ପ୍ରାୟେ ଅମଳ ଉଦାର,<br>
ଧର୍ମେ ପ୍ରେମେ କର୍ମେ ଭାବେ ସଜୀବ ସଂସାର<br>
ତପସ୍ୟା-ଗମ୍ଭୀର ମୂର୍ଖା ମୂର୍ଚ୍ଛିତ ଭୂଧର,<br>
ପ୍ରଶାନ୍ତ ସମାଧିକ୍ଷେତ୍ର ଯୋଗୀଜନଙ୍କର,<br>
ନିଉଷ୍ଟୃମ୍ଭୀ ଶତ ଶତ ତୁଙ୍ଗ ଦେବାଳୟ,<br>
ମହା ପୁଣ୍ୟ-ମହିମାରେ ଶୁଭ୍ର ତେଜୋମୟ,<br>
ତହିଁ ମଧ୍ୟେ ରାଜଧାନୀ କ୍ଷତ୍ର-ମହିମାର,<br>
ଉତ୍ସବ-ଉଲ୍ଲାସେ ପୂର୍ଣ୍ଣ ପ୍ରଜା-ପରିବାର ।" ୧୪

ଏଇ ଉଦାର ମନୋଜ୍ଞଚିତ୍ର କଳ୍ପନା ନେତ୍ରରେ ଦେଖୁ ଦେଖୁ, କବି ବାସ୍ତବ ଜଗତକୁ ଫେରିଆସିଚନ୍ତି । ସମ୍ମୁଖରେ ଦେଖିଚନ୍ତି ଧ୍ୱଂସର ସ୍ତୂପ, କୀର୍ତ୍ତିର ସମାଧି; କ୍ଷୁଦ୍ର, ନୀଚ ସ୍ୱାର୍ଥ କଳୁଷିତ ନରନାରୀ । ଚଉଦିଗ ସତେ ଯେପରିକି ମ୍ଳାନ ଓ ମ୍ରିୟମାଣ ।

**ସ୍ୱଦେଶ ଭୂମିର ଆକର୍ଷଣ**

"କାହିଁ ମୋର ଜନ୍ମଲଭ କାହିଁ ଲୁପ୍ତ ଦେହ ?<br>
କାହିଁ ମୋର ଲୀଳାସ୍ଥଳୀ ମଧୁମୟ ଗେହ ?<br>
ଜୀବନ ଜୀବିକା କାହିଁ ପୂର୍ଣ୍ଣ ମନସ୍କାମ ?<br>
ପବିତ୍ର ମୋ ଜନ୍ମଭୂମି ସୁଖମୟ ଧାମ । ୧୫

ଫକୀର ମୋହନଙ୍କ ଏଇ ଉକ୍ତିରେ ପ୍ରକାଶ ପାଇଚି, ଜନ୍ମଭୂମି ପ୍ରତି ଏକ ସହଜ ଆକର୍ଷଣ । ଏଇ ଆକର୍ଷଣ ଯୁଗର ଜାତୀୟତାବାଦୀ କବିଙ୍କଠାରେ ସ୍ୱାଭାବିକ । ଫକୀରମୋହନ ଜନ୍ମଭୂମିର ମହତ୍ତ୍ୱ କେତେକ ପରିମାଣରେ ବାସ୍ତବବାଦୀ ଦୃଷ୍ଟିରୁ ବ୍ୟାଖ୍ୟା କରିଛନ୍ତି । ବ୍ୟକ୍ତିତ୍ୱ ବିକାଶରେ ଜନ୍ମଭୂମି ଦାନ ସେ ସ୍ମରଣ କରିଚନ୍ତି । ମାତ୍ର ଜନ୍ମଭୂମି ପ୍ରୀତି ମନୁଷ୍ୟର ମାନସିକ ଭାବାବେଗର ଏକ ଅଂଶ । ଦେଶର ଭୂଗୋଳ ଓ ପ୍ରକୃତିର ଚରିତ୍ର ଅନୁସାରେ ଦେଶର

ମାନବଗୋଷ୍ଠୀଙ୍କ ମନ ଗଢ଼ା ହୋଇଥାଏ । ଜାତୀୟ ଜୀବନକୁ ଇତିହାସ ଯୁଗେ ଯୁଗେ ଧାରଣ କରେ, ଧାତ୍ରୀ ଭଳି ପାଳନ କରେ, ମାତ୍ର ଭୂଗୋଳହିଁ ପ୍ରକୃତ ଜନନୀର କାର୍ଯ୍ୟକରେ । କୌଣସି ଦେଶର ପ୍ରକୃତି, ରୁକ୍ଷ ମରୁଭୂମି, ତରୁଲତାବୃତ ପର୍ବତମାଳା, ଅଥବା ନଦ ନଦୀ ଶୋଭିତ ସୁଜଳା ସୁଫଳା ସମଭୂମି ଯାହା ହେଉନା କାହିଁକି ଏହା ଅଧିବାସୀଙ୍କ ମନକୁ ଏକାନ୍ତ ଭାବେ ପ୍ରଭାବିତ କରେ । ଏଇ ପ୍ରଭାବ, ଏଇ ମୋହ ନିକଟରେ ମନୁଷ୍ୟ ଜଗତ ଯାକର ସୁଖ ସମ୍ପଦକୁ ତୁଚ୍ଛ ମଣେ । ଏ ଯୁଗର ସମସ୍ତ କବି ଏଇ ଭାବରେ ଭାବିତ । ସେମାନଙ୍କ ନିକଟରେ ଉତ୍କଳର ନଦ ନଦୀ, ପର୍ବତ କାନ୍ତାର, ସମୁଦ୍ର ତଟ, ହ୍ରଦକୂଳ, ଖେତବାଡ଼ି ନଗର ଜନପଦ, ଏପରିକି ଏହାର ପ୍ରତି ଧୂଳିକଣା ଏକାନ୍ତ ପ୍ରିୟ, ଏକାନ୍ତ ଆପଣାର । ବାଣୀ-ବୀଣାରେ ଏହାର ମହିମା ଗାନ କରି ସେମାନେ ନିଜ ଜୀବନକୁ ଧନ୍ୟ ମଣିଚନ୍ତି । ନିଜର କଳ୍ପନା ପ୍ରସୂତ କାବ୍ୟ ଜଗତରେ ପ୍ରକୃତିର ଏଇ ଜଡ ଅଚେତନ ରୂପରେ ନୂତନ ଜୀବନ ଓ ନୂତନ ଚେତନା ସଞ୍ଚାର କରିଛନ୍ତି । ବାଣୀର ମୋହନ ରୂପ ଦାନ କରି ଉତ୍କଳୀୟ ପ୍ରକୃତି ଚିଲିକା, ମହାନଦୀକୁ ଏକଦେଶିକତାରୁ ମୁକ୍ତ କରିଚନ୍ତି । ସୌନ୍ଦର୍ଯ୍ୟ ଓ ରୂପରୁଚିରେ ଏମାନଙ୍କୁ ସାର୍ବଜନୀନ କରିଚନ୍ତି । ଏଦିଗରେ ଏକ ସ୍ପଷ୍ଟ ପ୍ରୟାସ ରାଧାନାଥଙ୍କ-ଠାରେ ଦେଖିବାକୁ ମିଳେ । କବିଗୁରୁ କାଳିଦାସଙ୍କ ଲେଖନୀରେ କ୍ଷୁଦ୍ର ସିପ୍ରା ସ୍ରୋତ ଜଗତ ବିଖ୍ୟାତ ହୋଇଛି, ଗୋଷ୍ପଦ ଆକୃତି ପୁଷ୍କର ଜନ ପ୍ରସିଦ୍ଧ ହୋଇଚି, ଗୋବର୍ଦ୍ଧନ ଗିରିନ୍ଦ୍ର ବୋଲାଉଚି, ମାତ୍ର ସମସ୍ତ ଶୋଭାର ନିଧାନ ଉତ୍କଳ ପ୍ରକୃତି ଏ ସମ୍ମାନର ଅଧିକାରୀ ହୋଇନାହିଁ । ପ୍ରକୃତିପ୍ରାଣ, ଦେଶପ୍ରେମୀ କବି ରାଧାନାଥ ଅନ୍ତରର କି ଆକୁଳ ଆଗ୍ରହରେ କହିନାହାନ୍ତି—

"ଦେବୀ ବୀଣାପାଣି ! କେଉଁ ପାପ ଫଳେ
କରୁଣା ତୋହର ଊଣା ଏ ଉତ୍କଳେ
ସ୍ୱଭାବେ ଉତ୍କଳ ଶୋଭାର ନିଧାନ
ମାତ୍ର ଏ ଶୋଭାରେ ତୋର ଅଧିଷ୍ଠାନ
ବିନୁ ସିନା ମାତା ହୋଇଛି ବିବଶା
ଭଜୁଛି ଅରଣ୍ୟ-ପ୍ରସୂନର ଦଶା ।" ୧୭

## ଉତ୍କଳୀୟ ଏକତା

ଜାତୀୟତା ଏକ ସମ୍ପୂର୍ଣ୍ଣ ବସ୍ତୁ । ଏହା କୌଣସି ପ୍ରକାର ଖଣ୍ଡିତ ଆକାଂକ୍ଷା ଓ ଅଭିରୁଚିର ବିକ୍ଷିପ୍ତ ପ୍ରକାଶ ନୁହେ । ଏକ ଦିଗରେ ଯେପରି ଏହା କାଳରେଖାରେ ଅତୀତ ସହିତ ବର୍ତ୍ତମାନ ଓ ଭବିଷ୍ୟତକୁ ସଂଲଗ୍ନ କରେ, ଦେଶର ପ୍ରାକୃତିକ ଭୂଗୋଳ ସହିତ ମାନସିକ ଭାବାବେଶରେ ଦେଶବାସୀଙ୍କ ହୃଦୟକୁ ଏକାତ୍ମ କରେ, ସେଇପରି ଭାଷା, ସଂସ୍କୃତି, ଆର୍ଥିକ

ଜୀବନ, ସାମାଜିକ ଚଳଣି—ଏ ସମସ୍ତ ଦିଗରୁ ଦେଶବାସୀଙ୍କ ମନକୁ ଏକ ସାମଞ୍ଜସ୍ୟ ସମନ୍ୱିତ ସୂତ୍ରରେ ଗ୍ରଥିତ କରେ ।

ସ୍ୱଦେଶ ଇତିହାସରେ ଗୌରବବୋଧ, ପ୍ରକୃତି ଚିତ୍ରଣରେ ଦେଶପ୍ରେମ ଫୁଟିବା ସଙ୍ଗେ ସଙ୍ଗେ ଊନବିଂଶ ଶତକର ଶେଷ ଆଡକୁ ଉତ୍କଳୀୟ ଏକତା ପ୍ରଶ୍ନ ବଡ ହୋଇ ଦେଖା ଦେଇଥିଲା । ବିଂଶ ଶତକର ଆଦ୍ୟପାଦରେ 'ଉତ୍କଳ ସମ୍ମିଳନୀ'ର ଜନ୍ମ ; ଉତ୍କଳୀୟମାନଙ୍କ ମଧ୍ୟରେ ଐକ୍ୟ ଆନୟନ ଥିଲା ଏହାର ପ୍ରଧାନ ଉଦ୍ଦେଶ୍ୟ । ଏହା ପୂର୍ବରୁ ଜାତୀୟ ଏକତା ଲାଗି ଉପଯୁକ୍ତ ପରିବେଶ ସୃଷ୍ଟିର ସ୍ପଷ୍ଟ ପ୍ରୟାସ କବିମାନେ କରିଥିଲେ । ସମଗ୍ର ଭାରତରେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥିତି ତଥା ଇତିହାସ, ପ୍ରାକୃତିକ ସମ୍ପଦ ପ୍ରତି ସେମାନେ ଦେଶବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଫଳରେ ଶିକ୍ଷିତ ସାଧାରଣଙ୍କ ମନରେ ଜାତୀୟ ଜାଗରଣ ସଙ୍ଗେ ସଙ୍ଗେ ଜାତୀୟ ଐକ୍ୟ ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା ।

ଏହି ଉତ୍କଳୀୟ ଜାତୀୟତା ଓ ଐକ୍ୟ ସମଗ୍ର ଭାରତୀୟ ଜାତୀୟତା ଓ ଏକତାର ବିରୋଧୀ ନଥିଲା । ସମଗ୍ର ଭାରତୀୟ ଜାତୀୟତାର ଏକ ଅଙ୍ଗ ରୂପେ ଏହାକୁ ଗ୍ରହଣ କରି ଯାଉଥିଲା । ଭାରତବର୍ଷର ଅନ୍ୟ ପ୍ରାନ୍ତ ଓ ଭାଷାଭାଷୀଙ୍କ ସହିତ ଉତ୍କଳୀୟମାନେ ସମାନସ୍କନ୍ଧ ଭାବରେ ଗତି କରନ୍ତୁ ଏହାହିଁ କାମନା ଥିଲା । 'ନବଯୁଗ ଆହ୍ୱାନ' କବିତାରେ ମଧୁସୂଦନ ପରାଧୀନ, ବର୍ଣ୍ଣଭେଦ ଓ ଧର୍ମଭେଦରେ ବିଭକ୍ତ ଓ ବିଚ୍ଛିନ୍ନ ଭାରତର ଯେଉଁ ଭବିଷ୍ୟତ କଳ୍ପନା କରିଥିଲେ, ସେଥିରେ ପଞ୍ଜାବ, ବଙ୍ଗ, ଗୁର୍ଜର, ତେଲିଙ୍ଗ, କର୍ଣ୍ଣାଟ, ଉତ୍କଳ, ମହାରାଷ୍ଟ୍ର ଆଦି ପ୍ରତ୍ୟେକ ପ୍ରାନ୍ତ ପାଇଁ ସ୍ୱତନ୍ତ୍ର ସ୍ଥାନ ନିର୍ଣ୍ଣୀତ ହୋଇଥିଲା । ୧୭ କବିଙ୍କର ଏଇ ଚିନ୍ତାଧାରା ସହିତ ସେ ସମୟର ଉତ୍କଳରେ ଅପ୍ରତିଦ୍ୱନ୍ଦୀ ଜାତୀୟ ନେତା, ସମ୍ମିଳନୀର ସଭାପତି କୁଳବୃଦ୍ଧ ମଧୁସୂଦନଙ୍କ ଚିନ୍ତାର ସାମଞ୍ଜସ୍ୟ ବେଶ ଲକ୍ଷ୍ୟ କରି ଯାଇପାରେ । ଇଉରୋପରେ ଇଂରେଜ, ଫରାସୀଙ୍କଠାରେ ଯେପରି ଜାତୀୟ ସାତନ୍ତ୍ର୍ୟ ଲକ୍ଷିତ ହୁଏ, ସେଇଭଳି ସ୍ୱାତନ୍ତ୍ର୍ୟ ବିଭିନ୍ନ ପ୍ରାନ୍ତ ଉପରେ ଆରୋପ କରିଚନ୍ତି । ଏଇ ଭିନ୍ନ ଭିନ୍ନ ଜାତିଙ୍କ ମଧ୍ୟରେ ମୈତ୍ରୀ ଓ ସୌହାର୍ଦ୍ଦ୍ୟ ଭିତ୍ତିରେ ଭବିଷ୍ୟତ ଭାରତର କଳ୍ପନା କରିଚନ୍ତି । ଏଇ ପ୍ରସଙ୍ଗରେ ଉତ୍କଳ ସମ୍ମିଳନୀ ପାଇଁ ଆୟୋଜିତ ପ୍ରାରମ୍ଭିକ ସାଧାରଣ ସଭାରେ କୁଳବୃଦ୍ଧ ମଧୁସୂଦନଙ୍କ ଭାଷଣ ସ୍ମରଣୀୟ । "ଇଉରୋପରେ ନେଶନ ଅର୍ଥାତ୍ ଜାତି ଶବ୍ଦ ଗୋଟିଏ ରାଷ୍ଟ୍ର ବା ଦେଶର ଲୋକ ସମୂହକୁ ବୁଝାଏ । ଇଉରୋପୀୟ ଜାତି ସମୂହ ପରସ୍ପରଠାରୁ ଯେଉଁ ପରିମାଣରେ ବିଭିନ୍ନ, ଭାରତବର୍ଷର ପ୍ରାଦେଶିକ ଲୋକ ସମୂହ ସେଇପରି ନାନା ବିଷୟରେ ପରସ୍ପରଠାରୁ ବିଭିନ୍ନ । ଏହି ହେତୁରୁ ଭାରତବର୍ଷରେ ଜାତୀୟତା—ଏହି ଶବ୍ଦ ଗୋଟିଏ ବିଶେଷ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ । ଅତଏବ ଦୁଇ ଜାତି ବା ସମାଜ ମଧ୍ୟରେ ମିତ୍ରତା ବର୍ଦ୍ଧନ ପାଇଁ ଦୃଢ ବନ୍ଧନ ସହିତ କୌଣସି ଜାତୀୟ ଅନୁଷ୍ଠାନ ଗଢିବା ଏକାନ୍ତ ଆବଶ୍ୟକ । ଅତଏବ

ଏକ ଜାତିର ଉନ୍ନତି ନିମିତ୍ତ ଅପର ଜାତିର ସହଯୋଗ ଆବଶ୍ୟକ ଏବଂ ପ୍ରସ୍ତାବିତ ଉତ୍କଳୀୟ ସାର୍ବଜନୀନ ସଭା ସେହି ନୀତି ଅନୁସାରେ ପ୍ରତିଷ୍ଠିତ ହେବା ଉଚିତ ।" ୧୮

ସର୍ବ ଭାରତୀୟ ସୌଭ୍ରାତ୍ର ଦୃଷ୍ଟିରେ ଓଡ଼ିଶାର ଉନ୍ନତି ପାଇଁ ଲୋଡ଼ାଥିଲା ଅଖଣ୍ଡ ପ୍ରଦେଶ ଓ ତାହା ଜରିଆରେ ଜାତୀୟ ଏକତା । ଶିକ୍ଷା, ସଂସ୍କୃତି ତଥା ଜାତୀୟ ଉନ୍ନତିର ଅନ୍ୟ ସର୍ବବିଧ ଲକ୍ଷ୍ୟ ସାଧନ—ଏହି ଦୁଇ ବିଷୟ ଉପରେ ନିର୍ଭର କରେ ବୋଲି ସମସ୍ତେ ମନେ କରୁଥିଲେ । ଉତ୍କଳ ସମ୍ମିଳନୀର ନେତାମାନଙ୍କ ଭଳି ପ୍ରଦେଶର ଖଣ୍ଡିତାବସ୍ଥା ଓ ପଡ଼ୋଶୀମାନଙ୍କର ପ୍ରଭାବ ଓଡ଼ିଶାର ସକଳ ଦୁର୍ଗତିର କାରଣ ବୋଲି ଫକୀର ମୋହନ ସ୍ପଷ୍ଟ ଭାଷାରେ ଘୋଷଣା କରିଥିଲେ ।

> "ମାତ ଆହା ଏହି ଦେଶ ହୋଇ ଖଣ୍ଡ ଖଣ୍ଡ
> ସକଳ ସୌନ୍ଦର୍ଯ୍ୟ ହୋଇଅଛି ଲଣ୍ଡଭଣ୍ଡ ।
> ଦକ୍ଷିଣଟା କମାମାନେ ବସିଚନ୍ତି ମାଡ଼ି
> ଉତ୍ତରଟା ହେଲାଣି ତ ବଙ୍ଗାଳୀଙ୍କ ବାଡ଼ି ।
> ପଶ୍ଚିମ ଦଗର କଥା କହିଲେ ନ ସରେ
> ପଡ଼ିଲାଣି ସେଟା ମରହଟ୍ଟାଙ୍କ ଭାଗରେ ।" । ୧୯

ଜାତୀୟ ଦୁର୍ଗତିର କାରଣ ନିର୍ଦ୍ଦେଶ କରି ଫକୀରମୋହନ କବି ଦୃଷ୍ଟିରେ ଯାହା ସତ୍ୟ ବୋଲି ଉପଲବ୍ଧି କରିଥିଲେ, ତାର ବହୁଦିନ ପରେ ଉତ୍କଳ ସମ୍ମିଳନୀ ମଞ୍ଚପରୁ ଜାତିର ନେତା ମଧୁସୂଦନଙ୍କ କଣ୍ଠରୁ ସେଇ ସ୍ୱର ଶୁଣାଯାଇଥିଲା । ୧୯୧୩ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଓଡ଼ିଶାର ଖଣ୍ଡିତାବସ୍ଥା ପ୍ରତି ଲକ୍ଷ୍ୟ କରି କହିଥିଲେ—"ମୁଣ୍ଡ ଏକ ସ୍ଥାନରେ ହାତ ଏକ ସ୍ଥାନରେ, ପାଦ ଏକ ସ୍ଥାନରେ ପଡ଼ି ରହିଅଛି । ଏହି ଅବସ୍ଥାକୁ କେହି ମନୁଷ୍ୟର ସୁସ୍ଥ ଅବସ୍ଥା ବୋଲି କହି ନ ପାରେ । ଉପେନ୍ଦ୍ର ଭଞ୍ଜଙ୍କ ପରି ମସ୍ତକ ଗଞ୍ଜାମରେ ଉତ୍କଳମାତାଙ୍କ ଗଣ୍ଡିରୁ ବିଚ୍ଛିନ୍ନ ହୋଇ ପଡ଼ି ରହିଅଛି । ଯଦି ଏ ଦେଶର ମିଳନ ହୁଏ, ତେବେ ଏଦେଶର ଅନ୍ତଃକରଣ କିଣ ହେବ ? ନଈରେ ଯେପରି ଜୁଆର ହୋଇଥାଏ, ପୁଣି ଭଟ୍ଟା ହୋଇଗଲେ ପାଣି ସବୁ ସ୍ଥାନେ ସ୍ଥାନେ ରହିଯାଏ, ସେଇପରି ଓଡ଼ିଶାରେ ଦିନେ ଜୁଆର ଅବସ୍ଥାଥିଲା । କିନ୍ତୁ ବର୍ତ୍ତମାନ ଭଟ୍ଟା ଅବସ୍ଥାରେ ସ୍ଥାନେ ସ୍ଥାନେ ମନ୍ଦାଏ ମନ୍ଦାଏ ପାଣି ରହିଲା ପରି ଦେଶଟା ଏଠାରେ ଖଣ୍ଡେ ସେଠାରେ ଖଣ୍ଡେ ହୋଇ ପଡ଼ି ରହିଅଛି । ଯେପରି ସେହି ସମସ୍ତ ଜଳାଶୟକୁ ପୁଣି ଏକତ୍ର କରିବାକୁ ହେଲେ, ଜୁଆର ଆବଶ୍ୟକ, ସେହିପରି ଏଦେଶକୁ ଏକତ୍ର କରିବାକୁ ହେଲେ ସର୍ବତ୍ର ଜାତୀୟ ଭାବର ଜୁଆର ଉଠେଇବାକୁ ହେବ ।" ୨୦

ଖଣ୍ଡିତ ଉତ୍କଳର ଏଇ କଳ୍ପିତ ଐକ୍ୟକୁ ଏକ ଜାଗ୍ରତ-ଜାତୀୟ ମାନସର ଭୂମିକା ରୂପେ ଧରି ହେଉଥିଲା । ବଙ୍ଗ, ବିହାର, ମାନ୍ଦ୍ରାଜ ଓ ମଧ୍ୟ ପ୍ରଦେଶର ଓଡ଼ିଆ ଅଂଚଳସବୁ ଏକତ୍ର ଏକ ଶାସନାଧୀନ ହେବାଦ୍ୱାରା ଏହି ପ୍ରାକୃତିକ ଭୂମିଖଣ୍ଡର ବାହ୍ୟିକ ମିଳନ କାମନା କରି

ଯାଉନଥିଲା । ଏ ମିଳନ ଯେପରି ଗଭୀର ହୁଏ, ଆନ୍ତରିକ ହୁଏ ତାହା ଦେଖିବାକୁ ଜାତିପ୍ରେମୀ-ମାନେ ବ୍ୟାକୁଳ ଥିଲେ । ଏଇ ମିଳନ ଦ୍ୱାରା ଆତ୍ମଘାତୀ କଳହ ଦୂର ହେବ, ସଙ୍କୀର୍ଣ୍ଣତାର ଅବସାନ ହେବ, ସହାୟହୀନ ଦୈନ୍ୟପୀଡ଼ିତ ମନର ନ୍ୟୂନଭାବରେ ଜାତିର ଆତ୍ମା ଆହତ ନହୋଇ ବଳିଷ୍ଠ ଆତ୍ମ ଶକ୍ତିରେ ସମ୍ବର୍ଦ୍ଧିତ ହେବ—ଏହାହିଁ ଜାତିପ୍ରେମୀ କବି ଓ ଜନନେତା ଆଶାକରୁଥିଲେ । ମଧୁସୂଦନଙ୍କ ଉତ୍କଳଗାଥାର ଜାତୀୟ ସଙ୍ଗୀତଗୁଡ଼ିକରେ, ଫକୀରମୋହନଙ୍କ ଦେଶବୋଧାତ୍ମକ କ୍ଷୁଦ୍ର ଗୀତି କବିତା ଗୁଡ଼ିକରେ ଏଇ ଭାବର ଆବେଗମୟ ନିଃସରଣ ଘଟିଅଛି । ଉତ୍କଳର ପ୍ରତ୍ୟେକ ସନ୍ତାନ ପ୍ରେମାଲିଙ୍ଗନରେ ପରସ୍ପରର ହାତ ଧରି ଉଭା ହୁଅନ୍ତୁ, କୋଟିଏ କଣ୍ଠ ଏକ ତାନରେ ଉତ୍କଳ ଜନନୀର ଜୟଗାନ କରନ୍ତୁ, ନୂତନ ଆଶା ଓ ନୂତନ ପ୍ରାଣ ଘେନି ପ୍ରଗତି ମାର୍ଗରେ ଦ୍ରୁତ ପଦରେ ଗତି କରନ୍ତୁ — ଏହା ଉତ୍କଳ ଜନନୀଙ୍କ ଆଶା ବୋଲି ମଧୁସୂଦନ ବ୍ୟକ୍ତ କରିଛନ୍ତି । 'ଭାଇକଳି' କବିତାରେ ଫକୀର ମୋହନ ରାଜକର୍ମ, ବ୍ୟବସାୟ ବାଣିଜ୍ୟ ଆଦି ଯେକୌଣସି ଉଦ୍ଦେଶ୍ୟରେ ହେଉନା କାହିଁକି ଉତ୍କଳକୁ ଆସି ସ୍ଥାୟୀ ଭାବରେ ରହୁଥିବା ଅଧିବାସୀମାନଙ୍କୁ ଏକ ଭ୍ରାତୃତ୍ୱ ସୂତ୍ରରେ ଆବଦ୍ଧ ହେବାକୁ ଅନୁରୋଧ କରିଛନ୍ତି । ଫକୀରମୋହନଙ୍କ ସ୍ୱଭାବ ସୁନ୍ଦର ଉକ୍ତିରେ—

"ଉତ୍କଳେ ଜନମ ଉତ୍କଳେ ମରଣ,
ଉତ୍କଳଅନ୍ନରେ ଜୀବନ ଧାରଣ ।
ପରପର ଭାବ ପୋଷିବୁ କପାଇଁ !
ମାତା ସମ୍ବନ୍ଧରେ ସର୍ବେ ଭାଇ ଭାଇ
ଭିନ୍ନାଭିନ୍ନ ଭାବ ବାହାରର ଜନ—
ମୋ କ୍ଷୁଦ୍ର ବୁଦ୍ଧିରେ ସେ ତ ଅକିଂଚନ ।" ୨୧

ଉତ୍କଳୀୟ ଏକତାକୁ କୁଳବୃଦ୍ଧ ମଧୁସୂଦନ ଅତି ଉଚ୍ଚ ଆଦର୍ଶ ଦୃଷ୍ଟିରୁ ବିଚାର କରୁଥିଲେ । ଏକ ସହୃତ ଜାତୀୟ ଚରିତ୍ର ସୃଷ୍ଟି ତାଙ୍କର ଉଦ୍ଦେଶ୍ୟ ଥିଲା । ଏ ମିଳନ କୌଣସି ଜଡ଼ବସ୍ତୁର ମିଳନ ଭଳି ଅସଂଲଗ୍ନ ବା ଉପସ୍ଥିତ ବିପଦ ଆଶଙ୍କାରେ ପଶୁଭାବାପନ୍ନ ହେବା ସେ ଗ୍ରହଣ କରୁ-ନଥିଲେ । ଏବିଷୟରେ ତାଙ୍କର ଉକ୍ତି ଓ ଯୁକ୍ତି ଅତି ସ୍ପଷ୍ଟ । 'ମିଳନ ଓ ସମ୍ମିଳନ ଏକ ଶବ୍ଦ ନୁହେଁ, କିମ୍ବା ଏକ ଅର୍ଥ ବୁଝାଏ ନାହିଁ । କାଠ ଦୁଇଖଣ୍ଡ ଏକାଠି କରିବାକୁ ବଢ଼େଇ କଣ୍ଟା ମାରେ, କିମ୍ବା ଶିରିଷ ଅଠା ଲଗାଏ । ଦୁଇଟି ଗଛ କଲମି କରିବାଦ୍ୱାରା ଏକ ଦେଖା-ଗଲେ ମଧ୍ୟ ଭିନ୍ନ ଭିନ୍ନ ଫଳ ଫଳନ୍ତି । ପଶୁମାନଙ୍କର ମିଳନ ଶତ୍ରୁ ଭୟରେ ହୁଏ । ମନୁଷ୍ୟ ଜାତିର ମିଳନ ମଧ୍ୟ ନାନା ଅଭିପ୍ରାୟରେ ହୋଇଥାଏ । ଏହିପରି ସମ୍ମିଳନ ଦ୍ୱାରା ଉଭୟ ପଦାର୍ଥ ମଧ୍ୟରୁ କାହାର ପ୍ରକୃତିର ପରିବର୍ତ୍ତନ ହୁଏନାହିଁ । ରସାୟନ ଶାସ୍ତ୍ରରୁ ଆପଣମାନେ ଜାଣନ୍ତି ଏପରି ଜିନିଷ ଅଛି, ଯହିଁରୁ ଦୁଇଗୋଟି ମିଶେଇ ଦେଲେ ଯେ ପଦାର୍ଥ ହୁଏ, ତାହାର ଗୁଣ ଓ ପ୍ରକୃତି ସମ୍ପୂର୍ଣ୍ଣ ପୃଥକ୍... ..ଉଦାହରଣ ସ୍ୱରୂପ ଉଲ୍ଲେଖ କରୁଅଛି, ପାଣି ଦୁଇଗୋଟି

ବାଷ୍ପରୁ ଉତ୍ପନ୍ନ ହୁଏ । ବାଷ୍ପକୁ ଏକ ପ୍ରକାର ବାୟୁ କୁହାଯାଇପାରେ । ମାତ୍ର ଦୁଇଗୋଟି ବାଷ୍ପର ସମ୍ମିଳନରେ ଯାହା ଉତ୍ପନ୍ନ ହେଲା ତାହା ପାଣି । ବାଷ୍ପଦୃଷ୍ଟିର ଅଗୋଚର, ପାଣି ଦୃଶ୍ୟମାନ, ବାଷ୍ପ ଉର୍ଦ୍ଧ୍ୱଗାମୀ, ଜଳ ନିମ୍ନଗାମୀ—ଏହିପରି ଦୁହିଁଙ୍କର ଗୁଣ ଓ ଲକ୍ଷଣ ସମ୍ପୂର୍ଣ୍ଣ ପୃଥକ୍ । ଅତଏବ ସମ୍ମିଳନୀର ଅର୍ଥ ଏ ପ୍ରକାର ମିଳନ ଯେ ମିଳିତ ପଦାର୍ଥମାନଙ୍କର ପୃଥକ ଅସ୍ତିତ୍ୱ ଓ ଗୁଣ ଲୋପ ହୋଇ ଏକ ନୂତନ ପଦାର୍ଥ ଉତ୍ପନ୍ନ ହେବ । ବ୍ୟକ୍ତିଗତ ଜୀବନ ଲୋପ ହୋଇ ଜାତୀୟ ଜୀବନରେ ପରିଣତ ନ ହେବା ଯାଏ ପ୍ରକୃତ ମିଳନ ଅସମ୍ଭବ ।" ୨୨

**ଓଡିଆ ଭାଷା ଓ ସାହିତ୍ୟର ଉନ୍ନତି**

"ପୁରୁଷ ଶ୍ରୀ ଅଟେ ସାର୍ଯ ଜାତିଗିଶ୍ୱ ଭାଷା
ଯାହା ଯୋଗେ ଜାତି କରେ ଉନ୍ନତି ପ୍ରତ୍ୟାଶା
ଭାଷାହିଁ ଜୀବନୀ ଶକ୍ତି ଜାତିମାନଙ୍କର
ଯେଉଁ ଜାତି ଭାଷାହୀନ ସେ ଜାତି ବର୍ବର ।" ୨୩

ଏହା ଫକୀରମୋହନଙ୍କ ହୃଦୟର ଭାଷା । ଓଡ଼ିଶାରେ ଜାତୀୟତାର ଆୟୋଜନ ଓଡ଼ିଆ ଭାଷାର ଆତ୍ମରକ୍ଷା ଉଦ୍ୟମରୁ ଆରମ୍ଭ ହୋଇଥିଲା । ଆଧୁନିକ ଶିକ୍ଷା ବିସ୍ତାର ପାଇଁ ପ୍ରଥମ ପ୍ରଚେଷ୍ଟା ଯୁଗରେ ବଙ୍ଗଭାଷାକୁ ପୁରୋସ୍ଥାନ ଦେବା ପାଇଁ ବଙ୍ଗୀୟ ରାଜକର୍ମଚାରୀ ମାନେ ଚେଷ୍ଟା କରିଥିଲେ । ଜାତିପ୍ରେମୀ ସାହିତ୍ୟିକମାନଙ୍କ ଦ୍ୱାରା ନୂତନ ଓଡ଼ିଆ ସାହିତ୍ୟ ପ୍ରଚାର ଫଳରେ ଏ ଉଦ୍ୟମ ବ୍ୟର୍ଥ ହୋଇ ଯାଇଥିଲା । ଏଇ ଭାଷାଗତ ଆତ୍ମରକ୍ଷା ପ୍ରଚେଷ୍ଟାରୁ ଜାତୀୟଜାଗରଣ ପାଇଁ ଚେତନା ଦେଖା ଦେଇଥିଲା । ବିଦେଶୀ ଶାସନ ପ୍ରତି ଅନାଦର ପ୍ରକାଶ ପାଇବା ପୂର୍ବରୁ ଦେଶର ସାଂସ୍କୃତିକ ସଂଗଠନରେ ସ୍ୱଦେଶର ଭାଷା ଓ ସାହିତ୍ୟକୁ ପୁରୋସ୍ଥାନ ଦେବାର ପ୍ରୟାସ ଦେଖା ଦେଇଥିଲା । ଉତ୍କଳୀୟ ଏକତା ସ୍ଥାପନ ଉଦ୍ଦେଶ୍ୟରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ସାହିତ୍ୟ କ୍ଷେତ୍ରରେ ଜାତୀୟ ଆଦର୍ଶ ପୂରଣଲାଗି ୧୯୦୪ଖ୍ରୀଷ୍ଟାବ୍ଦରେ 'ଉତ୍କଳ ସାହିତ୍ୟ ସମାଜ' ଗଠିତ ହୋଇଥିଲା । ବିଦେଶୀ ସଂସ୍କୃତି ବିରୋଧୀ ଜାତୀୟଚିନ୍ତାଧାରା ପ୍ରଚାରରେ ଦେଶୀୟ ସାହିତ୍ୟ ସାହାଯ୍ୟ କରୁଥିଲା । ଏହା ବିଦେଶୀ ଶାସକଙ୍କ ଦୃଷ୍ଟି ଏଡ଼ି ପାରିନଥିଲା । ୧୮୯୯ଖ୍ରୀଷ୍ଟାବ୍ଦରେ ରାଧାନାଥ କବି ଗଙ୍ଗାଧରଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ—'ରାଜନୈତିକ କାରଣରୁ ରାଜପୁରୁଷମାନେ ଦେଶୀୟ ସାହିତ୍ୟ ଉନ୍ନତିର ଅନୁକୂଳ ନୁହନ୍ତି । ସାହିତ୍ୟୋନ୍ନତି ଜାତୀୟତା ଓ ସ୍ୱଦେଶ ହିତୈଷିତାର ପରିପୋଷକ, ରାଜପୁରୁଷଙ୍କ ଚକ୍ଷୁରେ ଏହା ନିରାପଦ ନୁହେ ।" ୨୪

ଫକୀରମୋହନ ନିଜର ଅନେକ କବିତା ଓ ଭାଷଣରେ ମାତୃଭାଷା ଓ ସାହିତ୍ୟର ଉନ୍ନତିଲାଗି ଆବେଗପୂର୍ଣ୍ଣ ଅଭିଳାଷ ପ୍ରକାଶକରି, ଜାତୀୟ ଉନ୍ନତିଲାଗି ଏହାର ଉପଯୋଗିତା ସବୁ ଦିଗରୁ ବିଶ୍ଳେଷଣ କରିଅଛନ୍ତି । ଇଂରେଜୀ ଶିକ୍ଷାର ପ୍ରସାର ହେବା ଫଳରେ ପ୍ରକୃତ

ଜ୍ଞାନପିପାସୁଙ୍କ ଜ୍ଞାନପିପାସା ଚରିତାର୍ଥ କରିବାଲାଗି ଯେ ସୁଯୋଗ ମିଳିଲା, ଏହା ସେ ଭଲ ରୂପେ ବୁଝିଥିଲେ । ମାତ୍ର ସବୁଯୁଗରେ ପ୍ରକୃତ ଜ୍ଞାନପିପାସୁଙ୍କ ସଂଖ୍ୟା ଅଳ୍ପ । ଅଳ୍ପ ଇଂରେଜୀ ଶିକ୍ଷାଦ୍ୱାରା ସହଜରେ ଉଚ୍ଚ ରାଜକର୍ମ ମିଳୁଥିଲା, ପ୍ରଚୁର ଅର୍ଥ ଓ ପ୍ରତିଷ୍ଠା ଲାଭହେଉଥିଲା । ଏଥିଲାଗି ଅନେକ ଇଂରେଜୀ ଶିକ୍ଷା ପ୍ରତି ଆକୃଷ୍ଟ ହେଉଥିଲେ । ଏମାନଙ୍କଠାରେ ଜାତୀୟ ଚେତନା କ୍ଷୀଣ ଥିଲା । ଏମାନେ ବିନା ଦ୍ୱିଧାରେ ସଂସ୍କୃତି, ସାହିତ୍ୟ, ବେଶଭୂଷା ସବୁ କଥାର ନିନ୍ଦା କରୁଥିଲେ; ବିଦେଶୀୟ ସଂସ୍କୃତିର ଅନ୍ଧ ଅନୁକରଣ କରୁଥିଲେ । ଆମ ତୁଳନାରେ ପାଶ୍ଚାତ୍ୟ ସାହିତ୍ୟ ଯଥେଷ୍ଟ ଉନ୍ନତଥିଲା । ନିଜର ଚିନ୍ତାଜଗତର ପରିଧି ବଢ଼େଇବା ପାଇଁ ଏହାର ଅଧ୍ୟୟନ ଏକାନ୍ତ ପ୍ରୟୋଜନ ଥିଲା । ଏହି ଦୃଷ୍ଟିରୁ ଦେଖିଲେ ମାତୃ ସାହିତ୍ୟର ଉନ୍ନତିରେ ପ୍ରତିବନ୍ଧକ ନହୋଇ ବରଂ ଏହା ସହାୟକ ହେବାର କଥା । ମାତ୍ର ଅନ୍ଧ ଅନୁକରଣ ଫଳରେ ଭ୍ରାନ୍ତ, ସ୍ୱଜାତୀୟ ସଂସ୍କୃତି ପରମ୍ପରାରୁ ବିଚ୍ୟୁତ ଶିକ୍ଷିତ ସମାଜ ନିଜ ପଦ ତଳର ମାଟିରୁ ରସ ଗ୍ରହଣ କରିବାରେ ପାଶ୍ଚାତ୍‌ପଦ ହେବାଦ୍ୱାରା ଜାତିର ଅଧଃପତନ ଥିଲା ଅବଶ୍ୟମ୍ଭାବୀ । ଏହିମାନଙ୍କୁ ଲକ୍ଷ୍ୟକରି ଫକୀରମୋହନ କବିତାର ଆବେଗମୟ ଭାଷାରେ କହିଛନ୍ତି:—

> "ଗଞ୍ଜନା ଭର୍ତ୍ସନା ଅନ୍ୟ ଜାତିଠାରେ
> ପାଇ ପୁଣି କହେ ନ ଭାଙ୍ଗୁଛ ବାରେ ?
> ପଢ଼ ରାଜଭାଷା ଅଛି ତହିଁ ଲାଭ,
> ମାତ୍ର ନ ହରାଅ ଜାତୀୟ ସ୍ୱଭାବ ।
> ହେବ ଭାବ କାଳେ ସଭ୍ୟ ଭବ୍ୟ ପରା ?
> ଆବୋରି ନ ବସ ପରର ପସରା ।
> ନ କରିଲେ ମାତୃ ଭାଷାର ଉନ୍ନତି
> ଘୁଞ୍ଚିବକି କେବେ ଦେଶର ଦୁର୍ଗତି ?" [୧୫]

ଯେଉଁମାନେ ଇଂରେଜୀ ଭାଷା ଉପରେ ନିର୍ଭର କରି ଜାତୀୟ ଜୀବନ ଗଢ଼ିବାର ପ୍ରୟାସ କରୁଥିଲେ, ସେମାନଙ୍କୁ ଏହି ଉତ୍ତର ଫକୀରମୋହନ ଗୋଟିଏ ଭାଷଣରେ ଦେଇ ଥିଲେ । "ପୃଥିବୀର ଇତିହାସ ଆଲୋଚନା କରି ଦେଖନ୍ତୁ, କେହି ଜାତି ପରକୀୟ ଭାଷା ବଳରେ ପ୍ରକୃତ ଉନ୍ନତି ଲାଭ କରିବାକୁ ସକ୍ଷମ ହୋଇନାହିଁ । ଜାତି ମଧ୍ୟରେ ପରକୀୟ ଭାଷାର ପ୍ରଭାବ କିପରି ଜାଣନ୍ତି ? ନଦୀରେ ବଢ଼ି ପାଣି ପ୍ରବେଶପରି । ବଢ଼ିପାଣି ନଦୀର ଗର୍ଭ, କୂଳ ଓ ନଦୀର ନିଜ ଜଳକୁ ଆନ୍ଦୋଳିତ କରି ଉନ୍ମତ୍ତଭାବରେ ଧାବିତ ହେଉଥାଏ । ମୂଳସ୍ରୋତ ରହିତ ହେଲେ ବଢ଼ିର ଚିହ୍ନ ମାତ୍ର ସ୍ଥାନେ ସ୍ଥାନେ ସ୍ଥାପନ କରି ନବାଗତ ପାଣି ବହିଯାଏ ।" [୧୬] ଏଇ କଥାର ସତ୍ୟତା ପ୍ରମାଣ କରିବାକୁ ଫକୀରମୋହନ ନିଜ ଜୀବନ କାଳରେ ଫାର୍ସିଭାଷାର କିପରି ବଳୟ ଘଟିଥିଲା ତାହାର ଦୃଷ୍ଟାନ୍ତ ଦେଇଥିଲେ । ଆମ

ଦେଶରେ ଇଂରେଜୀ ଶିକ୍ଷାର ଉତ୍ସ ଯେ ଇଂରେଜ ଶାସନ ଥିଲା ତା ସେ ସ୍ପଷ୍ଟ ବୁଝିଥିଲେ । ହୁଏତ ପୂର୍ବଦୃଷ୍ଟି ବଳରେ ସେ ଜାଣିପାରିଥିଲେ, ଇଂରେଜ ଶାସନର ଅବନେନା ଅନେ ବିଳୟ ଘଟିବ । ସେତେବେଳେ ରାଜଭାଷା ରୂପେ ଇଂରେଜୀ ଭାଷାର ପ୍ରଭାବ ଖଣ୍ଡିତ ହେବ । ସ୍ୱଦେଶର ଭାଷା ଓ ସାହିତ୍ୟ ଯଥେଷ୍ଟ ବିକଶିତ ହୋଇନଥିଲେ, ତାହା ଜନସାଧାରଣଙ୍କ ଜ୍ଞାନପିପାସା ପୂରଣ କରି ପାରିବ ନାହିଁ । ସାଂସ୍କୃତିକ ଜୀବନର ଅଧୋଗତି ସଙ୍ଗେ ସଙ୍ଗେ ଜାତୀୟ ଜୀବନର ଅଧୋଗତି ଅବଶ୍ୟମ୍ଭାବୀ ହୋଇ ପଡ଼ିବ ।

ଜନସାଧାରଣଙ୍କ ଦେଶକାଳ ଚେତନା ଉପରେ ଜାତିର ଉନ୍ନତି ନିର୍ଭର କରେ । ଏହି ଚେତନାର ଅଭିବୃଦ୍ଧି ଘଟାଇବାର ପ୍ରଧାନ ସାଧନ ଜାତୀୟ ଭାଷା ବା ଜନସାଧାରଣଙ୍କ କଥିତ ଭାଷା । ଏହି ଭାଷାରେ ସାହିତ୍ୟର ବିଶେଷ ଉନ୍ନତି ସାଧିତ ନ ହେଲେ, ଜନସାଧାରଣଙ୍କ ମାନସିକ ବିକାଶ ଘଟିବା ସମ୍ଭବ ନୁହେଁ । ଏହା ବାସ୍ତବ ଅଭିଜ୍ଞତାରୁ ଫକୀରମୋହନ ଭଲ ବୁଝିଥିଲେ । ନିଜର ଏକ କବିତାରେ ପ୍ରକାଶ କରିଥିଲେ ଯେ ଆକାଶର ସୂର୍ଯ୍ୟ, ପ୍ରକୃତ ଦେହରେ ଜୀବନୀ ଓ ସର୍ଜନାଶକ୍ତି ସଞ୍ଚାର କଲା ଭଳି, ଜାତିର ମାନସରେ ଜାତୀୟ ଭାଷା ସର୍ଜନା ଶକ୍ତି ସଞ୍ଚାର କରେ । ଏହାହିଁ ଜାତୀୟ ଉନ୍ନତିର ମୂଳ ଉପାଦାନ ।[୨୭] ସାହିତ୍ୟ, ବିଶେଷରେ ସ୍ୱଦେଶ ଭାଷାରେ ସୃଷ୍ଟ ଜାତୀୟ ସାହିତ୍ୟର ପ୍ରଭାବ ଜାତି ଗଠନରେ କିପରି ଅନସ୍ୱୀକାର୍ଯ୍ୟ ତାହା ଫକୀରମୋହନଙ୍କ ନିମ୍ନ ବିଶ୍ଳେଷଣରେ ସ୍ପଷ୍ଟ ହୋଇଅଛି । 'କି ଧର୍ମାଲୋଚନା, କି ଜ୍ଞାନାର୍ଜନ, କି ବିଷୟ ଚର୍ଚ୍ଚାକ୍ଷେତ୍ର—ସମସ୍ତ ସମୟରେ ସହାୟ ହୁଏ, ଏଥି ନିକାଶେ ଏହାର ନାମ ସାହିତ୍ୟ । ସାହିତ୍ୟ ଜାତିର ଜୀବନ, ଜାତିର ବଳ, ଜାତିର ପଦମର୍ଯ୍ୟାଦା ରକ୍ଷାର ଏକମାତ୍ର ଅବଲମ୍ବନ । ଯେଉଁ ଦେଶର ସାହିତ୍ୟ ଉନ୍ନତ ନୁହେଁ, ସେ ଦେଶବାସୀଙ୍କର ଏହି ସମସ୍ତ ମାର୍ଗ ଅତି ସଙ୍କୀର୍ଣ୍ଣ । ନିଶ୍ଚୟ କଥା ଭାଷା ବା ଜାତୀୟ ସାହିତ୍ୟ ଜନ ସମାଜର ଉନ୍ନତି ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରେ । ଏକମାତ୍ର ସାହିତ୍ୟକୁ ସମ୍ମୁଖରେ ଧରି ଜନସାଧାରଣରେ ଆତ୍ମପ୍ରତିଷ୍ଠା ସ୍ଥାପନର ପ୍ରୟାସ, ଜାତୀୟ ଜୀବନ, ଜାତୀୟ ଉନ୍ନତିର ଅବସ୍ଥା ସ୍ଥିର କରି ଯାଇପାରେ । ଯେଉଁ ଜାତିର ଭାଷା ଅବନତ, ନିଶ୍ଚୟ ସେ ଜାତି ଜାଗ୍ରତ ହୋଇ ନାହାନ୍ତି ।....ନିଶ୍ଚୟ ସେ ଜାତିର ହୃଦୟ ବିଶେଷ ଜ୍ଞାନାଭାବରେ ଉତ୍ତେଜନା ପ୍ରାପ୍ତ ହୋଇ ନାହିଁ । ସେ ଜାତି ଆତ୍ମଗୌରବ ରକ୍ଷଣରେ ଅସମର୍ଥ । ସଭ୍ୟ ଜନସମାଜରେ ସେ ଜାତିର ସ୍ଥାନ ସର୍ବନିମ୍ନ । ସେ ଜାତିର ପଦମର୍ଯ୍ୟାଦା ନିତାନ୍ତ ପରିନତ । ସେ ଜାତି ସଭ୍ୟ ଜାତି ମଣ୍ଡଳରେ ଚିର ଉପହାସିତ ଏବଂ ଅବଜ୍ଞାତ ।' [୨୮]

### ଆର୍ଥିକ ଚେତନା

"ଓଳି ତଳେ ଲୁଣ କୋଟିଏ ମହଣ ଥାଉଁ ମୋହ କଥା ଶୁଣ
ବୋଇଲେ କି ହେବ ଖାଇବାକୁ ହେବ ଲିଭାରପୁଲରୁ ଲୁଣ ।" [୨୯]

ଜାତୀୟ ଜାଗରଣ ଭାବନା ସହିତ ଆର୍ଥିକ ଚେତନା କି ପରିମାଣରେ ଜଡ଼ିତ ଥିଲା, ଫକୀରମୋହନଙ୍କ ଏଇ ବ୍ୟଙ୍ଗୋକ୍ତିରୁ ବେଶ ବୁଝିହୁଏ । ସମାଜ ସଂସ୍କାର, ଜାତୀୟ ଜାଗରଣ ଭାଷା ଓ ସାହିତ୍ୟର ଉନ୍ନତି ଦିଗ ପରି ଆର୍ଥିକ ଉନ୍ନତି ଦୃଷ୍ଟିରୁ ଫକୀରମୋହନ ନିରତି ବାସ୍ତବବାଦୀ ଭାବରେ ଚିନ୍ତା କରିଅଛନ୍ତି । ଇଂରେଜ ଶାସନ ପୂର୍ବଯୁଗରେ ଭାରତରେ ଓଡ଼ିଶା ଏକ ବାଣିଜ୍ୟିକ ସମୃଦ୍ଧ ଅଞ୍ଚଳ ଥିଲା । ଏପରିକି କମ୍ପାନୀ ଅମଳରେ ବାଲେଶ୍ୱର ଏକ ସମୃଦ୍ଧ ନଗର ଥିଲା । ଏହାର ବନ୍ଦର ପୂର୍ବ ଭାରତରେ ବିଖ୍ୟାତ ଥିଲା । ଇଂରେଜ ଶାସନର ଅପକର୍ମ ଓ କେତେକ ପ୍ରାକୃତିକ କାରଣରୁ ଏହା ବନ୍ଦରରୂପେ ପରିତ୍ୟକ୍ତ ହୋଇ ଶ୍ମଶାନରେ ପରିଣତ ହେଲା । ଏଇ ଧ୍ୱଂସଲୀଳାର ଶେଷ ପର୍ବ ଫକୀରମୋହନ ନିଜ ଆଖିରେ ଦେଖିବାକୁ ବାଞ୍ଛିଥିଲେ । ଏହା ତାଙ୍କ ପ୍ରାଣକୁ ଖୁବ୍ ବାଧିଥିଲା । ନିଜ ହୃଦୟର ବେଦନା କବିତା ଭଳି ପ୍ରବନ୍ଧରେ ମଧ୍ୟ ପ୍ରାଣସ୍ପର୍ଶୀ ଭାଷାରେ ପ୍ରକାଶ କରି ଯାଇଛନ୍ତି । "ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି" ପ୍ରବନ୍ଧରେ ବାଲେଶ୍ୱରର ଗୌରବ ଓ ଅଧଃପତନର ଚିତ୍ର ବର୍ଣ୍ଣନା କରି ଲେଖିଥିଲେ, "ବାଲେଶ୍ୱର ନୌବାଣିଜ୍ୟ ବିଷୟରେ ବିଶେଷ ଉପଯୋଗୀ ସ୍ଥାନ ଏବଂ ଚିରକାଳ ପଣ୍ୟଦ୍ରବ୍ୟ ମଧ୍ୟ ବିଶେଷ ସୁଲଭ । ଏସ୍ଥାନର ପଣ୍ୟଦ୍ରବ୍ୟ ମଧ୍ୟରେ ବସ୍ତ୍ର, ଗୁଡ଼ଲ, ଲୁହା, ଲବଣ, ବନଜଦ୍ରବ୍ୟ ଚିର ପ୍ରସିଦ୍ଧ ! ଦୁଃଖର ବିଷୟ ତଣ୍ଡୁଳ ଓ ବନଜଦ୍ରବ୍ୟ ଭିନ୍ନ ଅନ୍ୟ ସମସ୍ତ ପ୍ରକାର ବାଣିଜ୍ୟ ବିଲୁପ୍ତ ହୋଇଅଛି । ଏକ ସମୟରେ ଇଉରୋପୀୟ ଅପ୍‌ସରୀମାନେ ଆପଣା ଆପଣା ସୌନ୍ଦର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନାର୍ଥେ ସୂକ୍ଷ୍ମ ବସ୍ତ୍ର ସକାଶେ ବାଲେଶ୍ୱରକୁ ଗୃହିଁ ବସୁଥିଲେ । ବର୍ତ୍ତମାନ ଏହା ଶୁଣିବାର କଥା ଅଟେ । ବାଲେଶ୍ୱର ଟାଉନର ପୂର୍ବପ୍ରାନ୍ତବର୍ତ୍ତୀ ପୁରୁଣା ବାଲେଶ୍ୱର ଗ୍ରାମରେ ଅନେକ ଗୁଡ଼ିଏ ଲୁହାର କାରଖାନା ଥିଲା । କର୍ମକାରମାନେ କୌଣସି ଯନ୍ତ୍ର ସାହାଯ୍ୟବିନା ସହଜ ଉପାୟରେ କି ପ୍ରକାର ୩୦/୪୦ ମହଣ ଭରି ବିଶିଷ୍ଟ ନଙ୍ଗର ଢାଳିବାକୁ ସମର୍ଥ ହେଉଥିଲେ, ଆମ୍ଭେମାନେ ବର୍ତ୍ତମାନ କଳ୍ପନା କରିବାକୁ ଅକ୍ଷମ । ପୁରୁଣା ବାଲେଶ୍ୱରର ଲୌହ କାରଖାନା ଗୁଡ଼ିକ ଯେ କେବଳ ଦେଶୀୟ ବୋଇତର ଉପକରଣ ପ୍ରସ୍ତୁତ କରିବାରେ ନିଯୁକ୍ତ ଥିଲେ ତାହା ନୁହେଁ ; ବିଲାତ ବୋଇତ ମଧ୍ୟ ସେମାନଙ୍କଠାରୁ ସଉଦା କରୁଥିଲେ । ସେ ଦିନ ଯାଇଛି । ବାଲେଶ୍ୱରବାସୀ ଗୋଟିଏ ପେଂଚକଣ୍ଟା ସକାଶେ ବିଲାତକୁ ଗୃହିଁ ବସୁଛନ୍ତି ।... ଭଗବାନ ବାଲେଶ୍ୱରର ଓଳତଳେ କୋଟି କୋଟି ମହଣ ଲବଣ ଢାଳି ଦେଇଅଛନ୍ତି । ଥାଉ, ଭଗବାନଙ୍କର ସେହି ଭଣ୍ଡାର ଅକ୍ଷୁଣ୍ଣ ଅବସ୍ଥାରେ ଥାଉ ।" ୩୦

ପଲ୍ଲୀକୃଷକର ଦାରିଦ୍ର୍ୟ ଅଶିକ୍ଷା, ଜମିଦାରଙ୍କ ଶୋଷଣ, ଶିଳ୍ପ ଓ କୃଷିର ଅବନତି ହେତୁ ଗ୍ରାମ ଜୀବନରେ ଦେଖା ଦେଇଥିବା ଭଗ୍ନଦଶାର ଚିତ୍ର ଫକୀରମୋହନଙ୍କ 'ଉତ୍କଳଭୂମି' 'ଉତ୍କଳ କୃଷକ' ଆଦି କବିତାରେ ପ୍ରକାଶିତ ହୋଇଅଛି । ଏହି ଅବସ୍ଥାର ପରିବର୍ତ୍ତନ ପାଇଁ ନବ ଉଦ୍ୟମରେ ମାତି ଉଠିବାକୁ ଦେଶପ୍ରେମୀ ଶିକ୍ଷିତ ସମାଜକୁ ସେ ଆହ୍ୱାନ କରିଛନ୍ତି ।

ଜାତୀୟ ସ୍ୱାଧୀନତା ସଂଗ୍ରାମର ବଶିଷ୍ଟ ଅଙ୍ଗ ସ୍ୱଦେଶୀ ଆନ୍ଦୋଳନର ସ୍ପଷ୍ଟ ସୂଚନା ଫକୀର-ମୋହନଙ୍କର ଅନେକ କବିତାରୁ ମିଳେ । ଦେଶବାସୀଙ୍କ ମନରେ ଦେଶୀୟ ଶିଳ୍ପ ପ୍ରତି ଆଗ୍ରହ ସୃଷ୍ଟି କରିବା ପାଇଁ ନିମ୍ନ ପ୍ରକାରେ ସେ ନାନା ସ୍ଥାନରେ ଉଦ୍‌ବୋଧନ ଦେଇଅଛନ୍ତି ।

"ମାଂଚେଷ୍ଟର ତନ୍ତ ଲୁଗା ବୁଣୁଛନ୍ତି ତୁମ୍ଭମାନଙ୍କ ସକାଶେ ।
ବୃଦ୍ଧ ତନ୍ତି ବଂଶ ହେଉ ସର୍ବନାଶ ଯାଆନ୍ତୁ ସେ ବନବାସେ ।
+ + +
ସ୍ୱଦେଶର ଶିଳ୍ପ ସବୁ ଅଳ୍ପ ଦେଖୁଛ ଯାଇଛି ବୁଡ଼ି,
ଦେଖୁନାହିଁ ଭୁଲି, ସବୁଚ ଫଖାଳ ଶୋଇଛି ମାଠିକୁ ଘୋଡ଼ି ।" ୩୧

## ରାଜନୈତିକ ଆଦର୍ଶ

ଗତ ଶହେ ବର୍ଷ ମଧ୍ୟରେ ଆମ ଦେଶର ରାଜନୈତିକ ଚିନ୍ତା ଯେପରି ଦ୍ରୁତ ପରିବର୍ତ୍ତନ ଓ ଉତ୍ତପ୍ତ ଆଲୋଡ଼ନ ଭିତରେ ଗତି କରିଛି, ପୃଥିବୀର ସାମ୍ପ୍ରତିକ ଇତିହାସରେ ତା'ର ତୁଳନା ଖୁବ୍ ଅଳ୍ପ ମିଳିବ । ଊନବିଂଶ ଶତକର ମଧ୍ୟଭାଗରେ ସାରା ଭାରତ ଇଂରେଜ ଶାସନ ଓ ଶକ୍ତି ବିରୋଧରେ ବିଦ୍ରୋହ କରିଥିଲା । ମାତ୍ର ଅଳ୍ପ କେତେ ବର୍ଷ ବ୍ୟବଧାନରେ ଊନବିଂଶ ଶତକର ଶେଷଭାଗରେ ଆମ ଦେଶର ଚିନ୍ତାନାୟକମାନେ ଇଂରେଜୀ ଶାସନକୁ ଶତ ମୁଖରେ ପ୍ରଶଂସା କରୁଥିଲେ । ପୁଣି, ବିଂଶ ଶତକର ଆଦ୍ୟପାଦରେ ଇଂରେଜ ଶାସନର ସ୍ତୁତିକାରୀଙ୍କ ଅପେକ୍ଷା ନିନ୍ଦା କରୁଥିବା ଲୋକଙ୍କ ସଂଖ୍ୟା ବଢ଼ିବାକୁ ଲାଗିଥିଲା । ଭାରତ ବର୍ଷର ଏହି ରାଜନୈତିକ ଆଦର୍ଶର କ୍ରମପରିଣାମ ଭିତରେ ଏକ ଆତ୍ମଦୈନ୍ୟ ପୀଡ଼ିତ ଜାତିର ଆତ୍ମ ସମ୍ମାନ ବୋଧର କ୍ରମବିକାଶ ସ୍ପଷ୍ଟ ଦେଖିବାକୁ ମିଳେ ।

ଇଂରେଜ ସଭ୍ୟତା ଓ ଶାସନ ସମ୍ମୁଖରେ ନ୍ୟୂନଭାବ ନାନା କାରଣରୁ ପ୍ରକାଶ ପାଇଥିଲା । ଆଧୁନିକ ଯୁଗର ପାଶ୍ଚାତ୍ୟ ବିଜ୍ଞାନ ଓ ମାନବିକ ଇତିହାସ ତୁଳନାରେ ଭାରତର ଅଦୂର ଇତିହାସ ଅତି ଅନ୍ଧକାରମୟ ଥିବାରୁ ଯୁଗର ଚିନ୍ତାନାୟକମାନେ ଅନ୍ତରର ସହିତ ଇଂରେଜ ଶାସନକୁ ସ୍ୱାଗତ କରିଥିଲେ । ସେମାନେ ଏକସ୍ୱରରେ କହୁଥିଲେ, "ଯଦି ଆମକୁ ପ୍ରଶ୍ନ ହୁଏ, ଆମେ କେଉଁ ଶାସନକୁ ପସନ୍ଦ କରୁଛୁଁ, ଇଂରେଜ ଶାସନ ନା ଆଉ କେଉଁ ଶାସନ ? ଆମେ ସମସ୍ତେ ଏକ ସ୍ୱରରେ ଉତ୍ତର ଦେବୁଁ, ସର୍ବତୋଭାବେ ଆମେ ଇଂରେଜ ଶାସନ ଚାହୁଁ । ଏପରି କି ହିନ୍ଦୁ ଶାସନ ଅପେକ୍ଷା ଏହା ଆମର ଅଧିକ କାମ୍ୟ ।" ୩୨ ଊନବିଂଶତକର ଶ୍ରେଷ୍ଠ ପୁରୁଷ ରାଜା ରାମମୋହନ ରାୟ ମଧ୍ୟ ଏଇପରି ଭାବୁଥିଲେ । ଭାରତର ରାଜନୈତିକ ପରାଧୀନତା ବିଷୟରେ ତାଙ୍କ ସହିତ ଦୀର୍ଘ ଆଲୋଚନା କରି ଫରାସୀ ଭ୍ରମଣକାରୀ ଭିକ୍‌ଟର ଜ୍ୟାକ୍‌ମୋଁ ଲେଖିଥିଲେ, "ବିଜିତମାନଙ୍କଠାରୁ ବିଜେତାମାନେ ଯଦି ଅଧିକ ଉନ୍ନତ ଓ ସଭ୍ୟ ହୋଇଥାନ୍ତି, ତେବେ ଏ ବିଜୟ କ୍ୱଚିତ୍ କୁଫଳଦାୟକ

ହୋଇଥାଏ । କାରଣ ବିଜେତାମାନେ ସଭ୍ୟତାର ଦାନରେ ପରାଜିତ ଜାତିକୁ ସମୃଦ୍ଧ କରିଥାନ୍ତି । ନିଜର ରାଜନୈତିକ ସ୍ୱାଧୀନତା ଲାଭ କରିବାକୁ କ୍ଷମ ହେବା ପୂର୍ବରୁ ଭାରତ ଅନେକ ବର୍ଷ ବ୍ରିଟିଶ ଶାସନ ଆବଶ୍ୟକ କରେ । ଏଥିରେ ତାର କିଛି କ୍ଷତି ହେବନାହିଁ ।" ୩୩

ଊନବିଂଶ ଶତକର ଶେଷଭାଗ ପର୍ଯ୍ୟନ୍ତ ଜାତୀୟ ଜାଗରଣକାମୀ ନେତାମାନେ ବ୍ରିଟିଶ ଶାସନର ଭଲ ଦିଗକୁହିଁ ଦେଖୁଥିଲେ । ୧୮୭୦ ଖ୍ରୀଷ୍ଟାବ୍ଦରେ ଲଣ୍ଡନରେ ଏକ ବକ୍ତୃତା ପ୍ରସଙ୍ଗରେ ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ କହିଥିଲେ, "ବିଧି ନିର୍ଦ୍ଦେଶରେ ଇଂଲଣ୍ଡ ଆସି ଭାରତ ଦ୍ୱାରରେ ପହଞ୍ଚିଲା, ଆଉ କହିଲା—ଭଉଣୀଟି ମୋ'ର ଉଠ । ତୁ ବହୁବେଳ ହେଲା ଶୋଇଲଣି ।" ୩୪ ଜାତୀୟ କଂଗ୍ରେସ ମଧ୍ୟ ଏଇ ଯୁଗରେ ଇଂରେଜ ଶାସନର ବିରୋଧୀ ନ ଥିଲା । କଂଗ୍ରେସର ସଭା ମଣ୍ଡପରୁ ସଭାପତି ଇଂରେଜ ଶାସନର ସୁଫଳ ବିଷୟରେ ଉଚ୍ଛ୍ୱସିତ ପ୍ରଶଂସା କରି, ଆମେ ଷୋହଳ ଅଣା ରାଜଭକ୍ତ ବୋଲି ଘୋଷଣା କଲେ ସଭା ପ୍ରାଙ୍ଗଣ ଆନନ୍ଦ ଧ୍ୱନିରେ ପୂରି ଉଠୁଥିଲା । କଂଗ୍ରେସର ଅନ୍ୟତମ ପ୍ରତିଷ୍ଠାତା ଓ ବୃଦ୍ଧ ନେତା ଦାଦାଭାଇ ନାରୋଜି ଲଣ୍ଡନର ଭାରତ ସମାଜ ସଭାରେ ୧୮୬୭ ଖ୍ରୀଷ୍ଟାବ୍ଦରେ ଭାରତ ଓ ବିଲାତର ସମ୍ପର୍କ ବିଶ୍ଳେଷଣ କରିବାକୁ ଯାଇ ଯାହା କହିଥିଲେ, ସେଥିରୁ ଇଂରେଜ ଶାସନ ପ୍ରତି ଆକର୍ଷଣର ହେତୁ ଅତି ସ୍ପଷ୍ଟଭାବରେ ଜଣାଯାଏ । ସେ କହିଥିଲେ—"ଭାରତରେ ଇଂରେଜ ଶାସନ ଦୃଢ଼ହେବା ପୂର୍ବରୁ ସ୍ୱାଭାବିକ ଭାବରେ ପ୍ରାଚ୍ୟ ଏକଚ୍ଛତ୍ରବାଦୀ ଶାସନ ଚାଲିଥିଲା । ବିଶୃଙ୍ଖଳତା, ଅନିୟମିତତା, ଧନ ଓ ଜୀବନ ପ୍ରତି ଅନିଶ୍ଚୟତା ତଥା ସାଧାରଣ ଅଜ୍ଞତା ଏହାର ଚିର ସହଚର ଥିଲା । ପୁଣି ନୈତିକତା ଦିଗରୁ ଦେଖିଲେ, ଭାରତର ଭାଗ୍ୟ ଅନ୍ଧକାରମୟ ଥିଲା । ବହୁ ଶତାବ୍ଦୀ ଧରି, ଅନ୍ଧ ପୌରହିତ୍ୟ, ଅନ୍ଧବିଶ୍ୱାସ, ସତୀଦାହ ପ୍ରଥା, ବାଳିକା ଶିଶୁହତ୍ୟା ଆଦି ନାନା କୁସଂସ୍କାର କବଳରେ ଲୋକେ ସଢ଼ୁଥିଲେ । ଆର୍ଥିକ ଦିଗରୁ ଦେଶରେ ଅଚଳ ଅବସ୍ଥା ବିରାଜୁଥିଲା ।...ମାତ୍ର ବ୍ରିଟିଶ ଶାସନରେ ଆଇନ ଶୃଙ୍ଖଳାର ରାଜୁତି ଚାଲିଥିଲା । ଧନ ଜୀବନର ନିରାପତ୍ତାରେ ଜନସାଧାରଣଙ୍କ ଅଧିକାର ଦୃଢ଼ ହୋଇଥିଲା । ଲୋକେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ନ୍ୟାୟର ସମ୍ପର୍କ ବୁଝିଥିଲେ । ଏକଛତ୍ର ଶାସକର ମରଜିରେ ଦେଶର ଶାସନ ନଚାଲି, ଆଇନର ଶାସନ ଚାଲିଥିଲା । ବିଶ୍ୱବିଦ୍ୟାଳୟ ସ୍ଥାପନ, ଆଧୁନିକ ଶିକ୍ଷାର ପ୍ରସାର ଫଳରେ କୁସଂସ୍କାର, ଅନ୍ଧବିଶ୍ୱାସ ଓ ଅହେତୁକ ବିଧି ବ୍ୟବସ୍ଥା ବିରୋଧରେ ଜନମତ ଗଠିତ ହୋଇଥିଲା ।" ୩୬

ବ୍ରିଟିଶ ଶାସନ ପ୍ରତି ଏଇ ଯେଉଁ ମନୋବୃତ୍ତି ଦେଶର ସଂସ୍କୃତିପ୍ରେମୀ ଚିନ୍ତାନାୟକ ଓ ରାଜନୈତିକ ନେତାମାନେ ଦେଖାଉଥିଲେ, ତାହାହିଁ ସମକାଳୀନ କବିମାନଙ୍କଠାରେ ଦେଖିବାକୁ ମିଳେ । ରାଧାନାଥଙ୍କ 'ଭାରତେଶ୍ୱରୀ; 'ମହାରାଣୀ ଭିକ୍ଟୋରିଆ' କିମ୍ବା ରାଣୀ ଭିକ୍ଟୋରିୟାଙ୍କ ବିୟୋଗରେ ରଚିତ ମଧୁସୂଦନଙ୍କ 'ମହାଦେବୀ ଭିକ୍ଟୋରିୟା' ଆଦି କବିତା

ଏହାର ନିଦର୍ଶନ । ଏହି ସମୟରେ ଇଂଲଣ୍ଡ ସମୃଦ୍ଧିର ଚରମ ସୀମାରେ ପହଞ୍ଚିଥିଲା । କେବଳ ବୈଷୟିକ ଦିଗରୁ ନୁହେଁ, ନୈତିକ ଓ ବୌଦ୍ଧିକ ଦିଗରୁ ଫରାସୀବିପ୍ଳବ ପରେ ଏହା ପୃଥିବୀରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଏକ ଦିଗରେ ବିଜ୍ଞାନର ବିଜୟ, ବୈଜ୍ଞାନିକ ତଥ୍ୟାନୁଶୀଳନରେ ଆଗ୍ରହ ଓ ବାସ୍ତବ ଦୃଷ୍ଟି ; ଅନ୍ୟ ଦିଗରେ ଉଦାର ନୈତିକ ଆଦର୍ଶବାଦ—ପୃଥିବୀର ସକଳ ଦେଶର ସକଳ ଶ୍ରେଣୀର ଅଗ୍ରଗାମୀ ଚିନ୍ତାନାୟକଙ୍କଠାରେ ଏକାନ୍ତ ଆଦରର ବିଷୟ ଥିଲା । ଏଇ ଆଦର୍ଶର ଧାତ୍ରୀ ଭିକ୍‌ଟୋରିୟା ଯୁଗର ବ୍ରିଟେନ ପ୍ରତି ସମସ୍ତେ ଉନ୍ମୁଖ ଥିଲେ । ଇଂରେଜ ଜାତୀୟ ଚରିତ୍ରର ବଳିଷ୍ଠତା, ନ୍ୟାୟ ପରାୟଣତା, ଶାନ୍ତି ଓ ସହିତ ଆଦର ପ୍ରଚୁର ପ୍ରଶଂସା ଏଯୁଗର ଓଡ଼ିଆ କବିତାରେ ଦେଖିବାକୁ ମିଳେ । ରାଧାନାଥ ମୁଗ୍‌ଧ କବି ଦୃଷ୍ଟିରେ ଇଂରେଜକୁ ଏଇ ଭାବରେ ଦେଖିଛନ୍ତି—

"ନିରପେକ୍ଷ ଯେହ୍ନେ ଶମନ ସମାନ
ରୋଷେ ବୈଶ୍ୱାନର ପ୍ରାଏ ସର୍ବନାଶୀ
ନ୍ୟାୟେ ବୃହସ୍ପତି, ପାଳନେ ଶ୍ରୀପତି
ଦୟାର ଆଧାର ଶ୍ୱେତଦ୍ୱୀପ ବାସୀ ।"୩୭

ବିଜ୍ଞାନ ବଳରେ ପ୍ରକୃତି ଉପରେ ବିଜୟ ପ୍ରସଙ୍ଗରେ—

"ମେରୁ ମହାର୍ଣ୍ଣବ- ତୁଷାର ଉରସେ
ନିରକ୍ଷ ମଣ୍ଡଳ- ଆଗ୍ନେୟ ଉତ୍ସଙ୍ଗେ
ସାଗର ବକ୍ଷରେ, ଭୂଧର କନ୍ଦରେ
ସର୍ବତ୍ର ଶ୍ୱେତାଙ୍ଗ ବିହରନ୍ତି ରଙ୍ଗେ
ରତ ଅବିରତ ବିଜ୍ଞାନ ପ୍ରସଙ୍ଗେ ।" ୩୮

ସ୍ୱାଧୀନତାକାମୀ ଇଂରେଜମାନଙ୍କ ଶାସନରୁ କବି ଭାରତର ଅଖଣ୍ଡ ସୌଭାଗ୍ୟ ଆଶା କରି କହିଛନ୍ତି—

"ସ୍ୱାଧୀନତା ଦେବୀ ପ୍ରିୟ ନିକେତନ
ଅଟେ ଯେ ବ୍ରିଟେନ ସେ ଦ୍ୱୀପ ଈଶ୍ୱରୀ
ପୂର୍ବ ଭାଗ୍ୟବଳେ ପୂର୍ବ ତପୋବଳେ
ଆର୍ଯ୍ୟଙ୍କର ଆଜି ରାଜ ରାଜେଶ୍ୱରୀ
ମଣି କାଞ୍ଚନର ସଯୋଗ ଏପରି ।"୩୯

ଓଡ଼ିଆମାନଙ୍କର ଦାରିଦ୍ର୍ୟ ଓ ରାଜଭକ୍ତି ବର୍ଣ୍ଣନା କରି ୧୮୯୮ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ଦରବାରରେ ଯୋଗ ଦେଉଥିବା ରାଜପ୍ରତିନିଧିଙ୍କ ଉଦ୍ଦେଶ୍ୟରେ ଶ୍ରୀ ଗୋବିନ୍ଦ ରଥ ଲେଖିଥିଲେ—

ଭାରତେଶ୍ୱରୀଙ୍କୁ କହିବ ଆପଣ
ବଡ ନିସ୍ୱହନ୍ତି ଉତ୍କଳୀୟଗଣ
କରନ୍ତି ସର୍ବଦା ଶାକାନ୍ନ ଭୋଜନ
ତେଣୁ ରାଜଭକ୍ତି ସ୍ୱଭାବୋଚିତ ।

ପ୍ରକୃତରେ ଏ ଯୁଗରେ କବିମାନେ ଭାରତରେ ଇଂରେଜ ଶାସନ ପ୍ରତିଷ୍ଠାଦ୍ୱାରା ଏକ ନବ ଯୁଗର ଆବିର୍ଭାବ, ନୂତନ ସଭ୍ୟତା ସୂର୍ଯ୍ୟର ଉଦୟ କଳ୍ପନା କରିଥିଲେ । ଏକାଧାରରେ ଇଂରେଜ ଶାସନ ବୈଜ୍ଞାନିକ ଜ୍ଞାନ ଚର୍ଚ୍ଚାରେ ଜାତୀୟ ମାନସକୁ ସମୃଦ୍ଧ କରିବ ; ଇଂରେଜ ପରମ୍ପରା ପ୍ରଭାବିତ ଲୋକଶାସନ ଜାତୀୟ ଜୀବନରେ ନୂତନ ଶକ୍ତି ସଞ୍ଚାର କରିବ—ଏହି ବିଶ୍ୱାସ ଅନେକଙ୍କୁ ଆଶା ଓ ଆନନ୍ଦରେ ବିଭୋର କରିଥିଲା । ସେମାନେ ସହସ୍ର ମୁଖରେ ଇଂରେଜର ପ୍ରଶଂସା କରିଥିଲେ । ରବୀନ୍ଦ୍ରନାଥ ଅଶୀବର୍ଷ ବୟସରେ ନିଜ ତରୁଣ ଦିନର ସ୍ମୃତି ଆଲୋଡନ କରି ଏହିଯୁଗର ଇଂରେଜ ଶାସନ ପ୍ରତି ନବ ଜାଗ୍ରତ ଭାରତବର୍ଷର ମାନସିକ ଭାବାବେଗ ନିମ୍ନ ପ୍ରକାରେ ବର୍ଣ୍ଣନା କରିଥିଲେ "ଆମେ ସ୍ୱଜାତିର ସ୍ୱାଧୀନତା ସାଧନା ଆରମ୍ଭ କରିଥିଲୁ, କିନ୍ତୁ ପ୍ରତି ହୃଦୟରେ ଥିଲା ଇଂରେଜ ଜାତିର ଉଦାରତା ପ୍ରତି ବିଶ୍ୱାସ । ସେ ବିଶ୍ୱାସ ଏତେ ଗଭୀର ଥିଲା ଯେ ଏକଦା ଆମର ସାଧକମାନେ ସ୍ଥିର କରିଥିଲେ, ଏହି ବିଜୀତ ଜାତିର ସ୍ୱାଧୀନତାର ପଥ ବିଜୟୀ ଜାତିର ସୁଦୟାରେହିଁ ପ୍ରଶସ୍ତତର ହେବ । କାରଣ ଏକଦା ଅତ୍ୟାଚାର ପ୍ରପୀଡ଼ିତ ଜାତିର ଆଶ୍ରୟସ୍ଥଳ ଥିଲା ଇଂଲଣ୍ଡରେ । ଯେଉଁମାନେ ନିଜ ଜାତିର ସମ୍ମାନ ରକ୍ଷା ଲାଗି ପ୍ରାଣପଣ କରି ଲଢୁଥିଲେ, ସେମାନଙ୍କର ଅକୁଣ୍ଠିତ ଆସନ ଥିଲା ଇଂଲଣ୍ଡରେ । ମାନବ ମୈତ୍ରୀର ବିଶୁଦ୍ଧ ପରିଚୟ ଇଂରେଜଙ୍କ ଚରିତ୍ରରେ ଦେଖିଥିଲୁ । ସେଇଥିଲାଗି ଆନ୍ତରିକ ଶ୍ରଦ୍ଧା ଦେଇ ଇଂରେଜଙ୍କୁ ହୃଦୟର ଉଚ୍ଚ ଆସନରେ ବସେଇଥିଲୁ । ସେତେବେଳେ ସାମ୍ରାଜ୍ୟ ମଦମତ୍ତତାରେ ସେମାନଙ୍କ ସ୍ୱଭାବର ଦାକ୍ଷିଣ୍ୟ କଳୁଷିତ ହୋଇ ନ ଥିଲା ।" ୪୦

## ଜାପାନର ଅଭ୍ୟୁଦୟ ଭାରତରେ ଜାଗରଣ

ଊନବିଂଶ ଶତକର ଶେଷଭାଗକୁ ଜାପାନ ଆଧୁନିକ ଶିଳ୍ପ ବାଣିଜ୍ୟ ଦିଗରେ ପ୍ରତିଷ୍ଠା ଲାଭକଲା । ଜାପାନ ସ୍ୱାଧୀନ ଥିଲେ ବି ଏସିଆର ଅନ୍ୟଦେଶ ଭଳି ଅନୁନ୍ନତ ଥିଲା । ମାତ୍ର ଆତ୍ମ ପ୍ରଚେଷ୍ଟାରେ ନବସଂସ୍କାର ଓ ଆଧୁନିକ ବୈଜ୍ଞାନିକ ଜ୍ଞାନର ପ୍ରୟୋଗ ଫଳରେ ଏହାର ଉନ୍ନତି ସମ୍ଭବ ହୋଇଥିଲା । ଜାପାନର ଅଭ୍ୟୁତ୍ଥାନ ସମଗ୍ର ଏସିଆବାସୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଆଧୁନିକ ଯନ୍ତ୍ରଶକ୍ତି ଓ ବୈଜ୍ଞାନିକ ଜ୍ଞାନର ଯଥାଯଥ ପ୍ରୟୋଗ ହେଲେ ଯେକୌଣସି ଜାତି ପଶ୍ଚିମ ଇଉରୋପର ଦେଶଗୁଡ଼ିକ ଭଳି ସମୃଦ୍ଧ ଓ ସଭ୍ୟ ହୋଇ ପାରିବ— ଏ ବିଶ୍ୱାସ ଜାଗ୍ରତ ହେବାକୁ ଲାଗିଲା । ୧୯୦୪-୫ରେ ରୁଷ ଜାପାନ ଯୁଦ୍ଧରେ ଜାପାନ

ନିଜଶକ୍ତିର ପରୀକ୍ଷା ଦେଲା । ଜାପାନର ଏହି ବିଜୟ ସମଗ୍ର ଏସିଆରେ ତଥା ଆମଦେଶରେ ଜାତୀୟ ପ୍ରଗତିରେ ନୂତନ ଆତ୍ମବିଶ୍ୱାସ ଆଣିଦେଲା । ଏହି ଘଟଣାକୁ ଲକ୍ଷ୍ୟକରି ନିଜ ବିଶ୍ୱ ଇତିହାସ ଗ୍ରନ୍ଥରେ ଶ୍ରୀ ଜବାହରଲାଲ ନେହରୁ ଯଥାର୍ଥରେ ଲେଖିଛନ୍ତି, "ଯେଉଁ ଏକ ଘଟଣାରେ ଏସିଆରେ ଶୃଙ୍ଖଳା ଦେଖାଦେଲା—ଏହା ହେଉଛି ୧୯୦୪-୫ରେ ପ୍ରକାଣ୍ଡ ରୁଷଦେଶ ଉପରେ ଛୋଟ ଜାପାନର ବିଜୟ । ଅନ୍ୟ ଏସିଆ ଦେଶମାନଙ୍କ ଭଳି ଭାରତର ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଏଥିରେ ଖୁବ୍ ପ୍ରଭାବାନ୍ୱିତ ହେଲେ, ଏବଂ ସେମାନଙ୍କଠାରେ ଆତ୍ମବିଶ୍ୱାସ ଜନ୍ମିଲା । ଜାପାନ ଯଦି ଏକ ଶକ୍ତିଶାଳୀ ଇଉରୋପୀୟ ଶକ୍ତି ବିରୋଧରେ ଲଢ଼ି ବିଜୟୀ ହୋଇପାରେ ଭାରତ କାହିଁକି ବା ନ ହେବ ? ଜାପାନର ଏହି ବିଜୟ ଏସିଆକୁ ଜାଗ୍ରତ କଲା । ଭାରତରେ ଆମ ଭିତରୁ ଅଧିକାଂଶଙ୍କ ମନରେ ଯେଉଁ ଏକ ଗୌଣଭାବ ଥିଲା ତାହା କମିଗଲା । ଜାତୀୟତାବାଦୀ ଭାବନା ଅଧିକ ବ୍ୟାପକ ଭାବରେ ପ୍ରସାର ଲାଭକଲା ।" ୪୧

ଜାପାନର ଏଇ ସଫଳତାରୁ ଉଦ୍ଭୂତ ଭାରତୀୟ ଜାତୀୟ ଜାଗରଣରେ ନବ ଚେତନା ଫକୀରମୋହନଙ୍କ ଭଳି ଦେଶପ୍ରେମୀଙ୍କ ଚିତ୍ତକୁ ଗଭୀରଭାବରେ ସ୍ପର୍ଶ କରିବା ସ୍ୱାଭାବିକ । ରୁଷ ଜାପାନ ଯୁଦ୍ଧବେଳେ ରଚିତ ଏକ କବିତାରେ ଫକୀରମୋହନ ଯୁଦ୍ଧ ପାଇଁ ରୁଷକୁ ଦୋଷୀ କରିଛନ୍ତି । ପୁଣି ଆଉ ଏକ କବିତାରେ ବିଜୟୀ ଜାପାନକୁ 'ପୂର୍ବ ଅଞ୍ଚଳର ଇଂଲଣ୍ଡ' ବୋଲି ବନ୍ଦନା କରିଛନ୍ତି । ଜାପାନବାସୀଙ୍କର ଶକ୍ତି, ସାହସ, ଦେଶାନୁରାଗ ଓ ଜାତୀୟତା ବୋଧକୁ ଶତ ମୁଖରେ ପ୍ରଶଂସା କରିଚନ୍ତି । ଦେଶର ବୃହତ୍ତର ସ୍ୱାର୍ଥଲାଗି କ୍ଷୁଦ୍ର ସ୍ୱାର୍ଥକୁ ଜଳାଞ୍ଜଳି ଦେବା, ଚରମ ଆତ୍ମତ୍ୟାଗର ଆଦର୍ଶ ଦେଖାଇବାରେ ଜାପାନର ନରନାରୀ କବିଙ୍କ ଦୃଷ୍ଟିରେ ଅନନ୍ୟସାଧାରଣ । ଏମାନଙ୍କ ଭିତରେ କବି ସ୍ପାର୍ଟାର ଜୀବନ ଓ ପ୍ରାଚୀନ ଭାରତର କ୍ଷତ୍ରିୟ ବୀରଙ୍କ ଆଦର୍ଶ ମୂର୍ତ୍ତିମନ୍ତ ହୋଇଥିବାର ଦେଖିଛନ୍ତି । ଭାରତର ଗୁରୁ ରୂପେ ଦେଶପ୍ରେମ ଶିକ୍ଷା ଦେବାକୁ ଜାପାନଠାରେ ପ୍ରାର୍ଥନା କରିଛନ୍ତି--

"ହେ ଜାପାନ ! ଦେଶପ୍ରେମ ଦିଅ ଶିକ୍ଷା ଦାନ
ନଭୁଲ ଭାରତବର୍ଷ ବୁଦ୍ଧ ଜନ୍ମସ୍ଥାନ ।"

ପୁଣି ଜ୍ଞାନ ଓ ସାହାସ ବଳରେ କିପରି ଅସାଧ୍ୟ ସାଧନ କରା ଯାଇପାରେ, ସେ ଦିଗରେ ଜାପାନର ଆଦର୍ଶ ଅନୁକରଣ କରିବା ଲାଗି ସୁପ୍ତ, ଚେତନାହୀନ ଉତ୍କଳର ଯୁବଶକ୍ତିକୁ ଆହ୍ୱାନ କରିଛନ୍ତି ।

"ହେ ଉତ୍କଳ ଭେଣ୍ଡା ନୁହଁତ ହେ ମେଣ୍ଢା ହୋଇ ଶାର୍ଦ୍ଦୁଳ ସନ୍ତାନ
ଅଧମ ବେଭାର ଅନ୍ୟ ଜାତିଠାରେ ହେଉଅଛ ହୀନମାନ ।
ହେବା ହୀନମାନ ମରଣ ସମାନ ଜ୍ଞାନ କି ନକର ଭାଇ
ଜ୍ଞାନ ସାହସରେ କି ହୋଇ ନ ପାରେ ଜାପାନକୁ ଦେଖ ଯାଇ ।" ୪୨

## ଅଭ୍ୟୁତ୍ଥାନବାଦୀଙ୍କ ଦୃଷ୍ଟିକୋଣ

(ଫକୀରମୋହନ, ରାଧାନାଥ, ମଧୁସୂଦନଙ୍କ କାବ୍ୟ ଜଗତରେ ଆମେ ଯେଉଁ ଜାତୀୟ ଜାଗରଣ ଚେତନା ଦେଖୁଁ—ତାହା ସମକାଳୀନ ଶାସନ ବା ପାରମ୍ପରିକ ସାମାଜିକ ବିଧି ବ୍ୟବସ୍ଥା ବିରୋଧରେ ଏକ ବୈପ୍ଳବିକ ଭୂମିକା ଉପରେ ପ୍ରତିଷ୍ଠିତ ନୁହେଁ, ଏକ ପୁନରୁତ୍ଥାନବାଦୀ ଭୂମିକା ଉପରେ ପ୍ରତିଷ୍ଠିତ । ବିପ୍ଳବୀ ଓ ପୁନରୁତ୍ଥାନବାଦୀ ଉଭୟେ ବର୍ତ୍ତମାନରେ ଗଭୀର ଅସନ୍ତୋଷ ପ୍ରକାଶ କରନ୍ତି, ସେଥି ସଙ୍ଗେ ସଙ୍ଗେ ଏକ ଉଜ୍ଜ୍ୱଳ ଭବିଷ୍ୟତରେ ବିଶ୍ୱାସ ରଖନ୍ତି । ଏମାନଙ୍କ ଦୃଷ୍ଟି ସଂଶୟାଚ୍ଛନ୍ନ ନୁହେଁ, ନେତିବାଚକ ନୁହେଁ । ଏମାନଙ୍କ ଦୃଷ୍ଟି ଆସ୍ତିବାଚକ, ଏମାନେ ଆଶାବାଦୀ । ଏଇତିକି ସାମ୍ୟ । ମାତ୍ର ବୈଷମ୍ୟ ଦେଖିଲେ, ବିପ୍ଳବୀଙ୍କ ଦୃଷ୍ଟି ସିଧା ସମ୍ମୁଖ ଆଡକୁ ; ସେମାନେ ବାରମ୍ବାର ପଛକୁ ଫେରି ଚାହାନ୍ତି ନାହିଁ । ବର୍ତ୍ତମାନର ଶକ୍ତିକୁ ସମ୍ବଳ କରି, ଅଦରକାରୀ ଅତୀତ ପରମ୍ପରାକୁ ମାଡ଼ି ମକଚି ଆଗକୁ ଲମ୍ଫ ଦିଅନ୍ତି । ମାତ୍ର ପୁନରୁତ୍ଥାନବାଦୀ କଳ୍ପନାରେ ଗୌରବାବହ ଅତୀତର ଜାଗ୍ରତ ସ୍ୱପ୍ନ ଦେଖନ୍ତି । ଅତୀତ ଉପାସନାରେ ଆସକ୍ତି ଏମାନଙ୍କ ଉପରେ ପ୍ରବଳ ପ୍ରଭାବ ବିସ୍ତାର କରେ । ଅତୀତର କୌଣସି କଳଙ୍କ କଳୁଷକୁ ଏମାନେ ସ୍ୱୀକାର କରନ୍ତି ନାହିଁ । ଇତିହାସର ସତ୍ୟ ପ୍ରତି ଏମାନଙ୍କ ଦୃଷ୍ଟି ନ ଥାଏ । ଇତିହାସର ଏକ କଙ୍କାଳ ଦେହରେ କଳ୍ପନାର ପ୍ରଲେପ ବୋଳି, ସେଥିରେ ପୁରାଣ ଗୌରବ ଆରୋପ କରିବା ଏମାନଙ୍କ ଲକ୍ଷ୍ୟ । ପୁରାଣ ପରମ୍ପରାକୁ ପରିବର୍ତ୍ତିତ କାଳ ସହିତ ଖାପ ଖୁଆଇବା ପ୍ରୟାସରେ ଏମାନଙ୍କର ବଡ ଦୁର୍ବଳତା । ମାତ୍ର ଏଇ ପ୍ରୟାସ ଭିତରେ ଏକ ମୃତକଳ୍ପ ଜାତିର ଶିରାରେ ଏମାନେ ପ୍ରଥମେ ପ୍ରାଣସଞ୍ଚାରର ଉଦ୍ୟମ କରନ୍ତି ।)

ଆଧୁନିକ କାଳରେ ଜାତୀୟ ଜାଗରଣ ଓ ନବଚେତନାର ଆଦିଯୁଗ—ଏଇ କବିତ୍ରୟଙ୍କ ସମୂହ ଦାନରେ ସମୃଦ୍ଧ । ଏଥିରେ ତିନି ସ୍ୱତନ୍ତ୍ର ବିଚିତ୍ର ପ୍ରତିଭାର ସ୍ୱାକ୍ଷର ସୁସ୍ପଷ୍ଟ । ଜାତୀୟତାର ଆଦର୍ଶ ଏକ ଓ ଅଖଣ୍ଡ । ଯେପରି ଏକ ପରିପୂର୍ଣ୍ଣ ଭୋଜ୍ୟର ଆଦର୍ଶ ଶରୀରରେ ଶକ୍ତି ସଞ୍ଚାର, ସେଇପରି ଜାତୀୟତାର ଆଦର୍ଶ ଏକ ଜାତିର ଜୀବନରେ ଶକ୍ତି ସଞ୍ଚାର । ଭୋଜ୍ୟ କେବଳ ଉପାଦେୟ ହେଲେ ଯଥେଷ୍ଟ ହୁଏ ନାହିଁ । ସେଥିରେ ଶର୍କରା, ଲବଣ, କଟୁ, ତିକ୍ତ ଆଦି ବହୁ ବିଚିତ୍ର ରସର ସମାବେଶ ଘଟିଲେ, ତାହା ସ୍ୱାଦ୍ୟ ହୁଏ । ଯାହା ସ୍ୱାଦ୍ୟ ନୁହେଁ, ତାକୁ ଶିବ ବୋଲି ଜାଣିଲେ ବି ଆମେ ତାକୁ ବଡ କୁଣ୍ଠାରେ ଗ୍ରହଣ କରୁ । (ଓଡ଼ିଆ କାବ୍ୟରେ ଜାତୀୟତାର ଆଦ୍ୟ ପ୍ରକାଶକୁ ଯଦି କେବଳ ଶିବ ରୂପେ ପାଇବା କାମ୍ୟ ହୋଇଥାନ୍ତା—ତାହା ହେଲେ ଭକ୍ତକବି ମଧୁସୂଦନଙ୍କ କାବ୍ୟହିଁ ଯଥେଷ୍ଟ ହୋଇଥାନ୍ତା । ମାତ୍ର ସ୍ୱାଦ୍ୟର ଅଭାବ ରହିଥାନ୍ତା । ଏ ଅଭାବ ରାଧାନାଥ ପୂରଣ କରି ଦେଇଛନ୍ତି । ତାଙ୍କ କାବ୍ୟରେ ଇତିହାସର ଗୌରବାବହ ସ୍ମୃତି ଘେନି କେବଳ ତପୋବନର ଋଷି ଆଉ ତାପସ କୁମାରୀ ଆସନ୍ତି ନାହିଁ ; ଆସନ୍ତି ରାଜବାଳା ନନ୍ଦିକା, କୌଶଲ୍ୟା, ଉଷା ; ଆସନ୍ତି ପ୍ରକୃତିର ବିଚିତ୍ର ରୂପ ସମ୍ଭାର

ଯେପରି ଚିଲିକା, ମହୋଦଧି, ନୀଳାଚଳ, ମେଘାସନ ଆଉ ମହେନ୍ଦ୍ର । ଜାତୀୟ ଜାଗୃତିର ବାରଣୀୟ ଓ ରମଣୀୟ—ଉଭୟ ଦିଗର ମଧୁର ସମନ୍ୱୟ ରାଧାନାଥ ଓ ମଧୁସୂଦନଙ୍କ କାବ୍ୟରେ ଘଟିଚି । ମାତ୍ର ଏ ଦୁହେଁ ଜାତୀୟତାର ଆଦ୍ୟ ବିକାଶ ଯୁଗର କବି । ଏହି ନବ ଜାଗ୍ରତ ଜାତୀୟତାକୁ ସ୍ୱାଭାବିକ ପରିଣତି ଆଡକୁ ଏମାନେ ଯେତେ ଯାଇ ପାରି ନାହାନ୍ତି ; କିନ୍ତୁ ପାରିଚନ୍ତି ଫକୀରମୋହନ । ସେ ଜାତୀୟତାର ସଂଘର୍ଷମୟ ଆର୍ଥିକ ଭୂମିକା ଆଡକୁ ପ୍ରଥମେ ଦୃଷ୍ଟି ଆକର୍ଷଣ କରିଚନ୍ତି । ଏଇ ସାମ୍ମୁଖ୍ୟରେ ଜୟୀ ହେବାକୁ କଠୋର କର୍ମଧାରା ପ୍ରତି ଇଙ୍ଗିତ ଦେଇଅଛନ୍ତି । ଏ ଦିଗରେ ଫକୀରମୋହନଙ୍କ କଣ୍ଠ ବଡ ଆନ୍ତରିକ । ଅନେକ ସମୟରେ କେବଳ ସଙ୍କେତ ଓ ଇଙ୍ଗିତରେ କହିବାରେ ସନ୍ତୁଷ୍ଟ ନ ହୋଇ, ସ୍ପଷ୍ଟ ବର୍ଣ୍ଣନାର ଆଶ୍ରୟ ନେଇଛନ୍ତି । ଏଥିରେ କବିତାର କଳା ବହୁ ପରିମାଣରେ ଖଣ୍ଡିତ ହୋଇଚି । କବି ଆସନରୁ ସେ ସମାଜ ସଂସ୍କାରକ, ପ୍ରଗ୍ରହକର ସ୍ଥାନରେ ପହଞ୍ଚିଯାଇଛନ୍ତି । ଏଥିପ୍ରତି ତାଙ୍କର ଦୃକ୍‌ପାତ ନାହିଁ । ଜାତୀୟ ଜାଗରଣରେ ଜାତୀୟ ଭାଷା ଓ ସାହିତ୍ୟର ମହତ୍ତ୍ୱ ଫକୀରମୋହନ ଯେପରି ଗଭୀରଭାବରେ ଅନୁଭବ କରିଚନ୍ତି, ତାହା ଆଜି ଆଦର୍ଶ ସ୍ଥାନୀୟ । ପୁଣି, ତାଙ୍କର ଜାତୀୟ ଆଦର୍ଶ ସହିତ ସୁଦୂରପ୍ରସାରୀ ସାମାଜିକ ଚେତନାକୁ ମିଳେଇ ଦେଖିଲେ, ତାଙ୍କର ଅନନ୍ୟସାଧାରଣ କବିଜନ ସୁଲଭ ପୂର୍ବଦୃଷ୍ଟିରେ ବିସ୍ମିତ ହେବାକୁ ପଡ଼େ । ସାମନ୍ତ, ମଧ୍ୟବିତ୍ତ ବୁଦ୍ଧିଜୀବୀଙ୍କ ସମେତ ନାରୀ ଓ କୃଷକ—ସମସ୍ତଙ୍କୁ ଯେପରି ସମଗ୍ର ସମାଜକୁ ଆଖି ଆଗରେ ରଖି, ଜାତୀୟ ଭାବର ଉଦ୍‌ବୋଧନ ଲାଗି ସେ କାବ୍ୟ ସାଧନା କରିଛନ୍ତି । ଏଇଭାବରେ ଦେଖିଲେ, ଫକୀରମୋହନହିଁ ଜାତୀୟତାର ଆଦ୍ୟ ଅଭ୍ୟୁଦୟ ଯୁଗର ଶ୍ରେଷ୍ଠ ପ୍ରତିନିଧି ଓ ଜାତୀୟତାର ବିକାଶ ଯୁଗର ଆଦ୍ୟ ପ୍ରବର୍ତ୍ତକ ।

ପଞ୍ଚମ ଅଧ୍ୟାୟ

# ଧର୍ମ ଓ ଦର୍ଶନ

"ଆରିଷ୍ଟୋଟଲ କହିଥିବାର ଶୁଣିଛି, ସବୁ ପ୍ରକାର ଲେଖା ଭିତରେ କବିତା ଅଧିକ ଦାର୍ଶନିକ ଭାବପୂର୍ଣ୍ଣ ରଚନା । ଏକଥା ସତ । ସତ୍ୟହିଁ କବିତାର ଆଦର୍ଶ । ଏ ସତ୍ୟ ବ୍ୟକ୍ତିଗତ ବା ଆଞ୍ଚଳିକ ନୁହେ, ଏହା ସାର୍ବଜନୀନ ଓ ଜୀବନରେ ଅନୁସରଣ ଯୋଗ୍ୟ ।" ୧

T.S. Eliot on Aristotle

କବି, ଦାର୍ଶନିକ ଓ ଧର୍ମନାୟକ—ଆପାତ ଦୃଷ୍ଟିରେ ଏମାନଙ୍କ କର୍ମକ୍ଷେତ୍ର ସମ୍ପୂର୍ଣ୍ଣ ଭିନ୍ନ । କିନ୍ତୁ ଏମାନଙ୍କ ଭାବାଦର୍ଶ ଏକ ଓ ଅଭିନ୍ନ । କାରଣ ସମସ୍ତେ ମାନବାତ୍ମାର ଭାସ୍କର । ଏଥିଲାଗି କବିଙ୍କ କାବ୍ୟର ପୁରୋଦୃଷ୍ଟି ଦାର୍ଶନିକଙ୍କ ନିର୍ମଳ ଚିନ୍ତା ଓ ଧର୍ମଗୁରୁଙ୍କ ଆନ୍ତରିକ ନିଷ୍ଠାକୁ ଅସ୍ୱୀକାର କରିପାରେ ନାହିଁ । ଗ୍ରୀକ୍‌ମାନଙ୍କ ଧାରଣାରେ ଦର୍ଶନ ଅର୍ଥ ନିର୍ମଳ ଚିନ୍ତା ; ଆମ ଧାରଣାରେ ଜୀବନକୁ ବା ଜୀବନରେ ପ୍ରତିଷ୍ଠିତ ସତ୍ୟକୁ ଦେଖିବାର ବିଶିଷ୍ଟ ଭଙ୍ଗୀ । ଏହି ଭାବରେ ଦେଖିଲେ, କବିତା ଦର୍ଶନର ଅତ୍ୟନ୍ତ ନିକଟବର୍ତ୍ତୀ । ଏକ ଦିଗରେ ଏହା ଯେପରି ନିର୍ମଳ ଚିନ୍ତାର ବାହକ ଅନ୍ୟ ଦିଗରେ ସେହିପରି ଏହା ଜୀବନ ଚିତ୍ରରେ ସମୃଦ୍ଧ । ଜୀବନକୁ ଶୃଙ୍ଖଳିତ କରି ପୂର୍ଣ୍ଣତା ଦାନ କରିବା କବିତାର ଚିରନ୍ତନ ଧର୍ମ । କବିତା ଅଧ୍ୟୟନ ଶାସ୍ତ୍ରରେ କୃତବିଦ୍ୟ ପଣ୍ଡିତ ଆଇ, ଏ, ରିଚାର୍ଡ୍‌ସ ଯଥାର୍ଥରେ କହିଛନ୍ତି—"ମନେ ହୁଏ ଭଲ କବିତାକୁ ଆମେ ସେହି ପରିମାଣରେ ବୁଝୁଁ, ଯେଉଁ ପରିମାଣରେ ଆମେ ଏହା ପ୍ରଭାବରେ ନିଜକୁ ଶୃଙ୍ଖଳିତ କରିପାରୁଁ । ଏହା ଅପେକ୍ଷା ଆମେ କବିତାରୁ ଅଧିକ କିଛି ଚାହୁଁନା ।" ୨

ଦର୍ଶନ ଭଳି ଧର୍ମ କବିତାର କେବଳ ଅନ୍ତର ଆଦର୍ଶର ନିକଟବର୍ତ୍ତୀ ନୁହେ ; ଏହା କବିତାର ଅଙ୍ଗ । ପ୍ରାଚୀନ ଓ ମଧ୍ୟ ଯୁଗରେ ଧର୍ମ କବିତାକୁ ଉପାଦାନ ଯୋଗାଇଥିଲା । ସବୁ ଦେଶରେ ପ୍ରାଚୀନ କବିତା ଧର୍ମମୂଳକ । ଇଉରୋପୀୟ କବିତା ଉପରେ ବାଇ-ବେଲ୍‌ର ପ୍ରଭାବ ବିଷୟରେ ଆଲୋଚନା କରିବାକୁ ଯାଇ ଜଣେ ସମାଲୋଚକ ଯାହା କହିଛନ୍ତି

ତାହା ସବୁ ଦେଶରେ ସାହିତ୍ୟ ଉପରେ ଧର୍ମ ଗ୍ରନ୍ଥର ସମ୍ପର୍କ ବିଷୟରେ ସତ୍ୟ । ତାଙ୍କ ମତରେ "ଏଇ ଧର୍ମଗ୍ରନ୍ଥ ପ୍ରଭାବିତ କବିତାରେ ଫୁଟି ଉଠିଛି ଜାତିର ବିରାଟ ଅତୀତର ଗୌରବ ଚେତନା । ମାନବ ଓ ଈଶ୍ୱର, ମାନବ ଓ ମାନବ ସମାଜ ତଥା ମାନବ ଓ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ ଚିରନ୍ତନ ସମ୍ବନ୍ଧ ଏଇ କବିତାର ବିଷୟବସ୍ତୁ । ଏହା ମହାନ୍ ଓ ସାର୍ବଜନୀନ । ଏହାର ଭାବଧାରା ପ୍ରାଞ୍ଜଳ, ସରଳ ଓ ପ୍ରାଣସ୍ପର୍ଶୀ । ବାଇବେଲ୍ ପ୍ରକୃତିର ଅତି ନିକଟବର୍ତ୍ତୀ । ସେଥିଲାଗି ଏହା ଇଂରେଜ, ଫରାସୀ ଓ ଜର୍ମାନ ଆଦି ଜାତୀୟ ମାନସକୁ ରୂପଦାନ କରିଅଛି । ଏଇସବୁ ଦେଶର କବିମାନସ ଓ କାବ୍ୟଧାରାକୁ ନାନା ଭାବରେ ସମୃଦ୍ଧ କରିଅଛି । ଏବେବି ଇଉରୋପ ଓ ଆମେରିକାର ଅଧିକାଂଶ କବିତାରେ ବାଇବେଲ୍‌ର ପ୍ରତିଧ୍ୱନି ଅନୁରଣିତ । ଯଦି ଜଣେ ବାଇବେଲ୍ ସମ୍ପର୍କରେ ନ ଆସି ଏଇସବୁ କବିତା ପଢ଼େ ତେବେ ତାହା ନିକଟରେ ଏହାର ବହୁ ଅଂଶ ଅବୋଧ ରହିଯିବ ।" ୩

ଆମ ଦେଶର କବିତା ଉପରେ ପ୍ରାଚୀନ ଭାରତର ଧର୍ମ ଓ ପୁରାଣ ଗ୍ରନ୍ଥର ପ୍ରଭାବ ସହଜରେ କଳନା କରାଯାଇ ପାରେ । ବେଦ, ଉପନିଷଦ, ରାମାୟଣ, ମହାଭାରତ ଓ ମହାପୁରାଣମାନ ଭାରତୀୟ ସାହିତ୍ୟର ଆଦି ରଚନା । ଓଡ଼ିଆ କବିତାର ଜନ୍ମ ଓ ଆଦ୍ୟ ବିକାଶ ଏହି ଧର୍ମ ଗ୍ରନ୍ଥଗୁଡ଼ିକର ପ୍ରଭାବ ଓ ପ୍ରେରଣା ପରିବେଶରେ ହୋଇ ଥିଲା । ସାରଳାଦାସ, ଜଗନ୍ନାଥ ଦାସ ପ୍ରମୁଖ କବିଙ୍କ ପରବର୍ତ୍ତୀ କାବ୍ୟ ଯୁଗର ରଚନା ପ୍ରତି ଲକ୍ଷ୍ୟ କଲେ ଏହା ସହଜରେ କଳନା କରି ହୁଏ । ଆଧୁନିକ କାବ୍ୟ ଉପରେ ମଧ୍ୟ ଏ ପ୍ରଭାବ ଊଣା ନୁହେଁ । ଉପମା ପ୍ରୟୋଗରେ, ଚରିତ୍ର ସୃଷ୍ଟିରେ, କାହାଣୀ ସଂଯୋଜନାରେ ଓ ନୀତି କଥନ ତଥା ଆଦର୍ଶ ପ୍ରଚାରରେ ଆଧୁନିକ କବିମାନେ ଏହି ପ୍ରାଚୀନ ଧର୍ମଭାବ ଭାବିତ କବିମାନଙ୍କର ଅନୁସରଣ କରିଅଛନ୍ତି । ନିରାଲମ୍ବ ଦୃଷ୍ଟିରେ ଦେଖିଲେ, ମନେହୁଏ, ପୁରାଣ ଯୁଗର ସାରଳା, ବଳରାମ ଓ ଜଗନ୍ନାଥ ଆଦିଙ୍କ କୃତିର ଉଦାର ମାନବ ଧର୍ମ ଯେପରି ଆଧୁନିକ ଯୁଗ ପ୍ରବର୍ତ୍ତକ କବିମାନଙ୍କ କୃତିରେ ନବ କଳେବର ଧାରଣ କରିଛି । ପୁରାତନ ପାନୀୟ ନୂତନ ପାତ୍ରରେ ଢଳା ହୋଇଅଛି । ସେଇ ଈଶ୍ୱର ଭକ୍ତି, ପରମେଶ୍ୱରଙ୍କ ସର୍ବବ୍ୟାପୀ ସତ୍ତା ନିକଟରେ ଆତ୍ମ ସମର୍ପଣ ଭାବ, ସେଇ ଅସାମ୍ପ୍ରଦାୟିକ ମାନବିକ ଐକ୍ୟ ପ୍ରତି ଆକୁଳ ଆଗ୍ରହ, ସେଇ ସମାଜ ଶୃଙ୍ଖଳା ପ୍ରକାଶର ପାବନ ପ୍ରେରଣା – କେଉଁଥିରେ ଯେପରି କି କୌଣସି ନୂତନତା ନାହିଁ । ମାତ୍ର ପ୍ରାଚୀନ ଯୁଗମାନସ ଆଧୁନିକ ଯୁଗ ଭଳି ଯୁକ୍ତିପ୍ରବଣ ନଥିଲା । ଏହାର ଚତୁପାଶରେ ଥିଲା ପରମ୍ପରାର ଦୃଢ଼ ଶୃଙ୍ଖଳ । ପ୍ରାଚୀନ ଯୁଗ ଥିଲା ପୌରହିତ୍ୟ, ରାଜତନ୍ତ୍ର ଓ ଅଖଣ୍ଡ ଧର୍ମ ବିଶ୍ୱାସର ଯୁଗ । ଅନ୍ୟ ପକ୍ଷରେ ଆଧୁନିକ ଯୁଗ ବ୍ୟକ୍ତି ସ୍ୱାତନ୍ତ୍ର୍ୟ, ଗଣତନ୍ତ୍ର ଓ ଖଣ୍ଡିତ ଆଦର୍ଶ ସଂଘର୍ଷର ଯୁଗ । ବୈଜ୍ଞାନିକ ହେତୁ ଜିଜ୍ଞାସାହିଁ ଏହାର ମୂଳଭିତ୍ତି ।

## ଚିନ୍ତାଜଗତର କ୍ରମବିକାଶ ଓ ବୈଜ୍ଞାନିକ ମନୋଭୂମି

ଆଧିଭୌତିକବାଦ, ମାନବ କେନ୍ଦ୍ରିକ ଭୌତିକବାଦ ଓ ପ୍ରକୃତିବାଦ—ମନୁଷ୍ୟର ଚିନ୍ତାଧାରାର ତିନି ସ୍ୱତନ୍ତ୍ର ପର୍ଯ୍ୟାୟ ଅଟେ । ୪ ପ୍ରଥମ ସ୍ତରରେ ମନୁଷ୍ୟ ମନେକରେ—ଜଗତ ଈଶ୍ୱର ସୃଷ୍ଟି ; ଐଶ୍ୱରିକ ଶକ୍ତିରେ ଶାସିତ ଓ ଶୃଙ୍ଖଳିତ । ଏହି ଶକ୍ତି ଉପରେ ମନୁଷ୍ୟର କୌଣସି ହାତ ନାହିଁ । ଏହାର ଆସନ କୌଣସି ଅଦୃଶ୍ୟ ସ୍ୱର୍ଗ ଲୋକରେ । ସେଠାରେ ମନୁଷ୍ୟର ପାପପୁଣ୍ୟର ବିଚାର । ଦ୍ୱିତୀୟ କ୍ଷେତ୍ରରେ ମନୁଷ୍ୟ ଆତ୍ମଶକ୍ତିରେ ବିଶ୍ୱାସୀ । ପ୍ରାଚୀନ ଗ୍ରୀସ୍‌ରେ ଓ ପୁନର୍ଜାଗରଣ ଯୁଗର ଇଉରୋପରେ ଏଇ ଚିନ୍ତାର ଭୂୟୋବିକାଶ ଘଟିଥିଲା । ସମସ୍ତ ମୂଳରେ ମନୁଷ୍ୟ । ଈଶ୍ୱର, ପରଲୋକ ଉପରେ ମନୁଷ୍ୟର ଓ ଇହଲୋକର ସ୍ଥାନ । ଖ୍ରୀଷ୍ଟ ଦ୍ୱିତୀୟ ଶତକର ଗ୍ରୀକ୍‌କବି ଟେରେନ୍‌ସଙ୍କ ଉକ୍ତିରେ କହିଲେ, "ମୁଁ ମନୁଷ୍ୟ, ମୋ ମତରେ ମାନବ ସହିତ ଯାହାର ସମ୍ପର୍କ ସେ ମୋ'ଠାରୁ ଦୂରବର୍ତ୍ତୀ ନୁହେ ।" ଏଇ ମତର ବୈଶିଷ୍ଟ୍ୟ ବିଶ୍ଳେଷଣ କରିବାକୁ ଯାଇ ଫରାସୀ ପଣ୍ଡିତ ସିଲ୍‌ଭାଁ ଲେଭି ଯାଥାର୍ଥରେ କହିଛନ୍ତି—'ଏ ମତ ଧର୍ମ ନିରପେକ୍ଷ ମାନବର ହିତ ସାଧନର ବିରୋଧୀ ନୁହେଁ, ବିଜ୍ଞାନର ବିରୋଧୀ ନୁହେ ।' ୫ ତୃତୀୟ କ୍ଷେତ୍ରରେ ମନୁଷ୍ୟ ପ୍ରକୃତିରେ ବିଶ୍ୱାସୀ, ପ୍ରକୃତିର ନିୟମକୁ ବୁଝିବା ଲାଗି ପ୍ରୟାସୀ । ଏହାହିଁ ବୈଜ୍ଞାନିକ ଚିନ୍ତାର ଭିତ୍ତି । ଏମାନେ ସମଗ୍ର ଜଗତକୁ ବୁଦ୍ଧି ଦେଇ ବୁଝିବାକୁ ବ୍ୟଗ୍ର ।

## ବୈଜ୍ଞାନିକ ବୁଦ୍ଧିବାଦ ଓ ପ୍ରାଚୀନ ଆଦର୍ଶବାଦ

ଊନବିଂଶ ଶତକ ପୂର୍ବରୁ, ବିଶେଷ ରୂପେ ବୈଜ୍ଞାନିକ ବସ୍ତୁବାଦର ପ୍ରଭାବ ଦୃଢ଼ହେବା ପୂର୍ବରୁ ମାନବର ଦାର୍ଶନିକ ମନୋଭୂମି ଏକାନ୍ତ ଆଦର୍ଶବାଦୀ ଥିଲା । ଧର୍ମ ପାରଲୌକିକ ଚିନ୍ତାର ଗଣ୍ଡି ଭିତରେ ଆବଦ୍ଧ ଥିଲା । ଊନବିଂଶ ଶତକ ଏକ ଦିଗରେ ଏଇ ପ୍ରାଚୀନ ଆଦର୍ଶବାଦ ଓ ଅନ୍ୟ ଦିଗରେ ନୂତନ ବାସ୍ତବବାଦ ଓ ବୈଜ୍ଞାନିକ ଦୃଷ୍ଟିର ସଂଘର୍ଷ ଓ ସମନ୍ୱୟର ଭୂମିକା ରୂପେ ଦଣ୍ଡାୟମାନ ହେଲା । ବିଜ୍ଞାନ ଭଳି ଦର୍ଶନର ଲକ୍ଷ୍ୟ ହେଲା ପୃଥିବୀକୁ ମାନବର ଅଧିକ ନିକଟବର୍ତ୍ତୀ କରିବା । ନିଜ ଚଉପାଶର ଦୁନିଆକୁ ମନୁଷ୍ୟ ଯେପରି ଅଧିକ ଆପଣାର ମନେ କରିବ ଓ ଉପଭୋଗ କରି ପାରିବ, ସେଇ ଆଦର୍ଶ ଦର୍ଶନ ପ୍ରଚାର କଲା । ପୂର୍ବରୁ ଦର୍ଶନ ଧର୍ମକୁ ଅବଲମ୍ବନ କରୁଥିଲା । ମାତ୍ର ଏବେ ନୂତନ ଲକ୍ଷ୍ୟରେ ସାମାଜିକ ଆଦର୍ଶ ଆଡ଼କୁ ଚଳିଲା । ଜୀବନ ସଂଗ୍ରାମରେ ମନୁଷ୍ୟକୁ ଶକ୍ତି ଦେବା, ସମାଜ ଶୃଙ୍ଖଳା ରକ୍ଷାରେ ତଥା ସାମାଜିକ ବ୍ୟକ୍ତିର ବ୍ୟକ୍ତିତ୍ୱ ବିକାଶରେ ସାହାଯ୍ୟ କରିବା ଦର୍ଶନର ଲକ୍ଷ୍ୟ ହେଲା । ଧର୍ମ ଭିତ୍ତିରେ ବ୍ୟକ୍ତି ଓ ବ୍ୟକ୍ତି ମଧ୍ୟରେ ତଥା ବ୍ୟକ୍ତି ଓ ସମାଜ ମଧ୍ୟରେ ସମ୍ପର୍କ କଳନା କରାଯାଉଥିଲା । ଏବେ ଦର୍ଶନ ଧର୍ମନିରପେକ୍ଷ ବିଶ୍ୱମାନବିକ ସଂହତିର

ସନ୍ଧାନ ହେଲା । ରାଜନୈତିକ, ଆର୍ଥିକ, ସାମାଜିକ ଓ ବୈଜ୍ଞାନିକ ଶକ୍ତିର ସମନ୍ୱୟରେ ସମୃଦ୍ଧ ନୂତନ କର୍ମ ଚଞ୍ଚଳ ମାନବସମାଜର କଳ୍ପନା ହେଲା ।

ଏହି ପରିସ୍ଥିତିରେ ଧର୍ମକୁ ନିଜର ଗତି ବଦଳେଇବାକୁ ହେଲା । ଯୁକ୍ତି, ବିଶ୍ୱାସର ଆସ୍ଥାନ ଦୋହଲାଇଦେଲା । ଧର୍ମ ନାମରେ ଯେଉଁସବୁ ପାରମ୍ପରିକ ଅହେତୁକ ଆଚାର ଅନୁଷ୍ଠାନ ଚେରମାଡ଼ି ବସିଥିଲା, ତାହା ଅନାବଶ୍ୟକ ମନେହେଲା । ମାତ୍ର ପ୍ରକୃତ ସଦାଚାରନିଷ୍ଠ ଓ ଆଧ୍ୟାତ୍ମିକ ଭାବାପନ୍ନ ଧର୍ମର ଆଦର ବଢ଼ିଲା । ରୋମାଣ୍ଟିସିଜ୍‌ମ୍ ବା ନୂତନ ପ୍ରଚାରିତ ଭାବବାଦରୁ ଏଥିଲାଗି ମଧ୍ୟ ଯଥେଷ୍ଟ ପ୍ରେରଣା ମିଳିଲା । କେବଳ ପାରଲୌକିକ ଚିନ୍ତାରେ ମଗ୍ନ ନରହି ଧର୍ମ-ଯାଜକମାନେ ସମାଜର ମଙ୍ଗଳ କଥା ଭାବିବାକୁ ଲାଗିଲେ । ଇଂଲଣ୍ଡର ଅକ୍‌ସଫୋର୍ଡ଼ ଆନ୍ଦୋଳନ ଏହି ଭାବଧାରାରେ ପରିଚାଳିତ ଏକ ଧର୍ମ ଆନ୍ଦୋଳନ ଥିଲା । ଏହି ଆନ୍ଦୋଳନର ନେତାମାନେ ସାମାଜିକ ଅନ୍ୟାୟ ବିରୋଧରେ ଦୃଢ଼କଣ୍ଠରେ ପ୍ରତିବାଦ କରୁଥିଲେ । ଶ୍ରମିକମଙ୍ଗଳ, ଦାସପ୍ରଥାର ଅବରୋଧ, ବନ୍ଦିଶାଳାର ସଂସ୍କାର ଆଦି ବହୁ ଜନହିତକର କାର୍ଯ୍ୟରେ କାର୍ଡିନାଲ ନିଉମାନ୍, କାର୍ଡିନାଲ ମ୍ୟାନିଂ ପ୍ରଭୃତି ଧର୍ମପ୍ରଚାରକଗଣ ଅଗ୍ରଣୀ ଥିଲେ । ଏମାନଙ୍କ କାର୍ଯ୍ୟ-ଫଳରେ ଯୁକ୍ତିବାଦୀମାନେ ନୂତନ ସମାଜ ଜୀବନର ବିକାଶଲାଗି ଧର୍ମର ଉପଯୋଗିତା ଉପଲବ୍ଧି କଲେ । ଏହାର ପ୍ରଭାବ ବିଶ୍ୱମୟ ହେଲା । ଯେଉଁଠି ଯେଉଁଭାବରେ ମାନବିକ ବିକାଶ ଓ ଜାତୀୟ ଜାଗୃତିର କଳ୍ପନା ହେଲା—ସେଥି ସହିତ ଧର୍ମ ଆନ୍ଦୋଳନ ସମତାଳରେ ଗତି କରିଥିଲା । ସବୁଠି ଜାତୀୟ ଆନ୍ଦୋଳନରେ ଜାତୀୟ ଧର୍ମର ରଙ୍ଗ ଓ ପ୍ରଭାବ ମିଶି ରହିଥିଲା । ଆମଦେଶରେ ବ୍ରାହ୍ମଧର୍ମ, ଆର୍ଯ୍ୟସମାଜ ଆଦିର କାର୍ଯ୍ୟରେ ଏହି ମାନବିକ ଦୃଷ୍ଟିକୋଣ ପ୍ରକାଶ ପାଇଛି । ବିଶ୍ୱମୟ ପ୍ରସାରିତ ଏହି ମାନବିକ ଧର୍ମ ଓ ଦର୍ଶନର ପ୍ରଭାବ ଅଭ୍ୟୁଦୟ ଯୁଗର କାବ୍ୟଧାରାରେ ସ୍ପଷ୍ଟଭାବରେ ଦେଖିବାକୁ ମିଳେ ।

### ଭାରତୀୟ ଆଦର୍ଶବାଦ ୨

ଭାରତବର୍ଷରେ ଆଦର୍ଶବାଦୀ ଦାର୍ଶନିକ ଚିନ୍ତାର ଐତିହ୍ୟ ଅତି ପ୍ରାଚୀନ । ପ୍ରାୟ ପାଞ୍ଚ ହଜାର ବର୍ଷ ପୂର୍ବେ ଏ ଦେଶରେ ଋକ୍‌ବେଦ ରଚିତ ହୋଇଥିଲା । ସେଇଦିନୁ ଭାରତୀୟ ଦର୍ଶନଧାରା ଅଖଣ୍ଡ ସ୍ରୋତରେ ପ୍ରବାହିତ ହୋଇଅଛି ।

ସମଗ୍ର ଭାରତୀୟ ଦର୍ଶନ ଶାସ୍ତ୍ରକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମତଃ ବେଦାନୁଗାମୀ ଓ ଦ୍ୱିତୀୟତଃ ବେଦ ବିରୋଧୀ । ମୀମାଂସା, ବେଦାନ୍ତ, ସାଂଖ୍ୟ, ଯୋଗ, ନ୍ୟାୟ, ବୈଶେଷିକ ଆଦି ପ୍ରଥମ ଶ୍ରେଣୀର ଅନ୍ତର୍ଗତ । ଜୈନ, ବୌଦ୍ଧ, ଚାର୍ବାକ୍ ଦର୍ଶନ ଆଦି ଦ୍ୱିତୀୟ ଶ୍ରେଣୀର ଅନ୍ତର୍ଗତ । ପରବର୍ତ୍ତୀ କାଳରେ ବିକଶିତ ବୈଷ୍ଣବ, ତନ୍ତ୍ର ଆଦି ଆଗମ ଶାସ୍ତ୍ରରେ ବୈଦିକ ଧାରାର ଖଣ୍ଡିତ ରୂପ ଦେଖିବାକୁ ମିଳେ ।

ବେଦ ଓ ବେଦାନୁଗାମୀ ବିପୁଳାୟତନ ଦାର୍ଶନିକ ଭାବସମ୍ପଦର ସାର ନିର୍ଯ୍ୟାସ

ହୋଇଛି—ଈଶ୍ୱର, ବିଶ୍ୱବ୍ରହ୍ମାଣ୍ଡ, ଜୀବ ଜଗତ ଓ ମାନବ ସୃଷ୍ଟି ବିଷୟରେ ଧାରଣା ଓ କଳ୍ପନା । ବେଦର 'ପୁରୁଷ' ସମସ୍ତ ଜଗତରେ ସର୍ବମୟ ରୂପରେ 'ବିରାଜିତ । ସେ ଏକ ମାତ୍ର ଲୋକ ଧାରଣାରେ ଅନେକ । 'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି ।' ସେଇ ପୁଣି ଉପନିଷଦ ଧାରଣାରେ ଓ ବେଦାନ୍ତର ବିଗ୍ରହରେ 'ବ୍ରହ୍ମ' । ସେ ଅନାଦି, ଅନନ୍ତ, ସକଳ ସୃଷ୍ଟିର ସ୍ରଷ୍ଟା, ପାଳନ କର୍ତ୍ତା, ସଂହାର କର୍ତ୍ତା । ତାଙ୍କଠାରୁ ସମସ୍ତ ସୃଷ୍ଟି ହୋଇ ପୁଣି ସମସ୍ତ ତାଙ୍କଠାରେ ବିଲୀନ ହୁଏ । ସେ ସତ୍, ଚିତ୍ ଓ ଆନନ୍ଦମୟ । ତାଙ୍କର ଚିନ୍ମୟ ରୂପ ସମସ୍ତ ବିଶ୍ୱବ୍ରହ୍ମାଣ୍ଡରେ, ସକଳ ଜୀବାତ୍ମାରେ ବିରାଜିତ । ମନୁଷ୍ୟ ନିଜ ଆତ୍ମାକୁ ବୁଝିଲେ—ତାଙ୍କୁ ବୁଝି ପାରିବ, ତାଙ୍କର ଅମୃତ ରୂପ ଉପଲବ୍ଧି କରି ପାରିବ । ଏଥିଲାଗି ଲୋଡ଼ା ଚିତ୍ତ ସଂଯମ, ଲୋଡ଼ା ସ୍ୱାଧ୍ୟାୟ, ଧ୍ୟାନ ଓ ତପସ୍ୟା । ଭାରତୀୟ ଜୀବନର ଏ ଆଦର୍ଶ ଉପନିଷଦ ଯୁଗରୁ ଏପର୍ଯ୍ୟନ୍ତ ଅକ୍ଷୁଣ୍ଣ ହୋଇ ରହିଅଛି । ଏଇ ଆଦର୍ଶ ଆମ ଜୀବନ, ଚିନ୍ତା-ଧାରାକୁ ରୂପଦାନ କରି ଆସିଅଛି । ଏଇ ଦର୍ଶନକୁ ଶଙ୍କର, ରାମାନୁଜ, ମାଧ୍ୱ ଓ ନିମ୍ବାର୍କ ପ୍ରଭୃତି ନାନା ଭାବରେ ବ୍ୟାଖ୍ୟା କରିଅଛନ୍ତି । ଶଙ୍କର ଜୀବାତ୍ମା ଓ ପରମାତ୍ମା ଭିତରେ ଅଭେଦ କଳ୍ପନା କରିଛନ୍ତି । ଏ ମତ ସବୁ ସମୟରେ ବୁଦ୍ଧିଜୀବୀଙ୍କ ମଧ୍ୟରେ ଆଦୃତ ହୋଇଅଛି । ରାମାନୁଜ, ମାଧ୍ୱ ବା ପରବର୍ତ୍ତୀ ବୈଷ୍ଣବ ଦାର୍ଶନିକମାନେ ଜୀବାତ୍ମାଠାରୁ ସ୍ୱତନ୍ତ୍ର ମହିମାରେ ପ୍ରତିଷ୍ଠିତ ପରମାତ୍ମାଙ୍କ ପୂଜା ଓ ଉପାସନା ପଦ୍ଧତିର ନିର୍ଦ୍ଦେଶ କରିଛନ୍ତି । ଏହା ଜନସାଧାରଣଙ୍କ ମଧ୍ୟରେ ଖୁବ ପ୍ରସାର ଲାଭ କରିଅଛି । ଏହି ସମସ୍ତ ପରସ୍ପର ବିରୋଧୀ ମତବାଦ ମଧ୍ୟରେ ଗୀତା ଏକ ସମନ୍ୱୟ ଆଣିଛି । ଏହା ମତରେ ଭଗବାନଙ୍କୁ ଜ୍ଞାନ, କର୍ମ ଓ ଭକ୍ତି ଆଦି ବିଭିନ୍ନ ମାର୍ଗରେ ଲାଭ କରାଯାଇ ପାରେ । ଯାହାର ଯେଉଁ ଦିଗରେ ପ୍ରବଣତା ଅଧିକ, ସେ ସେଇ ମାର୍ଗ ଅବଲମ୍ବନ କରିବା ଉଚିତ । ବାସ୍ତବିକ ଏଇ ସମନ୍ୱୟ-ବାଦୀ ଆଦର୍ଶ ପ୍ରଚାର ଦ୍ୱାରା ଗୀତାକାର ମନୁଷ୍ୟର ଅନ୍ତର୍ନିହିତ ବୃତ୍ତିକୁ ପରମ ସମ୍ମାନ ଦେଇ ଅଛନ୍ତି । ସେଥିଲାଗି ଆଧୁନିକ ଯୁଗର ଚିନ୍ତାନାୟକ, ସମାଜ ସଂସ୍କାରକ ଓ ବିପ୍ଳବୀ ରାଜନୈତିକ ନେତା—ସମସ୍ତଙ୍କଠାରେ ଏହା ସମାନଭାବରେ ଆଦୃତ ହୋଇଅଛି । ଗୀତାର ଧର୍ମ ସମସ୍ତ ପ୍ରକାର କୃତ୍ରିମ ସାମାଜିକ ବିଭେଦକୁ ଅସ୍ୱୀକାର କରିଅଛି । ଏହା ସମସ୍ତ ଚିନ୍ତାଧାରାରେ ସଂହିତ ଆଣି ଜାତୀୟ ଜୀବନକୁ ସଂହତ ଓ ଶକ୍ତି ସମୃଦ୍ଧ କରିଅଛି ।

ଜୈନ, ବୌଦ୍ଧଧର୍ମ ବେଦ ବିରୋଧୀ ବୋଲି ଖ୍ୟାତ । ମାତ୍ର ଏଥିରେ ଭାରତୀୟ ଜୀବନର ଆଦର୍ଶ ଖଣ୍ଡିତ ହୋଇ ନାହିଁ । ଏମାନେ ଅବଶ୍ୟ ଈଶ୍ୱର ମାନନ୍ତି ନାହିଁ, ଅଥବା ଈଶ୍ୱର ବିଷୟରେ ନୀରବତା ଅବଲମ୍ବନ କରନ୍ତି । ମାତ୍ର ଅହିଂସା ଓ ଶୁଦ୍ଧାଚରଣକୁ ଶ୍ରେଷ୍ଠ ଆଦର୍ଶ ରୂପେ ଗ୍ରହଣ କରିଥାନ୍ତି । ବୁଦ୍ଧଦେବ ଯେଉଁ ସତ୍ୟର ଅବତାରଣା କରି ଯାଇଛନ୍ତି ତାହା ଭାରତୀୟ ଚିନ୍ତାର ସାରନିର୍ଯ୍ୟାସ ବୋଲି ମନେହୁଏ । "ପ୍ରତ୍ୟେକଙ୍କ ଜୀବନରେ ଦୁଃଖ ଅଛି, ଦୁଃଖର କାରଣ ଅଛି, ତୃଷ୍ଣା ଦୁଃଖର କାରଣ । ଦୁଃଖ ନିବାରଣ କରିବାର ଉପାୟ

ଅଛି ଓ ତୃଷ୍ଣାକୁ ବିନାଶ କଲେ ଦୁଃଖ ନିବାରିତ ହେବ । ତୃଷ୍ଣା ବା କାମନା ବିନାଶ କରିବାର ଉପାୟ ଅଛି ଓ ଧର୍ମନୀତି ମାନି ଚଳିଲେ କାମନାର ବିନାଶ ହେବ ।" ୭

ସବୁ ଧର୍ମରେ କର୍ମଫଳରେ ବିଶ୍ୱାସ ସ୍ଥାପିତ ହୋଇଅଛି । ଆପାତତଃ ଦୃଷ୍ଟିରେ କର୍ମ-ଫଳକୁ ଭାଗ୍ୟଫଳ ବୋଲି ଲୋକେ ଧାରଣା କରିଥାନ୍ତି । ଏଇ ବିଚାରରେ କର୍ମଫଳରେ ବିଶ୍ୱାସ ଆମକୁ ଭାଗ୍ୟବାଦୀ ଓ ପୌରୁଷ ବିମୁଖୀ କରିଛି ବୋଲି କୁହାଯାଇ ଥାଏ । କିନ୍ତୁ ପ୍ରକୃତରେ ତାହା ନୁହେ । ମଣିଷର ଆପଣା କାଲି କର୍ମହିଁ ତାହାର ଭାଗ୍ୟ । ୮ ଭାରତୀୟ ଚିନ୍ତା ସବୁବେଳେ ମନୁଷ୍ୟ ସମ୍ମୁଖରେ ନୈତିକ ଜଗତର ଚିତ୍ର ଉପସ୍ଥାପିତ କରିଅଛି । ଯିଏ ଯେଉଁ କାର୍ଯ୍ୟ କରିବ ସେ ତାହାର ଫଳ ଇହ ବା ପରଜନ୍ମରେ ଭୋଗ କରିବ—ଏହି ବିଶ୍ୱାସ ସବୁବେଳେ ଜୀବନକୁ ଆଦର୍ଶ ପଥରେ ଚଳେଇ ନେଇଥାଏ । ଜନ୍ମ ପୂର୍ବରୁ ମନୁଷ୍ୟ କର୍ମଫଳ ଘେନି ସଂସାରକୁ ଆସିଥିଲେହେଁ, ନିଜର ପୁରୁଷକାର ବଳରେ ସେ ଅଧିକ ଉନ୍ନତ ସୋପାନର ଅଧିକାରୀ ହୋଇପାରେ—ଏହାହିଁ କର୍ମଫଳବାଦର ସାରକଥା । ସୁକର୍ମ ସୁଫଳର ଜନକ । ନିଜର ସୁଖ, ଦୁଃଖ, ସଫଳତା ଓ ବିଫଳତା ଲାଗି ମନୁଷ୍ୟ ନିଜେ ଦାୟୀ ମନୁଷ୍ୟ ନିଜେ ନିଜର ଭାଗ୍ୟ ନିର୍ମାତା । କର୍ମଫଳ ଏଇ ବିଶ୍ୱାସ ସୃଷ୍ଟି କରିଥାଏ ।

ଇଂରେଜ ଶାସନରେ ପାଶ୍ଚାତ୍ୟ ଭାବଧାରାର ପ୍ରଭାବ ଫଳରେ ଆମଦେଶରେ ଦାର୍ଶନିକ ଓ ଚିନ୍ତାନାୟକମାନେ ଆଧୁନିକ ଯାନ୍ତ୍ରିକ ଓ ବୈଜ୍ଞାନିକ ଜଗତର ସମସ୍ୟା ଓ ତାହାର ସମାଧାନ ପ୍ରତି ସଚେତନ ହେଲେ । ଭାରତୀୟ ଦର୍ଶନର ଆଦର୍ଶବାଦ ସହିତ ପାଶ୍ଚାତ୍ୟ ଦର୍ଶନର ବାସ୍ତବ ଦୃଷ୍ଟି ମିଳିତ ହେଲା । ଏଇ ମିଳନ ଫଳରେ ଏକ ସାର୍ବଜନୀନ ବିଶ୍ୱ-ଦର୍ଶନର ଭୂମିକା ପ୍ରସ୍ତୁତ ହୋଇଅଛି । ଆଧୁନିକ ଭାରତୀୟ ଭାବଜଗତର ଶ୍ରେଷ୍ଠ ପ୍ରତିନିଧି ଗାନ୍ଧୀ, ରବୀନ୍ଦ୍ରନାଥ, ଅରବିନ୍ଦ ଅଥବା ରାଧାକୃଷ୍ଣନ୍‌ଙ୍କ ଦର୍ଶନ ଦୃଷ୍ଟି ପ୍ରାଚୀନ ଭାରତର ଆଦର୍ଶବାଦ ଉପରେ ପୂର୍ଣ୍ଣତଃ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ଏହା ଆଧୁନିକ ଜୀବନକୁ ଅସ୍ୱୀକାର କରିନାହିଁ । ରବୀନ୍ଦ୍ରନାଥଙ୍କ ମାନବିକ ଆଦର୍ଶ ଓ ସୌନ୍ଦର୍ଯ୍ୟ ରୁଚି ଅରବିନ୍ଦଙ୍କ ଭାଗବତ ଜୀବନର ଆଦର୍ଶ ଓ ରାଧାକୃଷ୍ଣନ୍‌ଙ୍କ ଗତିଶୀଳ ଆଦର୍ଶବାଦ—ପୃଥିବୀର ସବୁ ଦେଶର ଭାବୁକଙ୍କଠାରେ ଆଦୃତ ହୋଇଅଛି ।

ଦର୍ଶନରେ ଯେଉଁ ଧାରା ଦେଖୁଁ, ଧର୍ମରେ ମଧ୍ୟ ସେଇ ଧାରା ଦେଖିବାକୁ ମିଳେ । ଖ୍ରୀଷ୍ଟ ସପ୍ତଦଶ ଶତକ ବେଳକୁ ଆମ ଦେଶରେ ସ୍ଥାନେ ସ୍ଥାନେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରକମାନେ ଧର୍ମ ପ୍ରଚାର ଆରମ୍ଭ କରି ଦେଇଥିଲେ । ଏମାନଙ୍କ ଧର୍ମ ପ୍ରଚାର ସହିତ ମାନବ ସେବା ଓ ସମାଜସଂସ୍କାର ଭାବନା ପୂରି ରହିଥିଲା । ଏମାନେ ଭାରତୀୟ ପରମ୍ପରା ଓ ହେତୁହୀନ ସାମାଜିକ ଚଳଣି ସବୁର ତୀବ୍ର ସମାଲୋଚନା କରୁଥିଲେ । ଏପରିକି ଏକଦା ଖ୍ରୀଷ୍ଟଧର୍ମ ଆମଦେଶରେ ଅଗ୍ରଗାମୀ ଓ ବିପ୍ଳବୀ ସମାଜସଂସ୍କାରକଙ୍କ ଆଶ୍ରୟସ୍ଥଳ ହୋଇଥିଲା । ଏଇ

ପ୍ରଚାର ଓ ପ୍ରଭାବ ଫଳରେ ଭାରତୀୟ ଚିନ୍ତାର ସମର୍ଥକମାନେ ନିଜକୁ ଖାପ ଖୁଆଇବାକୁ ଚେଷ୍ଟାକଲେ । ସେମାନଙ୍କ ଉଦ୍ୟମରେ ପୂର୍ବ ଭାରତରେ ବ୍ରାହ୍ମଧର୍ମ ଓ ଉତ୍ତର ପଶ୍ଚିମ ଭାରତରେ ଆର୍ଯ୍ୟ ସନାତନ ଧର୍ମ ଆନ୍ଦୋଳନ ଆରମ୍ଭ ହେଲା । ୧୮୨୮ ଖ୍ରୀଷ୍ଟାବ୍ଦ ରାଜା ରାମମୋହନ ରାୟ ବ୍ରାହ୍ମ ସମାଜ ପ୍ରତିଷ୍ଠା କରିଥିଲେ । ସେ ବେଦ, ଉପନିଷଦ ଆଦି ପ୍ରାଚୀନ ହିନ୍ଦୁ ଧର୍ମ ଗ୍ରନ୍ଥରେ କେବଳ ବ୍ୟୁତ୍ପନ୍ନ ନ ଥିଲେ । ଖ୍ରୀଷ୍ଟିୟାନ ଓ ମୁସଲମାନ ଧର୍ମଶାସ୍ତ୍ରରେ ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା । ତାଙ୍କ ପ୍ରଚାରିତ ଧର୍ମ, ଉପନିଷଦୀୟ ଦର୍ଶନର ଏକ ଆଧୁନିକ ହେତୁବାଦୀ ବ୍ୟାଖ୍ୟା ଉପରେ ପ୍ରତିଷ୍ଠିତ ହୋଇଥିଲେହେଁ, ଅନ୍ୟ ସମସ୍ତ ଧର୍ମର ଆଦର୍ଶ ସବୁର ନିକଟବର୍ତ୍ତୀ ଥିଲା । ଦୟାନନ୍ଦ ସରସ୍ୱତୀ (୧୮୨୪-୧୮୮୩) ଆର୍ଯ୍ୟସମାଜ ପ୍ରତିଷ୍ଠା କରିଥିଲେ । ସେ ମଧ୍ୟ ବୈଦିକ ଧର୍ମର ହେତୁବାଦୀ ବ୍ୟାଖ୍ୟା କରି, ହିନ୍ଦୁ ସମାଜରେ ପ୍ରଚଳିତ ପୌତ୍ତଳିକତା, ଜାତିଭେଦ ପ୍ରଥା ଓ କୁସଂସ୍କାର ବିରୋଧରେ ଦୃଢ଼ ସ୍ୱର ଉଠେଇ ଥିଲେ ।

### ଆଧୁନିକ ଓଡ଼ିଆ କାବ୍ୟ—ଧର୍ମ ଓ ଜୀବନ

ଆଧୁନିକତାର ପରିପ୍ରେକ୍ଷାରେ ପ୍ରଥମେ ଜନସାଧାରଣଙ୍କ ହାତକୁ ଯେଉଁ ସାହିତ୍ୟ ଆସିଲା, ତାହାଥିଲା ଧର୍ମ ସାହିତ୍ୟ । ଓଡ଼ିଆ ମୁଦ୍ରାଯନ୍ତ୍ରରେ ଖ୍ରୀଷ୍ଟିୟାନ ମିସ୍‌ନାରୀଙ୍କ ଉଦ୍ୟମରେ ପ୍ରଥମେ ବାଇବେଲ୍‌ହିଁ ପ୍ରକାଶିତ ହୋଇଥିଲା । ଏକ ଦିଗରେ ଖ୍ରୀଷ୍ଟିୟାନ ମିସନାରୀମାନଙ୍କର ଧର୍ମପ୍ରଚାର ଚେଷ୍ଟା ଓ ଅପରଦିଗରେ ପ୍ରାଚୀନ ଭାରତୀୟ ଧର୍ମ ଓ ଆଦର୍ଶର ପୁନରୁତ୍‌ଥିତ ଶକ୍ତିର ବିରୋଧମାନ ସାମ୍ମୁଖ୍ୟ ନଗରର ଶିକ୍ଷିତ ଜନସାଧାରଣଙ୍କ ମନରେ ଗଭୀର ପ୍ରଭାବ ପକାଇଲା । ଊନବିଂଶ ଶତକର ପୁନର୍ଜାଗରଣ ଓ ମାନସିକ ଭାବାବେଗ ଏଇ ଆଦର୍ଶବାଦୀ ଦାର୍ଶନିକ ଧର୍ମର ବାତାବରଣରେ ଗଢ଼ା ହୋଇଥିଲା । ଯେପରି ଜାତୀୟ ଜୀବନରେ, ସେଇପରି ସାହିତ୍ୟ ଓ କାବ୍ୟଧାରାରେ ଏହାର ପ୍ରଭାବ ଅପ୍ରତିହତ ଥିଲା । ଯୁଗର ପ୍ରଧାନ ବ୍ୟକ୍ତିଙ୍କ ମଧ୍ୟରେ କବି ମଧୁସୂଦନ ଅଥବା କର୍ମୀ ପ୍ୟାରୀମୋହନଙ୍କ ଭଳି ଜଣେ ଅଧେ ହୁଏତ ପ୍ରକାଶ୍ୟରେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ମାତ୍ର ଫକୀରମୋହନ, ରାଧାନାଥ ଆଦି ସନାତନ ହିନ୍ଦୁଧର୍ମରେ ଥାଇ ମଧ୍ୟ ହୃଦୟ ମନରେ ବ୍ରାହ୍ମ ଭାବାପନ୍ନ ଥିଲେ । ବ୍ରାହ୍ମଧର୍ମର ଆଧ୍ୟାତ୍ମିକ ଭାବାଦର୍ଶରେ ଏମାନଙ୍କ ମନ ଗଢ଼ା ହୋଇଥିଲା । ଅବଶ୍ୟ କାବ୍ୟ ଯେ କେବଳ ସ୍ତୋତ୍ର ସଙ୍ଗୀତ ହେବ, ବା ଏହାର ପ୍ରତିଚ୍ଛନ୍ଦ ବିଭୁ ମହିମା ବାରିରେ ସିକ୍ତ—ଏପରି ଭାବନା କେବଳ ମଧୁସୂଦନଙ୍କ ବ୍ୟତୀତ ଅନ୍ୟ କାହାଠାରେ ଏତେ ସ୍ପଷ୍ଟ ଭାବରେ ପ୍ରକାଶ ପାଇନାହିଁ । ତେବେ ଧର୍ମକୁ ମନୁଷ୍ୟ ଜୀବନର ନିକଟବର୍ତ୍ତୀ କରିବା, ଧର୍ମ ଜୀବନର ଆଦର୍ଶ ଯେପରି ସାମାଜିକ ଜୀବନରେ ସୁସ୍ଥ ବାତାବରଣ ସୃଷ୍ଟି କରିବ, ସେଥିଲାଗି ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ କରିବା ଦିଗରେ ଫକୀରମୋହନ, ରାଧାନାଥଙ୍କ ଭଳି ଯୁଗନ୍ଧରଙ୍କଠାରୁ ଆରମ୍ଭ କରି ଅନ୍ୟ ଗୌଣକବିମାନଙ୍କ

ପର୍ଯ୍ୟନ୍ତ ସମସ୍ତେ ଉଦ୍ୟମ କରିଛନ୍ତି । ଦାର୍ଶନିକ ସୁଲଭ ଧର୍ମଦୃଷ୍ଟି ହିଁ ଏଇ ଯୁଗର ସ୍ୱୈରବାଦୀ ପରିକଳ୍ପନାର ଅଙ୍ଗଥିଲା । ଧର୍ମର ଜୟ ଓ ପାପର ପରାଜୟ—ଏହି ଆଦର୍ଶ ସର୍ବତ୍ର ରାଜତ୍ୱ କରୁଥିଲା । ମନୁଷ୍ୟର ବ୍ୟକ୍ତିଗତ ବା ସାମାଜିକ ଜୀବନ ଯେ ଧର୍ମ ରହିତ ବା ଆମଯୁଗ ଭଳି ଧର୍ମ ନିରପେକ୍ଷ ଅଥବା ଧର୍ମ ପ୍ରତି ଏକାନ୍ତ ଉଦାସୀନ ହେବ—ଏହା ସେ ସମୟର ଧାରଣାର ବାହାରେ ଥିଲା । କେବଳ ଶ୍ରେଷ୍ଠ ସାମାଜିକ ଜୀବନ ନୁହେ, ଆଦର୍ଶ ନୈତିକ ଜୀବନ ପାଳନ କରିବାକୁ ମଧୁସୂଦନ, ରାଧାନାଥ ଓ ଫକୀରମୋହନଙ୍କଠାରେ କିପରି ବିଶେଷ ଆଗ୍ରହ ଦେଖା ଦେଇଥିଲା ତାହା ଏହି କବିମାନଙ୍କ କାବ୍ୟ କବିତାର ପ୍ରତିଛନ୍ଦରେ ଦେଖିବାକୁ ମିଳେ । ଧର୍ମହିଁ ମଧୁସୂଦନଙ୍କ କବିତାର ପ୍ରଧାନ ଉପଜୀବ୍ୟ ଥିଲା ; ରାଧାନାଥଙ୍କ ଦରବାର, ସତୀପ୍ରତି ସତୀଦ୍ରୋହୀ ପତିର ଉକ୍ତି ଭଳି ଅସଂଖ୍ୟ କବିତା ଏଇ ଭାବ ପ୍ରଭାବରେ ରଚିତ ହୋଇଥିଲା । ସ୍ୱକଳ୍ପିତ ନୈତିକ ବାତାବରଣରେ ମଧୁସୂଦନ ଆମଦେଶର ପିଲାମାନଙ୍କୁ ନୀତିବାକ୍ୟ ଶିଖାଇ ଥିଲେ—'ବାଞ୍ଛାକାଲ୍ପ ଧର୍ମ-ଧନ ମୁଁ ସଞ୍ଚିବ ଏ ଜୀବନ ଅନିଶ୍ଚିତ ।" ରାଧାନାଥ ଆସନ କାଳରେ ଲିପ୍ତ ଦୂରଦୃଷ୍ଟିହୀନ ଧନୀ ଓ ପଦସ୍ଥ ବ୍ୟକ୍ତିମାନଙ୍କୁ ଉପଦେଶ ଦେଇଥିଲେ—

"ଧର୍ମ ଏକା ପୋତ ଗଢ଼ିଛନ୍ତି ବିଧି<br>
ତରିବାକୁ ଏହି ସଂସାର ବାରିଧି ।"

ଏଇ ଧର୍ମ ପାରମ୍ପରିକ ପୌରହିତ୍ୟ ଧର୍ମ ନୁହେ । ଦିଅଁ ଦେବତା ପୂଜା, ଛୁଆଁ ଛୁଇଁରେ ଆଗ୍ରହ ନିଷ୍ଠା—ଏହାର ଆଦର୍ଶ ନୁହେଁ । ଏହା ଦାର୍ଶନିକ ସତ୍ୟ ଉପରେ ପ୍ରତିଷ୍ଠିତ ସାମାଜିକ ଧର୍ମ । ଏହା ପାଳନ ଫଳରେ ମନୁଷ୍ୟତା ବିକଶିତ ହୁଏ, ସମାଜରେ ସଂହତି ଓ ବ୍ୟକ୍ତି ମନରେ ଶାନ୍ତି ବିରାଜମାନ କରେ ।

ନନ୍ଦିକେଶ୍ୱରୀ କାବ୍ୟରେ ରାଧାନାଥ ତୁଳନାରେ ଯୁଦ୍ଧବୀରଠାରୁ ଧର୍ମବୀର କିପରି ଶ୍ରେଷ୍ଠ ତାହା ପ୍ରତିପାଦନ କରିଛନ୍ତି । ଦେହ ବଳରେ ଶତ୍ରୁକୁ ଜୟ କରିବା କୃତିତ୍ୱ କ୍ଷଣିକ । ମାତ୍ର ମନୋବଳରେ ବିରୋଧ ମତ ପୋଷଣ କରୁଥିବା ବ୍ୟକ୍ତିଙ୍କ ହୃଦୟକୁ ଜୟ କରିବା କେବଳ କଠିନ ନୁହେ ; ଏହି ବିଜୟର ପ୍ରଭାବ ବହୁକାଳ ସ୍ଥାୟୀ । ବାହୁବଳ ଶତ୍ରୁକୁ ଦୂରକୁ ଘେନିଯାଏ, ମାତ୍ର ଧର୍ମର ଶକ୍ତି ପରକୁ ଆପଣାର କରିଦିଏ । ପ୍ରକୃତରେ ଧର୍ମ ପ୍ରବର୍ତ୍ତକମାନେ ମନୁଷ୍ୟ ମନରେ ଜମିଥିବା ଯୁଗ ଯୁଗାନ୍ତରରେ କଳୁଷ କାଳିମା ଧୋଇ ଦିଅନ୍ତି । ଯୁଗ ଯୁଗ ସଞ୍ଚିତ ଅନ୍ଧବିଶ୍ୱାସ, କୁସଂସ୍କାର ବିରୋଧରେ ସଂଗ୍ରାମ କରିବାକୁ ହେଲେ ଅସୀମ ସାହସ, ପ୍ରଜ୍ଞା ଓ ବଳିଷ୍ଠ ମନ ଆବଶ୍ୟକ । ସେ ଧର୍ମବୀରଙ୍କୁ ଶ୍ରେଷ୍ଠସ୍ଥାନ ଦେଇ କହିଛନ୍ତି—

"ମାତ୍ର ଯୁଦ୍ଧବୀର ନୁହେଁ ଧର୍ମବୀର
କରକା ନୁହଇ କେବେ ମଣିହାର ।"

ଫକୀରମୋହନ ଧର୍ମରାଜ୍ୟ ପ୍ରବର୍ତ୍ତକ ମନସ୍ୱୀ ବୀରମାନଙ୍କ ମହତ୍ତ୍ୱ ସ୍ପଷ୍ଟ ଭାଷାରେ ବର୍ଣ୍ଣନା କରିଚନ୍ତି । ବିକଶିତ ମାନବ ସଭ୍ୟତାର ଗୌରବମୟ ଇତିହାସ ଏମାନଙ୍କ ଦାନରେ ଗଢ଼ା । ଏଇ ଇତିହାସ ମନୁଷ୍ୟ ହୃଦୟରେ ଚିର ଜୀବନ୍ତ, ଚିର ପ୍ରତିଷ୍ଠିତ । ଆଲେକ୍‌ଜାଣ୍ଡର, ହାନିବାଲ୍; ତିମୁର ବା ନେପୋଲିଅନ୍ ଯେଉଁସବୁ ଯୁଦ୍ଧ ଜିଣିଥିଲେ ତାହା ଲୋକମନରେ ଜୀବନ୍ତ ରହିନାହିଁ । ଇତିହାସର ଜୀର୍ଣ୍ଣ ପୃଷ୍ଠା କେବଳ ତାହାର ସାକ୍ଷୀ ହୋଇ ରହିଅଛି । ମାତ୍ର ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ ଆଦିଙ୍କ ସ୍ଥାନ ନିତ୍ୟ ନୂତନ, ଚିର ଗତିଶୀଳ ମାନବ ହୃଦୟରେ ସର୍ବଦା ପ୍ରତିଷ୍ଠିତ । ମାନବ ସୃଷ୍ଟିର ଶେଷଦିନ ପର୍ଯ୍ୟନ୍ତ ଏହି ପ୍ରତିଷ୍ଠା ଲୁପ୍ତ ହେବ ନାହିଁ । ୯

ନବଯୁଗର ଆଧ୍ୟାତ୍ମିକ ମାନବତାବାଦୀ ଧର୍ମର ଚିତ୍ର ମଧୁସୂଦନ "ନବଯୁଗର ଅଭିଷେକ" କବିତାରେ ସୁନ୍ଦର ଭାବରେ ଫୁଟେଇ ଅଛନ୍ତି । ଯୁଗ ଓ ଧର୍ମ ତାଙ୍କଠାରେ ଏକ ଓ ଅଭିନ୍ନ ପ୍ରତୀତ ହୋଇଛି । ପ୍ରାଚୀନ ଧର୍ମ ବିଶ୍ୱାସରେ ହେତୁ ଜିଜ୍ଞାସା ନ ଥିଲା । ଅନ୍ଧବିଶ୍ୱାସର ଅନ୍ଧକାର ଏହାର ସବୁ ସ୍ତରରେ ବିରାଜିତ କରୁଥିଲା । ଏହା ପ୍ରତ୍ୟକ୍ଷ ଦର୍ଶନ ଓ ବୈଜ୍ଞାନିକ ଅନୁଶୀଳନର ପ୍ରତିକୂଳ ଥିଲା । ମାତ୍ର ଆଧୁନିକ ଧର୍ମ ଆଧୁନିକ ଯୁଗର ସହଚର । ଯୁଗର ବିପୁଳ ଆଶା ଓ ଆକାଂକ୍ଷା ପୂରଣ ଲାଗି ନୂତନ ଧର୍ମର ସାଧନା ଓ ତପସ୍ୟା ଅଭିପ୍ରେତ । ପ୍ରତି କ୍ଷେତ୍ରରେ ମନୁଷ୍ୟତ୍ୱର ମହତ୍ତ୍ୱର ସ୍ଫୁରଣ କରେଇ ଦେବା ଓ ଭବିଷ୍ୟତ ବିକାଶଲାଗି ମନୁଷ୍ୟର ମନରେ ଯଥେଷ୍ଟ ଆଶା ଓ ଭରସା ସୃଷ୍ଟି କରିବା ଏହାର ଲକ୍ଷ୍ୟ । ଏହି ନବଧର୍ମ ଓ ନବଯୁଗକୁ ଧରଣୀର ସମସ୍ତ ଦୁଃଖ ଦୁର୍ଦ୍ଦଶାର ତ୍ରାଣକର୍ତ୍ତା ଶଲ୍ୟଧର ସମ୍ରାଟ ରୂପେ ମଧୁସୂଦନ କଳ୍ପନା କରିଅଛନ୍ତି ।

ଉପରେ ଆଲୋଚନାରୁ ସ୍ପଷ୍ଟ ହୁଏ—କବିମାନେ ଧର୍ମକୁ ଉଦାର ମାନବିକତା ଦୃଷ୍ଟିରୁ ବିଗ୍ରହ କରିଅଛନ୍ତି । ଏହି ମାନବ ଧର୍ମ ପ୍ରଭାବରେ କବିତା ରଚନା କରି ମନୁଷ୍ୟକୁ ପତନ, ନୈରାଶ୍ୟ, ଧର୍ମାନ୍ଧତା ଓ କୁସଂସ୍କାର କବଳରୁ ମୁକ୍ତ କରିବା ଲାଗି ଏମାନେ ଚରମ ପ୍ରୟାସ କରିଅଛନ୍ତି । ଏଥିରେ ସଂଶୟୋତ୍ତୀର୍ଣ୍ଣ ନିଷ୍ଠା ଓ ଗଭୀର ଈଶ୍ୱର ବିଶ୍ୱାସ ପ୍ରକଟିତ ହୋଇଅଛି ।

## ଈଶ୍ୱର ସଂଶୟ ଓ ପ୍ରତ୍ୟୟ

ପ୍ରକୃତ ଈଶ୍ୱର ବିଶ୍ୱାସ, ସଂଶୟବାଦ ଓ ଅନ୍ଧବିଶ୍ୱାସ ଯେଉଁ ଏ ଯୁଗରେ ବିଗ୍ରହ ଧାରା ଯେପରି ପ୍ରକାଶ ପାଉଥିଲା, ମାମୁଁ ଉପନ୍ୟାସରେ ପଣ୍ଡିତ ସଭାର ଆଲୋଚନା ପ୍ରସଙ୍ଗରେ ଫକୀରମୋହନ ଅତି ସୁନ୍ଦର ଆଲୋଚନା କରିଚନ୍ତି । "ଯେଉଁମାନେ କୌଣସି ଭୂପ ଅନୁସନ୍ଧାନ ନକରି କୁସଂସର୍ଗ ବା ଭ୍ରାନ୍ତ ଉପଦେଶ ପ୍ରଭାବରେ କୌଣସି ପ୍ରକାର ପଦାର୍ଥକୁ ଈଶ୍ୱର ଜ୍ଞାନରେ ଉପାସନା କରିଥାନ୍ତି, ସେହିମାନେହିଁ ଅବିଶ୍ୱାସୀ ।... ..ସର୍ପ, ମାର୍ଜାର, କୁମ୍ଭୀର ବା ଅନ୍ୟ

କୌଣସି ତୁଚ୍ଛ ପଶୁ, ବୃକ୍ଷ ବା ତୁଚ୍ଛ ଜଡ଼ ପଦାର୍ଥକୁ ଈଶ୍ୱର ଜ୍ଞାନରେ ଅନ୍ଧଭାବରେ ଉପାସନା କରୁଥିବା ଲୋକର ପୃଥିବୀରେ ଅଭାବ ନାହିଁ । ତୁଳନାରେ ଅନ୍ଧବିଶ୍ୱାସୀଠାରୁ ଜିଜ୍ଞାସୁ ସଂଶୟବାଦୀ ବହୁଗୁଣରେ ଶ୍ରେଷ୍ଠ ପଦାବାଚ୍ୟ ହେବାର ଯୋଗ୍ୟ” । ୧୦ ଏକ ଯୁଗରେ ସହଜ ବିଶ୍ୱାସ ନାମରେ ଅନ୍ଧବିଶ୍ୱାସର ଯେପରି ଘୋର ବିରୋଧ ଏ କାଳରେ ପ୍ରକାଶ ପାଇଥିଲା, ସେଇପରି ନିରନ୍ତର ସଂଶୟବାଦ ଅଥବା ଈଶ୍ୱରଙ୍କ ପ୍ରତି ସଂପୂର୍ଣ୍ଣ ଅନାସ୍ଥା ଭାବ ପୋଷଣକୁ ସମର୍ଥନ କରି ଯାଉ ନ ଥିଲା । ପୁଣି ଫକୀରମୋହନଙ୍କ ଉକ୍ତି ଅନୁଧ୍ୟାନଯୋଗ୍ୟ । “ମାନବ ଶୈଶବ ଅବସ୍ଥାରେ ଈଶ୍ୱରଙ୍କ ସମ୍ବନ୍ଧରେ ଗୋଟିଏ ଅନ୍ଧବିଶ୍ୱାସ କରି ପକାଏ । ତଦନନ୍ତର ଜ୍ଞାନାର୍ଜନରେ ସମର୍ଥ ହେଲେ ନେତି ନେତି ଅର୍ଥାତ ଏହା ଈଶ୍ୱର ନୁହେ, ଏହା ଈଶ୍ୱର ନୁହେ, ଏହିପରି ଘୋର ସଂଶୟରେ ତାହାର ମନ ଦୋଳାୟମାନ ହେଉଥାଏ । ସେଇ ସଂଶୟ ଅବଶେଷରେ ଯେଉଁ ବିଶ୍ୱାସରେ ପରିଣତ ହୁଏ, ତାହାହିଁ ପ୍ରକୃତରେ ଈଶ୍ୱର ବିଶ୍ୱାସ ।” ୧୧

ସଂଶୟବାଦୀ ଅନୁସନ୍ଧିତ୍ସୁ, ଜ୍ଞାନ ପଥର ପଥିକ । ତାହାର ତୃଷ୍ଣା ଅବାରିତ ; ଆକାଂକ୍ଷା ବିପୁଳ । ଜୀବନରେ ପରମ କାମନାର ପରିପୂରଣ ଲାଗି ସେ କାଳର ଅନନ୍ତ ଗତି ପ୍ରବାହରେ ନିଜକୁ ଭସାଇ ଦିଏ । ନିଜର କ୍ଷୁଦ୍ରତା ଓ ବିଶ୍ୱବ୍ରହ୍ମାଣ୍ଡର ବିଶାଳତା ସେ କଳନା କରେ । ସେ ଅନ୍ତରେ ଅନ୍ତରେ ଉପଲବ୍ଧି କରେ—

“କାହିଁ ପରମାଣୁ କ୍ଷୁଦ୍ର ମୁଁ କାହିଁ ବିଶ୍ୱବ୍ରହ୍ମାଣ୍ଡ
ମୋହର ଅନନ୍ତ କାମନା ତହିଁ ବଳି ପ୍ରକାଣ୍ଡ ।” ୧୨

ସଂଶୟବାଦୀ କାହାରିଠାରେ ସହଜରେ ଆତ୍ମ ସମର୍ପଣ କରନ୍ତି ନାହିଁ । ପ୍ରତ୍ୟେକ ବିଷୟରେ ନିଜର ସ୍ୱାଧୀନ ଅନୁସନ୍ଧାନ ଶକ୍ତିର ପରୀକ୍ଷା କରନ୍ତି । କର୍ମ ଓ ଗୁଣ ଭେଦରେ ସମସ୍ୟା ବହୁଳ ବାସ୍ତବ ଜୀବନର ସମୀକ୍ଷା ଭିତ୍ତିରେ ସେ ଈଶ୍ୱରଙ୍କ ଅସ୍ତିତ୍ୱ, ମହିମା, ସ୍ୱରୂପ ଓ ଶକ୍ତିର ବିଚାର କରି ବସନ୍ତି । ସମାଜରେ ମନୁଷ୍ୟ ପ୍ରତି ମନୁଷ୍ୟର ଅବିଚାର, ଅନ୍ୟାୟ ଓ ନିଷ୍ଠୁରତାର ମୂଳ ଅନୁସନ୍ଧାନ କରିବାକୁ ଯାଇ ସେ ସର୍ବଶକ୍ତିମାନ ଈଶ୍ୱରଙ୍କ ମଙ୍ଗଳମୟ ରୂପରେ ସନ୍ଦେହ କରନ୍ତି ।

“ବିଶ୍ୱ ବଣ୍ଟି ବେଳେ ମଧ୍ୟ ଦେଖେ ପକ୍ଷପାତ
କେହି ପାଏ ଇଚ୍ଛ ବଳି କେହି ତୁଚ୍ଛ ହାତ ।
ବୋଲିବ ବା ବାଣ୍ଟି ଦେଉଅଛ କର୍ମଫଳ
ମାତ୍ର ଏହି କଥା ପିଲା ଭଣ୍ଡାଣ କେବଳ । ୧୩

ଯଦି ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଓ ମନୁଷ୍ୟ ସମାଜ ସୃଷ୍ଟି ମୂଳରେ କୌଣସି ମଙ୍ଗଳମୟ ସୃଷ୍ଟି-କର୍ତ୍ତାଙ୍କ ଇଙ୍ଗିତ ବା ଶକ୍ତି କାର୍ଯ୍ୟ କରୁଥାନ୍ତା, ତେବେ ମନ୍ଦ, କୁତ୍ସିତ ଓ ଅନ୍ୟାୟର ସ୍ଥାନ ନ ଥାନ୍ତା ।

ଅନ୍ୟ ଦିଗରୁ ବିଚାର କଲେ, ସଂଶୟବାଦ ଅପରିଣାମ ଦର୍ଶୀ ଯୌବନର ଉଦ୍ଦାମ ଚପଳତା । ଏଥିରେ ସ୍ଥାୟୀ ସୁଖ ନାହିଁ । ଏହା ସ୍ଥିର ପ୍ରଗତିର ବାଧକ । ଏଥିରେ ଏକ ନିଷ୍ଠାର ଦୃଢ଼ତା ବା ଧୈର୍ଯ୍ୟର ଅବକାଶ ନାହିଁ । କେବଳ ନିଜର କ୍ଷଣିକ ପ୍ରତିଷ୍ଠା ଓ ଶକ୍ତି ଯେଉଁ ମନୁଷ୍ୟ କୌଣସି ଏକ ଉଚ୍ଚ ଶକ୍ତିରେ ଆସ୍ଥା ନରଖିଲେ, ବା ସେହି ଶକ୍ତିର କର୍ତ୍ତୃତ୍ୱ ଅସ୍ୱୀକାର କଲେ ସେ ସ୍ୱେଚ୍ଛାଗ୍ରସ୍ତ ହୋଇ ପଡ଼େ । ସାମାନ୍ୟ ବ୍ୟର୍ଥତା ସମ୍ମୁଖରେ ସେ ଭାଙ୍ଗି ପଡ଼ି ନିଜକୁ ଅସହାୟ ମନେ କରେ । ଫକୀରମୋହନଙ୍କ କବିତାର ଭାଷାରେ—

"ତୁମ୍ଭଙ୍କୁ ଯଦ୍ୟପି କରେ କେଭେ ଅପ୍ରତ୍ୟୟ
ନିଖିଳ ବ୍ରହ୍ମାଣ୍ଡ ମୋତେ ଦିଶେ ଶୂନ୍ୟମୟ,
ଉଡ଼ିବୁଲେ ଶୂନ୍ୟେ ତୁମ୍ଭେ ନ ଥିଲେ ମୋ ମନେ,
ଲକ୍ଷ୍ୟହୀନ, ଆଶାହୀନ ବ୍ୟାକୁଳ ଜୀବନେ ।" ୧୪

## ଈଶ୍ୱର—ଅନନ୍ତ ମହିମାମୟ

ଦୁନିଆରେ ଜଣେ କର୍ତ୍ତା । ମନୁଷ୍ୟର ପ୍ରତ୍ୟେକ କର୍ମରେ ତାଙ୍କର କର୍ତ୍ତୃତ୍ୱ । ଯଦି ଦାମ୍ଭିକ ହୋଇ ମନୁଷ୍ୟ ନିଜ କର୍ମରେ ଅହଙ୍କାର ପୋଷଣ କରେ, ତେବେ ସେହି ପଥଚ୍ୟୁତ ହୁଏ ; ଆଦର୍ଶହୀନ ହୁଏ । ସମ୍ମୁଖରେ ଗଭୀର ଅନ୍ଧକାର ଦେଖି ଅନୁତାପ କରେ—

"ବିସୋର ତୁମ୍ଭର କର୍ତ୍ତୃପଣ ତହିଁ
ମଣିଲି ନିଜକୁ ନିଜ ବଳେ ଜୟୀ
ବିସୋର ଥିବାରୁ ତୁମ୍ଭ ନେତୃପଣ
ଘଟିଲା ମୋର ଏ ଦାରୁଣ ସ୍ଖଳନ ।" ୧୫

ମନୁଷ୍ୟ ଅବଶ୍ୟ ପ୍ରତି ନିୟତ ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହୁଏ । ମାତ୍ର ହୃଦୟରେ ଗଭୀର ଈଶ୍ୱର ବିଶ୍ୱାସ ଥିଲେ, ସେ କେବଳ ନିଜର ପୌରୁଷ ଉପରେ ନିର୍ଭର କରେ ନାହିଁ । କୌଣସି ଏକ ମହତ୍ତର ଶକ୍ତିର ନେତୃତ୍ୱ ଉପରେ ନିର୍ଭର କରେ । ଅର୍ଜୁନ କୁରୁକ୍ଷେତ୍ର ଯୁଦ୍ଧର ସମ୍ମୁଖୀନ ହେଲା ଭଳି, ସେ ଏହି ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହୁଏ । ସେ ଅନୁଭବ କରେ ଏକ ମହାନ୍ ଅଦୃଶ୍ୟ ଶକ୍ତିର ଇଙ୍ଗିତ—ନିମିତ୍ତମାତ୍ର ଭବ ସବ୍ୟସାଚିନ୍ । ଅଜ୍ଞାନ ଓ ମୋହ ମାୟାରେ ପଡ଼ି ଯଦି ସେ ଏହି ବାଣୀର ଇଙ୍ଗିତ ବୁଝି ନ ପାରେ, ତେବେ ସ୍ଥାନ ଓ କାଳର ଭୂମା ବ୍ୟାପ୍ତି ନିକଟରେ ଆପଣା କ୍ଷୁଦ୍ରତ୍ୱର ଅବବୋଧ ଲୋଡ଼ା । ଅନନ୍ତ କାଳ, ତାହା ଭିତରେ ମନୁଷ୍ୟର ଜୀବନ କେତେ କ୍ଷଣିକ । ପ୍ରକୃତିର ଅନନ୍ତ ସୌନ୍ଦର୍ଯ୍ୟ, ତାହା ନିକଟରେ ମନୁଷ୍ୟର ଦେହକାନ୍ତି କେତେ ମଳିନ । ବସୁନ୍ଧରାର ଅକଳନ ଐଶ୍ୱର୍ଯ୍ୟ ତୁଳନାରେ ମନୁଷ୍ୟ ସଞ୍ଚିତ ସମସ୍ତ ବିତ୍ତ ଏକାନ୍ତ ତୁଚ୍ଛ ନୁହେ କି ? ୧୬ ଏହି ବିଚାରରେ ଆମ ମନରୁ ଅହଙ୍କାର

ଉଭେଇ ଯାଏ । ହୃଦୟରେ ଏକ ସର୍ବଶକ୍ତିମାନ, ସର୍ବବ୍ୟାପୀ ମହତ୍ତର ସତ୍ତାର ଧାରଣା ସ୍ପଷ୍ଟ ହୁଏ । ସେ ସତ୍ତାହିଁ ଈଶ୍ୱର । ସେ ଅନନ୍ତ ମହିମାମୟ ।

କେବଳ କ୍ଷୁଦ୍ରତ୍ୱରୁ ନୁହେଁ, ନିଜର ଅକ୍ଷମତାରୁ ମଧ୍ୟ ମନୁଷ୍ୟ ମନରେ ଈଶ୍ୱର ଧାରଣା ଦୃଢ଼ ହୁଏ । କଥା ଅଛି ମଣିଷ ଭାବିଲେ ଈଶ୍ୱର ଭାଙ୍ଗି ଦିଅନ୍ତି ; ମଣିଷ ଗଢ଼ିଲେ ଈଶ୍ୱର ଦିଅନ୍ତି ନାହିଁ । ମନୁଷ୍ୟ ଯଦି ନିଜ ଇଚ୍ଛାକୁ ସବୁବେଳେ କାର୍ଯ୍ୟରେ ପରିଣତ କରିପାରୁଥାନ୍ତା, ବା ଇଚ୍ଛା ଅନୁସାରେ ଫଳଲାଭ କରି ପାରୁଥାନ୍ତା, ତେବେ ସେ ନିଜ କର୍ତ୍ତୃତ୍ୱରେ ଅବିଶ୍ୱାସ ଆଣନ୍ତା ନାହିଁ । ମାତ୍ର ଏହା ସମ୍ଭବ ହୁଏ ନାହିଁ । ମନୁଷ୍ୟ ନିଜର ସମସ୍ତ ଶକ୍ତି, ସମସ୍ତ କାମନା ବିନିମୟରେ ଯାହା ପାଇବାକୁ ଚାହେଁ, ତାହା ଅନେକ ସମୟରେ ପାଏ ନାହିଁ । ଏଇପରି ଭାବରେ କାମନା ଭଙ୍ଗ ଘଟିଲେ, ତାହାର ପ୍ରାଣ ବିକଳ ହୁଏ । ବିଧୁର ପ୍ରାଣ ସାନ୍ତ୍ୱନା ଖୋଜେ । ଏତେବେଳେ ଯଦି ସେ କୌଣସି ମହତ୍ତର ସତ୍ତାର ଇଚ୍ଛାଶକ୍ତି ଅସ୍ୱୀକାର କରେ, ତେବେ ତାହାର ଜୀବନ ଦୁର୍ବିସହ ହୁଏ । ଏହି ସତ୍ତାହିଁ ଈଶ୍ୱର, ନିୟତି । ତାଙ୍କ ଇଚ୍ଛା ଅଲଙ୍ଘନୀୟ ।

"ମନାସକ୍ତି ମହାରୁଦ୍ର ଯାହା ମନେ, ନିୟତି ରୂପେ ତା ଫଳେ ତ୍ରିଭୁବନେ
ଶକ୍ତି ନାହିଁ ବସ୍ତୁ କାହାର ଜଗତେ, ନିୟତିକି ନେବ ନିଜ ଇଚ୍ଛାମତେ ।"୧୭

ଯେପରି ନିୟତି ସେଇପରି କାଳ । ମନୁଷ୍ୟ କାଳର ନିମିତ୍ତ ମାତ୍ର । ଗୋଟିଏ ମୁହୂର୍ତ୍ତରେ ଯାହା ଘଟିଯାଏ, ତାକୁ ଅଘଟନ କରିବା କ୍ଷମତା କାହାରି ନାହିଁ । ଗୈରଗଙ୍କଦ୍ୱାରା ପ୍ରତ୍ୟାଖ୍ୟାତା ନନ୍ଦିକା କେତେ ଆତୁରରେ ଗୋଟିଏ ପ୍ରହର ପଛକୁ ଫେରି ଯିବାକୁ ଚାହିଁ ନ ଥିଲା । ମାତ୍ର ଏହା କେବଳ ରାଜବାଳା ନନ୍ଦିକା ପକ୍ଷରେ ନୁହେଁ, ଜଗତର ଶ୍ରେଷ୍ଠ ବୀର, ଶ୍ରେଷ୍ଠ ମନୀଷୀଙ୍କ ପକ୍ଷରେ ଅସମ୍ଭବ । କାଳ ମୁଖରେ ମନୁଷ୍ୟର ଅବସ୍ଥା, ଯେମିତି ପ୍ରପାତ ମୁଖରେ ତୃଣ—

"ମାତ୍ର ଭଜନ କି ଭବେ କେହି ପ୍ରାଣୀ
ଭାସିବାକୁ କାଳ ପ୍ରବାହେ ଉଜାଣି
କାଳସ୍ରୋତେ ଭାଗ୍ୟବାୟୁ ବହେ ପୁଣ
ଛାର ନର ତହିଁ ପ୍ରପାତର ତୃଣ ।" ୧୮

ଜଗତରେ ମନୁଷ୍ୟର ସମସ୍ତ ଜୀବନ ଓ କର୍ମ କାଳ ପ୍ରବାହର ଅଦୃଷ୍ଟ ଇଙ୍ଗିତରେ ନିୟନ୍ତ୍ରିତ । ରଙ୍ଗଭୂମିରେ ସୂତ୍ରଧରର ନିୟନ୍ତ୍ରଣ ଭଳି, କାଳର ଏଇ ନିୟନ୍ତ୍ରଣରେ ସୀମା ଲଙ୍ଘନ କରିବା କାହାରି ପକ୍ଷରେ ସମ୍ଭବ ନୁହେଁ । ଜୀବନ ରଙ୍ଗଭୂମିରେ ସମସ୍ତେ ନାୟକ ବା ନେତା ରୂପେ ଶ୍ରେଷ୍ଠ ଭୂମିକାରେ ଅବତୀର୍ଣ୍ଣ ହେବାକୁ ଚେଷ୍ଟା କରନ୍ତି । ମାତ୍ର ସେମାନଙ୍କ ପ୍ରୟାସର ଫଳ ନିଜ ଇଚ୍ଛା ଅନୁସାରେ ନୁହେଁ, କାଳର ଇଙ୍ଗିତରେ ମିଳେ । ୧୯ ଏହି କାଳ ବା ନିୟତିଠାରେ ମନୁଷ୍ୟ ଈଶ୍ୱରଙ୍କ ଅନନ୍ତ ମହିମାମୟ ରୂପ ଆରୋପ କରେ । ଏଇ ମହିମା କବି କେବଳ ଜୀବନରେ ନୁହେଁ ସମସ୍ତ ପ୍ରକୃତିରେ ମଧ୍ୟ ଉପଲବ୍ଧି କରନ୍ତି ।

## ପ୍ରକୃତି ପରମେଶ୍ୱର

ବୈଦିକ ଋଷିଙ୍କ ଭଳି ମଧୁସୂଦନ ପ୍ରକୃତିର ଉପାସକ । ତାଙ୍କଠାରେ ପ୍ରକୃତିହିଁ ପରମେଶ୍ୱରଙ୍କ ପ୍ରତିମୂର୍ତ୍ତି । ପ୍ରକୃତିର ଦାନ ମନୁଷ୍ୟକୁ ପରମେଶ୍ୱରଙ୍କ ପ୍ରତ୍ୟକ୍ଷ ଦାନ । ସୁନ୍ଦର ସଂସାର ପରମେଶ୍ୱରଙ୍କ ରଚନା । ସୂର୍ଯ୍ୟ, ଚନ୍ଦ୍ର, ତାରା ତାଙ୍କରି ଇଚ୍ଛାରେ ଜ୍ୟୋତି ବିକିରଣ କରିଥାନ୍ତି । ମନୁଷ୍ୟର ଉପଭୋଗ ପାଇଁ ଧରିତ୍ରୀ ନାନା ଫୁଲଫଳ ସୃଷ୍ଟି କରିଚନ୍ତି । ଅଗ୍ନିରେ ତେଜ, ବାୟୁରେ ଜୀବନ ଦାନକାରୀ ଶକ୍ତି—ଏହିଭଳି ସମସ୍ତ ପ୍ରକୃତିରେ ପରମେଶ୍ୱରଙ୍କ ଅକୁଣ୍ଠ ଦାନ ମନୁଷ୍ୟ ଓ ଜୀବ ଜଗତ ପ୍ରତି ଅଭିପ୍ରେତ । ଦିନ, ରାତି, ସକାଳ, ସନ୍ଧ୍ୟା, ଋତୁଚକ୍ରର ଆବର୍ତ୍ତନ ସର୍ବତ୍ର ଶୋଭାମୟ ଓ ଦୟାମୟ ରୂପରେ ସେ ବିଦ୍ୟମାନ । ତାଙ୍କର ସ୍ପର୍ଶରେ ମନୁଷ୍ୟର ଆତ୍ମା ପୁଲକିତ, ଶକ୍ତିରେ ଦେହ ପୁଷ୍ଟ ହେଉଅଛି । ଛନ୍ଦମାଳାର ବହୁ କବିତାରେ ଋଷିପ୍ରାଣ କବି ମଧୁସୂଦନ ଏହିଭାବ ପ୍ରକାଶ କରିଛନ୍ତି ।

'ଏ ସୃଷ୍ଟି ଅମୃତମୟ' କବିତାରେ ମାନବାତ୍ମାର ବିକାଶ ଲାଗି ପ୍ରକୃତିର ଦାନ କବି ଅତି ଅକୁଣ୍ଠ ଚିତ୍ତରେ ସ୍ୱୀକାର କରିଛନ୍ତି । ପ୍ରକୃତିର ପ୍ରାଣ ସ୍ପର୍ଶରେ ଆସିଲେ ମୃତ୍ୟୁ ଭୟ ଦୂରୀଭୂତ ହୁଏ । ଉଦାର ଆକାଶ ମନୁଷ୍ୟର ହୃଦୟକୁ ଉଦାର କରେ । ମହାପାରାବାରର ଉଦାର ଛନ୍ଦ ଶୁଣି ଅମ ପ୍ରାଣରେ ଶିହରଣ ଖେଳିଯାଏ । ସୁଉଚ୍ଚ ପର୍ବତ ହୃଦୟକୁ ଉନ୍ନତ କରେ । ଶୀତଳ ଶାନ୍ତ ମଳୟ, ଶ୍ୟାମଳ କ୍ଷେତ୍ର, ବିଚିତ୍ର ତରୁଲତା, ନିତ୍ୟ ବହମାନ ନଦନଦୀ ସମସ୍ତେ ନାନା ଭାବରେ ମନୁଷ୍ୟର ହୃଦୟମନକୁ ପୁଷ୍ଟ ଓ ବିକଶିତ କରନ୍ତି । ସର୍ବତ୍ର ସବୁ ବିଭାବରେ ପ୍ରକୃତି ଅମୃତମୟ ରୂପରେ ବିଦ୍ୟମାନ । ଏହି ଅସରନ୍ତି ଅମୃତର ଉତ୍ସ ହିଁ ପରମାତ୍ମା ପରମେଶ୍ୱର । 'ଋଷିପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟ ଉତ୍ସବ' କବିତାରେ କବିଙ୍କର ଏ ଅନୁଭୂତି ବଡ ଗମ୍ଭୀର । ଏଠାରେ କବି ପ୍ରକୃତିକୁ ଚିନ୍ମୟ ପରମେଶ୍ୱରଙ୍କ ପ୍ରାଣ ପ୍ରକାଶ ରୂପରେ ଦେଖିଚନ୍ତି । ସେ ଏହି ପ୍ରକୃତିରେ ନିଜ ପ୍ରାଣର ଅଭେଦ କଳ୍ପନା କରିଚନ୍ତି ; ପ୍ରକୃତି ସହିତ ପ୍ରାଣ ବିନିମୟ କରିଛନ୍ତି ।

> "ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ
> ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ
> ଦୁହେଁ ମିଶି କି ଅଦ୍ଭୁତେ ଦିବ୍ୟ ପରିଣୟେ
> ପରିଣତ ସ୍ୱୟଂବରା କୁମାରୀ ହୃଦୟେ ।" ୨୦

## ଆତ୍ମା ଓ ପରମାତ୍ମା

ପ୍ରାଚୀନ ଭାରତର ଦର୍ଶନ ଦୃଷ୍ଟିରେ ଆତ୍ମା ଓ ପରମାତ୍ମା ସମ୍ବନ୍ଧ ବିଚାର ଏକ ମୁଖ୍ୟ ସ୍ଥାନ ଅଧିକାର କରିଅଛି । ପରମାତ୍ମା ସର୍ବବ୍ୟାପୀ ; ଜୀବାତ୍ମା ଏହି ପରମାତ୍ମାର ଏକ

କ୍ଷୁଦ୍ର ସତ୍ତା । ଏଇ ସତ୍ତା ବିଦ୍ୟମାନ ଥାଏ ବୋଲି ମନୁଷ୍ୟ ମନୁଷ୍ୟରେ ଗଣାଯାଏ । ପରମାତ୍ମା ସହିତ ଜୀବାତ୍ମାର ସମ୍ବନ୍ଧ ଅତି ନିବିଡ଼ । ଏକର ଅଭାବରେ ଅନ୍ୟର ସ୍ଥିତି କଳନା କରିବା ଅସମ୍ଭବ । ସାଧାରଣ ହେତୁବାଦୀ ଦୃଷ୍ଟିରେ ଭାବି ବସିଲେ ଏପରି ବିଚାର ବଡ଼ ରହସ୍ୟମୟ ମନେ ହୁଏ । ମାତ୍ର ବିଶ୍ୱାସ—ସର୍ବସ୍ୱ ହୃଦୟରେ ଏହା ଏକ ପ୍ରାକୃତିକ ସମ୍ପର୍କ ଭଳି ସ୍ପଷ୍ଟ ଓ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ମଧୁସୂଦନଙ୍କ 'ଆତ୍ମ ସମର୍ପଣ' ଓ 'ଜୀବନ ଚିନ୍ତା' ପ୍ରଭୃତି କବିତାରେ ଆତ୍ମା ଓ ପରମାତ୍ମାର ସମ୍ବନ୍ଧ କଳନା ଏଇପରି ବିଶ୍ୱାସ ଉପରେ ପ୍ରତିଷ୍ଠିତ । ସିନ୍ଧୁ ସହିତ ଊର୍ମି, ଆକାଶ ସହିତ ପକ୍ଷୀ, ପ୍ରାଣର ଜନନୀ ସହିତ ଶିଶୁର ସମ୍ପର୍କ ଯେପରି ନିବିଡ଼, ନିକଟ ଓ ସ୍ୱତଃ ପ୍ରକାଶିତ ମଧୁସୂଦନଙ୍କ ଦୃଷ୍ଟିରେ ସେଇପରି ପରମାତ୍ମା ସହିତ ଜୀବାତ୍ମାର ସମ୍ବନ୍ଧ ନିବିଡ଼ ଓ ନିତ୍ୟ ପ୍ରକାଶିତ । କେବଳ ଆତ୍ମା ଓ ପରମାତ୍ମାର ସମ୍ବନ୍ଧ ନୁହେଁ, ସ୍ୱରୂପ ଓ ଆଧେୟ ମଧ୍ୟ କବି ବର୍ଣ୍ଣନା କରିଛନ୍ତି । ପରମାତ୍ମାର ନିଳୟ ଅମୃତମୟ । ତାହା ଚିରନ୍ତନ ପୁଣ୍ୟଜ୍ୟୋତିରେ ବିଭୂଷିତ । ରୋଗ, ମୃତ୍ୟୁ, ପାପ ଆଦିର ଅବସାଦକର ଚିନ୍ତା ସେଠାରେ ସୁଦୂର ପରାହତ । ଅନ୍ୟ ପକ୍ଷରେ ପଙ୍କରେ ପଦ୍ମ ଫୁଟିଲା ଭଳି ଶରୀର ରୂପୀ ମାଟି ପିଣ୍ଡରେ ଆତ୍ମା ଶୋଭାପାଏ । ଚତୁର୍ଦ୍ଦିଗର କଳୁଷ, ପଙ୍କ ଓ ଅନ୍ଧକାର ଭିତରେ ଥିଲେବି ଆତ୍ମା ସର୍ବଦା ପରମାତ୍ମା ପ୍ରତି ଉନ୍ମୁଖ ହୋଇ ରହିଥାଏ । ପଦ୍ମ ସୂର୍ଯ୍ୟଙ୍କ କିରଣରେ ପ୍ରସ୍ଫୁଟିତ ହେଲା ଭଳି, ଜୀବାତ୍ମା ପରମାତ୍ମା ଜ୍ୟୋତିରେ ବିକଶିତ ହୁଏ ।

ପୁରୁଷ ସୂକ୍ତରେ ଯେପରି ପରମାତ୍ମାଙ୍କ ରୂପ କଳ୍ପିତ ହୋଇଛି ଫକୀରମୋହନ ତାହା ଅବଲମ୍ବନ କରିଛନ୍ତି । ପରମାତ୍ମା ହିଁ ଧ୍ରୁବ, ଶିବ ଓ ସତ୍ୟ । ସେ ଏକ ଓ ଅଦ୍ୱିତୀୟ । ତାଙ୍କର ପ୍ରତି ଲୋମରେ କୋଟି କୋଟି ବିଶ୍ୱ ବିରାଜିତ । ସେ ସମସ୍ତ ଜୀବ ସୃଷ୍ଟିରେ ଜୀବନ ଓ ରୂପ ସୃଷ୍ଟିରେ ସୌନ୍ଦର୍ଯ୍ୟ ରୂପରେ ପ୍ରକାଶିତ । ପରମାତ୍ମାଙ୍କ ଜ୍ୟୋତି ନେତ୍ରରେ ଧାରଣ କରି ମଧ୍ୟ ମନୁଷ୍ୟ ତାଙ୍କର ରୂପ ଦେଖି ପାରେ ନାହିଁ । ତାଙ୍କର ଆଦେଶରେ ପରିଚାଳିତ ହୋଇ ମଧ୍ୟ ତାଙ୍କର ମହିମା ହୃଦୟରେ ଉପଲବ୍ଧି କରିପାରେ ନାହିଁ । ମାତ୍ର ଅଭାବ, ଦୁଃଖ ଓ ଘନୀଭୂତ ବିପଦ ସମ୍ମୁଖରେ ମନୁଷ୍ୟ ଏହି ଅନନୁଭୂତ ପରମ ସତ୍ତା ନିକଟରେ ଆତ୍ମ ସମର୍ପଣ କରେ ।"

ଜଡ଼ ଶରୀର କେବଳ ଜନ୍ମ ମୃତ୍ୟୁର ଅଧୀନ । ମାତ୍ର ଆତ୍ମା ଅମର । ଏହା ଘଟରୁ ଘଟାନ୍ତରରେ ଅଧିଷ୍ଠିତ ହୁଏ ।

### ଈଶ୍ୱର—ଅସାଂପ୍ରଦାୟିକ

ଈଶ୍ୱର, ଆତ୍ମା ଓ ପରମାତ୍ମାଙ୍କ ସମ୍ବନ୍ଧରେ କବିମାନଙ୍କର ଧାରଣା ଏକାନ୍ତ ଉପଲବ୍ଧିର ବିଷୟ ଥିଲା । କୌଣସି ପ୍ରକାର ସାମ୍ପ୍ରଦାୟିକ ଧର୍ମଧାରାର ନିୟନ୍ତ୍ରଣରେ ଏମାନେ ବିଶ୍ୱାସୀ ନ ଥିଲେ । କୌଣସି ଶାସ୍ତ୍ରର ନିର୍ଦ୍ଦେଶକୁ ବିନା ବିଚାରରେ ଏମାନେ ଗ୍ରହଣ କରୁ ନ ଥିଲେ ।

ସମାଜ ଚଳଣିରେ ଅହେତୁକ ଆଗ୍ରହନିଷ୍ଠା ଓ ପରମ୍ପରାର ବନ୍ଧନ ଏମାନେ ସ୍ୱୀକାର କରୁ ନ ଥିଲେ । ମାନବ ହୃଦୟହିଁ ଥିଲା ଏମାନଙ୍କର ଶ୍ରେଷ୍ଠ ଶାସ୍ତ୍ର । ମୁକ୍ତ ପ୍ରକୃତି, ସଂଗ୍ରାମ ମୁଖୀ ଜୀବନ - ଏ ଉଭୟର ସଂସ୍ପର୍ଶ ଓ ସଙ୍ଘାତରେ ମାନବ ହୃଦୟରେ ଯେଉଁସବୁ ଦୁର୍ଲ୍ଲଭ ଅନୁଭୂତି ରାଜ୍ଜର ସଂଗ୍ରହ ହୁଏ, ତାହାହିଁ ଧର୍ମ ଓ ଜୀବନରେ ପ୍ରତିଫଳିତ କରିବା ଏମାନଙ୍କର ଆଦର୍ଶ ଥିଲା । ଧର୍ମ ଶାସ୍ତ୍ର କେଉଁ ରୂପରେ ଭଗବାନଙ୍କ ମହିମା ବର୍ଣ୍ଣନା କରିଛି ତାହା ଏମାନଙ୍କ ନିକଟରେ ବିଶେଷ ମୂଲ୍ୟବାନ ନ ଥିଲା । ତାର୍କିକ ଭଗବାନଙ୍କ ବିଷୟରେ ଯେଉଁ ଯୁକ୍ତି ପ୍ରତିପାଦନ କରେ ତାହାର ବିଶ୍ଳେଷଣ ଏମାନେ ଅନାବଶ୍ୟକ ମନେ କରୁଥିଲେ । ମନୁଷ୍ୟ ରୋଗରେ, ଶୋକରେ, ବିପଦରେ ପଡ଼ି ହୃଦୟର ସମସ୍ତ ଆଗ୍ରହ ଓ ଆକୁତି ଠୁଳକରି ଯେଉଁ ମହାନ୍ ସର୍ବ ବ୍ୟାପୀ ସତ୍ତା ନିକଟରେ ଆତ୍ମସମର୍ପଣ କରେ, ଏମାନେ ଭଗବାନଙ୍କୁ ସେହି ରୂପରେ ଅନୁଭବ କରିଅଛନ୍ତି । ଏହି ଅନ୍ତରୋପଲବ୍ଧିର ମହତ୍ତ୍ୱ ବ୍ରାହ୍ମଧର୍ମର ଅନ୍ୟତମ ପ୍ରତିଷ୍ଠାତା ମହର୍ଷି— ଦେବେନ୍ଦ୍ରନାଥ ଠାକୁରଙ୍କ ବାଣୀରେ ପ୍ରକାଶିତ ହୋଇଅଛି । "ପବିତ୍ର ହୃଦୟରେହିଁ ବ୍ରହ୍ମଙ୍କ ଅଧିଷ୍ଠାନ । ପବିତ୍ର ହୃଦୟରେହିଁ ବ୍ରହ୍ମଧର୍ମର ପତ୍ତନ ଭୂମି । ସେହି ହୃଦୟ ସହିତ ଯେଉଁଠି ଉପନିଷଦର ମେଳ, ସେହି ବାକ୍ୟ ଆମେ ଗ୍ରହଣ କରିପାରୁଁ । ଆଉ ହୃଦୟ ସହିତ ଯାହାର ମେଳ ନାହିଁ, ସେ ବାକ୍ୟ ଆମେ ଗ୍ରହଣ କରି ପାରିବୁ ନାହିଁ ।" ୨୨

ମନୁଷ୍ୟର ଧର୍ମ ବିଶ୍ୱାସ ସହିତ ହୃଦୟ ସମ୍ପର୍କ ଫକୀରମୋହନ 'ମା ମୁଁ' ଉପନ୍ୟାସରେ ସୁନ୍ଦର ବର୍ଣ୍ଣନା କରିଅଛନ୍ତି । ପାଣିକୁ ଯିଏ ଯେଉଁ ନାମରେ ଡାକୁ ନା କାହିଁକି ତୃଷାର୍ତ୍ତ ଯେତେବେଳେ ତାହା ପାନ କରେ ସେତେବେଳେ ତାହାର ହୃଦୟ ଅପୂର୍ବ ଶାନ୍ତିରେ ପୂରିଉଠେ । ଏହାହିଁ ପାଣୀୟର ସାର୍ଥକତା । ସେହିପରି ଭଗବାନଙ୍କ ଉପଲବ୍ଧି । ପ୍ରକୃତ ପବିତ୍ର ହୃଦୟରେ ଈଶ୍ୱରଙ୍କ ଅନନ୍ତ, ଅସୀମ, ଅପାପବିଦ୍ଧ ରୂପର ଉପଲବ୍ଧି ଏକ ପ୍ରକାର ହୋଇଥାଏ । ୨୩ ଭଗବାନଙ୍କ ନାମରେ ଓ ତାଙ୍କର ଉପାସନାରେ ସମ୍ପ୍ରଦାୟଗତ ସ୍ୱାତନ୍ତ୍ର୍ୟ ଘେନି ଯୁକ୍ତି ଓ ମତାନ୍ତର ନିରର୍ଥକ । ସମଗ୍ର ସୃଷ୍ଟିରେ ଓ ପ୍ରକୃତିରେ ତାଙ୍କର ଅନୁପମ ସତ୍ତା ବିଦ୍ୟମାନ । ଏହା ଯୁକ୍ତିର ନୁହେ, ଅନୁଭବର ବସ୍ତୁ । ସେହି ହେତୁରୁ ଈଶ୍ୱର ସମ୍ପୂର୍ଣ୍ଣ ଅସାମ୍ପ୍ରଦାୟିକ ।

## ଆଧୁନିକ ଯୁଗରେ ଆଶାବାଦର ଅର୍ଥ ( ୨୪ )

ଆଶାର ମାଦକତା ଓ ନୈରାଶ୍ୟର ବ୍ୟଥା ମାନବ ପ୍ରାଣର ନିତ୍ୟ ଅନୁଭବର ବସ୍ତୁ । ବ୍ୟର୍ଥ ପ୍ରାଣରେ ଆଶା ପ୍ରବାହିତ କରାଏ ଆନନ୍ଦର ସ୍ରୋତ । ଗୀତାର କର୍ମଯୋଗରେ ଜୀବନକୁ ଆନନ୍ଦମୟ ରୂପେ ଦେଖିବାର ଇଙ୍ଗିତ ବିଦ୍ୟମାନ । ଆନନ୍ଦରେ ବେଦନାର ରାଗିଣୀ ମାନବ ଜୀବନରେ ଏକ ବିୟୋଗାନ୍ତ ଭୂମିକା । ବକୁଳ ଓ ବଜ୍ର, କୁସୁମ ଓ କଣ୍ଟକ —

ଉଭୟ ଜୀବନର ବାସ୍ତବତା । ମନୁଷ୍ୟ ସଦା ସୁଖ କାମନା କରେ, ଦୁଃଖର କଣ୍ଟା ଏଡ଼ି ଯିବାକୁ ଚାହେଁ । ଏହି ଚତୁର କୌଶଳହିଁ ଗୀତାର କର୍ମଯୋଗ ।

ପାଶ୍ଚାତ୍ୟ ଜଗତର ଆଧୁନିକ ଅସ୍ତିତ୍ୱବାଦୀମାନେ (Existentialist) ନୈରାଶ୍ୟ-ବାଦୀ । ସେମାନଙ୍କ ମତରେ ଆଶାବାଦ ଏକ ମାରାତ୍ମକ ଭ୍ରାନ୍ତି । ଏହା ଜୀବନ ସଂଗ୍ରାମରେ ଆମର ଭୂମିକା ଦୁର୍ବଳ କରିଦିଏ । ଆଶାବାଦୀ ବାସ୍ତବଜୀବନର କଠୋରତାରେ ରଙ୍ଗବୋଳି ତାକୁ ଭ୍ରାନ୍ତରୂପେ ଚିତ୍ରକରେ । ଏହା ଏକ ଆଦିମ ବିଶ୍ୱାସ, ଦୁର୍ବଳର ସୃଷ୍ଟି । ଯେ ଆଶା ମୋଦକରେ ପେଟ ଭରିବାକୁ ଯାଏ ସେ ଭୋକରେ ମରେ ।

ମାତ୍ର ମାନବପ୍ରେମୀ ଭାବୁକ ଓ କବିମାନେ ସବୁଯୁଗରେ ମାନବ ଜୀବନରେ ଆଶାର ସାର୍ଥକତା ଉପଲବ୍ଧି କରିଛନ୍ତି । ପାଣ୍ଡୋରା ନାଟ୍ୟକାବ୍ୟରେ ଗ୍ୟଟେ ଭବିଷ୍ୟତ ନିର୍ମାତା ପ୍ରୋମିଥିଅସ୍‌ର କନ୍ୟାରୂପେ ଆଶାର ଚିତ୍ର କରିଅଛନ୍ତି । ଆଶା ଆହ୍ଲାଦଦାୟିନୀ । ମହାନ୍ ଲକ୍ଷ୍ୟ ପଥରେ ଏହି ଆଶା ଆମକୁ ଚଳେଇ ନିଏ—ଏହା ଥିଲି ଗ୍ୟଟେଙ୍କର ଅବିଚଳିତ ବିଶ୍ୱାସ । ଆଶା ମନୁଷ୍ୟର ସୁପ୍ତ ଚେତନା ଶକ୍ତି ଜାଗ୍ରତ କରେ, ମଙ୍ଗଳର ବାଣୀ ବହନ କରି ଆଣି ଜୀବନର ବିକାଶ ପଥ ନିର୍ମାଣ କରେ । ଏହା ଶକ୍ତି ଓ ସାନ୍ତ୍ୱନାର ଉତ୍ସ ।

ପ୍ରାଚୀନ ଯୁଗର ପାଶ୍ଚାତ୍ୟ ଦାର୍ଶନିକ ସେଣ୍ଟ ଆକୁଇନାସ୍ ଆଶାକୁ ପ୍ରାକୃତିକ ଓ ଅତିପ୍ରାକୃତ—ନେଚୁରାଲ ଓ ସୁପାର ନେଚୁରାଲ ଏହି ଭେଦରେ ଦୁଇ ସ୍ୱତନ୍ତ୍ର ଭୂମିକାରେ ଦେଖୁଥିଲେ । ମନୁଷ୍ୟ ପ୍ରାଣର ପ୍ରାକୃତିକ ଆଶା ଧର୍ମ ସୃଷ୍ଟ ଅତିପ୍ରାକୃତ ଆଶା ଦ୍ୱାରା ପୁଷ୍ଟ ହୁଏ ।

ବସ୍ତୁତଃ ଆଶା ମନୁଷ୍ୟ ମନରେ ଧର୍ମ ଭୟ ଭଳି ଏକ ଆଦିମ ବିଶ୍ୱାସ ନୁହେଁ । ଏହା ଜୀବନକୁ ଆସ୍ତିବାଚକ ଦୃଷ୍ଟିରେ ଦେଖିବା ଲାଗି ଏକ ସହଜ ପନ୍ଥା । ମୋହମୁକ୍ତ ବୁଦ୍ଧି ଓ ବିକଶିତ ପ୍ରଜ୍ଞା ବଳରେ ମନୁଷ୍ୟ ନିଜ ଜୀବନରେ ଆଶା ଓ ଆନନ୍ଦର ସାର୍ଥକତା ଅନୁଭବ କରେ ।

## ଆଶାବାଦ ଓ ଆନନ୍ଦମୟ ଜଗତ

ପ୍ରକୃତିରେ ଓ ମାନବ କରଣୀରେ ଆନନ୍ଦର ଆସ୍ୱା ଉପଲବ୍ଧି କରିବା ଏକା କବିର କର୍ମ । ୨୫ ଏ ଉପଲବ୍ଧି କବିଙ୍କ ଅନ୍ତର୍ଲୋକର ଭାବ ଜଗତର ବସ୍ତୁ । ବାହାରେ କବି ଯେପରି ଜଗତ ଓ ମନୁଷ୍ୟସମାଜକୁ ଦେଖନ୍ତି, ସବୁବେଳେ ତାହା ହୁଏତ ସୁନ୍ଦର ଓ ସରସ ନୁହେ । ବାହାର ଜଗତରେ ବହୁ କୁତ୍ସିତ ରୂପ, ବହୁ କୁପ୍ରଥା ଓ କଳଙ୍କ ଦେଖିବାକୁ ମିଳେ । ଏହା ସତ୍ୟ । ଭ୍ରାନ୍ତ ଦାର୍ଶନିକ ଦୃଷ୍ଟିରେ ବାସ୍ତବ ଜଗତର କଳୁଷ କାଳିମାକୁ ବି ସବୁଠାରୁ ସ୍ପୃହଣୀୟ ମନେ କରି ଅଖଣ୍ଡ ସୁଖସ୍ୱପ୍ନରେ ବିହାର କରିବା ପ୍ରକୃତ ଆଶାବାଦର ଧର୍ମ ନୁହେ । ମାତ୍ର ମନୁଷ୍ୟର ଚିତ୍ତବୃତ୍ତିର ଯେଉଁ ଅଂଶ ତାକୁ ସର୍ଜନା ଶକ୍ତି ଯୋଗାଏ

ତାହାହିଁ ଆଶା ଓ ଆନନ୍ଦ । ଏହି ଆଶାହିଁ ମନୁଷ୍ୟଠାରେ ପ୍ରକାଶିତ ଐଶ୍ୱରିକ ଶକ୍ତି । ପ୍ରାଚୀନ ଭାରତୀୟ ଦର୍ଶନର ଧାରଣାରେ ଈଶ୍ୱରହିଁ ପରିପୂର୍ଣ୍ଣ ଆନନ୍ଦମୟ ମୂର୍ତ୍ତି । ଉପନିଷଦର ଭାଷାରେ—'ଆନନ୍ଦରୂପମମୃତଂ ଯଦ୍‌ବିଭାତି'—ପରମେଶ୍ୱର ଆନନ୍ଦ ଅମୃତ ରୂପରେ ବିଲସିତ । ପୁଣି, 'ଆନନ୍ଦାଦ୍ଧ୍ୟେବ ଖଲ୍ୱିମାନି ଭୂତାନି ଜାୟନ୍ତେ' ଏଇ ଆନନ୍ଦରୁ ଅଖିଳ ଜୀବଜଗତର ସୃଷ୍ଟି ।

'ଆତ୍ମ ସମର୍ପଣ କବିତାରେ ମଧୁସୂଦନ ପରମେଶ୍ୱରଙ୍କୁ ପରିପୂର୍ଣ୍ଣ ଆନନ୍ଦମୟ ମୂର୍ତ୍ତି ଓ ମନୁଷ୍ୟକୁ ଏଇ ଆନନ୍ଦର ସନ୍ତାନ ରୂପେ ବର୍ଣ୍ଣନା କରିଅଛନ୍ତି । 'ଜଗତ ସୁଖମୟ' କବିତାରେ ଫକୀରମୋହନ ମଧ୍ୟ ପରମେଶ୍ୱରଙ୍କୁ ଏହିଭଳି ଆନନ୍ଦମୟ ରୂପରେ ଦେଖିଅଛନ୍ତି । ଜଗତର ସମସ୍ତ ଆନନ୍ଦର ଉତ୍ସ ପରମେଶ୍ୱର । ତାଙ୍କଠାରୁ ବିକୀର୍ଣ୍ଣ ଆନନ୍ଦକଣା ସାରା ଜଗତରେ ସୌନ୍ଦର୍ଯ୍ୟ ଓ ପୁଲକ ସଞ୍ଚାର କରୁଛି । ଅନେକ ସମୟରେ ଅକୃତଜ୍ଞ ମନୁଷ୍ୟ ଭଗବାନଙ୍କ ଇଙ୍ଗିତ ବୁଝେନାହିଁ । ସେଥି ଲାଗି ଜୀବନକୁ ଦୁର୍ବହ ମନେକରେ । ମାୟାବାଦୀ ଦାର୍ଶନିକ ମାନେ ଜଗତର ସୁଖକୁ ମିଥ୍ୟା ବୋଲି ପ୍ରଚାର କରନ୍ତି । ସେମାନେ ମନୁଷ୍ୟର ମନକୁ ସଂସାର ବିମୁଖ କରିଦିଅନ୍ତି । ନାସ୍ତିକଙ୍କ ମତରେ କର୍ମହିଁ ଜୀବନ ଧାରଣର ମୂଳମନ୍ତ୍ର । କେବଳ କର୍ମ ସୂତ୍ରରେ ଜୀବନକୁ ଆବଦ୍ଧ ମନେ କରୁଥିବା ବ୍ୟକ୍ତି ନିରନ୍ତର ବ୍ୟସ୍ତତା ଭିତରେ ସଂସାରକୁ ଯଥାର୍ଥରେ ଭୋଗକରି ପାରନ୍ତି ନାହିଁ । ମୁକ୍ତିକାମୀ ଭକ୍ତ ଇହଜୀବନକୁ ଘୋର ବିଡ଼ମ୍ବନା ବୋଲି ମନେ କରନ୍ତି । ନୈୟାୟିକଙ୍କ ଯୁକ୍ତିରେ ବୁଝିଲେ, ଦୁଃଖର ଅଭାବହିଁ ସୁଖ ବୋଲି ପ୍ରତୀତ ହୁଏ । ନୋହିଲେ ଜଗତ ପ୍ରକୃତିରେ ଦୁଃଖର ସ୍ଥାନ । ବୁଦ୍ଧଙ୍କ ମତରେ ଜଗତ ଦୁଃଖାର୍ଣ୍ଣବ ମାତ୍ର । କିନ୍ତୁ ଯଥାର୍ଥ ବିବେକୀର ଧାରଣାରେ ଏ ଦୁଃଖ ବାହାର ଜଗତର । ଅନ୍ତର ଜଗତ ସହିତ ଏହାର ବିଶେଷ ସମ୍ପର୍କ ନାହିଁ । ଜଗତର ଦୁଃଖ ଲାଗି ହୃଦୟର ସୁଖ ନଷ୍ଟ କରିବା ଅନୁଚିତ । କାରଣ—

"ସୁଖ ଦୁଃଖ ଭୋଗାଭୋଗ ଇନ୍ଦ୍ରିୟ ବିକାର
ଆତ୍ମ ପ୍ରସାଦହିଁ ସର୍ବ ସୁଖ ମୂଳାଧାର ।" ୧୭ — ଫକୀରମୋହନ

ମନୁଷ୍ୟ ନିଜର ପରିବେଶରେ ଅସନ୍ତୁଷ୍ଟ ହୋଇ ଜଗତକୁ ଯେତେ ଦୁଃଖମୟ ମନେ କରୁନା କାହିଁକି, ସମସ୍ତ ଦୁଃଖ ଦୁର୍ବିପାକ ଭିତରେ ସେ ଯେଉଁତିକି ଆନନ୍ଦ ରସ ପାଏ, ତାହାହିଁ ତା'ର ଜୀବନକୁ ପୁଷ୍ଟ କରେ, ଆତ୍ମାକୁ ବିକଶିତ କରାଏ । ବାଲ୍ୟରେ ଜନକ ଜନନୀଙ୍କ ସ୍ନେହ, ଯୌବନରେ ପ୍ରଣୟିନୀର ପ୍ରୀତି, ଶେଷ ଜୀବନରେ ନିଜର ଗଢ଼ା ସଂସାର—ଜୀବନକୁ ପୂର୍ଣ୍ଣ କରେ । ପୁଣି ସମାଜ ଭଳି ପ୍ରକୃତି, ନାନା ଭାବରେ ମନୁଷ୍ୟର ଚିତ୍ତକୁ ପୁଲକିତ କରେ । ଏହି ରୂପେ ଦେଖିଲେ ସମାଜ ଓ ପ୍ରକୃତି ବହୁ ସୁଖ ସମ୍ପଦର ସମ୍ଭାର ଦେଇ ଜୀବନକୁ ସରସ, ସମ୍ଭାବନାପୂର୍ଣ୍ଣ ଓ ସର୍ଜନକ୍ଷମ କରନ୍ତି । ଏହାହିଁ ମାନବକୁ ପରମେଶ୍ୱରଙ୍କ ଆଶୀର୍ବାଦ ଏହି ଆନନ୍ଦ ରୂପରେହିଁ ପରମେଶ୍ୱରଙ୍କ ସତ୍ତା ଆମ ହୃଦୟରେ ଅନୁଭୂତ ହୁଏ ।

ଜୀବନରେ ଓ ଜଗତରେ ଆନନ୍ଦ ରସର ଏହି ଧାରଣା, ମଧୁସୂଦନଙ୍କଠାରେ ଗଭୀର ଆଶାବାଦରେ ପରିଣତ ହୋଇଅଛି । 'ତାଙ୍କର ନବବସନ୍ତ-ଭାବନା' 'ନବବର୍ଷ' ଓ 'ଆଶା' ଆଦି ବହୁ କବିତାରେ ଏଥିର ସୁନ୍ଦର ନିଦର୍ଶନ ରହିଅଛି । ସଂସାରୀ ମାନବ ନିଜ ଚତୁର୍ଦ୍ଦିଗରେ ପ୍ରତିନିୟତ ସ୍ୱାର୍ଥ ସଂଘର୍ଷର ବିଭୀଷିକା ଦେଖେ । କ୍ରୋଧ, ମୋହ, କୂଟନୀତି, ପ୍ରବଞ୍ଚନା ନିକଟରେ ସେ ନିଜକୁ ଅସହାୟ ମନେକରେ । ଏହି ବିପର୍ଯ୍ୟସ୍ତ ପରିବେଶରେ ପଡ଼ି ହୃଦୟର ସରସତା ଓ ଉଦ୍ଦାମ ଗତି ଶିଥିଳ ହୋଇଯାଏ । ସଂସାର ମନେ ହୁଏ ଏକ ଗହନ ଅରଣ୍ୟ । ଜୀବନ ମନେ ହୁଏ ଏହି ଅରଣ୍ୟ ପଥରେ ଏକାକୀ ପଥିକର ଶଙ୍କା ବହୁଳ ଯାତ୍ରା । ତଥାପି, ଏହି ଯାତ୍ରା ପଥରେ ମନୁଷ୍ୟ ଅବିଚଳିତ ରହେ କିପରି ? କାରଣ ତା ହୃଦୟରେ ଥାଏ ଅସରନ୍ତ ଆଶାର ସ୍ୱପ୍ନ । ଜୀବନର ସମସ୍ତ ଦୁଃଖ ବିପଦର ଝଞ୍ଜା ଭିତରେ ଯେଉଁ ଭାବରେ ହେଉନା କାହିଁକି ଯେଉଁତିକି ସୁଖ ସନ୍ତୋଷ ମନୁଷ୍ୟ ଭୋଗ କରେ, ତାହାରି ଭିତରେ ସେ ଜୀବନର ଲକ୍ଷ୍ୟ ଦିଗରେ ଅଗ୍ରସର ହୁଏ, ସାର୍ଥକ ଭାବରେ ବଞ୍ଚେ, ଜୀବନର ଅଖଣ୍ଡତା ଓ ପୂର୍ଣ୍ଣତା ଉପଲବ୍ଧି କରେ । ଏହି ଭାବରେ ଏକ ଅନଭୂତ ଆଧ୍ୟାତ୍ମିକ ଦୂରଦୃଷ୍ଟି ଓ ଆତ୍ମଚେତନାରେ ପ୍ରବୁଦ୍ଧ ହୋଇ, ସକଳ ପ୍ରକାର ନୈରାଶ୍ୟର ଊର୍ଦ୍ଧ୍ୱକୁ ଉଠିବାକୁ ମଧୁସୂଦନ ଉଦ୍‌ବୋଧନ ଦେଇଚନ୍ତି —

"ଅନାଇଣ ବାରେ ଦେଖରେ ଜୀବ ନିଜ ଅନ୍ତରେ,
ଅନନ୍ତ-ଜୀବନ-ଆଧାର ସତ୍ୟ ଶିବ ସୁନ୍ଦରେ ।
ଅନନ୍ତ ସରସ ବସନ୍ତ ମଧୁମୟ ଉତ୍ସବ
ଅନନ୍ତ ଜୀବନ ଯୌବନ ମହାନନ୍ଦ ବିଭବ
ଲେଖିଛନ୍ତି ତୋର ଲଲାଟେ ପ୍ରାଣ ବିଧାତା ତୋର
ତେଣୁ ଛିଣ୍ଡାଅ ତୁ ତୁରିତେ ମୋହ ବନ୍ଧନ ଡୋର ।" ୨୭

## ଜାତୀୟ ଜୀବନରେ ଧର୍ମର ଅଭିବ୍ୟକ୍ତି

ଫକୀରମୋହନ 'ବୌଦ୍ଧାବତାର' ରଚନାରେ ବିମଳ ଆଧ୍ୟାତ୍ମିକ ଆନନ୍ଦଲାଭ କରୁଥିବା କଥା ଲେଖିଅଛନ୍ତି । ରାମାୟଣ, ମହାଭାରତ ଓ ଉପନିଷଦ ଅନୁବାଦରେ ସେ ଯେ ଏହି ଆନନ୍ଦ ଲାଭ କରୁଥିବେ ତାହା ନିଃସନ୍ଦେହ ଭାବରେ ଅନୁମାନ କରାଯାଇପାରେ । ରାଧାନାଥ ନିଜର ସମସ୍ତ ସାହିତ୍ୟ ସମ୍ପଦ ତୁଳନାରେ ସାବିତ୍ରୀ ଚରିତ, ତୁଳସୀ ସ୍ତବକ ଓ ଦଶରଥ ବିୟୋଗକୁ ଅଧିକ ମହତ୍ତ୍ୱ ପ୍ରଦାନ କରିଛନ୍ତି । ଏକଦା ସେ ନିଜର ସାହିତ୍ୟ ସାଧକ ଜୀବନ ବିଷୟରେ ଅନୁଶୋଚନା କରି ଭାବୁଥିଲେ, "ଯେଉଁ କାର୍ଯ୍ୟରେ ଐହିକ, ପାରତ୍ରିକ ଲାଭନାହିଁ, ସେଥିରେ ସମୟ ଯାପନ ନ କରି, ଧର୍ମାଲୋଚନାରେ ସେହି ସମୟ ଦେବାର କର୍ତ୍ତବ୍ୟ । ରଚନା ପ୍ରବୃତ୍ତି ପ୍ରାୟଶଃ ରାଜସ ଭାବ ଦୂଷିତ ।" ୨୮ ରାଧାନାଥଙ୍କ କବି ଦୃଷ୍ଟିରେ ଜୀବନରେ ଧର୍ମର ଯେ କି ମହତ୍ତ୍ୱ ଥିଲା ତାହା ଏହି ଉକ୍ତିରୁ ସହଜରେ କଳନା କରି

ଯାଇପାରେ । ନିଜର ଧର୍ମ ଜୀବନ ସହିତ ଅସଂପୃକ୍ତ କବିତା ଥିଲା ମଧୁସୂଦନଙ୍କ ଠାରେ ଯେପରି କି ଏକ ବ୍ୟତିକ୍ରମ । ଏଥିରୁ ସ୍ପଷ୍ଟ ସଙ୍କେତରେ ବୁଝାପଡ଼େ, ସାହିତ୍ୟ ପରି ଜୀବନରେ ଧର୍ମର ସ୍ଥାନ ଅତି ଉଚ୍ଚରେ ଥିଲା । ବିଦ୍ଧ ଭାଗବତ ଓ ଆଦର୍ଶଗତ ବୈଷ୍ଣବ୍ୟ ଭିତରେ ମଧ୍ୟ ଧର୍ମ ଥିଲା ବ୍ୟକ୍ତିଗତ ଜୀବନରେ ଏକାନ୍ତ ଉପଲବ୍ଧିର ବସ୍ତୁ ।

ମନୁଷ୍ୟର ଦୈନନ୍ଦିନ ଜୀବନରେ, ଆଚରଣ ଓ କର୍ମରେ ଧର୍ମଭାବର ପବିତ୍ରତା ଫୁଟୁ, ଏହା ଯୁଗର ଚିନ୍ତା ନାୟକଙ୍କ କାମନା ଥିଲା । ସତ୍ୟ, ନ୍ୟାୟ ଓ ଆଧ୍ୟାତ୍ମିକ ଆଦର୍ଶରେ ପରି ଚାଳିତ ମନୁଷ୍ୟ ସମାଜ ସେବାରେ ଆତ୍ମନିୟୋଗ କରୁ—ଏହା ପ୍ରଚାର କରିବା ଯେପରିକି କବିମାନଙ୍କର ଉଦ୍ଦେଶ୍ୟ ଥିଲା । ମାତ୍ର ସାଧାରଣ ଜୀବନରେ କୌଣସି ପ୍ରକାର ବିଶିଷ୍ଟ ଧର୍ମ ସମ୍ବନ୍ଧରେ ଯୁକ୍ତିତର୍କକୁ ଏମାନେ ଅନ୍ତରରୁ ସହିତ ଘୃଣା କରିଅଛନ୍ତି । ଧର୍ମ ଯେଉଁ ପ୍ରକୃତ ଆତ୍ମ ଜିଜ୍ଞାସା ଭାବ ନ ଥାଇ ନିଜର ବଡ଼ିମା ଦେଖାଇବା ଅଭିପ୍ରାୟରେ ଯେଉଁମାନେ ତତ୍ତ୍ୱଙ୍କି ବୋଲନ୍ତି ସେମାନଙ୍କୁ ତୀବ୍ର ସମାଲୋଚନା କରି ଯାଇଅଛି । ରାଧାନାଥଙ୍କ ଉକ୍ତି ଏହାର ସୁନ୍ଦର ନିଦର୍ଶନ । "ଅନେକ ଲୋକ ଅଛନ୍ତି, ସେମାନଙ୍କ ସୁଭିଗମନୀୟତା ସେମାନଙ୍କର ଧର୍ମ ବିଷୟକ ବିତଣ୍ଡାରୁ ଜଣାପଡେ । ଏପରି ତାର୍କିକ ଏକାଳକୁ ଅନେକ ହୋଇଛନ୍ତି । ଏମାନେ ନାସ୍ତିକତାକୁ ବିଜ୍ଞତାର ପରିମାପକ ଜାଣନ୍ତି । ଦିନେ ଆମ୍ଭେମାନେ ବ୍ରାହ୍ମସମାଜକୁ ଯାଇଥିଲୁ; କେତେଗୁଡ଼ିଏ ଭକ୍ତିମାନ ଯୁବକ ପ୍ରଭୁଙ୍କୁ ସ୍ତୁତି କରୁଥିଲେ । ସେମାନଙ୍କ ଆନ୍ତରିକ ଭକ୍ତି ଦେଖି ଆମ୍ଭମାନଙ୍କ ମନ ଦ୍ରବୀଭୂତ ହେଲା । ମାତ୍ର ସେଠାରେ ସୁଦ୍ଧା ବିରକ୍ତି ଉପୁଜିଲା । ବିରକ୍ତିର ହେତୁ ଏହିକି—ସମାଜକୁ ଜଣେ ପଣ୍ଡିତ୍ୟାଭିମାନୀ ଗଧ ଆସିଥିଲେ । ଉପାସନା ନିମନ୍ତେ ଆସି ନଥିଲେ । ଏତେ ବଡ ପଣ୍ଡିତ ହୋଇ ଯେବେ ସେହି ମରହଟ୍ଟୀ ଈଶ୍ୱର ବିଶ୍ୱାସ ନ ଗଲା ତେବେ ପାଣ୍ଡିତ୍ୟ ର ଫଳ କଣ ? ବ୍ରାହ୍ମମାନଙ୍କର ଇତରତା ଦେଖି ଆପଣା ସୁଭିଗମନୀୟତା ଚରିତାର୍ଥ କରିବାପାଇଁ ସେ ଆସିଥିଲେ । ବ୍ରାହ୍ମମାନେ ଯେତେବେଳ ନେତ୍ର ନିମୀଳିତ କରି ସ୍ତୁତି ବୋଲୁଥିଲେ, ସେ କେତେ ପ୍ରକାର ଭଙ୍ଗୀ କଲେ, କେତେଥର ମର୍କଟ ପ୍ରାୟ ହସିଲେ, ସମସ୍ତେ ଦେଖନ୍ତୁ, ମୁଁ ଏମାନଙ୍କ ପରି ନିର୍ବୋଧ ନୁହେଁ, ଏହିତା ଜଣାଇବା ପାଇଁ କେତେଥର ଆ ହା ହା ବୋଇଲେ । ..... ଗଧ ପାଞ୍ଚିଲେ ସମସ୍ତେ ତାଙ୍କୁ ଅନାଇ ରହିଛନ୍ତି, ସମସ୍ତେ ତାଙ୍କୁ ଡରନ୍ତୁ । ଆମ୍ଭେ ନିଶ୍ଚେ ଜାଣିଲୁ ସଭା ଭାଙ୍ଗିଲା ଉତ୍ତାରୁ ଗଧ ଯାଇ ସମସ୍ତଙ୍କ ଆଗରେ ଆପଣାର ଗୌରବ କରିବେ ।" ୨୯

ଏକ ଦିଗରେ ଧର୍ମକୁ ଯେପରି ଭ୍ରଷ୍ଟାଚାର ଦୁରାଗ୍ରହରୁ ରକ୍ଷା କରିବାକୁ ଯତ୍ନ ହୋଇଥିଲା, ସେଇପରି ସାମାଜିକ ଜୀବନର ପ୍ରଗତି ଲାଗି ଏକ ସକ୍ରିୟ ସାଧନ ରୂପେ ପ୍ରୟୋଗ କରିବାର ଉଦ୍ୟମହୋଇଥିଲା । ଏହି ସମୟରେ ସାଧାରଣ ସମାଜରେ ଧର୍ମ ପାରମ୍ପରିକ ଗାଢ ନିୟମର ନିଗଡ଼ରେ ଆବଦ୍ଧ ହୋଇ ରହିଥିଲା । ମଠ, ମନ୍ଦିର ଓ ପୌରହିତ୍ୟ ସଂସ୍ଥା

ସବୁ ସ୍ଥଳରେ ଏହି ପାରମ୍ପରିକତା ରକ୍ଷାରେ ସାହାଯ୍ୟ କରୁଥିଲା । ଫଳରେ ପ୍ରଗତିର ଗତି ପ୍ରତିହତ ହେଉଥିଲା । ଜାତି, ଧର୍ମ, ସମ୍ପ୍ରଦାୟଗତ ବିଦ୍ୱେଷରେ ଦେଶର ସାମାଜିକ ଜୀବନ ଜଡ଼, ନିଷ୍ଚେଷ୍ଟ ଓ କ୍ଷୟିଷ୍ଣୁଶୀଳ ହୋଇପଡ଼ୁଥିଲା । ଯୁଗର ସାହିତ୍ୟ ଓ ସର୍ଜନା ଶକ୍ତି ଏହି ଅଧପତନରୁ ସମାଜକୁ ରକ୍ଷା କରିବା ପାଇଁ ବିନିଯୁକ୍ତ ହୋଇଥିଲା । ଏକ ସ୍ୱଚ୍ଛନ୍ଦ ଦୃଷ୍ଟି ଘେନି କବିମାନେ ଭାରତର ଅତୀତ ଧର୍ମ ପରମ୍ପରା ଓ ଦର୍ଶନ ପ୍ରତି ଦୃଷ୍ଟିପାତ କରିଥିଲେ । ପ୍ରାଚୀନ ଭାରତର ଆର୍ଯ୍ୟ ଋଷି, ବୌଦ୍ଧ ଭିକ୍ଷୁ ଓ ଶ୍ରମଣଙ୍କ ଆଦର୍ଶ ଏମାନଙ୍କ ଧର୍ମାଚରଣର ଆଦର୍ଶ ଥିଲା । ଏଥିଲାଗି କୁସଂସ୍କାରାଚ୍ଛନ୍ନ ଓ ସ୍ୱାର୍ଥ ଜଡ଼ିତ ବ୍ରାହ୍ମଣ୍ୟ ଧର୍ମର କବଳରୁ ରକ୍ଷା କରିବାରେ ବୌଦ୍ଧଧର୍ମର ମହତ୍ତ୍ୱ—ରାଧାନାଥ, ଫକୀରମୋହନ ଓ ମଧୁସୂଦନ ଅତି ଉଚ୍ଛ୍ୱସିତ କଣ୍ଠରେ ଗାନ କରିଅଛନ୍ତି । ରାଧାନାଥଙ୍କ ମହାଯାତ୍ରାରେ ଓ ମଧୁସୂଦନଙ୍କ କୁସୁମାଞ୍ଜଳିର ଭାରତ ଭାବନା କବିତାରେ ଏହାର ସୁନ୍ଦର ନିଦର୍ଶନ ରହିଅଛି । ଫକୀରମୋହନ ବୌଦ୍ଧଧର୍ମର ଉଦାର ଆଦର୍ଶ ପ୍ରଚାର ଲାଗି ପ୍ରାଚୀନ ବୌଦ୍ଧ ଧର୍ମଶାସ୍ତ୍ରରୁ ବିଷୟବସ୍ତୁ ଆହରଣ କରି ବୌଦ୍ଧାବତାର କାବ୍ୟ ରଚନା କରିଅଛନ୍ତି ।

କାବ୍ୟରେ ପ୍ରକାଶିତ ସ୍ୱଚ୍ଛନ୍ଦ ଧର୍ମଦୃଷ୍ଟି ଦେଶର ବୃହତ୍ତର ଧର୍ମ ଜୀବନକୁ ସଂସ୍କୃତ ହୋଇଥିଲା । ପୁରୁଣା ଧର୍ମ ନୀତିର ଅନ୍ଧ ଅନୁସରଣ ଫଳରେ ଜାତିଧର୍ମ ନିର୍ବିଶେଷରେ ମାନବିକ ଐକ୍ୟର ଧାରଣା ଫୁଟି ନଥିଲା । ସେଥିଲାଗି ଅନୁକୂଳ ବାତାବରଣ ସୃଷ୍ଟି ହେଲା । ଏପରିକି ପରମ୍ପରା ଜଡ଼ିତ ପୌରହିତ୍ୟ ଧର୍ମ ତୁଳନାରେ ଖ୍ରୀଷ୍ଟିୟାନ୍ ପାଦ୍ରୀମାନଙ୍କର ମାନବିକ ସେବାଧର୍ମର ମହତ୍ତ୍ୱ ଏମାନେ ମୁକ୍ତ କଣ୍ଠରେ ସ୍ୱୀକାର କଲେ । ବ୍ୟକ୍ତି ତଥା ଜାତି ଜୀବନରେ ଶୁଦ୍ଧ ଆଚରଣ [illegible]ର ମାର୍ଗ ସହଜ ହେଲା ।

## ଧର୍ମ ଜୀବନରେ ଫକୀରମୋହନ, ରାଧାନାଥ ଓ ମଧୁସୂଦନ

ଫକୀରମୋହନ, ରାଧାନାଥ, ଓ ମଧୁସୂଦନଙ୍କ ଧର୍ମ ଜୀବନ ପ୍ରତି ଲକ୍ଷ୍ୟ କଲେ, ଏମାନଙ୍କ ଆଦର୍ଶରେ କୌଣସି ବିରୋଧମାନ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ ନାହିଁ । ଏମାନେ ସମସ୍ତେ ଜାତୀୟ ଜୀବନକୁ ପବିତ୍ର ଓ ଉଦାର ମାନବିକତାର ଆଦର୍ଶରେ ପରିଚାଳିତ କରିବାକୁ ଚାହୁଁଥିଲେ । ଅବଶ୍ୟ ମଧୁସୂଦନଙ୍କଠାରେ ଏହା ସ୍ୱୀୟ ଆଚରଣରେ ସ୍ପଷ୍ଟ ଫୁଟିଥିଲା । ବ୍ୟକ୍ତିଗତ ଜୀବନରେ ସେ ବ୍ରାହ୍ମ ଥିଲେ । ସେ ଯୁଗର ବ୍ରାହ୍ମ ଧର୍ମ ଅତି ଉଦାର ଓ ଉଚ୍ଚ ଥିଲା । ଏହାର ଆଦର୍ଶବାଦ ରାଧାନାଥ ଓ ଫକୀରମୋହନଙ୍କ କାବ୍ୟରେ ପ୍ରଚ୍ଛନ୍ନ ଭାବରେ ପ୍ରକାଶ ପାଇଥିଲା । ମାତ୍ର ମଧୁସୂଦନ ନିଜର ଧର୍ମ ଜୀବନର ଉପଲବ୍ଧି ପ୍ରକାଶ ଲାଗି କବିତା ରଚନା କରିଥିଲେ । ତାଙ୍କର ସମସ୍ତ ଜୀବନ ଓ କାବ୍ୟ ସାଧନା ଏହି ଧର୍ମ ରସରେ ସିକ୍ତ ଥିଲା । ରାଧାନାଥ ଓ ଫକୀରମୋହନଙ୍କର କି ବ୍ୟକ୍ତିଗତ ଜୀବନ, କି ସାହିତ୍ୟିକ ଜୀବନ କୌଣସି-

ଠାରେ କେବଳ ଧର୍ମର ଏକାଧିପତ୍ୟ ହିଁ ଦେଖିବାକୁ ମିଳେ। ଏହା ସେମାନଙ୍କ ବ୍ୟକ୍ତିଗତ ଜୀବନ ବୃତ୍ତର ଏକାଂଶ ମାତ୍ର ଥିଲା। ମଧୁସୂଦନଙ୍କ ଭଳି ନିଜର କୌଳିକ ସନାତନ ହିନ୍ଦୁଧର୍ମର ଆବରଣ ଏମାନେ ଫିଙ୍ଗି ଦେଇ ନ ଥିଲେ। ଅଧିକନ୍ତୁ କୁଳାଗ୍ରରରେ ଏକନିଷ୍ଠ ଥାଇ ନିଜର ଉଦାର ଆଚରଣରେ ଅନ୍ୟ ଧର୍ମରୁ ଆଦର୍ଶ ଆହରଣ ଲାଗି ବ୍ୟାକୁଳତା ପ୍ରକାଶ କରୁଥିଲେ। ଆପଣା ଯୁଗର ଆଦର୍ଶ ପୁରୁଷ ଫୁଲଚାଳ ଦେବଙ୍କ ଧର୍ମଜୀବନ ସମ୍ବନ୍ଧରେ ରାଧାନାଥଙ୍କ ଉକ୍ତି ଅବଲମ୍ବନରେ କହିଲେ—"ଧର୍ମ ସମ୍ବନ୍ଧରେ ଏହି କବିମାନଙ୍କ ମତ ପ୍ରଶସ୍ତ ଥିଲା। ସନାତନ ହିନ୍ଦୁଧର୍ମରେ ସେମାନଙ୍କର ନିଷ୍ଠା ଥିଲେହେଁ ସେମାନଙ୍କର ହିନ୍ଦୁତ୍ୱ ମାସ୍ତ୍ରଣବାଧ୍ୟ-ତାରେ ପର୍ଯ୍ୟବସିତ ନ ଥିଲା। ସମୟର ପରିବର୍ତ୍ତନ ସହିତ ଶନୈଃ ଶନୈଃ ହିନ୍ଦୁଧର୍ମର ସଂସ୍କାର ଆବଶ୍ୟକତା ସେମାନେ ମୁକ୍ତକଣ୍ଠରେ ସ୍ୱୀକାର କରୁଥିଲେ। ଅନ୍ୟ ଧର୍ମ କିମ୍ବା ମତ ପ୍ରତି ସେମାନେ ସର୍ବଦା ସମୁଚିତ ସମ୍ମାନ ପ୍ରଦର୍ଶନ କରୁଥିଲେ।" ୩୦

# ଦ୍ୱିତୀୟ ଭାଗ

❊ କବି ଓ କୃତି ❊

ରାଧାନାଥ ରାୟ

ଫକୀରମୋହନ ସେନାପତି

ମଧୁସୂଦନ ରାଓ

ଗୌଣକବି

ଷଷ୍ଠ ଅଧ୍ୟାୟ

# ରାଧାନାଥ ରାୟ

(୧୮୪୮-୧୯୦୮)

"ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବାରେ ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ଅଛି ।" ୧

ରାଧାନାଥ

ରାଧାନାଥ ଯୁଗପ୍ରବର୍ତ୍ତକ କବି । ସେ ଯେଉଁ ଯୁଗରେ ଆତ୍ମପ୍ରକାଶ କରିଥିଲେ, ସେହି ଯୁଗକୁ ସ୍ୱତନ୍ତ୍ର ଭୂମିରେ ପ୍ରତିଷ୍ଠିତ କରିବା ସଙ୍ଗେ ସଙ୍ଗେ ପୁରାତନ ଓ ନୂତନ ଯୁଗର ସୀମା ନିର୍ଦ୍ଦେଶ କରି ଯାଇଛନ୍ତି । ପୁରାତନର ପ୍ରବାହ ଧାରାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ନ ହୋଇ, ସେ ନୂଆ ଯୁଗର ମୂଳଦୁଆ ପକେଇ ଯାଇଛନ୍ତି । ପରମ୍ପରାର କ୍ଷୁଦ୍ର ପରିଧି ଛାଡ଼ି, ଦେଶ ବିଦେଶର ମୁକ୍ତ ଭାବରାଜ୍ୟରେ ସେ ସ୍ୱାଧୀନ ଭାବରେ ବିଚରଣ କରିଛନ୍ତି । ବହୁ ବିଚିତ୍ର ବିଭିନ୍ନ ଜଳବାୟୁରୁ ଗ୍ରହି ଆଣି, ଏ ଦେଶର ମାଟିରେ ବଢ଼େଇଛନ୍ତି । ଏହା ଆହରଣର ଏକ ନୂତନ ପରମ୍ପରା । ଆହରଣର ପ୍ରାଚୁର୍ଯ୍ୟ ତାଙ୍କୁ ଆତ୍ମବିସ୍ମୃତ କରିନାହିଁ । ସେ ନିଜର ସ୍ୱତନ୍ତ୍ର ସତ୍ତାରେ ଚିର ଭାସ୍ୱର । ପୁରାତନରେ ନୂତନତା ଏବଂ ଆହୃତରେ ମୌଳିକତା ପ୍ରତିଫଳିତ କରିବା ଉପରେ ପ୍ରତିଭାର ବିଧି ପ୍ରତିପାଦିତ ଅଧିକାର ତାହା ନିଜ କାବ୍ୟରେ ସାବ୍ୟସ୍ତ କରି ଯାଇଛନ୍ତି । କବି ଜୀବନର ବିକାଶ ଓ ପ୍ରତିଭାର ପରିଣତିକୁ ଧ୍ୟାନର ସହିତ ଲକ୍ଷ୍ୟକଲେ, ଏହା ଅତି ସ୍ପଷ୍ଟ ଭାବରେ ଜଣାଯାଏ ।

## ପ୍ରାଥମିକ ଜୀବନର ପ୍ରସ୍ତୁତି

୧୮୬୪ ଖ୍ରୀଷ୍ଟାବ୍ଦ । ରାଧାନାଥଙ୍କ ବୟସ ମାତ୍ର ଷୋହଳ ବର୍ଷ । ସେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଉଚ୍ଚଶିକ୍ଷା ଲାଭ ପାଇଁ କଲିକତା ଯାଇଥିଲେ । ମାତ୍ର ସ୍ୱାସ୍ଥ୍ୟ କାରଣରୁ ଓ ଆର୍ଥିକ ଦୁରବସ୍ଥାରୁ ଉଚ୍ଚଶିକ୍ଷା ଆଶାଛାଡ଼ି, ବାଲେଶ୍ୱରରେ ଶିକ୍ଷକ ଭାବରେ କର୍ମଜୀବନ ଆରମ୍ଭ କଲେ । କିନ୍ତୁ ତାଙ୍କ ଅନ୍ତରରେ ଥିଲା ଉଚ୍ଚ ଜ୍ଞାନଲାଭର ଅଦମ୍ୟ ପିପାସା । ଏହା ଚରିତାର୍ଥ କରିବା ଲାଗି ସେ ଅନୁକୂଳ ପରିବେଶ ପାଇଥିଲେ । ତାଙ୍କର କେତେ ଜଣ ଉଚ୍ଚାଭିଳାଷୀ ସହଯୋଗୀ ବନ୍ଧୁ ଥିଲେ । ସେମାନଙ୍କ ଭିତରେ ଦାମୋଦର

ଦାସ, ଫକୀରମୋହନ ସେନାପତି, ରାଜା ବୈକୁଣ୍ଠ ନାଥ ଦେ ଆଦି ପ୍ରଧାନ । ଶ୍ରୀଦାମୋଦର ଦାସଙ୍କ ଉଦ୍ୟମରେ ପ୍ରାୟ ଦେଢ଼ହଜାର ଗ୍ରନ୍ଥଯୋଗେ ଏକ ସୁନ୍ଦର ଗ୍ରନ୍ଥାଗାର ଗଢ଼ା ଯାଇଥିଲା । କବି ଓ ତାଙ୍କର ଉତ୍ସାହୀ ବନ୍ଧୁଙ୍କ ଜ୍ଞାନ ସାଧନା ଲାଗି ଏହା ଉପଯୁକ୍ତ କ୍ଷେତ୍ର ଯୋଗାଇଥିଲା । ଏହି ସମୟରେ କବି ସଂସ୍କୃତ ଓ ଇଂରାଜୀ ସାହିତ୍ୟ ନିଷ୍ଠାର ସହିତ ଅଧ୍ୟୟନ କରିଥିଲେ । ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ ଗଙ୍ଗାଧର ଆଚାର୍ଯ୍ୟ ଓ ପଣ୍ଡିତ ସଦାଶିବ ନନ୍ଦ ଯଥାକ୍ରମେ ଇଂରେଜୀ ଓ ସଂସ୍କୃତ ଶିକ୍ଷାରେ ରାଧାନାଥଙ୍କର ସହାୟକ ଥିଲେ । ଗଙ୍ଗାଧର ଆଚାର୍ଯ୍ୟ କଲିକତାର 'ହିନ୍ଦୁ ପେଟ୍ରିୟଟ' ଭଳି ସାମୟିକ ପତ୍ରର କୃତବିଦ୍ୟ ଲେଖକ ଥିଲେ । ଇଂରେ-ଜୀରେ ତାଙ୍କର ଗଭୀର ପ୍ରବେଶ ଥିଲା । ତାଙ୍କର ନିର୍ଦ୍ଦେଶରେ ରାଧାନାଥ ଇଂରେଜୀ ସାହି-ତ୍ୟର ପ୍ରାଚୀନ ଓ କ୍ଲାସିକେଲ୍ ଲେଖକ ତଥା ସମସାମୟିକ ଭିକ୍ଟୋରିୟା ଯୁଗର ପ୍ରସିଦ୍ଧ ଲେଖକଙ୍କ କୃତି ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଅନୁବାଦ ମାଧ୍ୟମରେ ଗ୍ରୀକ୍, ଲାଟିନ ଓ ଅନ୍ୟ ଇଉରୋପୀୟ ସାହିତ୍ୟର ଶ୍ରେଷ୍ଠ କୃତି ସହିତ ପରିଚିତ ହୋଇଥିଲେ । ଏହି ପଠନ ରୁଚି ତାଙ୍କଠାରେ ଆଜୀବନ ଅକ୍ଷୁଣ୍ଣ ଥିଲା । ପାଶ୍ଚାତ୍ୟ ସାହିତ୍ୟର ଭାବ ପ୍ରଭାବରେ ସେ ନୂତନ ସାହିତ୍ୟର ରୂପ କଳ୍ପନା କରିଥିଲେ । ତାଙ୍କ କାବ୍ୟଗତ କାହାଣୀର କଙ୍କାଳ, ଚରିତ୍ର ଭିତ୍ତି, ଏପରିକି ବିଷୟ ଓ ଭାବ ପର୍ଯ୍ୟନ୍ତ ବହୁ ବିଶିଷ୍ଟ ପାଶ୍ଚାତ୍ୟ ଲେଖକଙ୍କ ଅନୁସରଣ ଓ ଅବ-ଲମ୍ବନରେ ପୁଷ୍ଟ । ଏଥି ସତ୍ତ୍ୱେ ପ୍ରାଚୀନ ଓଡ଼ିଆ ଛନ୍ଦ ଓ ସଂସ୍କୃତ କାବ୍ୟର ପରମ୍ପରା ସେ ତ୍ୟାଗ ନ ଥିଲେ । ଯୁଗର ବାତାବରଣରେ ଓଡ଼ିଆ ଛନ୍ଦ ଓ କାବ୍ୟର ଚର୍ଚ୍ଚା ଖୁବ୍ ହେଉଥିଲା । ସଙ୍ଗୀତ ପ୍ରତି ରାଧାନାଥଙ୍କର ବିଶେଷ ଆଗ୍ରହ ଥିଲା । ଅବସର ସମୟରେ ସେ ଗାୟନ ଅଭ୍ୟାସ କରୁଥିଲେ । ବଙ୍ଗୀୟ ମନୀଷୀ ଭୂଦେବ ମୁଖୋପାଧ୍ୟାୟ ଥରେ ତାଙ୍କଠାରୁ ଉପେନ୍ଦ୍ର ଭଞ୍ଜଙ୍କ ଛନ୍ଦ ଶୁଣି ମୁଗ୍ଧ ହୋଇଥିଲେ । କିଶୋର ବୟସର ସଂସ୍କୃତ ଚର୍ଚ୍ଚା ତାଙ୍କୁ ଆଜୀବନ ସଂସ୍କୃତ ସାହିତ୍ୟପ୍ରେମୀ କରି ରଖିଥିଲା । ସଂସ୍କୃତ କବିତାର ଅନୁବାଦ, ଅନୁସରଣଠାରୁ ରଚନା ଓ ସଂକଳନ ପର୍ଯ୍ୟନ୍ତ, ସବୁଥିରେ ତାଙ୍କର କୃତବିଦ୍ୟତା ଦେଖିହୁଏ ।

କବି ଜୀବନର ବିକାଶ ଲାଗି ପରିବେଶ ଅବଶ୍ୟ ଅନୁକୂଳ ଥିଲା । ମାତ୍ର କୌଣସି ଏକ ଲକ୍ଷ୍ୟରେ ସାହିତ୍ୟ ରଚନା ଭାବନା ରାଧାନାଥଙ୍କ ମନରେ ପ୍ରଥମେ ନଥିଲା । ତେବେ ପ୍ରାଚୀନ ଓ ସମକାଳୀନ କାବ୍ୟ କବିତାର ବହୁଳ ଚର୍ଚ୍ଚା ତାଙ୍କୁ ବେଳେ ବେଳେ କବିତା ରଚନା ଲାଗି ପ୍ରଣୋଦିତ କରୁଥିଲା । କେତେବେଳେ କେମିତି ସଂସ୍କୃତ ଶ୍ଳୋକ ଅନୁବାଦ କରି ବନ୍ଧୁମାନଙ୍କୁ ଶୁଣାଉ ଥିଲେ । ହୃଦୟକୁ ସ୍ପର୍ଶ କଲାଭଳି ବ୍ୟକ୍ତିଗତ ଅନୁଭବକୁ ଘେନି କ୍ଷୁଦ୍ର ଗୀତି କବିତାମାନ ଲେଖୁଥିଲେ । ଏହି ସମୟରେ ଓଡ଼ିଶାରେ ବଙ୍ଗଳା ପ୍ରାୟ ଶିକ୍ଷିତ ମହଲର ନିକଟବର୍ତ୍ତୀ ଭାଷା ଥିଲା । ସମ୍ଭବତଃ ଏହାହିଁ ଥିଲା କବିଙ୍କ ପରିବାରର ଭାଷା । ତେଣୁ ଏସବୁ ସେ ବଙ୍ଗଳାରେ ଲେଖୁଥିଲେ ।

ଓଡ଼ିଆରେ ଯୁଗ ପ୍ରବର୍ତ୍ତକ କବି ଭାବରେ ରାଧାନାଥଙ୍କୁ ବିଚାର କଲାବେଳେ, କିଶୋର ବୟସର ଲେଖା ତାଙ୍କର ବଙ୍ଗଳା କବିତାବଳୀର ସମୀକ୍ଷା ହୁଏତ ଅନାବଶ୍ୟକ ମନେ ହୋଇପାରେ । କବିଙ୍କ ମାନସଲୋକର ଅଖଣ୍ଡ ଅବବୋଧ ପାଇଁ ଏହାର ଆଲୋଚନା ଲୋଡ଼ା । ଏଥିରେ ଓଡ଼ିଶାର ପ୍ରାଚୀନ କବିମାନଙ୍କୁ ଶ୍ରଦ୍ଧାଞ୍ଜଳିମୂଳକ ସନେଟ୍‌ଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ । ପ୍ରାଚୀନ କବିମାନଙ୍କର ମହତ୍ତ୍ୱ, ଚରିତ୍ର ଚିତ୍ର, ଭାଷାଶିଳ୍ପ ଓ ସଙ୍ଗୀତମାଧୁରୀ କବିଙ୍କ ହୃଦୟକୁ ଯେପରି ଗଭୀର ଭାବରେ ସ୍ପର୍ଶ କରିଥିଲା, ତାହାର ସୁନ୍ଦର ସଙ୍କେତ ଏହି କବିତାବଳୀରେ ରହିଅଛି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକଳାର ପ୍ରଶଂସା କରି କବି ଲେଖିଛନ୍ତି—

"ସୁଯଶସ୍ୱୀ ସୁସମୟେ ସରସ ଲେଖନୀ
ଧରିଲି ଉପେନ୍ଦ୍ର ! ମରି ଯେ ଗୁରୁଭୂଷଣ
ସାଜାୟେଛ ବୈଦେହୀଶେ ହେ କବି ରତନ
ତୋମା ବିନା ସାଧ କାର ସାଜାୟ ଏମନ ।" ୩

ଉପେନ୍ଦ୍ର ଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ନାୟିକାର ରୂପ ବର୍ଣ୍ଣନା, ଦୀନକୃଷ୍ଣଙ୍କ କାନ୍ତ କୋମଳ ପଦାବଳୀ ଓ ଅଭିମନ୍ୟୁଙ୍କ ପ୍ରେମଚିତ୍ର କିପରି ଅଭିଭୂତ କରିଥିଲା, ତାହା ପ୍ରକାଶ କରି ଚତୁର୍ଦ୍ଦଶପଦୀ କବିତାମାନ ରଚନା କରିଛନ୍ତି ।

ଦେଶପ୍ରେମ ରାଧାନାଥଙ୍କ କବିତାର ଏକ ପ୍ରଧାନ ଉପାଦାନ । ତାଙ୍କର ଦେଶପ୍ରେମୀ ମନ କେବଳ ଅତୀତର ସ୍ତବ ଗାନ କରି ଶାନ୍ତି ଲାଭ କରିନାହିଁ । ନିଜ ଯୁଗର ସାଧକ, ଦେଶପ୍ରାଣ ମହାନୁଭବ ବ୍ୟକ୍ତିମାନଙ୍କର ସାଧନା ଓ ତ୍ୟାଗର ମହତ୍ତ୍ୱ ସେ ମୁକ୍ତ କଣ୍ଠରେ ଗାନ କରିଛନ୍ତି । ମହାଯାତ୍ରା ଓ ଦରବାରରେ ସାମନ୍ତ ଚନ୍ଦ୍ର ଶେଖର, ସୁରଲଦେବ ଓ ରାମଚନ୍ଦ୍ରଙ୍କ ସ୍ତୁତିଗାନ କଲା ଭଳି କର୍ମଯୋଗୀ ଗୌରୀଶଙ୍କରଙ୍କୁ ହୃଦୟର ଗଭୀର ଶ୍ରଦ୍ଧା ଅର୍ପଣ କରିଛନ୍ତି ।

ରାଧାନାଥଙ୍କ ଜାତୀୟତା ହିନ୍ଦୁଭାବ-ଭାବିତ ଥିଲା । ସେ ମନେ କରୁଥିଲେ, ଭାରତ ହିନ୍ଦୁର ଦେଶ; ଭାରତର ଗୌରବ ହିନ୍ଦୁର ଗୌରବ । ହିନ୍ଦୁ ଶାସନର ଅଧୋଗତିରେ ଭାରତର ଜାତୀୟ ଗୌରବ ବିଲୁଣ୍ଠିତ ହୋଇଥିଲା । ତତ୍କାଳୀନ ଦୁର୍ଦ୍ଦଶାର ହେତୁ ସାମ୍ପ୍ରଦାୟିକ ଭେଦଭାବର ସମର୍ଥକ ଇଂରେଜ ଐତିହାସିକମାନେ ଏହି ଦୃଷ୍ଟିରେ ନିରୂପଣ କରୁଥିଲେ । ରାଧାନାଥ ଏହା ଗ୍ରହଣ କରିଛନ୍ତି । ଦେଶର ସମସ୍ତ ଦୁର୍ଦ୍ଦଶା ଲାଗି ସେ ମୁସଲମାନ ଶାସନକୁ ଦୋଷୀ କରିଛନ୍ତି । ଏହି ଭାବର ସୁସ୍ପଷ୍ଟ ପ୍ରକାଶ ଯେପରି ପରବର୍ତ୍ତୀ କାଳରେ ମହାଯାତ୍ରା ଓ ଶିବାଜୀଙ୍କ ଉଷ୍ଣୀଷ ବାଣୀ କବିତାରେ ଘଟିଅଛି, ତାହାର ଆଦ୍ୟ ସୂଚନା 'ଜନ୍ମଭୂମି' କବିତାରେ ମିଳିଥାଏ ।

"ନନ୍ଦନ କାନନ ଯଥା ଲୁଟି ରକ୍ଷଦଲ
ବିନାଶେ ତାହାର ଶୋଭା, ଦୁରନ୍ତ ଯବନ
କରେଛେ ଜନନୀ ! ତବ ସର୍ବସ୍ୱ ହରଣ ।" ୪

ଜୀବନର କ୍ଷୁଦ୍ର ଘଟଣାବଳୀ ଘେନି କବିତା ରଚନା ଗୀତି କବିଙ୍କର ଏକ ପ୍ରଧାନ ଲକ୍ଷଣ । କଥା କାବ୍ୟର କବି ରାଧାନାଥଙ୍କଠାରେ ଏ ଲକ୍ଷଣ ସେପରି ସ୍ପଷ୍ଟ ରୂପେ ପ୍ରକାଶ ପାଇନାହିଁ । ମାତ୍ର ତାଙ୍କର ଗୀତିପ୍ରାଣ ସରସ ହୃଦୟର ଯଥାର୍ଥ ପରିଚୟ ଏଇ ପ୍ରାଥମିକ କବିତା ଗୁଡ଼ିକରୁ ମିଳିଥାଏ । ଦୃଷ୍ଟାନ୍ତ ରୂପେ ଦେଖିଲେ, 'ଗ୍ରାମ୍ୟ ଶ୍ମଶାନ ଦର୍ଶନେ ବିଦେଶ ପ୍ରତ୍ୟାଗତ ମାତୃହୀନେର ଉକ୍ତି'—ଏକ ସାର୍ଥକ ଗୀତି କବିତା । ଏଥିରେ କବିଙ୍କ ଆନ୍ତରିକ ହୃଦୟର ଭାବ ଝଂକାର ସୁନ୍ଦର ପ୍ରକାଶିତ । ମାତୃହୀନ ଶୈଶବର କରୁଣ ସ୍ମୃତିରେ କବିତାଟିର ପ୍ରତ୍ୟେକ ପଂକ୍ତି ସିକ୍ତ ହୋଇଅଛି ।

କେବଳ ମୌଳିକ ସର୍ଜନା ନୁହେଁ, ଆହରଣ ରାଧାନାଥଙ୍କ ବୈଶିଷ୍ଟ୍ୟ । ବଙ୍ଗ କବି ମାଇକେଲ ମଧୁସୂଦନଙ୍କ ଅନୁକରଣ ଏହି ସମୟରେ ତାଙ୍କ ପାଖେ ଦେଖା ଯାଇଥିଲା । ସେ ଗୁଡ଼ିଏ ପୌରାଣିକ ଓ ଗୋଟିଏ କାଳ୍ପନିକ ନାୟିକାଙ୍କ ଚରିତ୍ର ପତ୍ର ଛଳରେ ଅଂକନ କରିଥିଲେ । ଏଗୁଡ଼ିକ ମାଇକେଲଙ୍କ ବୀରାଙ୍ଗନା କାବ୍ୟ ଆଦର୍ଶରେ ରଚିତ ହୋଇଥିଲା । ବଙ୍ଗଳା କବିତାବଳୀରୁ ଜଣେ ନବୀନ ଲେଖକଙ୍କର ଯଥାର୍ଥ ସମ୍ମାନ କବି ଲାଭ କରିଥିଲେ । ଯେଉଁଠି ସେ ନିଜର ଆତ୍ମାର ସ୍ୱଚ୍ଛନ୍ଦ ଅଭିବ୍ୟକ୍ତି ଘେନି ରଚନା କରୁଥିଲେ ସେଠାରେ ଗୀତିକବି ରୂପେ ସଫଳ ହେଉଥିଲେ । ସେ ଯଥାର୍ଥରେ ସୃଷ୍ଟି କରୁଥିଲେ । ଯେଉଁଠି ସେ ଜାଗ୍ରତ ଶିଳ୍ପୀ ଦୃଷ୍ଟିରେ ରଚନା ପ୍ରୟାସ କରୁଥିଲେ, ସେଠାରେ ସେ ଅନୁକରଣ କରୁଥିଲେ ।

୧୮୬୯ ଖ୍ରୀଷ୍ଟାବ୍ଦରେ କବି ପୁରୀ ଜିଲ୍ଲାସ୍କୁଲକୁ ଶିକ୍ଷକ ହୋଇ ଗଲେ । ସେଠାରେ ମଧୁସୂଦନ ରାଓ ତାଙ୍କର ଛାତ୍ର ଥିଲେ । ଉଭୟେ ସାହିତ୍ୟ ଚର୍ଚ୍ଚାରେ ଅନେକ ସମୟରେ ତନ୍ମୟ ହେଉଥିଲେ । ମଧୁସୂଦନଙ୍କୁ ସଂସ୍କୃତ ସାହିତ୍ୟ ପ୍ରତି ଆକୃଷ୍ଟ କରିବା ଲାଗି ରାଧାନାଥ ମଝେ ମଝେ ଉତ୍କୃଷ୍ଟ ଶ୍ଳୋକମାନ ଅନୁବାଦ କରି ଶୁଣାଉ ଥିଲେ । ଏହି ପରିବେଶରେ ସେ ମେଘଦୂତ ଅନୁବାଦ କରିଥିବା ସମ୍ଭବ । ୧୮୭୭ ଖ୍ରୀଷ୍ଟାବ୍ଦରେ ସେ ଓଡ଼ିଶା ଶିକ୍ଷା ବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ହେଲେ । ସମଗ୍ର ଓଡ଼ିଶା ତାଙ୍କର କର୍ମକ୍ଷେତ୍ର ହେଲା । ବଙ୍ଗୀୟ ମନୀଷୀ ଭୂଦେବ ମୁଖୋପାଧ୍ୟାୟଙ୍କ ଉପଦେଶରେ ସେ ବଙ୍ଗ ଭାଷାରେ ରଚନା ପ୍ରତି ଆଗ୍ରହ ଛାଡ଼ିଦେଲେ । ଭୂଦେବ ଉପଦେଶ ଦେଲେ —"ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବି ପ୍ରତିଭାର ଧାତ୍ରୀ । ଏଥିର ଯେଉଁ ଆଡ଼କୁ ଚାହିଁବ ନୂଆ ଗଢିବାର ଉପାଦାନ ପାଇବ ।" ୬ ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ କବି ଓଡ଼ିଶାର ଇତିହାସ, କିମ୍ବଦନ୍ତୀ, ପ୍ରକୃତି, ନଗର ଓ ଜନପଦକୁ ଘେନି

କାବ୍ୟ ରଚନାରେ ପ୍ରୟାସୀ ହେଲେ । ଏହି ସ୍ୱଦେଶୀୟ ଉପାଦାନରେ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶ, ରଚନା ଶୈଳୀ ଓ ଭାବ ମିଶେଇ ନୂତନ ଯୁଗର ସୂତ୍ରପାତ କଲେ ।

ଆଦିପର୍ବରେ ଲେଖା ରାଧାନାଥଙ୍କ କବିତାର ପରିମାଣ ଅତି ଅଳ୍ପ । କେତେକ ଅନୁ-ବାଦ ଓ ଅନୁକରଣ କବିତାକୁ ବାଦ ଦେଲେ, ଯେଉଁତକ ତାଙ୍କର ମୌଳିକ କବିତା ତାହାର ସଂଖ୍ୟା ମୁଷ୍ଟିମେୟ । ପୁଣି ସେଥିରୁ ଅଧିକାଂଶ ବଙ୍ଗଳାରେ ଲେଖା । ମାତ୍ର ସେ ଯେଉଁ ଭାଷାରେ ଯେତେ ଅଳ୍ପ ଲେଖି ଥାଆନ୍ତୁନା କାହିଁକି, ଏହିଗୁଡ଼ିକରେ ସେ ଖାଣ୍ଟି ଗୀତି କବି ରୂପରେ ଆତ୍ମପ୍ରକାଶ କରିଛନ୍ତି । ଏହିସବୁ କବିତାରେ କୃତ୍ରିମ କଳ୍ପନା ନାହିଁ, ଭାଷା-ଶିଳ୍ପର ବର୍ଣ୍ଣୋଜ୍ଜ୍ୱଳ ଗୁରୁତ୍ୱ ନାହିଁ, ଅଛି ଏକ ସରଳ ଅନୁରାଗ ରଞ୍ଜିତ ହୃଦୟର ଗଭୀର ପ୍ରକାଶ । ଦୈନନ୍ଦିନ ଜୀବନର ବାସ୍ତବ ଅନୁଭବ ଏହି ହୃଦୟକୁ ଆଲୋଡ଼ିତ କରିଅଛି । ଏହି ଆଲୋଡ଼ନର ପ୍ରକାଶ ଘଟିଛି କବିତାରେ । ସୁନ୍ଦର, ଅସୁନ୍ଦର, ଉଦାର, ଉନ୍ନତ ସମସ୍ତ ଏହି ଅନୁଭବର ଅନ୍ତର୍ଗତ । ସୁନ୍ଦର ଓ ଉଦାର ମଧ୍ୟରେ କବି ଜୀବନର ଅନୁପମ ଆଦର୍ଶର ସତ୍ତା ଖୋଜି ପାଇଛନ୍ତି । ଅସୁନ୍ଦର ଓ କୁତ୍ସିତର ପରିବର୍ତ୍ତନ ପାଇଁ ସେ ସ୍ୱପ୍ନ ଦେଖିଛନ୍ତି ।

ଆଦ୍ୟ ଜୀବନରେ ଲକ୍ଷିତ ଏହି କବିତାର ଆଦର୍ଶ ଯଦି ରାଧାନାଥଙ୍କଠାରେ ପରିଣତି ଲାଭ କରିଥାନ୍ତା, ତେବେ ତାଙ୍କର କାବ୍ୟଜଗତ ଭିନ୍ନ ରୂପ ଧାରଣ କରିଥାନ୍ତା । ସେ ଜଣେ ଶ୍ରେଷ୍ଠ ଗୀତିକବି ରୂପେ ଆତ୍ମପ୍ରକାଶ କରିଥାନ୍ତେ । ତାଙ୍କର ଉଦାର, ଦରଦୀ, ସମବ୍ୟଥୀ, ନିରାଡ଼ମ୍ବର ଜୀବନ ଓ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ସ୍ପର୍ଶ ଘେନି ତାଙ୍କ କାବ୍ୟଜଗତ ସମୃଦ୍ଧ ହୋଇଥାନ୍ତା । ଶାଶ୍ୱତ ସାହିତ୍ୟରେ କର୍ଣ୍ଣ ପ୍ରୀତିକର ସ୍ୱାଦ୍ୟ ଓ ଶୋଭନ ଭାଷାଶିଳ୍ପଠାରୁ ଏଇ ଗୁଣର ମୂଲ୍ୟ ଅନେକ ବେଶୀ । ମାତ୍ର ତାହା ହେବାର ନଥିଲା । କାବ୍ୟ ଜଗତରେ ରାଧାନାଥ ଗୀତିକବି ରୂପେ ଆତ୍ମପ୍ରକାଶ କଲେ ନାହିଁ । ବର୍ଣ୍ଣନାତ୍ମକ ରଚନା ଦିଗରେ ତାଙ୍କର ସମସ୍ତ ସାଧନା ଓ ପ୍ରତିଭା ପରିଚାଳିତ ହୋଇଥିଲା ।

### କଥାକାବ୍ୟ ରଚନାର ଆଦର୍ଶ

୧୮୭୩ ମସିହାରେ କବିତାବଳୀ ପ୍ରକାଶଠାରୁ ୧୮୮୫ରେ କେଦାର-ଗୌରୀ ପ୍ରକାଶ ପର୍ଯ୍ୟନ୍ତ ରାଧାନାଥ କୌଣସି ଉଲ୍ଲେଖଯୋଗ୍ୟ ରଚନାରେ ହାତ ଦେଇଥିବାର ଜଣା ଯାଏନାହିଁ । ବାହାରୁ ଦେଖିଲେ ଏହା ତାଙ୍କ ଜୀବନର ଏକ ଦୀର୍ଘ ବିରତି ବୋଲି ମନେ ହୁଏ । ମାତ୍ର ବର୍ଣ୍ଣନାତ୍ମକ କଥା କାବ୍ୟର କବି ରୂପେ ଆତ୍ମପ୍ରକାଶ କରିବାଲାଗି ଯେପରିକି କବି ଅଲକ୍ଷରେ ପ୍ରସ୍ତୁତ ହେଉଥିଲେ । ୧୮୭୭ ମସିହାରୁ ଶିକ୍ଷା ବିଭାଗୀୟ ପରିଦର୍ଶକ କର୍ମ-ସୂତ୍ରୀ ଭାବରେ ସେ ସମଗ୍ର ଓଡ଼ିଶାକୁ ନିଜର କର୍ମକ୍ଷେତ୍ର ରୂପେ ଲାଭକଲେ । ତାଙ୍କର ଥିଲା

ଅପୂର୍ବ ଗ୍ରାହିକା ଶକ୍ତି, ରସବୋଧ ଓ ସନ୍ଧାନୀ ଦୃଷ୍ଟି । ପରିଦର୍ଶନ ଲାଗି ସେ ଯେଉଁ ସ୍ଥାନକୁ ଯାଉଥିଲେ, ସେ ସ୍ଥାନର ପ୍ରାକୃତିକ ଦୃଶ୍ୟ, ଭୌଗୋଳିକ ବିବରଣୀ, ବୃକ୍ଷଲତା, ପଶୁପକ୍ଷୀ, ସରୋବର, ମନ୍ଦିର ଆଦିର କିମ୍ବଦନ୍ତୀ ଓ ଇତିହାସ ସମ୍ବନ୍ଧରେ ଉପାଦାନ ସଂଗ୍ରହ କରୁଥିଲେ । ୧୮୮୨ ଓ ୮୩ ଖ୍ରୀଷ୍ଟାବ୍ଦରେ କବି ଉତ୍ତର ଭାରତର କେତେକ ଅଂଚଳ ଓ ହିମାଚଳ ଦେଖିବାର ସୁଯୋଗ ପାଇଥିଲେ । ଫଳରେ ତାଙ୍କ ପକ୍ଷରେ ସର୍ବ ଭାରତୀୟ ପ୍ରକୃତିର ପୃଷ୍ଠପଟରେ ଉତ୍କଳୀୟ ପ୍ରକୃତିର ବୈଶିଷ୍ଟ୍ୟ ଧାରଣା କରିବା ସହଜ ହୋଇଥିଲା ।

ଏହି ସମସ୍ତ ଉପାଦାନ ଅବଲମ୍ବନରେ କଥାକାବ୍ୟ ରଚନା ଲାଗି କବି କେତେକ ନିର୍ଦ୍ଦିଷ୍ଟ ଆଦର୍ଶ ସ୍ଥିର କରିଥିବା ଭଳି ମନେ ହୁଏ । ରାଧାନାଥୀ କଥାକାବ୍ୟଗୁଡ଼ିକୁ ପ୍ରାଚୀନ ଓଡ଼ିଆ କଥାକାବ୍ୟ ତୁଳନାରେ ବିଗ୍ଭର କଲେ—ଏହି ଆଦର୍ଶର ରୂପ ବହୁପରିମାଣରେ ଧାରଣା କରି ହୁଏ ।

ପ୍ରଥମତଃ ପ୍ରାଚୀନ କାବ୍ୟରେ ଗଳ୍ପ ରଚନାରେ ବିଶେଷ ଶକ୍ତି କବିଙ୍କଠାରେ ଦେଖାଯାଇ ନ ଥିଲା । ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି କାବ୍ୟ କଳ୍ପରେ କାହାଣୀ ପ୍ରାୟ ନ ଥିଲା । ବର୍ଣ୍ଣାଢ଼୍ୟ ଅଳଂକୃତ ବର୍ଣ୍ଣନା ବାହୁଲ୍ୟ ଭିତରେ ପରିବେଶିତ କଥାର ଶୀର୍ଣ୍ଣ କଙ୍କାଳରେ ଜୀବନୀ ଶକ୍ତି ନ ଥିଲା । ଏହା ସଂସ୍କୃତ ଅଳଂକାର ଶାସ୍ତ୍ରର ଅଂଗୁଳି ନିର୍ଦ୍ଦେଶରେ ଗତି କରି ଏକାନ୍ତ ଗତାନୁଗତିକ ଓ ପ୍ରାଣହୀନ ଅବସ୍ଥାରେ ପହଞ୍ଚି ଥିଲା । ପ୍ରାଚୀନ ଆଳଂକାରିକମାନେ ଅବଶ୍ୟ କାବ୍ୟର ଶରୀର ବା କଥାଭାଗ ଯେନି ଆଲୋଚନା କରିଥିଲେ । ଆଚାର୍ଯ୍ୟ ଦଣ୍ଡୀ ଓ ଭାମହ ପ୍ରାଚୀନ ଇତିହାସ ଓ ପୁରାଣରୁ କାବ୍ୟର କଥାବସ୍ତୁ ଆହରଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏଥିରେ ବାସ୍ତବତା ଦୃଷ୍ଟିରୁ କାବ୍ୟରେ କାହାଣୀର ସଂଯୋଜନା ଲାଗି ପରିସର ବହୁ ପରିମାଣରେ ସଙ୍କୁଚିତ ହୋଇଥିଲା । ପୁରାଣର ଚରିତ୍ରଗୁଡ଼ିକୁ ଯେନି ଏହି ଯୁଗରେ ବଙ୍ଗ କବି ମାଇକେଲ ମଧୁସୂଦନ ନବ ନବ ପରୀକ୍ଷା ଚଳେଇ ଥିଲେ । ମାତ୍ର ତାଙ୍କୁ ନିଜର ସ୍ୱଚ୍ଛନ୍ଦ ଦୃଷ୍ଟି ଲାଗି ପୁରାଣ ପ୍ରଭାବିତ ସମାଜର ସଂଘର୍ଷରେ ଆସିବାକୁ ପଡ଼ିଥିଲା । ତେଣୁ ରାଧାନାଥ ପୁରାଣ ପ୍ରତି ଦୃଷ୍ଟି ନଦେଇ ଇତିହାସ ଆଡ଼କୁ ଧ୍ୟାନ ଦେଇଥିଲେ ।

ଦ୍ୱିତୀୟତଃ ଏହି ଇତିହାସ ଦୃଷ୍ଟି କବିଙ୍କ ଦେଶପ୍ରେମ ଓ ଅତୀତ ଉପାସନାର ପ୍ରତୀକ ଥିଲା । ଚାହିଁଥିଲେ ରାଧାନାଥ ଫକୀରମୋହନଙ୍କ ଭଳି ଚତୁଃପାର୍ଶ୍ୱର ସାମାଜିକ ଜୀବନରୁ ଉପାଦାନ ଯେନି ମୌଳିକ କାହାଣୀ ସୃଷ୍ଟି କରି ପାରିଥାନ୍ତେ । ମାତ୍ର ଏହା କବିଙ୍କ ରୋମାଣ୍ଟିକ ଭାବ ଦୃଷ୍ଟିର ବିରୋଧୀ ଥିଲା । ସେ ଜାତୀୟ ଜୀବନରେ ଯେଉଁ ଶୌର୍ଯ୍ୟ ଓ ସୌନ୍ଦର୍ଯ୍ୟର ଚିତ୍ର ଦେଖିବାକୁ ଚାହୁଁଥିଲେ, ତାହା ସମକାଳୀନ ସମାଜରେ ଏକାନ୍ତ ଦୁର୍ଲଭ ଥିଲା ।

ତେଣୁ ତାଙ୍କୁ କଳ୍ପନା ଚକ୍ଷୁରେ ଗୌରବମୟ ଅତୀତରୁ ଉପାଦାନ ଖୋଜିବାକୁ ପଡ଼ିଥିଲା । ଅତୀତର ରୂପ ରଚନା ସେ କେବଳ ଜାତୀୟବାଦୀ ଦୃଷ୍ଟିରୁ ନକରି ଉଦାର ମାନବିକ ଦୃଷ୍ଟିରୁ କରିଥିଲେ । ପୃଥିବୀର ବିଭିନ୍ନ ଦେଶର ଗୌରବମୟ ଇତିହାସର ଇଙ୍ଗିତ ଆହରଣ କରି ସ୍ୱଦେଶୀୟ ଇତିହାସ ଚିନ୍ତାକୁ ପୁଷ୍ଟ କରିଥିଲେ । ବିଶେଷତଃ ଆମ ଇତିହାସ ଓ କିମ୍ବଦନ୍ତୀରେ ବିୟୋଗାନ୍ତ କାହାଣୀ ସମାବେଶଲାଗି ନାନା ପାଶ୍ଚାତ୍ୟ ଦୃଷ୍ଟାନ୍ତ ସେ ଅକୁଣ୍ଠ ଭାବରେ ଗ୍ରହଣ କରିଥିଲେ । ସେଥି ଲାଗି ସେ କାହାଣୀର ମୌଳିକତା ଆଡ଼କୁ ଧ୍ୟାନ ନଦେଇ ଆହରଣ ଢଗରେ ଅଧିକ ଯତ୍ନ କରିଥିଲେ ।

ଦୂରଦେଶ ଓ ଦୂର ଇତିହାସ ପ୍ରତି ଆକର୍ଷଣ ଆଖ୍ୟାନ ମୂଳକ ବର୍ଣ୍ଣନାତ୍ମକ କବିତାରେ ଏକ କ୍ଲାସିକ୍ ପରମ୍ପରା । ସବଂଶ କବିତା ପ୍ରାଚୀନତରେ ଯୁଗଦ୍ୱାରା ପ୍ରଭାବିତ ହୋଇଥିବାର ଦେଖିବାକୁ ମିଳେ । ଏହି ପ୍ରସଙ୍ଗ ଆଲୋଚନା କରିବାକୁ ଯାଇ ଗିଲବାର୍ଟ ମୂରି କହିଛନ୍ତି, ଗ୍ରୀକ୍ କବିତା ପ୍ରାଚୀନ ଗ୍ରୀକ୍ ପୁରାଣ ଓ ବୀରଗାଥାରୁ କାହାଣୀ ଓ ଚରିତ୍ର ଗ୍ରହଣ କରିଛି । ରୋମାନ୍ କବିତା ଗ୍ରୀକ୍ କବିତାର ପଦାଙ୍କ ଅନୁସରଣ କରିଅଛି । ଇଉରୋପର ମଧ୍ୟଯୁଗୀୟ ସାହିତ୍ୟରେ ମଧ୍ୟ ଏହି ଧାରା ଇତସ୍ତତଃ ଅନୁସୃତ ହୋଇଅଛି । ଆଧୁନିକ ଯୁଗର କବିମାନେ ମହାକାବ୍ୟର ବିଷୟ ସଂଗ୍ରହ ଲାଗି ମଧ୍ୟଯୁଗ ବା ଆଧୁନିକ ଯୁଗରେ ବିଦିତ ଅତୀତର କୌଣସି ବୀରତ୍ୱପୂର୍ଣ୍ଣ ଯୁଗ ଉପରେ ଦୃଷ୍ଟିପାତ କରିଥାନ୍ତି । ଅତୀତ ଘଟଣା ଧେନ କଳ୍ପିତ କାହାଣୀର ବିନଯୋଗ ବର୍ଣ୍ଣନାତ୍ମକ କବିତାର ଏକ ଅନପେକ୍ଷିତ ଅଙ୍ଗ । ଏହି ଅତୀତ ପ୍ରୀତିର ଗମ୍ଭୀର କାରଣ ହେଉଛି, କବିଙ୍କ ପକ୍ଷରେ କଳ୍ପନାର କ୍ରୀଡ଼ା ଲାଗି ସ୍ୱାଧୀନତା ଓ ସୁଯୋଗ ଲାଭ ।୭

ପ୍ରାକୃତିକ ପ୍ରାଣପୂର୍ଣ୍ଣ ଯୁଗ ପରିବେଶ ସବଦା କବିତାର ଅନୁକୂଳ । ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଏହି ପ୍ରାକୃତିକତା ଓ ପ୍ରାଣପୂର୍ଣ୍ଣ ସରଳତା ଲୋପ ପାଇ ଆସୁଅଛି । ଆଧୁନିକ ସବୁ ସ୍ତରରେ ପ୍ରାଚୀନଠାରୁ ଅଧିକ କୃତ୍ରିମ ଓ ଜଟିଳ । ଶିକ୍ଷା ଓ ସଂସ୍କୃତି ନାମରେ ଆଧୁନିକ ମନୁଷ୍ୟର ଜୀବନ ଏକ ସାଧାରଣ ମାପକାଠିରେ ମପା ହୋଇ ଏକ ବନ୍ଧାଗତରେ ଚଳେ ।

ମାତ୍ର ପ୍ରାଚୀନ କାଳରେ ବ୍ୟକ୍ତିର ଆତ୍ମା ସଦା ବିପଦ ସଙ୍କୁଳ ପଥରେ ଗତିକରି ମଧ୍ୟ ଆତ୍ମଶକ୍ତି ଉପରେ ନିର୍ଭର କରୁଥିଲା । ତାର ସମସ୍ତ ପ୍ରକୃତି ଓ ପ୍ରବୃତ୍ତି ଉପରେ ସଭ୍ୟତା ନାମରେ କୌଣସି କୃତ୍ରିମ ଆବରଣ ନଥିଲା । ବନ୍ଧୁତ୍ୱ ଓ ଶତ୍ରୁତା, ପ୍ରେମ ଘୃଣା, ସତ୍ୟ ଓ କପଟତା, ସମ୍ମାନବୋଧ ଓ ହତମାନଭାବ, ସାହସ ଓ ଭୀରୁତା ସମସ୍ତ ତାହାଠାରେ ପୂର୍ଣ୍ଣ ମାତ୍ରାରେ ଦେଖାଯାଉଥିଲା । ଏହାର ସହଜ ପ୍ରକାଶ କବିତାକୁ ପ୍ରାଣପୂର୍ଣ୍ଣ କରେ । ରାଧାନାଥଙ୍କ ସବୁକାବ୍ୟରେ ନାୟକ ନାୟିକାମାନେ ପ୍ରାଚୀନ ଯୁଗରୁ ଗୃହୀତ । ସୌନ୍ଦର୍ଯ୍ୟ ଓ ଶକ୍ତି,

ପ୍ରେମ ଓ ସଂଗ୍ରାମ ସାଧନା, ଦୁଃସାହସିକତା ଓ ଆତ୍ମବଳିଦାନ ଲାଗି ଆକୁଣ୍ଠ ଆଗ୍ରହ ଗୁଣ ଅଧିକ ତାଙ୍କର କଥାକାବ୍ୟର ସବୁ ନାୟକ ନାୟିକାଙ୍କଠାରେ ଦେଖିବାକୁ ମିଳେ ।

ତୃତୀୟତଃ ନିଜ ରଚନାକୁ ଲୋକ ରୁଚିର ଅନୁକୂଳ କରିବା ତାଙ୍କର କାମ୍ୟ ଥିଲା । ନୂତନ ଯୁଗ ପ୍ରବର୍ତ୍ତକମାନେହିଁ ପ୍ରକୃତରେ ଲୋକମନର ଅଧିନାୟକ । ସାମୂହିକ ଜାତୀୟ ଚିନ୍ତାର ଗତି ଅବଧାରଣ କରି, ସେମାନେ ତାହାର ପୁରୋଭାଗରେ ନିଜକୁ ପ୍ରତିଷ୍ଠା କରିଥାନ୍ତି । ଦେଶପ୍ରୀତି ନବ ଶିକ୍ଷିତଙ୍କଠାରେ ପ୍ରବଳ ଥିଲା । ଦେଶର ସମସ୍ତ ପ୍ରାକୃତିକ ସୌନ୍ଦର୍ଯ୍ୟ ପୂର୍ଣ୍ଣ ସ୍ଥାନ ଓ ଇତିହାସର ଚରିତ୍ର ନେଇ କବି କାବ୍ୟ ରଚନା କରିଥିଲେ । ଯେଉଁମାନେ ଦେଶକୁ ସୁଖ ପାଉଥିଲେ, ଦେଶର ପ୍ରକୃତି ଓ ଇତିହାସରେ ବିଭୋର ହେଉଥିଲେ, ସେମାନଙ୍କଠାରେ ରାଧାନାଥଙ୍କ କବିତା ପରମ ଆଦରର ବସ୍ତୁ ଥିଲା ।

ପରିଚିତରୁ ଅପରିଚିତ ଆଡ଼କୁ ନେଇଯିବା, ଜ୍ଞାତରୁ ଅଜ୍ଞାତ ରାଜ୍ୟର ସନ୍ଧାନ ଦେବା ରାଧାନାଥଙ୍କ କଥାକାବ୍ୟର ଆଦର୍ଶ ଥିଲା । ସମସ୍ତ ପ୍ରକାର ନୂତନ ଚିନ୍ତା ବା ଅଭିମୁଖ୍ୟକୁ ପ୍ରତିଷ୍ଠା ଦେବା ବା ଲୋକପ୍ରିୟ କରିବାର ଏହା ଏକ ସହଜ ଉପାୟ । ଇଂଲଣ୍ଡର ରୋମାଣ୍ଟିକ କଥାଶିଳ୍ପୀ ସ୍କଟ୍ ଏହି କଥା ବୁଝାଇ ଲେଖିଥିଲେ, "ଜଣେ କୃଷକକୁ ସାଧାରଣରେ ଅଦ୍ଭୁତ ହେବା ଭଳି ଡକାୟତି, ରହସ୍ୟଜନକ ମୃତ୍ୟୁ, ବା ଏହି ଧରଣର ଶୃଙ୍ଖଳାକର ଘଟଣା କହିଲେ, ସେ ପ୍ରଥମେ ଶୁଣିବାକୁ ବିଶେଷ ଆଗ୍ରହ ପ୍ରକାଶ କରିବ ନାହିଁ । ମାତ୍ର ତାକୁ ତାର ପରିଚିତ ଗୋଟିଏ ସ୍ଥାନକୁ ନେଇଯାଅ, ଘଟଣାଟି କେଉଁ ନଦୀକୂଳରେ, ପର୍ବତ ଖୋଲରେ ବା ନଗର ଉପାନ୍ତରେ ଘଟିଥିଲା ତାହା ବିସ୍ତାରିତ ଭାବରେ ବର୍ଣ୍ଣନା କର । ସେ ତମ କଥା ଉତ୍କଣ୍ଠ ହୋଇ ଶୁଣିବ । କଥାଟିକୁ ତାହାର ସ୍ମୃତିରେ ଜଡ଼ିତ କୌଣସି ରାଜବଂଶ, କୁଳୀନ ପରିବାର ବା ପୁରାକାହିଁ ସହ ମିଳେଇ କୁହ ତାହାର ଆଗ୍ରହ ବହୁ ଗୁଣିତ ହୋଇଯିବ ।" ୮ ରାଧାନାଥ ନିଜର ସମସ୍ତ କାବ୍ୟରେ ଏହି କୌଶଳ ଅବଲମ୍ବନ କରିଛନ୍ତି । ପ୍ରତ୍ୟେକ କ୍ଷେତ୍ରରେ ଆମର ପରିଚିତ ସ୍ଥାନ, ତୀର୍ଥ ନଗର, ପର୍ବତ, ଅରଣ୍ୟ ନିକଟକୁ ନେଇ ଯାଇ ନିଜର କାହାଣୀ ଶୁଣେଇଛନ୍ତି । ଆମ ସ୍ମୃତିରେ ଜଡ଼ିତ କିମ୍ବଦନ୍ତୀ, ପୁରାକାହିଁ ତାଙ୍କ କାହାଣୀର ଉପାଦାନ ହୋଇଅଛି । ସେଥିଲାଗି ତାହା ଏତେ ଜନପ୍ରିୟ ।

ରାଧାନାଥଙ୍କ କାବ୍ୟର ଜନପ୍ରିୟତାର ଅନ୍ୟ ଏକ କାରଣ ପୌରାଣିକ ଉପାଦାନର ସାର୍ଥକ ସର୍ଜନାତ୍ମକ ବିନିଯୋଗ । ପୁରାଣର ତୀର୍ଥ ବର୍ଣ୍ଣନା, ଅଲୌକିକ ଦେବ ଚରିତ ଆଖ୍ୟାନ ପ୍ରାକୃତିକ ଘଟଣାର ପୌରାଣିକ ବ୍ୟାଖ୍ୟା—ସମସ୍ତ ଢଙ୍ଗ ତାଙ୍କର କାବ୍ୟରେ ମିଳେ । ବିଜ୍ଞାନ ଯେପରି ଗଣିତର ଭାଷାରେ ଅଭିବ୍ୟକ୍ତ ହୁଏ, କବିତା ସେହିପରି ବହୁ ପରିମାଣରେ ପୁରାଣର ଭାଷାରେ ଆତ୍ମ ପ୍ରକାଶ କରେ । ସବୁଯୁଗର କବିତାରେ ଏହି ପରମ୍ପରା ପ୍ରାୟ ଦେଖିବାକୁ

ମିଳେ । କାବ୍ୟରେ ପୌରାଣିକ ଉପାଦାନର ବିନିଯୋଗ ନାନା ଭାବରେ ହୋଇପାରେ । କବି ନିଜର ବୌଦ୍ଧିକ ଧାରଣା ଓ ଅନ୍ତର୍ଦୃଷ୍ଟି ପୌରାଣିକ ଚରିତ୍ର ବା ଆଖ୍ୟାନ ଭିତରେ ପ୍ରକାଶ କରି ପାରନ୍ତି । ପୌରାଣିକ ଚରିତ୍ର ବା କାହାଣୀ ମାଧ୍ୟମରେ ଦେଶର ଇତିହାସ, ବିଶେଷରେ ସାଂସ୍କୃତିକ ଇତିହାସର ବ୍ୟାଖ୍ୟା କରି ଯାଇପାରେ । ସାଂପ୍ରତିକ ଜୀବନ ଭାବ ଅନୁଭବ, ବ୍ୟକ୍ତି ମନର ବିଶୃଙ୍ଖଳ ଭାବଚେତନାରାଜି ପୁରାଣର ପ୍ରତୀକମାଳା ସାହାଯ୍ୟରେ ଜୀବନ୍ତ ରୂପେ ପ୍ରକାଶ କରି ଯାଇପାରେ । ପୁଣି ପୁରାଣର ଘଟଣା ଚରିତ୍ର ଓ ବିଷୟ ବିନ୍ୟାସରୁ ଦୃଷ୍ଟାନ୍ତ ଓ ରୂପକମାଳା ଆହରଣ କରି ଭାଷାକୁ ରୂପମୟ ଓ ପ୍ରାଣପୂର୍ଣ୍ଣ କରିବା କବିତାର ଏକ ସହଜ ରୀତି । "ପ୍ରକୃତରେ ମିଥ୍ ଓ ମେଟାଫୋର—ପୁରାଣ କଳ୍ପନା ଓ ଚିତ୍ରକଳ୍ପ ଏକ ଜୀବନ୍ତ ଭାଷାର ଜୀବନ୍ତ ଉପାଦାନ । ଏହା ଭାଷାର ଅଳଙ୍କାର ବା ଏକ କୃତ୍ରିମ ବନ୍ଧନ ନୁହେଁ । ଏହା ଭାଷାର ଅନ୍ତରଙ୍ଗ ଉପାଦାନ ଓ ଏହିଭାବରେ କବି ମାନସର ଅବିଚ୍ଛେଦ୍ୟ ଅଂଶ ବିଶେଷ ।" ୯

ରାଧାନାଥ ନଦନଦୀ, ପର୍ବତ, କାନ୍ତାର ଆଦି ପ୍ରାକୃତିକ ବସ୍ତୁଠାରୁ ପ୍ରଣୟ ବିଚ୍ଛେଦ, ଆଦି ସାମାଜିକ ବିଷୟର ଚିତ୍ରମୟ ବର୍ଣ୍ଣନା ଦେବାକୁ ଯାଇ ପୌରାଣିକ ଉପାଦାନର ବିନିଯୋଗ କରିଛନ୍ତି । ଭାର୍ଗବୀ କୂଳରେ ପୁରାଣପ୍ରସିଦ୍ଧ ଭୃଗୁ, ଦୟାକୂଳରେ ଦଧୀଚୀ, ନଗରାଜ ହିମାଳୟ ପାଦଦେଶରେ ଗୌରୀଗୁରୁ ତାଙ୍କର ସ୍ମୃତି ପଥାରୂଢ ହୋଇଅଛନ୍ତି । ସେଇପରି ବିଦେଶୀୟ ଚରିତ୍ରକୁ ସ୍ୱଦେଶୀୟ ସୌନ୍ଦର୍ଯ୍ୟ ରୁଚିରେ ପ୍ରତିଷ୍ଠିତ କରିବା ଲାଗି ସର୍ବତ୍ର ସେ ପୁରାଣରୁ ସାହାଯ୍ୟ ନେଇଛନ୍ତି । କାଳେ କାଳେ ଲୌକିକ କାହାଣୀ ଓ କିମ୍ବଦନ୍ତୀ, ଗ୍ରାମ ଦେବାଦେବୀ ମହିମା ପୁରାଣରେ ପରିଣତ ହୋଇ ଶାସ୍ତ୍ରୀୟ ପ୍ରତିଷ୍ଠାଲାଭ କରେ । ଏହି ଦିଗଟି ମଧ୍ୟ ରାଧାନାଥଙ୍କ କାବ୍ୟରେ ଆଦୌ ଅବହେଳିତ ହୋଇ ନାହିଁ । ଯଥାର୍ଥରେ ସେ "ବିଦେଶୀ ଗଳ୍ପକୁ ଦେଶୀୟ ଛାଞ୍ଚରେ ଢାଳିବା ଲାଗି ଭାରତୀୟ ପୁରାଣ ସାହିତ୍ୟର ଯେତିକି ଆଲୋଡନ କରିଛନ୍ତି, ସ୍ଥାନୀୟ କିମ୍ବଦନ୍ତୀକୁ ପୌରାଣିକ ରୂପଦେବାରେ ସେତିକି ଫଳପ୍ରଦ ହୋଇଛନ୍ତି ।" ୧୦

### ରାଧାନାଥଙ୍କ କଥାକାବ୍ୟ

୧୮୮୫ରୁ ୧୮୯୫ ମସିହା, ଏହି ଦଶ ବର୍ଷ ମଧ୍ୟରେ ରାଧାନାଥଙ୍କ ସମସ୍ତ କଥା-କାବ୍ୟ କେଦାର ଗୌରୀଠାରୁ ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀ, ଯଯାତି କେଶରୀ ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲି । ଏହି ସମୟର ରଚନା ଭିତରେ କେବଳ ଚିଲିକା ହିଁ ନିପାତନ । ଏହି କାବ୍ୟଗୁଡ଼ିକ ମଧ୍ୟରେ କେଦାରଗୌରୀ, ଚନ୍ଦ୍ରଭାଗା ଓ ଉଷା ଏକ ଶ୍ରେଣୀର ରଚନା । ଏଗୁଡ଼ିକ ସର୍ଗବଦ୍ଧ ନୁହେଁ । ତିନୋଟି ଯାକ କାବ୍ୟର କାହାଣୀ ଏକ ସୂତ୍ରରୁ ଗୃହୀତ । ରୋମୀୟ କବି ଓଭିଡ୍‌ଙ୍କ ମେଟାମରଫସିସ୍ ହିଁ ଏକମାତ୍ର ଅବଲମ୍ବନ ।

ଅନ୍ୟପକ୍ଷରେ ନନ୍ଦକେଶରୀ, ପାର୍ବତୀ, ଯଯାତି କେଶରୀର କାହାଣୀ ଦୀର୍ଘ । ଏଗୁଡ଼ିକ ଏକାଧିକ ସର୍ଗରେ ବିଭକ୍ତ । ଏଥିରେ କେବଳ ଆହରଣ ନୁହେଁ, ମୌଳିକ ସଂଯୋଜନା ପ୍ରୟାସ ଅଧିକ । କବିଙ୍କ ଆହରଣ ଓ ମୌଳିକତାର ପୂର୍ଣ୍ଣ ଅବଧାରଣା ଲାଗି ପ୍ରଥମ ପର୍ଯ୍ୟାୟରେ କେଦାରଗୌରୀ, ଚନ୍ଦ୍ରଭାଗା, ଉଷା ଓ ଦ୍ୱିତୀୟ ପର୍ଯ୍ୟାୟରେ ନନ୍ଦକେଶରୀ, ପାର୍ବତୀ, ଯଯାତି କେଶରୀର ଆଲୋଚନା ସୁବିଧାଜନକ ।

## କେଦାରଗୌରୀ, ଚନ୍ଦ୍ରଭାଗା ଓ ଉଷା

୧୮୮୫ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଦେ' ପ୍ରେସ୍‌ରୁ କେଦାରଗୌରୀ, ୧୮୮୬ରେ ଉକ୍ତ ପ୍ରେସ୍‌ରୁ ଚନ୍ଦ୍ରଭାଗା ଓ ଏହାର ଦୁଇ ବର୍ଷପରେ କଟକ ଭିକ୍‌ଟୋରିଆ ପ୍ରେସ୍‌ରୁ ଉଷା ପ୍ରକାଶ ପାଇଥିଲା । ଏହି ତିନୋଟି ଯାକ କାବ୍ୟକୁ ଓଭିଡ୍‌ଙ୍କ ରଚନା ସହିତ ମିଳେଇ ଦେଖିଲେ, ଅନୁସରଣ ଓ ପୂର୍ଣ୍ଣ ଅବଲମ୍ବନ ଭିତରେ ରାଧାନାଥଙ୍କ ଲେଖନୀ କପରି ଶକ୍ତି ସଞ୍ଚୟ କରିଥିଲା, ତାହା ସହଜରେ ଧାରଣା କରିହୁଏ ।

ତୁଳନାରେ ଦେଖିଲେ, ଓଭିଡ୍‌ଙ୍କ କାହାଣୀ ପରି ରାଧାନାଥଙ୍କ ଏହି ତିନି କାବ୍ୟର କାହାଣୀ ବିୟୋଗାନ୍ତ । ରୋମୀୟ କବି କେତେକ ପ୍ରାକୃତିକ ବସ୍ତୁର ପୌରାଣିକ ବ୍ୟାଖ୍ୟା ଦେଇ ଅଛନ୍ତି । ରାଧାନାଥ କଳ୍ପିତ ଐତିହାସିକ ଘଟନାର ପୌରାଣିକ ବ୍ୟାଖ୍ୟା ଦେଇ ଅଛନ୍ତି । ଓଭିଡ୍‌ଙ୍କ କାବ୍ୟ ଗଳ୍ପ ପ୍ରଧାନ । ରାଧାନାଥଙ୍କଠାରେ କାହାଣୀ ଗୌଣ । ଭୌଗୋଳିକ ସ୍ଥାନ ଓ ପ୍ରାକୃତିକ ଦୃଶ୍ୟରାଜିର ବର୍ଣ୍ଣନା ଲାଗି କାହାଣୀ ଅବଲମ୍ବନ ରୂପେ କାର୍ଯ୍ୟ କରିଅଛି । ରୋମୀୟ କବିଙ୍କ ଭଳି ଏଇ କାବ୍ୟଗୁଡ଼ିକରେ ରାଧାନାଥଙ୍କ ଚିନ୍ତା ଚଟୁଳ ଓ ତରଳ । ସମସ୍ୟାସଙ୍କୁଳ ଜୀବନର ନିବିଡ ସ୍ପର୍ଶ ଏଥିରେ ନାହିଁ । ଯେଉଁ ସବୁ ସ୍ୱାଦ୍ୟ ଚିନ୍ତା ମୁହୂର୍ତ୍ତର ଆବେଗରେ ଜଞ୍ଜାଳମୟ ସଂସାରରୁ ଦୂରକୁ ଘେନିଯାଏ, ତାହାର ସୁନ୍ଦର ଓ ସରସ ପ୍ରକାଶ ଏହି ରଚନା ଗୁଡ଼ିକରେ ଘଟିଅଛି ।

## ଓଭିଡ୍‌ଙ୍କ କାବ୍ୟ

ସମ୍ରାଟ ଅଗଷ୍ଟାସ୍‌ଙ୍କ ରାଜୁତି ରୋମ ଇତିହାସରେ ସୁବର୍ଣ୍ଣ ଯୁଗ ବୋଲି ପରିଚିତ । ତାଙ୍କର ସମୟରେ ପଶ୍ଚିମ-ମଧ୍ୟ ଇଟାଲିରେ ଖ୍ରୀଷ୍ଟ ପୂର୍ବ ୪୩ରୁ ୧୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ପୁବ୍ଲିଉସ୍ ଓଭିଦିଉସ୍ ନାସୋ ବାସକରୁଥିଲେ । ସେ ଥିଲେ ରୋମର ବାତ୍ସ୍ୟାୟନ, ପ୍ରେମ ଓ ତାରୁଣ୍ୟର ରୂପକାର କବି । ପ୍ରେମିକ ପ୍ରେମିକାମାନେ କପରି ପରସ୍ପରକୁ ଆକୃଷ୍ଟ କରିପାରିବେ ସେଇ କଳା ସେ 'ପ୍ରେମ ଓ ପ୍ରେମର କଳା' କାବ୍ୟରେ ପ୍ରଚାର କରିଥିଲେ । ଏଥିଲାଗି ତତ୍କାଳୀନ ରୋମର ଯୁବସମାଜ ଉପରେ ତାଙ୍କର ପ୍ରଭାବ ବିଶେଷ ଭାବରେ ପଡ଼ିଥିଲା । ତାଙ୍କର

କାବ୍ୟ ଓ ବ୍ୟବହାର ଶୀତବାଘା ସମ୍ରାଟ ଅଗଷ୍ଟାସ୍‌ଙ୍କୁ ଆଦୌ ସୁଖ ଲାଗୁ ନଥିଲା । ଓଭିଡ୍‌ଙ୍କ ରଚନା ସମାଜକୁ ବିଶୃଙ୍ଖଳ ଓ ଭ୍ରଷ୍ଟ କରୁଛି ବୋଲି ସେ ବିଶ୍ୱାସ କରୁଥିଲେ । ସମ୍ରାଟଙ୍କ କନ୍ୟା ଓ ନାତୁଣୀଙ୍କି ଯେନ ଥରେ ପ୍ରେମରେ କୁତ୍ସା ରଟିତ ହୋଇଥିଲା । ଏଥିଲାଗି ଓଭିଡ୍‌ଙ୍କୁ ଦୋଷୀ କରାହେଲା । ସେ ସମ୍ରାଟଙ୍କ ଆଦେଶରେ କୃଷ୍ଣସାଗରର ଟମି ନାମକ ଏକ ନିକାଞ୍ଚନ ଦ୍ୱୀପକୁ ନିର୍ବାସିତ ହେଲେ । ସେଠାରେ ପାଖେ ଆଠବର୍ଷ ନିର୍ଜନ ଜୀବନ ଯାପନ ପରେ କବିଙ୍କର ମୃତ୍ୟୁ ଘଟିଲା । ନିର୍ବାସିତ ହେବାର ବର୍ଷକ ପୂର୍ବରୁ ସେ ନିଜର ପ୍ରସିଦ୍ଧ ଗ୍ରନ୍ଥ ମେଟାମର୍‌ଫୋସିସ୍ (metamorphosis) ରଚନା କରିଥିଲେ । ଲେଖୁ ଲେଖୁ ଏ ଗ୍ରନ୍ଥର ଖୁବ୍ ଖ୍ୟାତି ହୋଇଥିଲା । ମାତ୍ର ଏହା ଏକ ଉତ୍କୃଷ୍ଟ ଗ୍ରନ୍ଥବୋଲି କବି ମନେ କରୁ ନ ଥିଲେ । ସମ୍ରାଟଙ୍କ ଆଦେଶର ପ୍ରତିବାଦ ସ୍ୱରୂପ ରୋମ ଛାଡ଼ିବା ପୂର୍ବରୁ ଗ୍ରନ୍ଥଟିର ପାଣ୍ଡୁଲିପି ସେ ପୋଡ଼ି ଦେଇଥିଲେ । ମାତ୍ର ତାଙ୍କର ସ୍ତାବକମାନଙ୍କଠାରେ ଥିବା ପାଣ୍ଡୁଲିପିର ପ୍ରତିଲିପି ସେ ନଷ୍ଟ କରି ପାରି ନଥିଲେ । ସେ ସମୟରେ ପ୍ରଚଳିତ ପୁରାଣ କାହାଣୀର ଏକ ସୁନ୍ଦର ସଞ୍ଚୟନ ରୂପେ ପରବର୍ତ୍ତୀ କାଳରେ ଏହି ଗ୍ରନ୍ଥ ସମସ୍ତ ଇଉରୋପରେ ବିଶେଷ ଆଦର ଲାଭ କରିଥିଲା । କବିଙ୍କ ବିଚାର ଅନୁସାରେ ନୁହେଁ, କାଳ ଯେ ସ୍ୱାଧୀନ ଭାବରେ କଳାର ବିଚାର କରେ—ମେଟାମରଫସିସ୍ ଏହାର ଏକ ସୁନ୍ଦର ଦୃଷ୍ଟାନ୍ତ । ୧୧

## କେଦାର ଗୌରୀ, ପିରାମସ୍ ଓ ଥିସ୍‌ବେ

ରାଧାନାଥ କେଦାର ଗୌରୀରେ ଏକାନ୍ତ ଭାବରେ ଓଭିଡ୍‌ଙ୍କୁ ଅନୁସରଣ କରିଅଛନ୍ତି । ଉଭୟ କବିଙ୍କ ରଚନାର କଥାବସ୍ତୁ, କାହାଣୀର ଆରମ୍ଭ, ଗତି ଓ ପରିଣତିରେ ସାମ୍ୟ ରହିଅଛି । କେତେକ ସ୍ଥଳରେ ଓଭିଡ୍‌ଙ୍କ ଭାବ ରାଧାନାଥ ନିଜ ଭାଷାରେ ଅନୁବାଦ ପର୍ଯ୍ୟନ୍ତ କରିଦେଇଛନ୍ତି । ଓଭିଡ୍ ପ୍ରଥମ ଦୁଇଟି ପଂକ୍ତିରେ ସେମିରାମିସ୍ ନିର୍ମିତ ବେବିଲୋନ ନଗରର ବର୍ଣ୍ଣନା ଓ ନାୟକ ନାୟିକାଙ୍କ ପରିଚୟ ଦେଇଛନ୍ତି । ଅନୁରୂପ ଭାବରେ ରାଧାନାଥ ଲଲାଟକେଶରୀଙ୍କ ନିର୍ମିତ ଭୁବନେଶ୍ୱର ନଗରର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ କେଦାର ଓ ଗୌରୀର ପରିଚୟ ପ୍ରଦାନ କରିଛନ୍ତି ।

ଓଭିଡ୍‌ଙ୍କ ବର୍ଣ୍ଣନା ଅନୁସାରେ—ଉଚ୍ଚ ବିରାଟକାୟ ପ୍ରାସାଦ ଶୋଭିତ ବେବିଲୋନ ସେମିରାମିସ୍‌ଙ୍କ ଗୌରବ ରଚନା କରୁଥିଲା । ଏଇ ନଗରରେ ଦୁଇଜଣ କିଶୋର କିଶୋରୀ ପାଖ ପଡ଼ୋଶୀ ଭାବରେ ବାସ କରୁଥିଲେ । ଗୋଟିଏ ପୀଢ଼ରେ ଦୁହିଁଙ୍କ ଘର । ତରୁଣ ପିରାମସ୍ ଭଳି ସୁନ୍ଦର ଯୁବା ସେକାଳରେ ସାରା ପ୍ରାଚ୍ୟ ଜଗତରେ କେହି ନଥିଲେ । ତରୁଣୀ ଥିସ୍‌ବେ ଅଦ୍ୱିତୀୟ ସୁନ୍ଦରୀ ଥିଲା । ଦୁହିଁଙ୍କ ଭିତରେ ପରିଚୟ ବଢ଼ି ଗାଢ଼ ପ୍ରେମରେ ପରିଣତ ହେଲା । ସେମାନେ ବିଭା ହେବାକୁ ଇଚ୍ଛା କଲେ । ମାତ୍ର ପିତାମାତା ଏଥିରେ ବାଧା ଦେଲେ । ପ୍ରେମ ବାଧା ମାନେନାହିଁ । ବାହାରୁ ଯେତିକି ବାଧା ପାଇଲା, ପ୍ରେମବହ୍ନି

ସେମାନଙ୍କ ହୃଦୟରେ ସେତେ ବେଶୀ ଜଳ ଉଠିଲା । ସେମାନଙ୍କ ଗୋପନ ଆଚରଣ କେହି ଜାଣି ପାରିଲେ ନାହିଁ । ସେମାନେ ସଙ୍କେତରେ ଆଳାପ କଲେ । ଦୁଇ ଘର ମଝି କାନ୍ଥରେ ଅଲକ୍ଷିତ ଭାବରେ ଥିବା ଛିଦ୍ରଟିକୁ ଆବିଷ୍କାର କରି ତାହା ମଧ୍ୟରେ ପରସ୍ପର ମଧୁମୟ ଶ୍ୱାସ ଆଘ୍ରାଣ କଲେ । ଏକାନ୍ତରେ ସେଇ କାନ୍ଥ ପାଖରେ ଥାଇ ସେମାନେ ସତେ ଯେପରି ମନେ ମନେ କହୁଥିଲେ—ନିର୍ଦ୍ଦୟ କାନ୍ଥ, କାହିଁକି ଆମକୁ ଏପରି ଭିନ୍ନ କରି ରଖିଛୁ ? ଆମକୁ ଆଲିଙ୍ଗନର ସୁବିଧା ଦେଲେ, ତୋର କ'ଣ କ୍ଷତି ହୁଅନ୍ତା ? ତାହା ଯଦି ନୋହିଲା, ଚୁମ୍ବନ ଲାଗି ହେଲେ ଆମକୁ ଟିକିଏ ପଥ କରିଦେଉନୁ ନାହିଁ । ତଥାପି ଆମେ କୃତଘ୍ନ ନୋହୁଁ । ତୋ'ଠାରେ ଆମେ ଋଣୀ । କାରଣ ତୁ ଆମ କଥା ବହନ କରି ନେଉଅଛୁ । ରାଧାନାଥ ଏଇ ସଂଳାପ ଧାରା ଅବିକଳ ଅନୁସରଣ କରିଅଛନ୍ତି—

"କହନ୍ତି କାନ୍ଥକୁ ନିଦାରୁଣ ! ଏଥି କେଉଁ ବଡପଣ ତୋର
ତନୁରୁ ତନୁକୁ ଅନ୍ତର କରି ତୁ ଲଭିବୁ ଦୁଷ୍କୃତ ଘୋର ।
ତନୁମେଳେ ବାଧା ଦେଇ ଆଚରିଲୁ ଭଗାରି ପଣ ଆମ୍ଭର
ଲବେ ହୋଇ ଦ୍ୱିଧା ଚୁମ୍ବନ ସୁବିଧା- ବିଧାନେ ସୁଦୟା କର ।
ସାଧୁଅଛୁ ହିତ କାନ୍ଥ ତୁ ବହୁତ ଋଣୀ ଆମ୍ଭେ ତୋହଠାରେ
ବେନିଙ୍କ ବଚନ ବେନିଙ୍କ ଶ୍ରବଣେ ଆସଇ ତୋହ କୃପାରେ । ୧"

ଶେଷରେ ପ୍ରେମିକ ପ୍ରେମିକା ଦୁହେଁ ଘର ଛାଡ଼ି ନଗର ଉପାନ୍ତର ଗୋଟିଏ ନିର୍ଜନ ସ୍ଥାନକୁ ଗୋପନ ଅଭିସାରରେ ବାହାରି ଯିବାକୁ ସ୍ଥିରକଲେ । ଏହି ଅଭିସାର ସ୍ଥଳରେ ଗୋଟିଏ ସମାଧି ମନ୍ଦିର, ଝରଣା ଓ ଫଳଭାରି-ନତ ମାଲବେରି ଗଛ ଥିବା କଥା ଓଭିଡ୍ ଉଲ୍ଲେଖ କରିଚନ୍ତି । ରାଧାନାଥଙ୍କ କାବ୍ୟରେ ମଧ୍ୟ ଅଭିସାର ସ୍ଥଳ ନଗର ଉପାନ୍ତରେ ନିର୍ମଳ ନିର୍ଝର, କୁଟଜ-ବନ-ବେଷ୍ଟିତ ଗୋଟିଏ ନିକାଞ୍ଚନ ସ୍ଥାନ । ଅଭିସାର ସନ୍ଧ୍ୟା ପୂର୍ବରୁ ସକାଳ ଓ ଦିବସରେ ପ୍ରେମିକ ପ୍ରେମିକାଙ୍କ ଅନୁଭୂତି ଓଭିଡ୍ ବିଶଦ ଭାବରେ ବର୍ଣ୍ଣନା କରି-ଛନ୍ତି । ମାତ୍ର ରାଧାନାଥ କେବଳ ସନ୍ଧ୍ୟାର ଚିତ୍ର ଦେଇଅଛନ୍ତି । ଭାର୍ଗବୀ ପୁଳିନର ହଂସରାଜି, ବିନ୍ଦୁ ସରୋବରର ରଥାଙ୍ଗ ମିଥୁନ, ଅସ୍ତରାଗ ରଞ୍ଜିତ ଜଳରାଶିର ମନୋଜ୍ଞ ରୂପ ରଚନାରେ ରାଧାନାଥଙ୍କ ଲେଖନୀ ସ୍ୱାଧୀନ ଭାବରେ ଗତି କରିଅଛି । ଅଭିସାର ଦୃଶ୍ୟରେ ପୁଣି ରାଧା-ନାଥ ଓଭିଡ୍ଙ୍କ କାହାଣୀକୁ ଫେରି ଆସିଛନ୍ତି । ଓଭିଡ୍ଙ୍କ ସିଂହୀ ସ୍ଥାନରେ ରାଧାନାଥ ବ୍ୟାଘ୍ରର ବର୍ଣ୍ଣନା ଦେଇଛନ୍ତି । ଏହା ଉତ୍କଳୀୟ ପ୍ରକୃତି ଦୃଷ୍ଟିରୁ ସ୍ୱାଭାବିକ ହୋଇଅଛି । ନାୟିକାର ଅନ୍ଧକାର ରାତ୍ରିରେ ଘରୁ ଏକାକିନୀ ବାହାରି ଆସିବାର ଚିତ୍ର, ବାଘକୁ ଦେଖି ଲୁଚିବା, ତ୍ରସ୍ତ ଗତିରେ ଲୁଚିବା ସ୍ଥାନକୁ ଯିବାବେଳେ ଉତ୍ତରୀ ଛାଡ଼ି ଦେଇଯିବା, ନାୟକ ନାୟିକାକୁ ନ ଦେଖି ବ୍ୟାଘ୍ର ପଦ ଅଙ୍କିତ ରକ୍ତାକ୍ତ ଉତ୍ତରୀକୁ ଦେଖିବା, ନାୟିକାକୁ ମୃତ

ବୋଲି ଭାବି ନିଜକୁ ଦୋଷଦେବା, ଏହି ଅନୁତାପରେ ଆତ୍ମହତ୍ୟା ଲାଗି ନିଷ୍ଠୁର କରି ବକ୍ଷରେ ଛୁରିକା ଘାତ କରିବା ଓ ଭୂପତିତ ହେବା, ଗୋପନ ସ୍ଥଳରୁ ବାହାରି ନାୟକଙ୍କୁ ଭୂଲୁଣ୍ଠିତ ହୋଇଥିବାର ଦେଖି ନାୟିକାର ଶୋକ, ନାୟିକା ଉପରେ ଅନ୍ତିମ ଦୃଷ୍ଟି ପକାଇ ନାୟକର ପ୍ରାଣତ୍ୟାଗ, ସଦ୍ୟ ରକ୍ତଲିପ୍ତ ଛୁରିକାରେ ବକ୍ଷ ବିଦ୍ଧ କରି ନାୟିକା ନାୟକ ଉପରେ ତଳ ପଡ଼ିବାର ଦୃଶ୍ୟ ବର୍ଣ୍ଣନାରେ ରାଧାନାଥ ଏକାନ୍ତ ଭାବରେ ଓଭିଡ୍‌ଙ୍କୁ ଅନୁସରଣ କରିଅଛନ୍ତି ।

ମୃତ୍ୟୁ ସମୟରେ ଥିସ୍‌ବେ ଦୁଇଟି ଇଚ୍ଛା ପୋଷଣ କରିଥିଲି– ଉଭୟଙ୍କ ସମାଧି ଏକାଠି ହେଉ, ସେମାନଙ୍କ ଆତ୍ମହତ୍ୟା ଶୋକର ପ୍ରତୀକ ସ୍ୱରୂପ ଦେବତାମାନେ ନିକଟସ୍ଥ ମାଲବେରି ଗଛର ଫଳକୁ କଳା କରି ଦିଅନ୍ତୁ । ପ୍ରେମଦେବୀଙ୍କ କୃପାରୁ ଏଇ ଦୁଇଟି ଯାକ ବାସନା ପୂରଣ ହୋଇଥିଲି । ରାଧାନାଥ, ନାୟକର ଶବ ପାଖେ ଶୋକବିହ୍ୱଳିତା, ଆତ୍ମହତ୍ୟା ପାଇଁ ଉଦ୍ୟତା ନାୟିକା ମୁଖରେ କୌଣସି ଅନ୍ତିମ ବାସନା ପ୍ରକାଶର ଅବସର ଦେଇ ନାହାନ୍ତି । କାହାଣୀର ନାଟକୀୟ ପରିଣତି ଦୃଷ୍ଟିରୁ ଏହା ସ୍ୱାଭାବିକ ହୋଇଅଛି । ଓଭିଡ୍‌ଙ୍କ ପ୍ରେମଦେବୀ ସ୍ଥାନରେ ରାଧାନାଥ ବନଦେବୀ ଓ ଏକାମ୍ରେଶ୍ୱରଙ୍କୁ ଆରୋପ କରିଅଛନ୍ତି । ବନଦେବୀ ଯୁଗଳଙ୍କ ଶବକୁ ପୁଷ୍ପାଞ୍ଜଳି ଦେଇ ବନ୍ଦନା କରିଛନ୍ତି । ଏକାମ୍ରେଶ୍ୱରଙ୍କ ସ୍ୱପ୍ନାଦେଶରେ ଲଲାଟ କେଶରୀ ଏମାନଙ୍କ ସ୍ମୃତିରେ ମନ୍ଦିର ତୋଳି ଦେଇଚନ୍ତି ।

ତୁଳନାରେ ସ୍ପଷ୍ଟ ହୁଏ, ରାଧାନାଥ ଓ ଓଭିଡ୍‌ଙ୍କ କାହାଣୀରେ ତାରତମ୍ୟ ନାହିଁ । ରାଧାନାଥ ଭାବ, ଘଟଣାପର ଧାରା ଓ କାବ୍ୟ ବର୍ଣ୍ଣନରେ ଏକାନ୍ତ ଭାବରେ ଓଭିଡ୍‌ଙ୍କୁ ଅନୁସରଣ କରିଛନ୍ତି । ମନୁଷ୍ୟ ସମାଜରେ ପ୍ରେମର ଆଦର୍ଶ, ନାରୀ ଓ ପୁରୁଷ ଜୀବନରେ ଏକନିଷ୍ଠ ପ୍ରେମର ପ୍ରଭାବ ଓ ପରିଣତି ଯେନି ରାଧାନାଥ ଓଭିଡ୍‌ଙ୍କ ବାଣୀ ଗ୍ରହଣ କରିଛନ୍ତି । ପ୍ରେମ ଅନ୍ତରର ବସ୍ତୁ । ବାହାର ଜଗତର ନିୟମ ନିୟନ୍ତ୍ରଣରେ ଏହା ରୁହେ ନାହିଁ । ବାହାର ବାଧା ପ୍ରବଳ ହେଲେ, ଅନ୍ତରରେ ପ୍ରେମର ଶକ୍ତି ବଢ଼େ । ଏଇ ଶକ୍ତିରେ କୃତ୍ରିମ ଶୃଙ୍ଖଳ ଛିନ୍ନ ହୁଏ । ଓଭିଡ୍‌ଙ୍କ ପଂକ୍ତି—

"The closlier they suppressed
The fire of love, the fiercer still it raged in their breast."

ଏହାର ଅନୁସରଣରେ ରାଧାନାଥ ଲେଖିଛନ୍ତି ।

"ଯେନି ହୃଦୟରେ ଖରତର ହୋଇ ଜଳିଲି ପ୍ରୀତି ଅନଳ
ମର୍ଯ୍ୟାଦା ପ୍ରକୃତି ପଥେ ବାଧା ଦେଲେ ଫଳେ କିନା ଏହି ଫଳ ।"

ପ୍ରେମ ଶକ୍ତିରେ ସାହସିନୀ ନାରୀ କିପରି ଚରମ ତ୍ୟାଗ ବରଣ କରିବାକୁ ସମର୍ଥ ହୁଏ, ଓଭିଡ୍‌ଙ୍କ "Love made her bold" ପଂକ୍ତିର ମର୍ମକୁ ଠିକଏ ବିଶଦ କରି ରାଧାନାଥ ଲେଖିଛନ୍ତି—

"ଧନ୍ୟ ସେ ପ୍ରୀତିକି ! ମରଣ ସ୍ରୀତକି ପ୍ରୀତି ସେ ପାରିଲି ଜଣି,
ଶିଖିବ ମୃଦୁଳା ଲବଣୀ . ପିତୁଳା ପ୍ରୀତି କଲ ସାହସିନୀ ।"

ଇହଜୀବନରେ ବ୍ୟର୍ଥ ପ୍ରେମର ସାର୍ଥକତା ଓଭିଡ଼ଙ୍କ ନାୟକ ନାୟିକା ଖୋଜିଥିଲେ ପରଲୋକରେ । ଓଭିଡ଼ଙ୍କ ନାୟିକା ମୁଖର ନମ୍ର ଉତ୍ତର ପ୍ରତିଧ୍ୱନି ଗୌରୀ ମୁଖରେ ଶୁଣିବାକୁ ମିଳେ ।

ଥିସ୍‌ବେ·· "For death which only could, alash ! asunder part
us twain
Shall never so dissever us, but we will meet again."

ଗୌରୀ—"ପରଲୋକ ପଥେ କାନ୍ତ-ପଦ-ଚିହ୍ନ ସିବ ମୂର୍ଦ୍ଧ୍ୱେ ଅନୁସରି
ମୃତ୍ୟୁ ଘଟାଇଲା ଏ ବିରହ, ମୃତ୍ୟୁ କରିଦେବ ସହଚରୀ ।"

## ରାଧାନାଥଙ୍କ ସ୍ୱାତନ୍ତ୍ୟ

ଉପମା ଓ ଭାବକଳ୍ପ ପ୍ରୟୋଗରେ ପ୍ରାଚ୍ୟଭାବ ଓ ଦେଶକାଳ ବର୍ଣ୍ଣନାରେ ଆଞ୍ଚଳିକତାର ରଙ୍ଗ ରାଧାନାଥଙ୍କ ବିଶେଷତ୍ୱ । ଏଥିଲାଗି ସମସ୍ତ ବିଦେଶୀୟ ଆହରଣ ସତ୍ତ୍ୱେ କେଦାର ଗୌରୀ ଏତେ ଜନପ୍ରିୟ ହୋଇଅଛି । ଓଭିଡ଼ଙ୍କ ନାୟକ ନାୟିକା କେବଳ ପ୍ରବୃତ୍ତିର ତାଡ଼ନାରେ ଗୃହତ୍ୟାଗୀ ହୋଇଛନ୍ତି । ମାତ୍ର ରାଧାନାଥଙ୍କ ପ୍ରେମିକ ପ୍ରେମିକା କେବଳ ଜୈବ ପ୍ରବୃତ୍ତିର ବଶବର୍ତ୍ତୀ ନୁହନ୍ତି । ପ୍ରେମ ସେମାନଙ୍କଠାରେ ଆଧ୍ୟାତ୍ମିକ ସାଧନା ସ୍ତରକୁ ଉନ୍ନୀତ ହୋଇଅଛି । ଏହାହିଁ ଭାରତବର୍ଷରେ ପ୍ରେମର ସନାତନ ଆଦର୍ଶ । ଅବଶ୍ୟ ରାଧାନାଥ କଳାର ଅନୁରୋଧରେ ବହୁତର ଆଦର୍ଶୋନ୍ମୁଖ ବର୍ଣ୍ଣନା ଦେଇ ନାହାନ୍ତି । ମାତ୍ର ନାୟକ ନାୟିକାଙ୍କୁ ପ୍ରେମର ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ବୋଲି କହିବା ଦ୍ୱାରା ଏହି ଆଧ୍ୟାତ୍ମିକତା ପ୍ରତି ସଙ୍କେତ ଦେଇଅଛନ୍ତି ।

ରୋମାନ କବି କେବଳ କାହାଣୀ ଦେବାକୁ ବ୍ୟସ୍ତ । ସେ ବାହାରଙ୍କ ପ୍ରକୃତିର ପୃଷ୍ଠପଟ ପ୍ରତି ଧ୍ୟାନ ଦେଇନାହାନ୍ତି । ମାତ୍ର ରାଧାନାଥଙ୍କ ପ୍ରକୃତି ପୂଜାରୀ ମନ ଉତ୍କଳୀୟ ପ୍ରକୃତିର ଉପାସନାରେ କେତେବେଳେ ତ୍ରୁଟି କରିନାହିଁ । ବିଦେଶୀ ଗଳ୍ପକୁ ଉତ୍କଳୀୟ ପରିଚ୍ଛେଦ ଦେବାରେ ଏହି ପ୍ରକୃତି ବର୍ଣ୍ଣନା ବହୁଭାବରେ ସାହାଯ୍ୟ କରିଅଛି । ପ୍ରଥମରେ ପ୍ରଦତ୍ତ ଭୁବନେଶ୍ୱର ନଗର ବର୍ଣ୍ଣନା ଓ ଅଭିସାର ସନ୍ଧ୍ୟାରେ ଏହି ନଗର ଉପାନ୍ତର ବର୍ଣ୍ଣନା କାବ୍ୟର ଏକାନ୍ତ ଉପଯୋଗୀ ହୋଇଅଛି । ଏହା କବିଙ୍କ ମୌଳିକ ପ୍ରତିଭାର ଯଥାର୍ଥ ନିଦର୍ଶନ ।

## ଚନ୍ଦ୍ରଭାଗା ଓ ଡାଫ୍‌ନେ କାହାଣୀ

ଶିକାରୀ ଜାତିର ଯୁବତୀ ଡାଏନା କାହାଣୀ ଗ୍ରୀକ୍ ପୁରାଣ କଥାରେ ପ୍ରସିଦ୍ଧ । ପ୍ରେମ ବିଦ୍ୱେଷିଣୀ ଡାଏନା ବିବାହକୁ ଘୃଣା କରୁଥିଲା । କୌଣସି ଦେବତା ତା'ପ୍ରେମରେ ପଡ଼ି ତାକୁ ଦୁର୍ବିସହ ଦୁଃଖ ଦେଉଥିଲେ । ଏହି ପୁରାଣ କାହାଣୀର କୌଣସି ଲିଖିତ ରୂପ ମିଳେ ନାହିଁ । ଓଭିଡ୍‌ଙ୍କ ଡାଫ୍‌ନେ ସମ୍ପୂର୍ଣ୍ଣ ରୂପେ ରୋମାନ୍ କଳ୍ପନା । କାରଣ ଏକ ଜଳ ଅପ୍‌ସରାକୁ ବହୁମୂଲ୍ୟ ବସ୍ତ୍ର ଓ ଅଳଂକାରରେ ମଣ୍ଡିତା ରୂପେ ବର୍ଣ୍ଣନା କରିବା ଆଉ ଗ୍ରୀକ୍ କବିଙ୍କଠାରେ ଦେଖାଯାଏ ନାହିଁ ।

ଓଭିଡ୍‌ଙ୍କ ଡାଫ୍‌ନେହିଁ ଚନ୍ଦ୍ରଭାଗାର ପ୍ରଧାନ ଅବଲମ୍ବନ । ତେବେ କେତେକ ଗୌଣ ଭିନ୍ନ ଏଥିରେ କାହାଣୀ ଓ ବର୍ଣ୍ଣନାରେ ରାଧାନାଥ, ରୋମୀୟ କବିଙ୍କୁ ନିବିଡ଼ ଭାବରେ ଅନୁସରଣ କରିନାହାନ୍ତି । କେବଳ ଗଳ୍ପର ସୂତ୍ର ଅବଲମ୍ବନ କରି ନୂତନ କଳ୍ପନା ସନ୍ନି-ବେଶିତ କରିଅଛନ୍ତି ।

## ଓଭିଡ୍‌ଙ୍କ ଚିତ୍ର

ଜଳଦେବତା ପେନୁଙ୍କର (Penues) ଗୋଟିଏ ବୋଲି ଝିଅ—ଡାଫନେ । ଝିଅ ବାହାହେଲେ ନାତି ଦେଖିବା ପେନୁଙ୍କର ଇଚ୍ଛାଥିଲା । ମାତ୍ର ଝିଅ ବାହାକଥା ଶୁଣିବାକୁ ସୁଖ ପାଉନଥିଲା । ଦେବତାଙ୍କ ପ୍ରେମଦୃଷ୍ଟି କପରି ଦୁଃଖଦାୟକ ତାହା ସେ ଡାଏନା କାହାଣୀରୁ ଜାଣିଥିଲା । ମାନବ ପ୍ରେମବି ସେ ଗ୍ରହି ନଥିଲା । ମୁକ୍ତ ପ୍ରକୃତି କୋଳରେ ସ୍ୱାଧୀନ ବିହାର ଓ ଉପଭୋଗ ଥିଲା ତାହାର ଏକମାତ୍ର କାମନାର ବସ୍ତୁ । ମାତ୍ର ତାହାର ଏହି ଅଭିଳାଷ ଶେଷ ପର୍ଯ୍ୟନ୍ତ ରକ୍ଷା ହୋଇ ପାରିଲା-ନାହିଁ । ଥରେ ଶିକାର କରୁଥିଲାବେଳେ ସେ ହଠାତ୍ ଆପୋଲୋଙ୍କ କାମଦୃଷ୍ଟିରେ ପଡ଼ିଗଲା । ଅବିନ୍ୟସ୍ତ ଶିକାରୀ ବେଶରେ ତା'ର ସ୍ୱଭାବ ସୌନ୍ଦର୍ଯ୍ୟ ଝଟକି ଉଠିଲା । ତା'ର ଅର୍ଦ୍ଧନଗ୍ନ ଦେହ, ଖୋଲା ହାତ ମୁକୁଳା କେଶ ଦେଖି ଆପୋଲୋ ଭାବିଲେ, ଆହା ଖାଲିକୁ ତ ଏ ଏପରି ସୁନ୍ଦରୀ । ଯଦି ବସନ ଭୂଷଣରେ ଏହାର ଦେହ ମଣ୍ଡି ହୁଅନ୍ତା ତେବେ କେଡ଼େ ସୁନ୍ଦର ନ ଦିଶନ୍ତା । କଳ୍ପନାରେ ମୁହୂର୍ତ୍ତିକ ଭିତରେ ସେ ସମସ୍ତ ପ୍ରକାର ମୂଲ୍ୟବାନ ବସନ ଭୂଷଣରେ ଡାଫେନକୁ ମଣ୍ଡାଇ ଦେଲେ । ତାଙ୍କ ଆଖିରେ ସେ ଅଧିକରୁ ଅଧିକ ସୁନ୍ଦରୀ ଦେଖାଗଲା । ତାକୁ ଜଗତର ଶ୍ରେଷ୍ଠ ସୁନ୍ଦରୀ ବୋଲି ଭାବିଲେ । କ୍ରମେ ତାଙ୍କ ହୃଦୟରେ ପ୍ରେମ ଭାବନା ଜଳି ଉଠିଲା; ଜଳି ଜଳି ନିଜ କରଣଠାରୁ ଗାବ୍ର ହେଲା । ସେ ତାକୁ ଅନୁସରଣ କଲେ । ଡାଫ୍‌ନେର ଗତି ଖୁବ୍ କ୍ଷିପ୍ର ଥିଲା । ଆପୋଲୋ ପ୍ରଥମେ ବେଶ ପଛରେ ପଡ଼ି ଯାଉଥିଲେ । ଶେଷରେ ସେ ଧାବମାନାର ନିକଟବର୍ତ୍ତୀ ହେଲେ ।

ଧାଉଁ ଧାଉଁ ସେ ଆକୁଳ ଭାବରେ କହୁଥିଲେ, "ସୁନ୍ଦରୀ ଥରେ ପଛକୁ ଫେରି ଚାହାଁ, ଦଣ୍ଡେ ଠିଆ ହୋଇ ଦେଖ୍ ମୁଁ କିଏ ? ମୁ ଗ୍ରାମ୍ୟ ମେଷପାଳକ ନୁହେଁ, ଡେଲ୍‌ଫିର ଦେବତା। ତୋ ପ୍ରଣୟାସକ୍ତ।"

ଡେଲଫିର ଦେବତା ପ୍ରଣୟାସକ୍ତ—ଏକଥା ଶୁଣିଲାକ୍ଷଣି ଡାଫ୍‌ନେ ଅଧିକ ଭୀତହେଲା। ସେ ଧାଇଁଲା, ଜୀବନକୁ ପାଣି ଛଡ଼ାଇ ଧାଇଁଲା। ତାର ଶ୍ୱାସରୁଦ୍ଧ ହୋଇ ଆସୁଥାଏ, ହୃତ୍-ପିଣ୍ଡର ସ୍ପନ୍ଦନ ବନ୍ଦ ହୋଇ ଆସୁଥାଏ। ମନେ ହେଉଥାଏ ଯେପରିକି ଜୀବନ ନାଟ୍ଟ ଛାଡ଼ିବାକୁ ଆଉ ମୁହୂର୍ତ୍ତେ ବିଳମ୍ବ ନାହିଁ। ଆଗରେ ଦେଖିଲା ଅରଣ୍ୟର ବୃକ୍ଷ ଗହଳ ଭିତରେ ଫାଙ୍କ ଦିଶୁଛି, ବନ୍ଧ ଯାଉଛି ପିତାଙ୍କ ନଈ। ନିଜର ସମସ୍ତ ଶକ୍ତି ଠୁଳକରି ବାପା ରକ୍ଷାକର ରକ୍ଷାକର ବୋଲି କହୁଁ କହୁଁ ତା ପାଦ ସ୍ତମ୍ଭିତ ହୋଇଗଲା। ତାର କ୍ଷୁଦ୍ର ବପୁ ବିଶାଳ ଆକାର ଧାରଣ କଲା। ସେଥିରେ ବକଳ ଘୋଡ଼େଇ ହୋଇ ଗଲା। ଶାଖା ମେଲି ଗଲା। ପତ୍ର ବାହାରି ପଡ଼ିଲା। ଡାଫ୍‌ନେ ଗୋଟିଏ ଗଛ ପାଲଟି ଗଲା।

ଆପୋଲୋଙ୍କ ଆଖି ଆଗରେ ଏଇ ଦୁର୍ଘଟଣା ମୁହୂର୍ତ୍ତିକେ ଘଟି ଗଲା। ସେ ଶୋକରେ ଅଭିଭୂତ ହୋଇ ପଡ଼ିଲେ। କହିଲେ, "ହେ ସୁନ୍ଦରୀ, ମୁଁ ତୋତେ ହରାଇଲି। କିନ୍ତୁ ତୁ ମୋହରି ଗଛ ହୋଇ ରହିବୁ। ତୋ ପତ୍ର ବିଜୟୀ ବୀରମାନେ ଧାରଣ କରିବେ। ତୁ ହେବୁ ବିଜୟର ସଙ୍କେତ।" ସେଇ ଦିନରୁ ଆପୋଲୋ ଓ ତାଙ୍କ ଲରେଲ୍ ସଙ୍ଗୀତ କାବ୍ୟରେ ଏକତ୍ର ଗୀତ ହୋଇ ଆସୁଅଛି।

## ରାଧାନାଥଙ୍କ ଚରିତ୍ରଗୁଡିକର ତୁଳନା

ରାଧାନାଥଙ୍କ ଚନ୍ଦ୍ରଭାଗା ଓ ସୂର୍ଯ୍ୟ ଓଭିଡ୍‌ଙ୍କ ଡାଫ୍‌ନେ ଓ ଆପୋଲୋଙ୍କ ଆଦର୍ଶରେ ଅଙ୍କିତ। ଡାଫେନ୍‌ର ପ୍ରେମ ଓ ବିବାହ ବିଦ୍ୱେଷ ଚନ୍ଦ୍ରଭାଗାଠାରେ ଅଛି। ସେ ବିଜନ ବିହାରରେ ପ୍ରୟାସିନୀ, ପୁରୁଷ ସାନ୍ନିଧ୍ୟରେ ସଦା କୁଣ୍ଠିତା। ମାତ୍ର ରାଧାନାଥ ଏହାର କୌଣସି କାରଣ ବର୍ଣ୍ଣନା କରିନାହାନ୍ତି। ତାଏନାର ଦୁର୍ଯୋଗ କାହାଣୀ ଡାଫେନ୍‌କୁ ଶଙ୍କିତ କରିଥିଲା। ଚନ୍ଦ୍ରଭାଗାର ପୁରୁଷ ଭୟ ଅହେତୁକ ଓ ଆକସ୍ମିକ ଭାବରେ ପ୍ରକୃତିଗତ।

ପୁଣି ସୂର୍ଯ୍ୟ ମଧ୍ୟ ପେନୁ ନୁହନ୍ତି। ହିଁ ଅର ବିଭା ପ୍ରସଙ୍ଗରେ କୌଣସି ଆଗ୍ରହ ସେ ଦେଖାଇ ନାହାନ୍ତି। ଡାଫ୍‌ନେଙ୍କ ସୌନ୍ଦର୍ଯ୍ୟହିଁ ଆପୋଲୋଙ୍କୁ ଆକୃଷ୍ଟ କରିଅଛି। ଏହାର ଅନ୍ୟ କୌଣସି କାରଣ ଓଭିଡ୍ ଦେଇ ନାହାନ୍ତି। ମାତ୍ର ଚନ୍ଦ୍ରଭାଗା ଓ ସୂର୍ଯ୍ୟଙ୍କ ପ୍ରଣୟର କାରଣ ରାଧାନାଥ ସୂର୍ଯ୍ୟ ଓ କନ୍ଦର୍ପଙ୍କ କଳହ ଭିତରେ ସୃଷ୍ଟି କରି ଦେଇଛନ୍ତି। ଏଇ କଳହର ପରିଣତି ହୋଇଛି ସୂର୍ଯ୍ୟଙ୍କ ପରାଜୟରେ। ଏଠାରେ ରାଧାନାଥଙ୍କ କଳ୍ପିତ

କନ୍ଦର୍ପ ଗ୍ରୀକ୍ ଆଫ୍ରୋଡାଇଟ୍ ବା ରୋମୀୟ ଭେନସ୍‌ଙ୍କ ସମଧର୍ମୀ । ଆମ ପୁରାଣ କଳ୍ପନାରେ କାମଦେବ ନିଜ ଇଚ୍ଛାରେ 'ଦମ୍ପୀ-ଦମ୍ପ- ହର' ସାଜନ୍ତି ନାହିଁ । ତାଙ୍କ କାର୍ଯ୍ୟ ପଛରେ ଏକ ବୃହତ୍ତର ଆଦର୍ଶ ବା ଉଦ୍ଦେଶ୍ୟ ଥାଏ । ମାତ୍ର ଗ୍ରୀକ୍ କାମଦେବୀ ବିଶ୍ୱାସ ଘାତିନୀ, ନୀଚମନା ଓ ଈର୍ଷ୍ୟାପରାୟଣ । ୧୩ ରାଧାନାଥଙ୍କ କଳ୍ପିତ କନ୍ଦର୍ପ ସୂର୍ଯ୍ୟଙ୍କ ମୁଖରେ ନିମ୍ନ ରୂପେ ବର୍ଣ୍ଣିତ ।

"ସଂସାରେ ଯାବତ କଳଙ୍କ ତାର ଅଟୁ କରତା
ନାରୀ, ନାରୀରଙ୍କ ନରଙ୍କ ଗୁରୁ ଅଟୁ ଦେବତା ।" ୧୪

ଓଭିଡ୍‌ଙ୍କ ନାୟିକାର ଶିକାରକାଳୀନ ଅବିନ୍ୟସ୍ତ ସୌନ୍ଦର୍ଯ୍ୟ ଦେଖି ନାୟକ ଆକୃଷ୍ଟ ହେଲାଭଳି ଚନ୍ଦ୍ରଭାଗାର କନ୍ଦୁକ କ୍ରୀଡ଼ା କାଳର ଅବିନ୍ୟସ୍ତ ସୌନ୍ଦର୍ଯ୍ୟ ଦେଖି ସୂର୍ଯ୍ୟ ଆକୃଷ୍ଟ ହୋଇଛନ୍ତି । ମାତ୍ର ଚନ୍ଦ୍ରଭାଗାର ସ୍ୱଭାବ ସୌନ୍ଦର୍ଯ୍ୟ ଡାଫ୍‌ନେ ସହିତ ତୁଳନୀୟ ନୁହେଁ । ଡାଫ୍‌ନେ ମୁଗ୍ଧା ରମଣୀ । ତାଠାରେ କୋମଳ ବୃତ୍ତି କ୍ୱଚିତ୍ ପ୍ରକାଶିତ ହୋଇଅଛି । ଏ-ଦୃଷ୍ଟିରୁ ଚନ୍ଦ୍ରଭାଗାର ଚରିତ୍ର ସ୍ୱତନ୍ତ୍ର । ସେ କାଳିଦାସଙ୍କ ଶକୁନ୍ତଳା ସହ ତୁଳନୀୟା । ମାତା ଉମାଙ୍କ ସହଚରୀ ସାଗର ଅପ୍ସରା । ପିତା ତପସ୍ୱୀ ସୁମନ୍ୟୁ । ଓଭିଡ୍‌ଙ୍କ ବର୍ଣ୍ଣନାରେ ଆପୋଲୋଂକ କଳ୍ପନାରେହିଁ ବେଶ ବିନ୍ୟାସ ମଣ୍ଡିତା, ଅଳଂକାର ଭୂଷିତା ଡାଫ୍‌ନେଙ୍କୁ ଦେଖିବାକୁ ମିଳେ । ମାତ୍ର ଚନ୍ଦ୍ରଭାଗାର ଅପସରୀ ମାତା ଲକ୍ଷ୍ମୀଂକ କୋଠ ଭଣ୍ଡାରରୁ ବସନ ଭୂଷଣ ଆଣି ତାଙ୍କୁ ଭୂଷିତ କରିଅଛନ୍ତି । କଂନ୍ଦୁକ କ୍ରୀଡ଼ା ଦୃଶ୍ୟରେ ନିତମ୍ବର ହେମ ମେଖଳା, ସ୍ତନାଙ୍କୁରରେ ବିଲମ୍ବିତ ମୋତିମାଳା, ଶ୍ରବଣର କୁଣ୍ଡଳ, ସୀମନ୍ତର ଅଳକ ଓ ବାୟୁ ଲହରରେ ଚଞ୍ଚଳ ଦୁକୂଳ ଅଞ୍ଚଳ ଚଂଦ୍ରଭାଗାର ସ୍ୱଭାବ ସୌନ୍ଦର୍ଯ୍ୟକୁ ବହୁଗୁଣିତ କରି ଦେଇଅଛି । ପୁଣି କନ୍ଦୁକ କ୍ରୀଡ଼ାରେ ଚନ୍ଦ୍ରଭାଗାର ଅଙ୍ଗଲତାର ଗତିଛନ୍ଦ ତାହାର ଏହି ସମସ୍ତ ବସନ ଭୂଷଣକୁ ସଞ୍ଚାରିତ ହୋଇଅଛି । ଓଭିଡ୍‌ଙ୍କ ନାୟିକା ନିବିଡ଼ତମର ଅରଣ୍ୟ ପ୍ରକୃତି କୋଳରେ ବର୍ଦ୍ଧିତା । ମାତ୍ର ରାଧାନାଥଂକ ପ୍ରକୃତି ବର୍ଣ୍ଣାଢ୍ୟ, ଶିଳ୍ପୀ ଦୃଷ୍ଟିରେ କଳ୍ପିତ ଏକ ନାଟ୍ୟଶାଳା ଭଳି ମନୋହର । ଅସ୍ତରାଗର ସୁନେଲି ଆଲୋକରେ ଏଇ ମଣ୍ଡପ ଆଲୋକିତ, ସାଗରର କଳନାଦରେ ସଙ୍ଗୀତ ମୁଖର । ଚନ୍ଦ୍ରଭାଗା ସହିତ ପ୍ରତିଯୋଗିତା କରି ସତେ ଯେପରି ସନ୍ଧ୍ୟା-ସମୀର ଗୁଡ଼୍-କଙ୍କ ଧରି କନ୍ଦୁକ କ୍ରୀଡ଼ାରେ ରତ ହୋଇଅଛି । ଓଭିଡ୍‌ଙ୍କ ଚିତ୍ର ସ୍ଥୂଳ ତୂଳୀରେ ଅଂକିତ । ରାଧାନାଥଙ୍କ ବର୍ଣ୍ଣନା ବିଚିତ୍ର ରଙ୍ଗ ବିନ୍ୟାସରେ ସୂକ୍ଷ୍ମ ତୂଳୀରେ ଛବି ଭଳି ସୁନ୍ଦର ।

ଓଭିଡ୍ ଆପୋଲୋଙ୍କୁ ମେଷପାଳକ ଓ ରାଧାନାଥ ସୂର୍ଯ୍ୟଙ୍କୁ ବିପ୍ର ଯୁବା ରୂପେ ଚିତ୍ର କରିଛନ୍ତି । ଉଭୟ ନାୟକ, ନାୟିକାର ମନକୁ ପ୍ରଣୟାସକ୍ତ କରିବା ଲାଗି ନିଜ ନିଜ ମହିମା ପ୍ରକାଶ କରିଛନ୍ତି । ଏଠାରେ ଓଭିଡ୍ ଗ୍ରୀକ୍ ଓ ରାଧାନାଥ ଭାରତୀୟ ପୁରାଣ ପରମ୍ପରା

ଅନୁସରଣ କରିଅଛନ୍ତି । ରାଧାନାଥ ନିଜ ବର୍ଣ୍ଣନାରେ ସ୍ଥାନୀୟ ରଙ୍ଗ ଦେବା ପାଇଁ ଅର୍କ-କ୍ଷେତ୍ରର କୋଣାର୍କ ମନ୍ଦିର ଓ ମୈତ୍ରେୟୀ ବନ ନାମ ଉଲ୍ଲେଖ କରିଛନ୍ତି । ସୂର୍ଯ୍ୟ ଓ ଚନ୍ଦ୍ରଭାଗାର କଥୋପକଥନ ତଥା ସେମାନଙ୍କ ଅନୁଧାବନ ବର୍ଣ୍ଣନାରେ ରାଧାନାଥଙ୍କ ମୌଳିକତା ସ୍ପଷ୍ଟ । ଚନ୍ଦ୍ରଭାଗାର ଦୁଃଖରେ ସୂର୍ଯ୍ୟଙ୍କ ମନର ପ୍ରତିକ୍ରିୟା, ତ୍ରିଭୁବନର ସମବେଦନା ପ୍ରକାଶ କଳ୍ପନା ଅତି ସୁନ୍ଦର । ଓଭିଡ୍ ଡାଫ୍‌ନେ ମୁଖରେ ଏକ କରୁଣ ଆର୍ତ୍ତନାଦ ଛଡ଼ା ଅଧିକ କିଛି କଥା ଦେଇ ନାହାନ୍ତି । କଥାର ନାଟକୀୟ ପରିଣତି ଦୃଷ୍ଟିରୁ ଏହା ଯଥାର୍ଥ ହୋଇଅଛି । ମାତ୍ର ରାଧାନାଥଙ୍କ ଶିଳ୍ପବୋଧ ମନ ଚନ୍ଦ୍ରଭାଗା ଓ ସୂର୍ଯ୍ୟଙ୍କ ଅନୁଧାବନରେ ଖାଦ୍ୟ ଖାଦକର ସମ୍ପର୍କ ଦେଖିଅଛି । ସୌନ୍ଦର୍ଯ୍ୟ ଓ ଶକ୍ତି ଦେନି ତାଙ୍କଠାରେ ସୁନ୍ଦର ଦର୍ଶନ ପ୍ରକାଶ ପାଇଅଛି । ମନୋ-ହର ରୂପ ଶିଳ୍ପ ମଣ୍ଡିତ ନହେଲେ, କପର ମୂଲ୍ୟହୀନ ତାହା ଚନ୍ଦ୍ରଭାଗା ଉପଲବ୍ଧି କରିଅଛି ।

ରାଧାନାଥଙ୍କ କାବ୍ୟର ଆରମ୍ଭ ଓ ପରିଣତି ଉଭୟକ୍ଷେତ୍ର ସ୍ୱାତନ୍ତ୍ର୍ୟ ଫୁଟିଅଛି । ସ୍ୱଦେଶୀୟ ପରିଚ୍ଛଦରେ କାହାଣୀକୁ ସ୍ୱାଭାବିକ କରିବାଲାଗି କବି ପ୍ରଥମେ ଉତ୍କଳର ବିଶିଷ୍ଟ ଦେବଦେବୀ, ନାରୀଙ୍କ ବେଶଭୂଷା, ପ୍ରସିଦ୍ଧ ପ୍ରାକୃତିକ ସ୍ଥାନର ଦୃଶ୍ୟରାଜି ବର୍ଣ୍ଣନା କରିଛନ୍ତି । ଓଭିଡ୍‌ଙ୍କ କଳ୍ପନାରେ ଆପୋଲୋଙ୍କ ପ୍ରସାଦରୁ ଡାଫ୍‌ନେ ବିଜୟ ସଙ୍କେତ ରୂପେ ଗୌରବଶାଳିନୀ ହୋଇଥିଲା । ମାତ୍ର ସୂର୍ଯ୍ୟଙ୍କ ପ୍ରସାଦରୁ ଚନ୍ଦ୍ରଭାଗାର କୌଣସି ସୌଭାଗ୍ୟ ଲାଭ ହୋଇନାହିଁ । ଓଭିଡ୍‌ଙ୍କ ନାୟକ ଭଳି ସୂର୍ଯ୍ୟ ସର୍ବଶକ୍ତିମାନ୍ ସ୍ୱେଚ୍ଛାଚାରୀ ନୁହନ୍ତି । ସୁମନ୍ୟୁଙ୍କ ଅଭିଶାପରେ ସେ ନିଜର ପ୍ରିୟ ମନ୍ଦିର ହରାଇଛନ୍ତି । ନିଜ କର୍ମର ଫଳ ଭୋଗ କରିଛନ୍ତି ।

କେଦାରଗୌରୀରେ ଗ୍ରୀକ୍ କାହାଣୀକୁ ଉତ୍କଳୀୟ ପରିଚ୍ଛଦରେ ପରିବେଷଣ କରିବାଲାଗି କବି କେବଳ ନାୟକ ନାୟିକା ଓ ଘଟଣା ସ୍ଥଳର ନାମ ମାତ୍ର ପରିବର୍ତ୍ତନ କରିଥିଲେ । ମାତ୍ର ଚନ୍ଦ୍ରଭାଗାରେ ନୂତନ ଚରିତ୍ର, ନୂଆ ପରିବେଶ ସୃଷ୍ଟି କରିଛନ୍ତି । ଗଳ୍ପର କ୍ରମବିକାଶରେ ସ୍ୱାତନ୍ତ୍ର୍ୟ ରହିଅଛି । ଏଥିରେ ଉତ୍କଳୀୟ ପ୍ରକୃତି ଚିତ୍ରଣ ଲାଗି ଅଧିକ ଅବସର ସୃଷ୍ଟି କରା ଯାଇଅଛି । କବିଙ୍କ ଅନୁକରଣକାରୀ ଲେଖନୀ ଯେପରି କି ଆତ୍ମଶକ୍ତି ବଳରେ ନୂତନ ପଥ ନିର୍ମାଣ ପାଇଁ ପ୍ରୟାସୀ ହେଇଅଛି । ବିଦେଶୀୟ ଚରିତ୍ରକୁ ଆତ୍ମୀଭୂତ ପରିପାଟୀରେ ସୁନ୍ଦର କରି ପ୍ରକାଶ କରିବାରେ କବିଙ୍କ ପ୍ରତିଭା ବିକାଶ ମାର୍ଗରେ ଗୋଟିଏ ସୋପାନ ଅଗ୍ରଗତି କରିଅଛି ।

## ଉଷା ଓ ଆଟଲାଣ୍ଟା କାହାଣୀ

ଗ୍ରୀକ୍ ପୁରାଣର ଆଟଲାଣ୍ଟା କାହାଣୀ ଉଷା କାବ୍ୟର ଉପଜୀବ୍ୟ । ମାତ୍ର ପୂର୍ବ ଦୁଇ କାବ୍ୟ ତୁଳନାରେ ଏଥିରେ କବିଙ୍କ ସ୍ୱାତନ୍ତ୍ର୍ୟ ଅଧିକ ପରିସ୍ଫୁଟ ହୋଇଅଛି । ମୂଳ କାହାଣୀର ଘଟଣା ଓ ଚରିତ୍ରମାନ ସଂଶ୍ଲେଷଣ ଓ ବିଶ୍ଳେଷଣରେ ନବୀଭୂତ ରୂପରେ ପରିବେଷଣ କରା-ଯାଇଛି ।

ବହୁ ପ୍ରାଚୀନ ଗ୍ରୀକ୍ ଲେଖକଙ୍କ ଲେଖାରେ ଆଟଲାଣ୍ଟା କାହାଣୀର ଖଣ୍ଡିତ ରୂପ ଦେଖି-ବାକୁ ମିଳେ । ପରବର୍ତ୍ତୀ କାଳରେ ରୋମାନ୍ ଲେଖକ ଓଭିଡ୍ ଓ ଆପୋଲୋଡୋରସ୍ ଏହି କାହାଣୀକୁ ପୂର୍ଣ୍ଣତା ପ୍ରଦାନ କରିଥିବାର ଦେଖାଯାଏ ।

ପୁଅ ନହୋଇ ଝିଅ ହେଲାବୋଲି ଆଟଲାଣ୍ଟାର ବାପା ଇଆସାସ୍ ବଡ ଦୁଃଖିତ ହେଲେ । ତାକୁ ଗୋଟିଏ ନିର୍ଜନ ପାହାଡ ମୂଳରେ ଛାଡ଼ି ଆସି ଭାବିଲେ, ଏ ଅଲୋଡା ଝିଅ ଶୀତ ଆଉ ଭୋକରେ ଏଇଠି ମରୁ । ସମୟ ସମୟରେ ମଣିଷ ଅପେକ୍ଷା ପଶୁ ହୃଦୟରେ ଅଧିକ ଦୟାଭାବ ଜାତ ହୁଏ । ମାଈ ଭାଲୁଟିଏ ଝିଅଟିକି ଘେନିଯାଇ ପାଳିଲା । ସେ ଯେମିତି ଶକ୍ତିଶାଳିନୀ, ସେମିତି ସାହସିନୀ ହୋଇ ବଢ଼ିଲା । ବଣରେ ପଶୁଙ୍କ ପଛରେ ସେ ବିଜୁଳି ବେଗରେ ଧାଉଁଥିଲା । ଥରେ ଦଳେ ଶିକାରୀ ଝିଅଟିର ବଳ ଓ ସାହସ ଦେଖି, ତାକୁ ଘେନି ଯାଇ ନିଜ ଦଳରେ ରଖିଲେ । ଶିକାରୀ ଜୀବନ ଆଟଲାଣ୍ଟାକୁ ସୁଖ ଲାଗିଲା । ଶିକାର କୌଶଳରେ ସେ ସମସ୍ତଙ୍କୁ ବଳି ଗଲା । ଥରେ ଶିକାର କରୁଥିବା ବେଳେ ଦୁଇଟି ଭୀଷଣକାୟ ଜୀବ ୧୫ ତାକୁ ଅକସ୍ମାତ୍ ଆକ୍ରମଣ କଲେ । ଏଥିରେ ବିଚଳିତ ନହୋଇ ଗୋଟିକ ପରେ ଗୋଟିଏ ଅବ୍ୟର୍ଥ ଲକ୍ଷ୍ୟଭେଦୀ ଶରରେ ଏହି ଭୟଙ୍କର ଜୀବ ଦୁଇଟିଙ୍କୁ ସେ ସହଜରେ ମାରି ଦେଲା । ଫଳରେ ତାର ଖ୍ୟାତି ଚାରିଆଡେ ବ୍ୟାପିଗଲା ।

କାଲିଡ଼ନର ରାଜା ଓଏନଉସ୍ ଦେବୀ ଆର୍ଟେମିସ୍‌ଙ୍କୁ ବର୍ଷର ପ୍ରଥମ ଫଳ ଦେବାକୁ ଭୁଲିଗଲେ । ଦେବୀ କ୍ରୋଧରେ ପ୍ରତିଶୋଧ ନେବାକୁ ତାଙ୍କ ରାଜ୍ୟକୁ ଦୁଇଟି ବନ୍ୟଶୂକର ପଠେଇ ଦେଲେ । ଶୂକର ଦୁଇଟି ମନୁଷ୍ୟ, ପଶୁ ଯାହାକୁ ପାଇଲେ ମାରିଲେ । ନିଜେ ସେଗୁଡ଼ିକୁ ଦମନ କରିବାକୁ ଅକ୍ଷମ ହୋଇ ରାଜା ଶେଷରେ ଗ୍ରୀସ୍‌ରୁ ଶ୍ରେଷ୍ଠ ଶିକାରୀ ଦଳକୁ ନିମନ୍ତ୍ରଣ କଲେ । ଏହି ଦଳରେ ଆଟଲାଣ୍ଟା ଆସିଥିଲା । ସେଥିଲା ଆକାଡ଼ି ଶିକାରୀ ଦଳର ମୁକୁଟ ମଣି । ବୀରଶିକାରୀ ଗହଣରେ ତାର ରୂପ ବର୍ଣ୍ଣନାକରି ଓଭିଡ୍ ଲେଖିଛନ୍ତି, "ସେ ବୀରର ପୋଷାକ ପିନ୍ଧିଥିଲା । ମଥାରେ ସାନ ଜୁଡ଼ାଟିଏ ପାରିଥିଲା । ତା ପିଠିରେ ଥିଲା ହାତୀ ଦାନ୍ତର ତୂଣୀର ଓ ହାତରେ ବିରାଟ ଧନୁ । ପୌରୁଷ ଓ ନାରୀତ୍ୱ ଉଭୟ ଛଟା ତା ମୁଖରେ ଖେଳୁଥିଲା ।"୧୬ ଆଟଲାଣ୍ଟାର ଏହି ରୂପ ଖାଲି ଜଣେ ଯୁବାପୁରୁଷଙ୍କ ଆଖିକି ସୁନ୍ଦର ଦିଶୁଥିଲା । ସେ ହେଉଛନ୍ତି କାଲିଡ଼ନର ଯୁବରାଜ ମାଲିଏଗାର । କେବଳ ଆଟଲାଣ୍ଟାର ସାନ୍ନିଧ୍ୟ ଲାଭ ଲାଗି ସେ ଏହି ଶିକାରୀ ଦଳରେ ଯୋଗ ଦେଇଥିଲେ । ଆଟଲାଣ୍ଟା ଓ ମାଲିଏଗାର ଦୁହେଁ ଶେଷରେ ଶୂକର ଯୋଡ଼ିକୁ ମାରିଲେ । ଆଟଲାଣ୍ଟା ଶର ବିନ୍ଧିଲା ମାତ୍ର ସାହସର ସହିତ ମାଲିଏଗାର ଛୁରୀ ଭୂସିବାରେ ଶୂକର ଦୁଇଟି ମଲେ । ଦେବୀ ଆର୍ଟେମିସ୍‌ଙ୍କ କୋପରେ ଶିକାର ବିଜୟୀ ଯୁବରାଜଙ୍କୁ ପ୍ରାଣ ଦେବାକୁ ହେଲା ।

ଏହିପରି ଗୋଟିକ ପରେ ଗୋଟିଏ ଘଟଣାରେ ଆଟଲାଣ୍ଟାର ଖ୍ୟାତି ସାରା ଗ୍ରୀସ୍ ଦେଶରେ ବ୍ୟାପିଗଲା । କେବଳ ଶିକାର ନୁହେଁ, ବହୁ ମଲ୍ଲଯୁଦ୍ଧରେ ମଧ୍ୟ ସେ ଜୟୀ ନାମକଲା ।

ଏହା ଜାଣି ତାର ବାପା ତାକୁ ଆଦର କରି ଘରକୁ ନେଇ ଗଲେ । ସେ ଝିଅକୁ ବାହାଦେବାକୁ ଚାହିଁଲେ । ମାତ୍ର ଝିଅର ସେଥିରେ ଆଦୌ ଇଚ୍ଛା ନଥିଲା । ସେ ପଣ କରି ବସିଲା, ଯେଉଁ ଯୁବକ ଦୌଡ଼ ପ୍ରତିଯୋଗିତାରେ ତାକୁ ହରେଇବ, ସେ ହେବ ତାର ପତି । ସେ ଦୃଢ଼ ଭାବରେ ବିଶ୍ୱାସ କରୁଥିଲା, ତାକୁ ପରାଜିତ କରିବାକୁ ଦୁନିଆ ଯାକରେ କେହି ଯୁବକ ଜନ୍ମ ହୋଇନାହିଁ । ଏ ଗର୍ବ କାମଦେବୀ ଆଫ୍ରୋଡ଼ାଇଟ୍ ସହି ପାରିଲେ ନାହିଁ । ସେ ମେଲାନିଅନ୍ ନାମକ ନିଜର ଜଣେ ଭକ୍ତ ଯୁବକଙ୍କୁ ହେସ୍‌ପେରିଡେସ୍‌ଙ୍କ ଉଦ୍ୟାନରୁ ତିନୋଟି ସୁନା ଆତ ଆଣିଦେଇ, ପ୍ରତିଯୋଗିତାରେ ଜିଣିବାର କୌଶଳ ବତେଇ ଦେଲେ । ମେଲାନିଅନ୍ ଜିଣିଲେ । ଆଟଲାଣ୍ଟାର ଗର୍ବ ଖର୍ବ ହେଲା । ଦୁହେଁ ବାହା ହେଲେ । ସେମାନଙ୍କର ପୁଅଟିଏ ହେଲା । କାମଦେବୀଙ୍କୁ ନିନ୍ଦା କରିବାରୁ ଦେବୀ ଅଭିଶାପ ଦେଇ ସେମାନଙ୍କୁ ସିଂହ କରିଦେଲେ ।

## ଉଷା ଗଳ୍ପାଂଶର ତୁଳନା

ଉପର ବର୍ଣ୍ଣିତ ଗ୍ରୀକ୍ କାହାଣୀକୁ ନିମ୍ନଭାବରେ ଭାଗ କରି ଯାଇ ପ୍ରତ୍ୟେକ ପର୍ଯ୍ୟାୟରେ ଉଷାକାହାଣୀର ସାମ୍ୟ ଅନୁସନ୍ଧାନ କରାଯାଇ ପାରେ । କ - ଆଟଲାଣ୍ଟାର ଜନ୍ମ, ଖ— ଶିକାରୀ ଜୀବନ, ଗ ମନୁଷ୍ୟାକୃତି ଘୋଟକ ଶିକାର, ଘ କାଲିଡନରେ ଶୂକର ଶିକାର ଓ ଯୁବରାଜ ମାଲିଏଗାରଙ୍କ ସହିତ ପ୍ରେମ, ଚ—ସ୍ୱୟଂବର ପଣ, ଛ—କାମଦେବୀଙ୍କ ଇଚ୍ଛାରେ ମେଲାନିଅନ୍‌ଙ୍କ ସହ ବିବାହ ଓ ପରିଣତି ।

ଉଷାର ଜନ୍ମ କାହାଣୀର ଆଟଲାଣ୍ଟା ସହିତ ସାମ୍ୟ ନାହିଁ । ନିଃସନ୍ତାନ ନୃପ ଦୈବାନୁଗ୍ରହରେ ଉଷାକୁ ପାଇଥିଲେ । ଉଷା ଥିଲା ରାଜପୁରର ଆଦର ପାଳିତା କନ୍ୟା । ଦ୍ୱିତୀୟ ପର୍ଯ୍ୟାୟରେ ଆଟଲାଣ୍ଟାର ଅରଣ୍ୟ ଜୀବନ ଉଷାଠାରେ ଦେଖାଯାଏ ନାହିଁ । ମାତ୍ର ପ୍ରବୃତ୍ତିଗତ ଭାବରେ ଓ ଶିକାର କୁଶଳୀ ନିଜ ପିତାଙ୍କ ଆଦର୍ଶରେ ଉଷା ଶିକାର କୁଶଳୀ ହୋଇଅଛି । ବିଦେଶୀ ଗଳ୍ପରେ ବନ୍ୟ ଘୋଟକ ଓ ଶୂକର ଶିକାର ପ୍ରସଙ୍ଗ ଉଷାର କୁମ୍ଭୀର ଓ ବଣ୍ୟଶୂକର ଶିକାର ଘଟଣାରେ ଅନୁଭୂତ ହୁଏ । କାଲିଡନର ଯୁବରାଜ ଶୂକର ଶିକାରରେ ଆଟଲାଣ୍ଟାର ସହାୟକ ହେବା ଭଳି ଜୟନ୍ତ ଶୂକର ଶିକାରରେ ଉଷାର ସହାୟକ ହୋଇଅଛି । ମାଲିଏଗାରଙ୍କ ଭଳି ଜୟନ୍ତ ପ୍ରଥମ ଦର୍ଶନ ବେଳରୁ ମୃଗୟୁ ବେଶିନୀ ନାୟିକାର ପ୍ରଣୟାସକ୍ତ ହୋଇଛନ୍ତି । ବିବାହ ପାଇଁ ଅନିଚ୍ଛୁକ ଆଟଲାଣ୍ଟା ନିଜ ପିତାଙ୍କ ଆଗ୍ରହ ଏଡ଼ି ନପାରି ସ୍ୱୟଂବର ଲାଗି ଅସମ୍ଭବ ପଣ ରଖିଥିଲା । ମାତ୍ର ଉଷା ନିଜର ଯୋଗ୍ୟ ପତି ନିର୍ବାଚନ ପାଇଁ ଏହି ପଣ ଗ୍ରହଣ କରିଅଛି । କାମଦେବୀ ନିଜର ଉଦ୍ଦେଶ୍ୟ ଚରିତାର୍ଥ କରିବା ଲାଗି ମେଲା-ନିୟନକୁ ସୁବର୍ଣ୍ଣ ଆତ ଆଣି ଦେଇ ସାହାଯ୍ୟ କରିଥିଲେ । ମାତ୍ର ଜୟନ୍ତ ପ୍ରଥମ ଦର୍ଶନରୁ ଉଷାର ପ୍ରେମିକ । ସେ ନିଜ ପ୍ରେମର ସାର୍ଥକତା ପାଇଁ ଆରାଧ୍ୟ ଦେବତା କାର୍ତ୍ତିକେୟଙ୍କ-

ଠାରେ ବର ଭିକ୍ଷା କରିଥିଲେ ଓ ତାଙ୍କର କୃପାରେ ସଫଳ ହୋଇଥିଲେ । ଜୟନ୍ତଠାରେ ଯୁବରାଜ ମାଲ୍ୟଗାର ଓ ମେଲ୍ଲିନଅନ୍ ଏକତ୍ର ଆତ୍ମପ୍ରକାଶ କରିଅଛନ୍ତି । ପରିଣତ ରାଧାନାଥ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ରୂପେ କଳ୍ପନା କରିଛନ୍ତି । ଏଠାରେ କାମଦେବୀଙ୍କ ଅଭିଶାପ ସ୍ଥାନରେ କାଳିଦେବୀଙ୍କ ଅଭିଶାପ କାର୍ଯ୍ୟ କରିଅଛି । ଅବଶ୍ୟ ଭିନ୍ନ ରୂପରେ ଏହି ଅଭିଶାପ ପ୍ରସଙ୍ଗ ପ୍ରଯୁକ୍ତ ହୋଇଅଛି । ସମସ୍ତ ଦିଗରୁ ବିଚାର କଲେ ରାଧାନାଥଙ୍କ ନିର୍ବାଚନର ବୈଶିଷ୍ଟ୍ୟ ସୁନ୍ଦର ଭାବରେ ଧାରଣା କରିହୁଏ । କବି ମୂଳ କାହାଣୀକୁ ଅଯଥା ବିସ୍ତୃତି ଓ ବିଚ୍ଛିନ୍ନତାରୁ ରକ୍ଷା କରି ଶିଳ୍ପପୂର୍ଣ୍ଣ କରିଛନ୍ତି ।

ଗଳ୍ପାଂଶ ବ୍ୟତୀତ ଦେଶକାଳ ବର୍ଣ୍ଣନାରେ ଆହରଣର ଅନ୍ୟ ଏକଦିଗ ପ୍ରକାଶ ପାଇଅଛି । କବିଙ୍କ ଦୃଷ୍ଟିରେ ବାଲେଶ୍ୱରର ଭୂମିଖଣ୍ଡ, ଗ୍ରାମ ଓ ପୀଠ ପ୍ରାଚୀନ ଗ୍ରୀକ୍ ନଗରର ଆଦର୍ଶ ଯେନ ସିଦ୍ଧ ହୋଇଅଛି । ପ୍ରାଚୀନ ଗ୍ରୀସ୍ ବହୁ ନଗର ରାଜ୍ୟରେ ବିଭକ୍ତ ଥିଲା । ପ୍ରତ୍ୟେକ ନଗର ନିଜ ନିଜର ପ୍ରାକୃତିକ ଭୂମିଖଣ୍ଡ, ଦେବାଦେବୀ, କିମ୍ବଦନ୍ତୀ ଓ ପୁରାଣ ପରମ୍ପରାରେ ଗୌରବାନ୍ୱିତ ଥିଲା । ଏହି ନଗର ରାଜ୍ୟରେ ପ୍ରତ୍ୟେକ ନାଗରିକର ଜୀବନ ମୁକ୍ତ ପ୍ରକୃତି କୋଳରେ ଉଚ୍ଚ ସାମରିକ ଆଦର୍ଶରେ ଗଢ଼ା ହୋଇଥିଲା । ସେଠାରେ ରୁଗ୍ଣ ଓ ଦୁର୍ବଳ ନରନାରୀଙ୍କର କୌଣସି ସ୍ଥାନ ନଥିଲା । ବାଲେଶ୍ୱରର ପ୍ରତ୍ୟେକ ବଡ଼ ଗ୍ରାମକୁ କବି ଏଇଭଳି ଗୋଟିଏ ଗୋଟିଏ ନଗର ରୂପେ କଳ୍ପନା କରିଛନ୍ତି । କୃଷିଜୀବୀଙ୍କ ସ୍ଥାନରେ ଧନୁ କୃପାଣ ହସ୍ତ ବୀରମାନଙ୍କୁ ଏଇ ସ୍ଥଳରେ ବିଚରଣ କରୁଥିବାର ଦେଖିଛନ୍ତି । ସ୍ଥାନଗୁଡ଼ିକର ନିର୍ବାଚନରେ ଆଞ୍ଚଳିକ ପ୍ରୀତି ବିଶେଷଭାବରେ ପ୍ରକାଶ ପାଇଅଛି । ଅବଶ୍ୟ ସମୂହଭାବରେ କାବ୍ୟର ସମୁନ୍ନତ କଳ୍ପନା ଏହା ଫଳରେ କେତେକ ପରିମାଣରେ ହାନି ହୋଇଥିବା ସ୍ୱାଭାବିକ । ମାତ୍ର ପ୍ରତ୍ୟେକ ସ୍ଥାନକୁ ସ୍ୱତନ୍ତ୍ର ବ୍ୟକ୍ତିତ୍ୱରେ ପ୍ରତିଷ୍ଠିତ କରିବାରେ ରାଧାନାଥଙ୍କ କୃତିତ୍ୱ ଅନନ୍ୟ-ସାଧାରଣ । ଏହା ପରିପାର୍ଶ୍ୱ ଓ ପ୍ରକୃତିର ସୂକ୍ଷ୍ମାତିସୂକ୍ଷ୍ମ ଅଧ୍ୟୟନର ଫଳ । ଏଥିରେ କବିଙ୍କ ବ୍ୟକ୍ତିତ୍ୱ ଏକାନ୍ତ ପ୍ରତିଫଳିତ । କବିଙ୍କୁ ସ୍ମରଣ କଲେ ହିଁ ଆମ ଆଖି ଆଗରେ ଏହି ସ୍ଥାନଗୁଡ଼ିକର ରୂପ ଫୁଟି ଉଠେ । ପୁଣି ସ୍ଥାନ ବିଶେଷର ଦେବଦେବୀ, ନଦୀ ସମୁଦ୍ର, ବୃକ୍ଷଲତା, ଶସ୍ୟ, ଫୁଲ ଫଳ କବିଙ୍କୁ ସ୍ମରଣ କରେଇ ଦିଏ । ମନେ ହୁଏ, ଯେପରିକି କବି ରାଧାନାଥଙ୍କ ନାମ, ବିଶାଲଖଣ୍ଡ, ସୋରେ, ମଙ୍ଗଳପୁର, ଭେଡ଼ା, ଭୋଗରାଇ ଭଳି ସ୍ଥାନଗୁଡ଼ିକ ସହିତ ଏକାତ୍ମ ହୋଇ, ଏଇ ଅଖ୍ୟାତ ଜନପଦକୁ କାବ୍ୟର ଗୌରବ ଦାନ କରିଅଛି ; ଯଶ ଶରୀରରେ ଚିରଞ୍ଜୀବୀ ହୋଇଅଛି ।

## ଦ୍ୱିତୀୟ ପର୍ଯ୍ୟାୟ : ନନ୍ଦିକେଶ୍ୱରୀ, ପାର୍ବତୀ ଓ ଯଯାତିକେଶରୀ

୧୮୮୭ ଖ୍ରୀଷ୍ଟାବ୍ଦରେ ଭିକ୍ଟୋରିଆ ପ୍ରେସରୁ ନନ୍ଦିକେଶ୍ୱରୀ, ୧୮୯୧ରେ ସୁତଲ ଦେବଙ୍କ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ ପାର୍ବତୀ, ୧୮୯୪ରେ ପ୍ରଥମେ 'ଉତ୍କଳ ପ୍ରଭା'ରେ ଓ ଏହାର ବର୍ଷକ

ପରେ ଗ୍ରନ୍ଥାକାରରେ ଯଯାତି କେଶରୀ ପ୍ରକାଶିତ ହୋଇଥିଲା । ରଚନାକାଳ ବା ପ୍ରକାଶକାଳ ଦୃଷ୍ଟିରୁ ଏହି ତିନିଗୋଟି ଗ୍ରନ୍ଥ ଏକ ପର୍ଯ୍ୟାୟଭୁକ୍ତ ନୁହେଁ । ନନ୍ଦିକେଶ୍ୱରୀ ଓ ପାଙ୍ଗଟି ରଚନାର ଦୀର୍ଘ ବ୍ୟବଧାନ ଭିତରେ ଉଷା ତଥା ପାଙ୍ଗଟି ଓ ଯଯାତି କେଶରୀ ମଧ୍ୟରେ ଚିଲିକା ରଚିତ ହୋଇଥିଲା ।

ନନ୍ଦିକେଶ୍ୱରୀ ଓ ପାଙ୍ଗଟି କାବ୍ୟ ଦୁଇଟି ବିୟୋଗାନ୍ତ । ଯଯାତିକେଶରୀ ମିଳନାନ୍ତ । ବିଷୟବସ୍ତୁ, ଭାବବର୍ଣ୍ଣନା ଓ ଦୃଶ୍ୟ କଳ୍ପନାରେ କବି ନାନା କ୍ଷେତ୍ରରୁ ଉପାଦାନ ଆହରଣ କରିଅଛନ୍ତି । ମାତ୍ର ଆହୃତ ଉପାଦାନର ପ୍ରୟୋଗରେ କବିଙ୍କ ମୌଳିକ ସର୍ଜନା ଶକ୍ତିର ପରିଚୟ ମିଳିଅଛି । ପ୍ରକୃତି ଜଗତର ଆହରଣ ଭଳି ଏହା ପ୍ରାଣପୂର୍ଣ୍ଣ । ଲୋକ ମନରେ ଜୀବିତ ବା ଇତିହାସର ଜୀର୍ଣ୍ଣ ପୃଷ୍ଠାରେ ସଞ୍ଚିତ ବିଷୟ ଓ ଭାବକୁ ନବରୁଚି ଓ ଆଦର୍ଶର ଅନୁକୂଳ କରି ପରିବେଷଣ କରିବାରେ କବି ସଫଳ ହୋଇଅଛନ୍ତି ।

## ଇତିହାସର ଉପାଦାନ

ପ୍ରଥମ ପର୍ଯ୍ୟାୟରେ ଆଲୋଚିତ ତିନିଗୋଟି କାବ୍ୟ ଅନିର୍ଦ୍ଦିଷ୍ଟ ଅତୀତର ଭିତ୍ତିରେ ରଚିତ । କେଦାର ଗୌରୀରେ ଲଲାଟେନ୍ଦୁ କେଶରୀଙ୍କ କାଳ, ଚନ୍ଦ୍ରଭାଗାରେ କୋଣାର୍କ ନିର୍ମାଣ ପରବର୍ତ୍ତୀ କାଳର ସୂଚନା ଅବଶ୍ୟ କବି ଦେଇଅଛନ୍ତି । ମାତ୍ର ନିର୍ଦ୍ଦିଷ୍ଟ ଇତିହାସର ପରିସର ବାହାରେ ଏଗୁଡ଼ିକ କାବ୍ୟର କାହାଣୀ ଗଢ଼ି କରିଥିବାରୁ ସେପରି ଇତିହାସ ନିଷ୍ଠା ଆବଶ୍ୟକ ହୋଇ-ନାହିଁ । ଉଷା କାବ୍ୟର ଅତୀତ ଏକାନ୍ତ ପୁରାଣ କଳ୍ପନାର ବସ୍ତୁ । ସେଥିରେ ଇତିହାସର ସତ୍ତା ନ ଥିବା ସ୍ୱାଭାବିକ ।

ମାତ୍ର ଏହି ଦ୍ୱିତୀୟ ପର୍ଯ୍ୟାୟରେ ଆଲୋଚିତ କାବ୍ୟତ୍ରୟ ଆମ ଇତିହାସରେ ପରିଚିତ ରାଜବଂଶ ଓ ଘଟଣାବଳୀ ସହିତ ପ୍ରତ୍ୟକ୍ଷ ଭାବରେ ଜଡ଼ିତ । ନନ୍ଦିକେଶ୍ୱରୀରେ ଗଙ୍ଗବଂଶ ସ୍ଥାପ-ୟିତା ଚୋଡ଼ଗଙ୍ଗ ନାୟକ । ଗଙ୍ଗବଂଶ ସ୍ଥାପନ ପ୍ରଧାନ ବିଷୟ । ଯଯାତିକେଶରୀରେ କେଶରୀ ବଂଶ ସ୍ଥାପନ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ପାଙ୍ଗଟିରେ ଗଜପତି ଦେବଙ୍କ ରାଜତ୍ୱ କାଳରେ ରତ୍ନପୁର ଦୁର୍ଗ ଅବରୋଧ କାହାଣୀ ପ୍ରଧାନ ସ୍ଥାନ ପାଇଅଛି । ତେଣୁ ଏହି ସମସ୍ତ କାବ୍ୟରୁ ଐତିହାସିକ କାବ୍ୟର ଲକ୍ଷଣମାନ ପରିଦୃଷ୍ଟ ହେବା ସ୍ୱାଭାବିକ । ସାର୍ଥକ ଐତିହାସିକ କାବ୍ୟ ପାଠକଲେ, ମନଶ୍ଚକ୍ଷୁରେ ଇତିହାସର ଜୀବନ୍ତ ରୂପ ଭାସିଉଠେ । କାଳ୍ପନିକ ଇତିହାସ ବା ଇତିହାସର ଛାୟାଲୋକରେ ନିରର୍ଥକ ବିଚରଣ କରୁଥିବା ଭଳି ମନେ ହୁଏ ନାହିଁ । ଏଥିରେ ଅବଶ୍ୟ କବି ଇତିହାସଗତ ତଥ୍ୟର ଅନ୍ଧ ଅନୁସରଣ କରି ନ ଥାନ୍ତି । ଐତିହାସିକ ସତ୍ୟ ଉପରେ ସେ କାବ୍ୟିକ ସତ୍ୟ ପ୍ରତିଷ୍ଠା କରନ୍ତି । ନବ ଉପଲବ୍ଧିର ଗଭୀର ଅବବୋଧରେ ଅଙ୍କିତ ଜୀବନର ନବବିବରଣ ପ ରମଣୀୟଭାବରେ ପ୍ରକାଶ କରନ୍ତି । ଏଥିଲାଗି ଲୋଡ଼ା

ହୋଇଥାଏ, ଇତିହାସର ଶୁଭ୍ର ନିରଞ୍ଜନ ସତ୍ୟ ଉପରେ କବିଙ୍କ ସୁଦୂରପ୍ରସାରୀ କଳ୍ପନାର କନକ ଆବରଣ, ଘଟଣା ଓ ତଥ୍ୟର ସଂଘାତ ଓ ସମାହାରର ବିଚିତ୍ର ବିନ୍ୟାସ ।

ରାଧାନାଥଙ୍କ କାବ୍ୟରେ ଇତିହାସର ସତ୍ୟ କ୍ଷୀଣ । ଐତିହାସିକ ଘଟଣା ସ୍ଥାନରେ କାଳ୍ପନିକ ଘଟଣାପୁଞ୍ଜର ସମାବେଶ ସହଜରେ ଲକ୍ଷଣୀୟ । କାବ୍ୟର କଥାବସ୍ତୁକୁ ଏକ ନିର୍ଦ୍ଦିଷ୍ଟ ପରିଣତି ଦିଗରେ ନେଇଯିବା ଲାଗି ଏସବୁର ସୃଷ୍ଟି । କେବଳ ଘଟଣାରେ ନୁହେଁ, ପାତ୍ରପାତ୍ରୀଙ୍କ ଜୀବନରେ ମଧ୍ୟ କାବ୍ୟିକ ରୂପାନ୍ତର କବି ଘଟାଇଛନ୍ତି । ନିର୍ଦ୍ଦିଷ୍ଟ ଦେଶକାଳର ପରିଧିରେ ବିଚରଣ ନକରି ଏମାନେ ପ୍ରେମ ଶୌର୍ଯ୍ୟ ଓ ପ୍ରକୃତିର ରୋମାଣ୍ଟିକ ପରିବେଶ ଭିତରେ ବିଚରଣ କରିଛନ୍ତି । ପ୍ରତ୍ୟେକ କାବ୍ୟର କାହାଣୀ, ଇତିହାସ ଓ କିମ୍ବଦନ୍ତୀର ଭିତ୍ତି ତଥା କବିଙ୍କ ଆହରଣର ଆଧାର ଓ ରୂପ ବିଶ୍ଳେଷଣ କଲେ, ଏହା ସୁନ୍ଦର ଧାରଣା କରିହେବ ।

## ନନ୍ଦିକେଶ୍ୱରୀ

ରାଧାନାଥଙ୍କ ଏହି କାବ୍ୟ ରଚିତ ହେବା ପୂର୍ବରୁ ସ୍ୱର୍ଗତଃ ପ୍ୟାରୀମୋହନ ଆଚାର୍ଯ୍ୟ ଓଡ଼ିଆରେ ଓଡ଼ିଶାର ଇତିହାସ ଆଲୋଚନା କରିଥିଲେ । ତାଙ୍କର ଇତିହାସ ୧୮୭୯ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଏଥିରେ ବିଭିନ୍ନ ପାଶ୍ଚାତ୍ୟ ବର୍ଗୀୟ ଲେଖକଙ୍କ ବିବରଣୀ, ମାଦଳା ପାଞ୍ଜି, ବଂଶାବଳୀ, ରାଜଚରିତ ଆଦିର ଉପାଦାନ ବ୍ୟବହୃତ ହୋଇଥିଲା । ଏହି ଗ୍ରନ୍ଥର ବିବରଣୀ ରାଧାନାଥଙ୍କ କାବ୍ୟର ଭିତ୍ତି ଯୋଗାଇଥିବା ସମ୍ଭବ । ଚୋଳଗଙ୍ଗଙ୍କ ଓଡ଼ିଶା ଅଧିକାର ପ୍ରସଙ୍ଗରେ ପ୍ୟାରୀମୋହନ ନିମ୍ନମତେ ଲେଖିଛନ୍ତି—"ସୁବର୍ଣ୍ଣ କେଶରୀ କେଶରୀ ବଂଶର ଶେଷ ରାଜା ଥିଲେ । ତାଙ୍କର ସନ୍ତାନ ସନ୍ତତି ନଥିଲା । ଦକ୍ଷିଣ ଦେଶରୁ ଚୋଳଗଙ୍ଗ ନାମକ ଜଣେ ନୃପତି ଓଡ଼ିଶା ଆକ୍ରମଣ କରି ୧୧୩୨ ଖ୍ରୀଷ୍ଟାବ୍ଦରେ ତାଙ୍କୁ ପରାସ୍ତ କରିଥିଲେ ଓ ସେଇ ପରାଭବ ସଙ୍ଗେ ଓଡ଼ିଶାରୁ କେଶରୀବଂଶୀୟ ରାଜପଣ ଲୋପ ପ୍ରାପ୍ତ ହେଲା । ବଂଶାବଳୀ ଗ୍ରନ୍ଥରେ ଲିଖିତ ଅଛି ଯେ, ବାସୁଦେବ ନାମକ ଏକ ବ୍ୟକ୍ତି ରାଜାଙ୍କ କର୍ତ୍ତୃକ ଅପମାନିତ ଓ ନିର୍ବାସିତ ହୋଇ କର୍ଣ୍ଣାଟ ଦେଶୀୟ ଚୋଳଗଙ୍ଗଙ୍କୁ ଓଡ଼ିଶା ଆକ୍ରମଣାର୍ଥେ ଉତ୍ତେଜିତ କରିଥିଲେ । ପୁଣି ରାଜ ଚରିତ ଗ୍ରନ୍ଥରେ ବର୍ଣ୍ଣିତ ଅଛିଯେ, ରାଜା ନିଃସନ୍ତାନ ଥିବାରୁ ଉକ୍ତ ବାସୁଦେବ ଦକ୍ଷିଣ ଦେଶରୁ ଜଣେ ରାଜାଙ୍କୁ ଆହ୍ୱାନ କରି ଆଣି ସିଂହାସନରେ ବସାଇଥିଲେ ।" ଏହି ଉପାଦାନ ଉପରେ ନିଜର ମନ୍ତବ୍ୟ ଦେଇ ଶ୍ରୀଯୁକ୍ତ ଆଚାର୍ଯ୍ୟ ପୁଣି ଲେଖିଛନ୍ତି—"ଆମ୍ଭମାନଙ୍କୁ ଏ ଉଭୟ ବର୍ଣ୍ଣନା ଅଳୀକ ଓ କାଳ୍ପନିକ ବୋଧ ହେଉଅଛି । ତେବେ ଏ ବର୍ଣ୍ଣନାଦ୍ୱୟରେ ଏହି ପର୍ଯ୍ୟନ୍ତ ସତ୍ୟ ନିହିତ ଥିବାର ବୋଧ ହୁଅଇ ଯେ, କେଶରୀ ବଂଶୀୟ ରାଜତ୍ୱର ପରିସମାପ୍ତି ଉତ୍ତାରୁ ଦକ୍ଷିଣ ଦିଗର କୌଣସି ରାଜା ଆସି ଓଡ଼ିଶା ସିଂହାସନରେ ଆରୂଢ଼ ହୋଇଥିଲେ ।" ୧୭

କେଶରୀ ବଂଶ ଲୋପ ଲାଗି ସାହାଯ୍ୟ କରିଥିବା ବ୍ରାହ୍ମଣ ବାସୁଦେବ ପ୍ରସଙ୍ଗରେ ଉକ୍ତ ବିବରଣୀ ମାଦଳା ପାଞ୍ଜିରୁ ମିଳେ । "ଶ୍ରୀ ସିଂହେଶ୍ୱର କଳିବୀଜା ବ୍ରାହ୍ମଣ ବାସୁଦେବ ରଥଠାରୁ ଥରେ ଟଙ୍କି ନେଇ ଆଉ ଥରେ ପଠାଣ ଜଣକୁ ଲେଖିଦେଲାରୁ ଏ ବାସୁଦେବ ରଥ ରାଜାଙ୍କୁ କହିଲେ, ମୁଁ ଟଙ୍କି କଉଡ଼ି ଦେଇଅଛି । ଏବେ ପଠାଣ ଜଣେ ଉଜ୍ଜର ଲଗାଉଅଛି । ରାଜା କହିଲେ, ତୁ ବାସୁ ସେ ପଠାଣ ଜାଣେ । ଏମନ୍ତ ଶୁଣି ସେ ବ୍ରାହ୍ମଣ ବାସୁଦେବ ରଥ ଭୁବନେଶ୍ୱରଙ୍କୁ ସେବା କଲେ । ଭୁବନେଶ୍ୱର ଦେବ ପ୍ରସନ୍ନ ହୋଇଥିଲେ । ଏ ବାସୁଦେବ ରଥେ ଜଣାଇଲେ କେଶରୀ ରାଜତ୍ୱ ନ କରିବେ । ଏଥକୁ ଭୁବନେଶ୍ୱର ଦେବ ଆଜ୍ଞା ହୋଇଲା । ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣେଶ୍ୱରଙ୍କ ବାପିରୁ ଯେ ବାଣ୍ଡିପୁଅ ଚୋରଗଙ୍ଗ ଅଛି ତାକୁ ଆମ୍ଭ ଆର୍ଗ୍ୟାରେ ଆଣି ଓଡ଼ିସାରେ ରାଜତ୍ୱ କରାଇବୁ । ଗୋକର୍ଣ୍ଣେଶ୍ୱରଙ୍କ ବାପି ଗଙ୍ଗାଦେବୀ ଗର୍ଭ ସମ୍ଭୂତ । ଗଙ୍ଗବଂଶରୁ ଜାତ ଆଦି ପାଠ ଚୂଡ଼ଗଙ୍ଗ ଦେବ । ଏ ଚୂଡ଼ଗଙ୍ଗ ବେତାଳ ସାଧି । ହିତାଇମା ନରଦେବୀ କଳତା । ମହାପଶୁ ମନ୍ତ୍ର କେସରୀବଂଶ ରାଜା ସିଦ୍ଧକଲା କେସରୀ ରାଜାକୁ ଉଚ୍ଛନ୍ନ କରାଇ ରାଜା କଲା ।" ୧୮

### ଗ୍ରୀକ୍ ପୁରାଣ କଥା

ଏହି ଐତିହାସିକ ବିବରଣୀରୁ ମିଳୁଥିବା ଚୋରଗଙ୍ଗ, ସୁବର୍ଣ୍ଣକେଶରୀ, ବ୍ରାହ୍ମଣ ବାସୁଦେବ କେହି ରାଧାନାଥଙ୍କ କାବ୍ୟର ପ୍ରଧାନ ଚରିତ୍ର ନୁହନ୍ତି । ପ୍ରଧାନ ଚରିତ୍ର ଜଣେ ନାରୀ—ନନ୍ଦିକା । ଅଥଚ ଇତିହାସର କାହାଣୀରେ କୌଣସି ନାରୀ ଚରିତ୍ରର ଅବତାରଣା ହୋଇନାହିଁ । ଏଠାରେ କବିଙ୍କ କଳ୍ପନା ମୁକ୍ତଭାବରେ ଗତି କରିଛି । ଇତିହାସ ଦୃଷ୍ଟିରେ ଚୂଡ଼ଗଙ୍ଗ ରାଜ୍ୟ ଜୟ ପିପାସା, କିମ୍ବଦନ୍ତୀ ଅନୁସାରେ ବାସୁଦେବ ବ୍ରାହ୍ମଣର ଷଡ଼ଯନ୍ତ୍ର କେଶରୀ ବଂଶ ପତନର ହେତୁ । ମାତ୍ର କବିଙ୍କ କଳ୍ପନାରେ ଗୋଟିଏ ନାରୀ ପ୍ରେମକୁ କେନ୍ଦ୍ର କରି ଇତିହାସର ଏହି ସମସ୍ତ ପଟ୍ଟପରିବର୍ତ୍ତନ ଘଟିଅଛି । ଏଠାରେ ନନ୍ଦିକା ଯେଉଁ ଭୂମିକାରେ ଅବତୀର୍ଣ୍ଣା ହୋଇଛି, ଏକ ଗ୍ରୀକ୍ ପୁରାଣ କଥାରେ ନାୟିକା ସିଲା (Scylla) ସେଇ ଭୂମିକାରେ ଅବତୀର୍ଣ୍ଣା ହୋଇଥିବାର ଦେଖିବାକୁ ମିଳେ ।

କ୍ରୀଟର ରାଜା ମିନସ୍ ବିଜୟୀ ଅଭିଯାନରେ ଆସି ମେଗାରା ଦୁର୍ଗ ଅବରୋଧ କଲେ । ଯୁଦ୍ଧ ବହୁଦିନ ଧରି ଚାଲିଲା । ମେଗାରା ଅଧିପତି ନିନାସ୍‌ଙ୍କ କନ୍ୟା ସିଲା ଦୁର୍ଗର ଗମ୍ବୁଜରୁ ଶତ୍ରୁ ପକ୍ଷର ଅଧିନାୟକ ମିନସ୍‌ଙ୍କ ଶୌର୍ଯ୍ୟ ଓ ବୀରତ୍ୱ ଦେଖି ମୁଗ୍ଧ ହେଉଥିଲା । ମାତ୍ର ସେ ନିଜ ପିତାଙ୍କଠାରୁ ଜାଣିଥିଲା, ଶତ୍ରୁ ପକ୍ଷର ବିଜୟ ଅସମ୍ଭବ । ପିତା ନିନାସ୍ ନିଜ ମଥାର କେରାଏ ସୁନା ରଙ୍ଗର ବାଳ ଦେଖାଇ, ତାହା ଗଡ଼ ଦେବୀଙ୍କ ରକ୍ଷାକବଚ ବୋଲି ବୁଝାଇ ଦେଇଥିଲେ । କିନ୍ତୁ ମିନସ୍‌ଙ୍କ ବୀରତ୍ୱ ଯେତିକି ଦେଖିଲା ସିଲା ତାଙ୍କ ପ୍ରତି ସେତିକି ଆକୃଷ୍ଟ ହେଲା । ଯୁଦ୍ଧ କିପରି ଶେଷ ହେବ, କିପରି ସେ ମିନସ୍‌କୁ ପତି ରୂପେ

ଲାଭ କରିବ ସେଇ କଥା ସବୁବେଳେ ଭାବିବାକୁ ଲାଗିଲା । ଶେଷରେ ଦିନେ ବଡ ସାହସରେ ଏକ ସିଦ୍ଧାନ୍ତ କରିବସିଲା । ଅଧରାତିରେ ସମସ୍ତେ ଶୋଇଥିଲା ବେଳେ ପିତାଙ୍କ ମୁଣ୍ଡରୁ ସୁନା ବାଲ କେରାକ ଗ୍ରେଇ ନେଲା । ଗାଢ଼ ନିଦରେ ନିନସ୍ ମଧ୍ୟ କନ୍ୟାର ଏ ଦୁଷ୍ଟ ଉଦ୍ଦେଶ୍ୟ ବିଷୟରେ କିଛି ଜାଣି ପାରିଲେ ନାହିଁ । ସେହି ରାତିରେ ସିଲା ମିନସ୍‌ଙ୍କ ଶିବିରରେ ପହଞ୍ଚି, ତାଙ୍କ ପ୍ରଣୟ ବିନିମୟରେ ପିତାଙ୍କ ରକ୍ଷା କବଚ ଦେବାକୁ ଚାହିଁଲା । ଏହି ପାପ କଥା ଶୁଣି, ବିସ୍ମୟ ଓ କ୍ରୋଧରେ ମିନସ୍ ସିଲାକୁ ନିଜ ଶିବିରରୁ ତଡ଼ି ଦେଲେ । ସିଲା ଆଉ ପ୍ରାସାଦକୁ ଫେରି ପାରିଲା ନାହିଁ । ମିଗାରା ଜୟ କରି ସାରି କ୍ରିଟାନ୍‌ମାନେ ନିଜ ଦେଶକୁ ଫେରୁ ଥିଲେ । ପ୍ରେମ ପାଗଳିନୀ ସିଲା ଯେଉଁ ଜାହାଜରେ ମିନସ୍ ବସିଥିଲେ, ସେଇ ଜାହାଜର ପଛ ମଙ୍ଗ ଧରିବାକୁ ସମୁଦ୍ରକୁ ଡେଇଁ ପଡ଼ିଲା । ସେତିକ ବେଳେ ଗୋଟିଏ ଈଗଲ ରୂପରେ ତାହାର ପିତା ନିନସ୍ ତା' ଉପରକୁ ଝାମ୍ପି ପଡ଼ିଲେ । ଏହି ରୂପରେ ନିନସ୍‌ଙ୍କୁ ଗଡ଼ଦେବୀ ରକ୍ଷା କରିଥିଲେ । ସିଲା ସମୁଦ୍ରରେ ବୁଡ଼ି ମରିଥାନ୍ତା, ମାତ୍ର ସେ ପ୍ରେମ ଲାଗି ପାପ କରିଥିବାରୁ କେହି ଜଣେ ଦେବତା ସଦୟ ହୋଇ ତାକୁ ଗୋଟିଏ ପକ୍ଷୀ କରିଦେଇଥିଲେ ।

ଐତିହାସିକ ବିବରଣୀ ସହିତ ଏହି ଗ୍ରୀକ୍ ପୁରାଣ କଥାକୁ ମିଳେଇ ଦେଖିଲେ ରାଧାନାଥଙ୍କ କାବ୍ୟର ପଞ୍ଜର ବେଶ କଳନା କରିହୁଏ । ସୁବର୍ଣ୍ଣ କେଶରୀ ଓ ଚୂଡ଼ଗଙ୍ଗ ଏହି ଦୁଇ ଐତିହାସିକ ପାତ୍ରଙ୍କ ରୂପ ଗ୍ରୀକ୍ ପୁରାଣର ନିନସ୍ ଓ ମିନସ୍‌ଙ୍କ ଅନୁରୂପ । ଇତିହାସର ବିବରଣୀରେ କେବଳ ସିଲାଙ୍କ ସ୍ଥାନ ଶୂନ୍ୟ ଥିଲା । ତାହା ନାୟିକା ପୂରଣ କରିଅଛି । ନାୟିକାଠାରେ ସିଲାର ଚରିତ୍ର ଆରୋପିତ ହୋଇଅଛି । ସେ ସିଲା ଭଳି ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ । ପ୍ରେମ ପାଇଁ ନାୟିକା ପ୍ରାଣ ଦେଇଛି । ସିଲା ମଧ୍ୟ ସେଥିଲାଗି ପ୍ରସ୍ତୁତ ଥିଲା । ମାତ୍ର ନିଜର ଏକାଗ୍ର ପ୍ରେମର ମୂଲ୍ୟ ସ୍ୱରୂପ ପ୍ରୀତିଦେବୀଙ୍କ ଦୟାରୁ ଗୋଟିଏ ପକ୍ଷୀ ରୂପ ଧାରଣ କରି ସଲିଲ ସମାଧିରୁ ଉଦ୍ଧାର ପାଇଥିଲା । ନାୟିକାକୁ ନିଜ ପ୍ରେମର ମୂଲ୍ୟ କେହି ଦେଇ ନାହାନ୍ତି ।

ସ୍ଥୂଳତଃ ଗଳ୍ପାଂଶ ସମାନ ହେଲେହେଁ, ରାଧାନାଥଙ୍କ ବର୍ଣ୍ଣନାର ଆଭିମୁଖ୍ୟରେ ବହୁ ସ୍ୱାତନ୍ତ୍ର୍ୟ ରହିଅଛି । ପୂର୍ବରୁ ସୂଚନା ଦିଆ ଯାଇଛି—ଗଳ୍ପ ଅପେକ୍ଷା ରାଧାନାଥଙ୍କ କାବ୍ୟରେ ବର୍ଣ୍ଣନାହିଁ ପ୍ରଧାନ ସ୍ଥାନ ଗ୍ରହଣ କରିଥାଏ । ଏଠାରେ ମଧ୍ୟ ତାହାହିଁ ହୋଇଅଛି । ନାୟିକେଶ୍ୱରୀର ବର୍ଣ୍ଣନା ସହିତ ବାଇରନ୍‌ଙ୍କ କୋରିନ୍ଥ ଅବରୋଧ କାବ୍ୟର କେତେକ ବର୍ଣ୍ଣନା ଓ ଘଟଣାରେ ସାମ୍ୟ ଦେଖାଯାଏ ।

**ବାଇରନ୍‌ଙ୍କ କାବ୍ୟ ଓ ରାଧାନାଥଙ୍କ ଉପରେ ତାହାର ପ୍ରଭାବ**

ରାଧାନାଥ ଓ ବାଇରନ୍‌ଙ୍କ ଆଲୋଚିତ କାବ୍ୟ ଦୁଇଟିରେ ବର୍ଣ୍ଣନା ଓ ଘଟଣାରେ ସାମ୍ୟ ଥିଲେହେଁ, ଆଦର୍ଶ ଓ ଆଭିମୁଖ୍ୟରେ ସମ୍ପୂର୍ଣ୍ଣ ପାର୍ଥକ୍ୟ ସୂଚିତ ହୁଏ । ପ୍ରଥମେ ପ୍ରଧାନ ନାୟିକା

ଦ୍ୱୟଙ୍କ ଚରିତ୍ର ତୁଳନା କରି ଯାଇପାରେ । ସ୍କେଲଗଙ୍କ ଓ ବାଇରନ୍‌ଙ୍କ ନାୟକ ଆଲ୍ଫ ଉଭୟେ ବୀର । ମାତ୍ର ସ୍କେଡ଼ଗଙ୍କ ଏକ ଉନ୍ନତ ଆଦର୍ଶର ପ୍ରତିମୂର୍ତ୍ତି । ବୃଥା ପ୍ରତିଶୋଧ ବା କୌଣସି ନୀଚ ସ୍ୱାର୍ଥସାଧନା ପାଇଁ ସେ ଯୁଦ୍ଧ କରି ନାହାନ୍ତି । ଆଲ୍ଫ ପ୍ରେମିକ, ପ୍ରତିଶୋଧ ପରାୟଣ । କୌଣସି ମହତ୍ତ୍ୱର ଆଦର୍ଶର ସେ ଅନୁଗାମୀ ନୁହନ୍ତି । ଭେନିସ୍‌ର ସମ୍ଭ୍ରାନ୍ତ ବୀର ପୁରୁଷ ଅଲ୍ଫ ଓ ରାଜକୁମାରୀ ଫ୍ରାନ୍‌ସେସ୍କା ଉଭୟଙ୍କ ଭିତରେ ଗଭୀର ପ୍ରଣୟ ଥିଲା । ଏହି ପ୍ରଣୟ ପରିଣତି ଲାଭ ନକରୁଣୁ ନିଜର ଦୁଷ୍କୃତି ଲାଗି ଆଲ୍ଫ ରାଜ୍ୟରୁ ନିର୍ବାସିତ ହେଲା । ରାଜାଙ୍କ ବିରୋଧରେ ପ୍ରତିଶୋଧ ନେବା ଲାଗି, ସେ ଇସ୍‌ଲାମ୍ ଧର୍ମ ଗ୍ରହଣ କରି ତୁର୍କ ସେନାର ଅଧିନାୟକ ରୂପେ ଭେନିସ୍ ଆକ୍ରମଣ କରି କୋରିନ୍ଥ ଦୁର୍ଗ ଅବରୋଧ କଲା । ଭେନିସ୍‌ର ରାଜା ମିନୋଟିଙ୍କୁ ପରାସ୍ତ କରି, ତାଙ୍କର କନ୍ୟା ଫ୍ରାନ୍‌ସେସ୍କାର ପାଣିଗ୍ରହଣ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ଫ୍ରାନ୍‌ସେସ୍କା ପ୍ରେମିକା ସତ୍ୟ, ମାତ୍ର ପ୍ରେମଠାରୁ ନିଜର ଧର୍ମ, ଦେଶ ଓ ପିତାଙ୍କ ସମ୍ମାନର ମହତ୍ତ୍ୱ ତାହାଠାରେ ଅଧିକ ଥିଲା । ଦୀର୍ଘଦିନ ଅବରୋଧ ଚାଲିବା ପରେ, ଗୋଟିଏ ନିର୍ଜନ ରାତ୍ରିର ନିରୋଳା ମୁହୂର୍ତ୍ତରେ ଦୁର୍ଗର ବହିର୍ଭାଗରେ ପ୍ରଣୟୀ ଆଲ୍ଫଙ୍କୁ ସେ ଭେଟି ଥିଲା । ସ୍ୱଧର୍ମ ପରିହାର କରି, ନିଜ ଧର୍ମକୁ ଫେରି ଆସିବାକୁ ସ୍ୱଦେଶର ମର୍ଯ୍ୟାଦା ରକ୍ଷା କରିବାକୁ ବିନୀତ ହୋଇ ପ୍ରାର୍ଥନା କରିଥିଲା । ମାତ୍ର ଏଥିପ୍ରତି ଉଦ୍ଧତ ଆଲ୍ଫ କର୍ଣ୍ଣପାତ କରି ନ ଥିଲା । ସେ କୋରିନ୍ଥ ବିଜୟ ଓ ପ୍ରତିଶୋଧ ପଣରେ ଅଟଳ ରହିଥିଲା । ଫ୍ରାନ୍‌ସେସ୍କା ଦେଖିଲେ, ସେ ହୁଏତ ନିଜର ପ୍ରେମିକକୁ ପାଇବେ, ମାତ୍ର ଦେଶର ସମ୍ମାନ ରକ୍ଷା କରି ପାରିବେ ନାହିଁ । ଏହି ଦୁଃଖରେ ସେ ଆତ୍ମହତ୍ୟା କଲେ । ଏହି ଆତ୍ମହତ୍ୟାରେ ବିଚଳିତ ନାୟକ ଆଲ୍ଫ ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଲେ । ତାଙ୍କ ସୈନ୍ୟମାନେ କଳ୍ପିତ ପ୍ରତିଶୋଧ ନେଲେ । କୋରିନ୍ଥର ପ୍ରାସାଦ, ଗୀର୍ଜା ଧୂଳିସାତ୍ ହେଲା ।

ଚନ୍ଦ୍ରିକା ଓ ଫ୍ରାନ୍‌ସେସ୍କା ଉଭୟଙ୍କ କ୍ଷେତ୍ରରେ ପ୍ରେମର ପରିଣତି ବିୟୋଗାନ୍ତ । ମାତ୍ର ଏମାନଙ୍କ ଚରିତ୍ର ଏକା ନୁହେଁ । ଫ୍ରାନ୍‌ସେସ୍କାର ଆଦର୍ଶ ଚନ୍ଦ୍ରିକାଠାରେ ନାହିଁ । ଜଣେ ଯେଉଁ ସମ୍ମାନ ରକ୍ଷା ଲାଗି ଆତ୍ମୋତ୍ସର୍ଗ କରିଅଛି, ଆଉ ଜଣେ ସେହି ସମ୍ମାନ ପଦରେ ଦଳି ଦେଇଅଛି । ବିବେକର ଆଘାତରେ ସେ ଏହି କୁକାର୍ଯ୍ୟର ପରିଣାମ ଭୋଗ କରିଅଛି । ମୁଖ୍ୟ ନାୟକ ନାୟିକାଙ୍କ ଚରିତ୍ର ଭିନ୍ନ ଦିଗରେ ଗଢ଼ି କରିଥିଲେହେଁ ଘଟଣା ଓ ଦୃଶ୍ୟାବଳୀର ବର୍ଣ୍ଣନାରେ ସାମ୍ୟ ଦେଖାଯାଏ ।

ଶିବିର ଓ ଦୁର୍ଗ ଅବରୋଧ ଚିତ୍ରରେ ରାଧାନାଥ ଓ ବାଇରନ୍‌ଙ୍କ କାବ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ଦେଖାଯାଏ । ଚିତ୍ରକୁ ଜୀବନ୍ତ କରିବାକୁ ଉଭୟେ ବର୍ଣ୍ଣନାରେ ସ୍ଥାନୀୟ ରଙ୍ଗ ଦେଇଛନ୍ତି । ଏହି ସଂଗ୍ରାମର ସେନାପତି ଓ ସୈନ୍ୟମାନଙ୍କ ପରିଚୟ ଯେତିକି ନ ମିଳେ ତାହାଠାରୁ ବହୁଗୁଣରେ ମିଳେ ସେମାନଙ୍କ ବେଶଭୂଷା, ବାସସ୍ଥଳୀର ପରିଚୟ । ସେମାନେ

ଯେଉଁ ଦେଶରେ ଜନ୍ମିଥିଲେ, ଯେଉଁ ଭୂମିରେ ବିଚରଣ କରିଥିଲେ, ସେଇ ଦେଶର ସ୍ମୃତି ଗାଥା, ସେଇ ଭୂମିର ପ୍ରତି ଧୂଳିକଣା ପର୍ଯ୍ୟନ୍ତ ଜୀବନ୍ତ ହୋଇ ଦିଶେ । ରାଧାନାଥଙ୍କ ବର୍ଣ୍ଣନାରେ କାଠଯୋଡ଼ି କୂଳ, କନକା, କୁଜଙ୍ଗ, ଆଳି, କେନ୍ଦ୍ରାପଡ଼ା, ଚଉଦୁଆର, ଦର୍ପଣୀ, ଲଳିତଗିରି ଆଦି ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଲାଭ କରିଅଛି । ଆମର ଏହି ପରିଚିତ ଭୂମିରେ ଇତିହାସର ଅପରିଚିତ କାଳ୍ପନିକ ଚରିତ୍ର ସବୁ ରକ୍ତମାଂସର ମନୁଷ୍ୟ ହୋଇ ଠିଆ ହୋଇଛନ୍ତି । ଏହା ରାଧାନାଥଙ୍କ ବୈଶିଷ୍ଟ୍ୟ ।

ପୁଣି ସ୍ୱଦେଶ ପ୍ରେମର ଭୂମିକାରେ ଉଭୟ କବିଙ୍କ ମିଳନ ଘଟୁଅଛି । ପ୍ରେମିକ ଆଲ୍ପଙ୍କ ପ୍ରତି ପ୍ରେମିକା ଫ୍ରାନସେସ୍କାଙ୍କ ଉକ୍ତିରେ ସ୍ୱଧର୍ମ ଓ ସ୍ୱଦେଶର ଉଜ୍ଜ୍ୱଳ ଚିତ୍ର ଫୁଟିଛି । ଫ୍ରାନ୍‌ସେସ୍କା ମୁଖରେ ବାଇରନ୍ ଯେଉଁ ବାଣୀ ଦେଇଛନ୍ତି, ତାହା କାବ୍ୟରେ ନାୟିକାର ଆପେକ୍ଷିକ ସ୍ଥାନ ଦୃଷ୍ଟିରୁ ନନ୍ଦିକା ମୁଖରେ ଦେବା ରାଧାନାଥଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ଏଥିଲାଗି କବି ସ୍ୱତନ୍ତ୍ର ଅବସର ସୃଷ୍ଟି କରିଅଛନ୍ତି । ଗଙ୍ଗା ଦେବୀଙ୍କ ମୁଖରେ ସେ ଦେଶପ୍ରେମ ଓ ସ୍ୱଧର୍ମର ଆଭିମୁଖ୍ୟ ପ୍ରକାଶ କରିଅଛନ୍ତି । ବିଷଣ୍ଣ ସେନାପତି ଗ୍ରେଡ଼ଗଙ୍ଗଙ୍କ ଚିତ୍ତରେ ଉଜ୍ଜ୍ୱଳ ଭବିଷ୍ୟତର ଆଶା ଅଙ୍କନ କରିବାକୁ ଗଙ୍ଗା ଦେବୀଙ୍କ ଆବିର୍ଭାବ ହୋଇଅଛି । ମାତ୍ର ଗଳ୍ପର ପରିଣତି ଦିଗରୁ ଏହି ଆଖ୍ୟାନ ଅନପେକ୍ଷିତ ବୋଲି ମନେ ହୁଏ ନାହିଁ । ବାଇରନ୍‌ଙ୍କ ବର୍ଣ୍ଣନାର ପୃଷ୍ଠପଟରେ ସମୁଦ୍ର ଓ ରାତ୍ରିର ନିର୍ଜ୍ଜନତା ଥିଲା ଭଳି ରାଧାନାଥଙ୍କ ବର୍ଣ୍ଣନାରେ ଗ୍ରେଡ଼ଗଙ୍ଗଦହ ଓ ତତ୍ ସନ୍ନିହିତ ଅରଣ୍ୟର ବିଜନତା ବିଦ୍ୟମାନ । ରାଧାନାଥଙ୍କଠାରେ ବାଇରନ୍‌ଙ୍କ କାବ୍ୟ ଭଳି କେବଳ ଆକସ୍ମିକତା ଓ ନାଟକୀୟତା ମାତ୍ର ଦେଖା ଯାଏ ନାହିଁ, ଅଲୌକିକତା ମଧ୍ୟ ପରିଲକ୍ଷିତ ହୁଏ । ଏଠାରେ ଅରଣ୍ୟ ପ୍ରଭାତ, ମଧ୍ୟାହ୍ନ, ବନଦେବୀଙ୍କ ଆଗମନରେ ଅରଣ୍ୟର ଜୀବଜନ୍ତୁ ଓ ପଶୁପକ୍ଷୀଙ୍କ ପ୍ରତିକ୍ରିୟା ବେଶ ମନୋରମ ଭଙ୍ଗୀରେ ଅଙ୍କିତ । ଗଙ୍ଗାଙ୍କ ମୁଖରେ ଯୁଦ୍ଧବୀରଠାରୁ ଧର୍ମବୀରର ମହତ୍ତ୍ୱ, ନଦୀ ମାତୃକା ଉତ୍କଳ ଭୂମିର ମହତ୍ତ୍ୱ ଫୁଟାଇଅଛନ୍ତି । ଏହି ସମସ୍ତ ବର୍ଣ୍ଣନା ଭିତରେ ପ୍ରଥମ ସର୍ଗରେ କାବ୍ୟ କାହାଣୀର ଅବତାରଣା ମାତ୍ର ହୋଇଅଛି ।

ଦ୍ୱିତୀୟ ସର୍ଗରେ ଅତି ଅଳ୍ପ ପରିସର ମଧ୍ୟରେ କାହାଣୀର ବିକାଶ ଓ ପରିଣତି ଘଟୁଅଛି । ସମସ୍ତ ଘଟଣାର କାଳ—ଗୋଟିଏ ମାତ୍ର ରାତ୍ରି । ଏହି ରାତ୍ରିର ଦୃଶ୍ୟ ଅଭିନୟର ଦୃଶ୍ୟ ଭଳି ଜୀବନ୍ତ । ଦୁର୍ଗର ଚତୁର୍ଦ୍ଦିଗରେ ଘୋର ଅନ୍ଧକାର, ଦୁର୍ଗ ଭିତରେ ଉତ୍ସବ ମୁଖର ଆନନ୍ଦ, ଏହି ଆନନ୍ଦ ଭିତରେ ମଳିନ ମୁଖୀ ରାଜକୁମାରୀ ନନ୍ଦିକା, ନନ୍ଦିକାର ଅଭିସାର, ଅଭିସାରର ପରିଣତି -- ଏକ ପରେ ଏକ ଦୃଶ୍ୟ ଭିତରେ ଯେପରି ଟ୍ରାଜେଡ଼ି ଘନୀଭୂତ ହୋଇଅଛି ।

ପ୍ରାଚୀନ ଗ୍ରୀକ୍ ପୁରାଣ କଥାରେ ପ୍ରେମ ଓ ଆତ୍ମୋତ୍ସର୍ଗର ଆଦର୍ଶ, ଊନବିଂଶ ଶତକର ପାଶ୍ଚାତ୍ୟ ଜାତୀୟତା ବୋଧ ଓ ଦେଶପ୍ରେମର ବିଚିତ୍ର ସମନ୍ୱୟରେ କଳ୍ପିତ ଏକ କାହାଣୀ

କବି ସ୍ୱଦେଶର ଇତିହାସ, ଭୂଗୋଳ, ପରମ୍ପରା ଓ ପରିପ୍ରେକ୍ଷାର ଭିତ୍ତିଭୂମିରେ ପରିବେଷଣ କରିଛନ୍ତି । ଏହି କାବ୍ୟର ବୈଦେଶିକ ଆହରଣ ସ୍ୱଦେଶୀୟ ଭାବ ମାଧୁର୍ଯ୍ୟରେ ରଞ୍ଜିତ । ସର୍ଜନା ସାହିତ୍ୟର ସମସ୍ତ ସୌନ୍ଦର୍ଯ୍ୟ ଓ ସୌରଭ ଯେପରି ନନ୍ଦିକେଶ୍ୱରୀ ଆତ୍ମପ୍ରକାଶ କରିଅଛି ।)

## ପାର୍ବତୀ

ଏହି କାବ୍ୟଟିକୁ ଯେପରି ସବୁଠାରୁ ବେଶୀ ପ୍ରତିକୂଳ ଓ ଅନୁକୂଳ ଆଲୋଚନା ହୋଇ-ଅଛି । ଏହାର ପ୍ରଧାନ କାରଣ, ଅନ୍ୟ ସବୁ କାବ୍ୟରେ ପ୍ରକୃତି ଚିତ୍ର ପ୍ରଧାନ । ମାତ୍ର ପାର୍ବତୀରେ ପ୍ରକୃତି ଚିତ୍ରଣ ଥିଲେ ମଧ୍ୟ ମନୁଷ୍ୟର ଚିତ୍ର ପ୍ରଧାନ ସ୍ଥାନ ଗ୍ରହଣ କରିଅଛି । ଏହି କାବ୍ୟର ନାୟକ ନାୟିକା—ଚନ୍ଦ୍ରଭାଗାର ଦେବତା ବା ଅପ୍ସରା ନୁହନ୍ତି, ଉଷାର ଅତିମାନବ ନୁହନ୍ତି, ନନ୍ଦିକେଶ୍ୱରୀରେ ଗ୍ରେଡ଼ଗଙ୍ଗଙ୍କ ଭଳି ଆଦର୍ଶଗ୍ରସ୍ତ ବା ନିୟତି ପରି ଯନ୍ତ୍ର ପୁତ୍ତଳିକା ନୁହନ୍ତି । ସମସ୍ତେ ଏଠାରେ ମନୁଷ୍ୟ—ମନୁଷ୍ୟର ପାପ, ପୁଣ୍ୟ, ସାଧନ ଓ ସିଦ୍ଧିର ଯଥାର୍ଥ ଅଧିକାରୀ ।

କାବ୍ୟଟି ଅପୂର୍ଣ୍ଣ । ଦୁଇଟି ସର୍ଗରେ କଥା ବସ୍ତୁର ଅବତାରଣା କରାଯାଇଅଛି ମାତ୍ର । ଅବଶିଷ୍ଟ ଗଦ୍ୟରେ କବି ଯେପରି ଲେଖିଥିଲେ ସେହିପରି ପ୍ରକାଶ ପାଇଅଛି । ପ୍ରଶ୍ନ ହୋଇପାରେ ଗଦ୍ୟରେ କାବ୍ୟର ଯେଉଁ ଉପସଂହାର ହୋଇଛି, କାବ୍ୟଟିକୁ ପ୍ରକୃତ ରୂପ ଦେଲା ବେଳେ କବି ତାହା ଗ୍ରହଣ କରି ଥାନ୍ତେ କି ନାହିଁ ? ଏହି ପ୍ରଶ୍ନର ଏକ ନିର୍ଦ୍ଦିଷ୍ଟ ଉତ୍ତର ଖୋଜିବା କେତେକ ପରିମାଣରେ ଅବାନ୍ତର । ତେବେ ଯେଉଁ ଉପାଦାନ ଯେପରି କାବ୍ୟର ଭିତ୍ତି ପଡ଼ିଅଛି, କାବ୍ୟଟିର ସମ୍ଭାବିତ ଆହରଣ କ୍ଷେତ୍ରରୁ ଯେଉଁ ସୂଚନା ମିଳୁଅଛି, ସେଥିରୁ ମନେ ହୁଏ, ପାର୍ବତୀ କାବ୍ୟର ପରିଣତି ଅନ୍ୟ ଦିଗରେ ଗତି କରିବାର କୌଣସି କାରଣ ନଥିଲା । ପ୍ରଥମ ଦୁଇ ସର୍ଗ ସହିତ ସୂଚିତ ଗଦ୍ୟାଂଶ ମିଶାଇ ଏକ ସମ୍ପୂର୍ଣ୍ଣ କୃତିଭାବରେ କାବ୍ୟର ବୈଶିଷ୍ଟ୍ୟ ଆଲୋଚନା କରା-ଯାଇ ପାରେ । ପାର୍ବତୀ କାବ୍ୟର ଉପସଂହାର ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ ଡକ୍ଟର କୁଞ୍ଜବିହାରୀ ଦାଶ ଯଥାର୍ଥରେ ଲେଖିଛନ୍ତି—“ଦ୍ୱିତୀୟାର୍ଦ୍ଧକୁ ଗଦ୍ୟ କାବ୍ୟ ହିସାବରେ ଗ୍ରହଣ କରାଯାଇ ପାରେ । ଉଭୟାଂଶରେ ରାଧାନାଥଙ୍କ କାବ୍ୟ ଦର୍ଶନ ସୁସ୍ପଷ୍ଟ, ପରିଣାମ ସୁପରିସ୍ଫୁଟ ।”

## ଉପାଦାନ

ରାଧାନାଥଙ୍କ ଅନ୍ୟ କାବ୍ୟ ଭଳି ପାର୍ବତୀ ମଧ୍ୟ ଇତିହାସ ଓ କିମ୍ବଦନ୍ତୀର ଉପାଦାନରେ ଗଠିତ । ପୁରୀ ଜିଲ୍ଲାର କୌଶଲ୍ୟା ଗାଙ୍ଗ ପୁଷ୍କରିଣୀ ଓ ଗଙ୍ଗେଶ୍ୱର ଦେବଙ୍କ ସମ୍ବନ୍ଧୀୟ କିମ୍ବଦନ୍ତୀ ଏହି କାବ୍ୟର ଭିତ୍ତି । ମାଦଳାପାଞ୍ଜିର ବିବରଣୀକୁ ସ୍ୱର୍ଗତଃ ପ୍ୟାରୀମୋହନ ପ୍ରକାଶ କରିଛନ୍ତି—

"ଚୁଡ଼ଗଙ୍ଗଙ୍କ ଉତ୍ତାରୁ ତାଙ୍କ ପୁତ୍ର ଗଙ୍ଗେଶ୍ୱର ଦେବ ୧୧୫୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜସିଂହାସନ ଆରୋହଣ କଲେ । ସେ ଅତି ପରାକ୍ରମଶାଳୀ ଓ ସମର ପ୍ରିୟ ନୃପତି ଥିବାର କଥିତ ଅଛି । ଯେଉଁ ବାହୁବଳ ପ୍ରକାଶ କରି ତାଙ୍କର ପିତୃ ପିତାମହ ଦେଶ ଦେଶାନ୍ତରରେ ଜୟ ଲାଭ କରିଥିଲେ, ସେହି ବାହୁବଳ ଦ୍ୱାରା ଗଙ୍ଗେଶ୍ୱରଦେବ ଗୋଦାବରୀଠାରୁ ଗଙ୍ଗାନଦୀ ପର୍ଯ୍ୟନ୍ତ ସମସ୍ତ ଦେଶ ଆପଣାର କରଗତ କରିବାକୁ ସମର୍ଥ ହୋଇଥିଲେ ବୋଲି ମାଦଳାରେ ଲିଖିତ ଅଛି । ଆହୁରି ଜଣାଯାଏ ଯେ, ଯାଜପୁର, ଚଉଦୁଆର, କଟକ, ବଡ଼ାନାଶୀ ଓ କୃଷ୍ଣା ତୀରସ୍ଥ ଅମରାବତୀରେ ତାଙ୍କର ପାଞ୍ଚ ଦୁର୍ଗ ବା ରାଜଧାନୀ ଥିଲା । କିନ୍ତୁ ତାଙ୍କର ଚରିତ୍ର ଅତି ଅପବିତ୍ର ଥିବାର ଦେଶରେ ପ୍ରବାଦ ପ୍ରଚଳିତ ଅଛି । ଲୋକେ କହନ୍ତି, ସେ ସ୍ୱୀୟ କନ୍ୟା ସହବାସ ଜନିତ ମହାପାପରେ ଲିପ୍ତଥିଲେ । ପିପିଲିର ପଶ୍ଚିମ ପାର୍ଶ୍ୱରେ କୋଶଳା ଗଙ୍ଗ ନାମକ ଯେଉଁ ସୁପ୍ରଶସ୍ତ ପୁଷ୍କରଣୀ ଆଜି ପର୍ଯ୍ୟନ୍ତ ବିରାଜିତ ଅଛି ତାହାକୁ ଗଙ୍ଗେଶ୍ୱର ଦେବଙ୍କ ଦ୍ୱାରା ରଚିତ ଓ ତାଙ୍କର ମହାପାପର ପ୍ରାୟଶ୍ଚିତ୍ତର ଫଳ ବୋଲି ପ୍ରମାଣ ଦିଅନ୍ତି ।" ପୁଣି ପୁଷ୍କରଣୀ ବିବରଣୀ ଦେଇ ପାଦଟୀକାରେ ଲେଖିଛନ୍ତି—"ପୁଷ୍କରଣୀ ମଧ୍ୟରେ ଗୋଟିଏ ଦ୍ୱୀପଅଛି । ସେଥିରେ ଗୋଟିଏ ରାଜ ଆବାସର ଭଗ୍ନାବଶେଷ ଗୃହ ଦୃଷ୍ଟ ହୁଏ । ଦୟାନଦୀ ସଙ୍ଗେ ଏ ପୁଷ୍କରଣୀ ଏକ ନାଳଦ୍ୱାରା ଯୁକ୍ତଥିଲା । ପୁଣି ସେ ନାଳ ଉପରେ କେତେଗୁଡ଼ିଏ ପଥର ପୋଲଥିଲା ।" ୨୦

ମାଦଳା ପାଞ୍ଜିରୁ ମିଳୁଥିବା ସମସ୍ତ ବିବରଣୀରେ ଗଙ୍ଗେଶ୍ୱର ଦେବଙ୍କୁ ରାଣୀମାନେ ମୁଣ୍ଡ ଛେଚି ମାରିବା କଥା ଅଛି । ଦ୍ୱିତୀୟ ପାଞ୍ଜିରୁ ନିମ୍ନ ପ୍ରକାରେ ବିସ୍ତୃତ ବିବରଣୀ ମିଳିଥାଏ । "ଏ ଗଙ୍ଗେଶ୍ୱର ଦେବ ଗୋଦାବରୀଠାରୁ ଗଙ୍ଗା ପର୍ଯ୍ୟନ୍ତ ଏକଛତ୍ର କଲେ । ଏ ରାଜା ବ୍ରାହ୍ମଣମାନଙ୍କୁ ପଚାରିଲେ ଯଉଫଳ ଉପୁଜାଇ ସେ ଫଳ ଖାଇ କି ନଖାଇ । ତହିଁକି ବ୍ରାହ୍ମଣେ ବୋଇଲେ ଯେ ଫଳ ଉପୁଜାଇ ସେ ଫଳ ଖାଇ । ସେଠାରୁ ରାଜା ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲେ । ସେ ଝିଅ ଗର୍ଭବାସ ହେଲେ । ତହିଁ ସକାସୁ ସେ କଥା ପ୍ରଘଟ ହେଲା । ସେଠାରୁ ରାଜା ବ୍ରାହ୍ମଣଙ୍କୁ ପଚାରିଲେ । ତହିଁକି ବ୍ରାହ୍ମଣମାନେ କହିଲେ, ତୁମ୍ଭେ ଝିଅଙ୍କ ସଙ୍ଗେ ଅଙ୍ଗସଙ୍ଗ ହେଲ । ଏ କଥା ଗର୍ହିତ ହେଲା । ଏକଥା ଉଚିତ ନୁହଇ । ତହିଁକି ରାଜା ପଚାରିଲେ ଏଥିକି ପ୍ରାୟଶ୍ଚିତ । ତହିଁକି ବ୍ରାହ୍ମଣ କହିଲେ—ଦୁଇ ମାଠିଆ ପାଣି ଘେନି ଚାଲିଯିବ । ତାହା ଗୋଡରୁ ଯେଉଁଠାରୁ ରୁଧିର ଜାତ ହେବ ସେହିଠାରେ ଚାରିବାହି ଆୟତନରେ ପୋଖରୀ ଖୋଳାଯିବ । ମଧ୍ୟରେ ଦୀପଦଣ୍ଡି ହେବ । ତହିଁ ଭିତରେ ସେ ଝିଅ ରହିବ । କାହାରି ମୁହଁ ନ ଚାହିଁବ । ଏମନ୍ତ ସେ ଏହାଙ୍କ ଦହକ ରହିବେ । ତୁମ୍ଭ ଉପସ୍ଥ କଟାହୋଇ ହୋମ ହୋଇବ । ତେବେ ସେ ତହିଁରେ ଦୋଷ ଯିବ । ସେଠାରୁ ସେ ରାଜା ଏହାଶୁଣି ଝିଅଙ୍କ ହାତରେ କାଖରେ ପାଣି ଦୁଇ ମାଠିଆ ଦେଇ ଚଲାଇଲେ । ଏ ଝିଅଙ୍କୁ

ଏ ରୂପେ ଚଳାଇଲା ବେଳକୁ ରାଜ୍ୟ ଲୋକେ ଶୁଣି ବହୁତ ଉପହାସ କଲେ । ରାଜା ବଡ଼ ସଙ୍କୋଚ ପାଇଲେ । ଏ ଝିଅକୁ ନଅରକୁ ନେଲେ । ଏ ଉତ୍ତାରୁ ଝିଅକୁ ଯେଉଁଠାଏ ବୁଲାଇ ରକତ ଗୋଡ଼ରୁ ବାହି ନଥିଲା ସୀମାନ୍ତ ଯେନ ପୋଖରୀ ଖାପଦାଣ୍ଡି କଲେ । ଖାପଦାଣ୍ଡି କରି ଝିଅକୁ ଆଣି ଘରେ ରଖିଲେ । ରାଣୀମାନେ ରାଜାଙ୍କ ମୁଣ୍ଡ ଛେଚା ମାଇଲେ। ସେଇଦିନୁ ପୋଖରୀ କୌସଲ୍ୟାଗଙ୍ଗ ବୋଲାଇଲା ।" ୨୧

**ଆହରଣ**

କମ୍ବଦନ୍ତୀର ଘଟଣାଟିକୁ କାବ୍ୟରୂପ ଦେବା ଲାଗି କବି କଞ୍ଚୁକୀ ଚରିତ ଓ ରତ୍ନପୁର ଅବରୋଧ ପ୍ରସଙ୍ଗର ଅବତାରଣା କରିଅଛନ୍ତି । ରାଣୀଙ୍କ କାର୍ଯ୍ୟର ସାମାନ୍ୟ ଇଙ୍ଗିତରୁ ଏକ ପ୍ରଧାନ ନାୟିକା ରୂପେ ପାଟଙ୍ଗୀ ଚରିତ ସୃଷ୍ଟି କରିଅଛନ୍ତି । ପୁଣି ପାଟଙ୍ଗୀ ଚରିତ ବିକାଶ ସାଧନ ଲାଗି ଅନ୍ନପୂର୍ଣ୍ଣା ଓ ଏକଜାତଙ୍କ ପ୍ରେମ, ଅନ୍ନପୂର୍ଣ୍ଣା ପ୍ରତି ଗଙ୍ଗେଶ୍ୱରଦେବଙ୍କ ଆସକ୍ତି ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । କମ୍ବଦନ୍ତୀର କୌଶଲ୍ୟା କାବ୍ୟରେ ନୂତନ ଜୀବନନ୍ୟାସ ପାଇଅଛି । ସେ କେବଳ ଗଙ୍ଗେଶ୍ୱର ଦେବଙ୍କ ପାପ ଓ ପ୍ରାୟଶ୍ଚିତର ଯନ୍ତ୍ରପୁତ୍ତଳ ନୁହେ । ପଙ୍କିଳତମ ପରିବେଶର ଅନ୍ଧକାର ମଧ୍ୟରେ ଜନନୀ ରୂପେ ନାରୀ ହୃଦୟର ଆଲୋକ ଜଳାଇ ପାରିଅଛି । ଜୀବନରେ ସେ ଯେଉଁ ଅପମାନର ପ୍ରତିବାଦ କରିପାରି ନାହିଁ, କଳଙ୍କର କାଳି ପୋଛି ପାରି ନାହିଁ, ମୃତ୍ୟୁରେ ପ୍ରେତାତ୍ମାର ଅଶରୀରୀ ରୂପରେ ତାହା କରିଅଛି । ଏହି ସମସ୍ତ ଅଭିନବ ସଂଯୋଜନା ଓ ଅନବଦ୍ୟ କଳ୍ପନା ମୂଳରେ ଥିବା ଆହରଣର ବ୍ୟାପକ ଭୂମିକା ଅନୁରୂପ ଶିଳ୍ପ କୃତିରୁ ସନ୍ଧାନ କରି ଯାଇପାରେ ।

**ଚେଣ୍ଟଲଙ୍କ ସେନ୍‌ସି**

ଶେଲିଙ୍କ ସେନ୍‌ସି ଏକ ପାଞ୍ଚ ଅଙ୍କ ବିଶିଷ୍ଟ ବିୟୋଗାନ୍ତ ନାଟକ । ଏହା ୧୮୧୯ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପ୍ରକାଶିତ ହୋଇଥିଲା । ଇଟାଲୀ ଭ୍ରମଣରୁ ଶେଲିଙ୍କୁ ମିଳିଥିବା ଏକ ପ୍ରାଚୀନ ପାଣ୍ଡୁଲିପିର କାହାଣୀ ଘେନି ସେ ଏହି ନାଟକଟି ରଚନା କରିଥିଲେ । ଗ୍ରନ୍ଥର ମୁଖବନ୍ଧରେ କାହାଣୀ ବିଷୟରେ ଏହି ପ୍ରକାରେ ସୂଚନା ଦେଇଥିଲେ । ୨୨

ଅଭିଜାତ ବଂଶରେ ଜାତ ସେନ୍‌ସି ଜୀବନ ସାରା ନାନା ଦୁଷ୍କର୍ମରେ ଲିପ୍ତଥିଲେ । ଶେଷ ବୟସରେ ନିଜର ସନ୍ତାନମାନଙ୍କୁ ସେ ତୀବ୍ରଭାବରେ ଘୃଣା କରୁଥିଲେ । ତାଙ୍କର ଗୋଟିଏ ତରୁଣୀ କନ୍ୟା ଥିଲା । ଏଇ କନ୍ୟା ପ୍ରତି ପାପ ବାସନାସକ୍ତ ହୋଇ ସେ ସବୁବେଳେ ନିଷ୍ଠୁର ବ୍ୟବହାର କରିବାକୁ ଲାଗିଲେ । ଝିଅ ନାନା ପ୍ରକାର ଯାତନା ଭୋଗ କରିବାକୁ ଲାଗିଲା । ଦେହ ଓ ମନ ଉଭୟ କ୍ଷେତ୍ରରେ ଅନବରତ ସେ ଯନ୍ତ୍ରଣା ଭୋଗୁଥିଲା । ଏ ଅବସ୍ଥାରୁ ମୁକ୍ତ ହୋଇ ବାହାରକୁ ପଳାଇବା ଲାଗି ତାହାର ସମସ୍ତ ଚେଷ୍ଟା ବୃଥା ହୋଇଥିଲା ।

ଶେଷରେ ନିଜର ଭାଇ ଓ ଶାଶୁଙ୍କ ସହଯୋଗରେ ଗୋଟିଏ ଷଡ଼ଯନ୍ତ୍ର କରି ସେ ନିଜ ପିତାଙ୍କୁ ହତ୍ୟା କରିଥିଲି । ଏହି ତରୁଣୀ କ୍ରୋଧ ମୁହୂର୍ତ୍ତରେ ପିତୃହତ୍ୟା ରୂପ ଭୟଙ୍କର ପାପ କାର୍ଯ୍ୟରେ ଲିପ୍ତ ହୋଇଥିଲେ ମଧ୍ୟ, ତାହାର ସ୍ୱଭାବ ଅତ୍ୟନ୍ତ କୋମଳ ଥିଲି ।

କାହାଣୀଟିର ସାର୍ବଜନୀନ ମାନବିକ ଆବେଦନ ଶେଲିଙ୍କୁ ନାଟକ ରଚନା ଲାଗି ଅନୁପ୍ରେରିତ କରିଥିଲି । କାବ୍ୟ ନାଟକାଟିର ଦୁଃଖାନ୍ତ ଭୂମିକା ରାଧାନାଥଙ୍କ କାବ୍ୟ ସହ ତୁଳନା ଯୋଗ୍ୟ । ନାୟକ ସେନ୍‌ସିଂକ ସହିତ ଗଙ୍ଗେଶ୍ୱରଦେବଙ୍କ ସାମ୍ୟ ଅଛି । ଉଭୟ ନିଷ୍ଠୁର, ପାପାସକ୍ତ ଓ ନାରୀ ହସ୍ତରେ ପାପର ପ୍ରାୟଶ୍ଚିତ ସ୍ୱରୂପ ଜୀବନ ହରାଇଅଛନ୍ତି । ତରୁଣୀ କନ୍ୟା ଓ ତାହାର ଶାଶୂଙ୍କ ପ୍ରତିଶୋଧ କାମନା ଓ କାର୍ଯ୍ୟ କଳ୍ପିତ ଭିନ୍ନ ରୂପରେ ପାର୍ବତୀଠାରେ ପ୍ରତିଫଳିତ ହୋଇଅଛି ।

## ଆସ୍କାଇଲସ୍‌ଙ୍କ ନାଟକ

ଗ୍ରୀକ୍ ପୁରାଣ କଥାରେ ଆଗମେମ୍‌ନନ୍ କାହାଣୀ ସୁପରିଚିତ । ପ୍ରଥମେ ଏହା ହୋମରଙ୍କ ଇଲିଆଡ଼ରେ ଦେଖିବାକୁ ମିଳେ । ଏହି କାହାଣୀ ପରବର୍ତ୍ତୀ ବହୁ ଲେଖକଙ୍କ କୃତିରେ କରୁଣ ଓ ରସାଳ ହୋଇ ଆତ୍ମ ପ୍ରକାଶ କରିଅଛି । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତକର ଶେଷ ପାଦରେ ଆବିର୍ଭୂତ ଆସ୍କାଇଲସ୍, ଏହି କାହାଣୀକୁ ଅବଲମ୍ବନ କରି ତିନିଗୋଟି ନାଟକ ଲେଖିଛନ୍ତି । ୨୩ ଏହି ନାଟିକାଗୁଡ଼ିକର ମାନବିକ ଆବେଦନ ଅତି ଗମ୍ଭୀର । ପାପର ମୂଳ କେଉଁଠି ? ଏଥିରୁ ମୁକ୍ତ ହେବା ଉପାୟ କ'ଣ ? ପାପ କବଳରୁ ମୁକ୍ତ ହେବାକୁ ମାନବର ପ୍ରୟାସ ବ୍ୟର୍ଥହୁଏ କାହିଁକି ? ପାପର ପ୍ରାୟଶ୍ଚିତ ବିଧାନ କରନ୍ତି କିଏ—ଈଶ୍ୱର ନା ମନୁଷ୍ୟ ? ମାନବ ଜୀବନର ବିକାଶ ସହିତ ଗମ୍ଭୀର ଭାବରେ ଜଡ଼ିତ ଏହି ପ୍ରଶ୍ନଗୁଡ଼ିକର ସୁନ୍ଦର ଉତ୍ତର ଏସ୍କାଇଲସ୍‌ଙ୍କ ନାଟକ ଭଳି ଅନ୍ୟତ୍ର କ୍ୱଚିତ୍ ଦେଖିବାକୁ ମିଳେ ।

ଗ୍ରୀକ୍‌ବୀର ଆଗ୍‌ମେମ୍‌ନନ୍ ଟ୍ରୟ ଅଭିଯାନ ବେଳେ ବହୁ ଦୁର୍ଯୋଗର ସମ୍ମୁଖୀନ ହୋଇଥିଲେ । ଏହିସବୁ ଦୁର୍ଯୋଗର ଖଣ୍ଡନ ପାଇଁ ଦେବତାଙ୍କୁ ନିଜର ପ୍ରିୟ କନ୍ୟା ଇଫିଜେନିଆକୁ ବଳି ଦେଇଥିଲେ । ଏହା ରାଣୀ କ୍ଲାଇଟେମେନ୍‌ଷ୍ଟ୍ରା ଜାଣିଲେ । ପତିଙ୍କ ପ୍ରତି ତାଙ୍କର ତୀବ୍ର ଘୃଣା ଜାତ ହେଲି । ଆଗ୍‌ମେମ୍‌ନନ୍‌ଙ୍କ ଦୀର୍ଘ ବିଚ୍ଛେଦ କାଳରେ ସେ ଉପପତି ଗ୍ରହଣ କରି ପତିଙ୍କ ବିରୋଧରେ ପ୍ରତିଶୋଧ ନେବାକୁ ପ୍ରତିଜ୍ଞା କଲେ । ଦଶବର୍ଷ ଅବରୋଧ ପରେ ଟ୍ରୟର ପତନ ହେଲି । ରାଣୀଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁସାରେ ରାଜା ଇଡ଼ା ପର୍ବତ ଉପରୁ ନିଆଁ ଜାଳି ବିଜୟ ସଙ୍କେତ ପଠାଇଲେ । ପୂର୍ବରୁ ପ୍ରାସାଦ ଶିଖରର ନିର୍ଦ୍ଦିଷ୍ଟ ସ୍ଥାନରେ ଜଗି ରହିଥିବା ପ୍ରହରୀ ରାଣୀଙ୍କୁ ବିଜୟ ସମ୍ବାଦ ଦେଲି । ରାଣୀ ବାହାରିକୁ

ଆନନ୍ଦ ଦେଖାଇ ରାଜାଙ୍କ ବିଜୟ ସମ୍ବାଦକୁ ସ୍ୱାଗତ କଲେ । ମାତ୍ର ରାଜା ଫେରିଲାରୁ ରାଣୀ ନିଜ ଉପପତି ଏଜିଥାସ୍‌ଙ୍କ ଗୋପନ ସହଯୋଗରେ ତାଙ୍କୁ ହତ୍ୟା କଲେ । ଏକଥା ରାଜାଙ୍କ ଔରସ ଜାତ ପୁତ୍ର ଓରେଷ୍ଟେସ୍‌ଙ୍କୁ ଅଜଣା ରହିଲା ନାହିଁ । ସେ ପ୍ରତିଶୋଧ ନେବାଲାଗି ମାତା କ୍ଲାଇଟେମେନ୍‌ଷ୍ଟ୍ରାଙ୍କୁ ହତ୍ୟା କଲେ । ନାଟ୍ୟକାରଙ୍କ କଳ୍ପନାରେ ସ୍ୱର୍ଗର ଦେବତାମାନେ ଏହି ପାପର ବିଗ୍ଭର କଲେ । ଏହିଠାରେ ଦେବତାମାନେ ମନୁଷ୍ୟର ଶାଶ୍ୱତ ଆତ୍ମାର ଜୀବନ୍ତ ପ୍ରତିନିଧି ରୂପରେ କାର୍ଯ୍ୟ କରିଅଛନ୍ତି ।

ରାଧାନାଥଙ୍କ କାବ୍ୟର ରାଣୀ ପାର୍ବତୀଙ୍କ ସହ କ୍ଲାଇଟେମନ୍‌ଷ୍ଟ୍ରା, ଗଙ୍ଗେଶ୍ୱର ଦେବଙ୍କ ସହ ଆଗ୍‌ମେମ୍‌ନନ୍‌, କୌଶଲ୍ୟାଙ୍କ ସହ ଇଫିଜେନିଆର ଆଂଶିକ ତୁଳନା ହୋଇପାରେ । ମାତ୍ର ଗୁଣ, କର୍ମ, ଭାବନା ଓ ଆଦର୍ଶରେ ରାଧାନାଥଙ୍କ ଅଙ୍କିତ ଚରିତ୍ରରେ ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳେ । ରାଧାନାଥ ଗ୍ରୀକ୍ କାହାଣୀର ବାହାରଙ୍ଗ ରୂପ ମାତ୍ର ଗ୍ରହଣ କରିଛନ୍ତି । ସେ ଉତ୍କଳୀୟ କିମ୍ବଦନ୍ତୀର ଆଭିମୁଖ୍ୟ ଅକ୍ଷୁର୍ଣ୍ଣ ରଖିଅଛନ୍ତି । କିମ୍ବଦନ୍ତୀରେ ଗଙ୍ଗେଶ୍ୱର ଦେବ ଯେପରି ହୀନ ଓ ପାପାସକ୍ତ, ରାଧାନାଥଙ୍କ କାବ୍ୟରେ ତାଙ୍କୁ ସେହି ରୂପରେ ଦେଖିବାକୁ ମିଳେ । ଜନ ଚକ୍ଷୁରେ ଆଗ୍‌ମେନନ୍‌ଙ୍କ ପରି ଗଙ୍ଗେଶ୍ୱର ଦେବ ବିଜୟୀ ଯୋଦ୍ଧା । ନୀଳାଚଳର ରାଜପଥରେ ତାଙ୍କର ସ୍ୱାଗତ ଅଭ୍ୟର୍ଥନା ପାଇଁ ଉତ୍ସବ ସମାରୋହ ହେଲେନ୍‌ର ଉତ୍ସବ ସମାରୋହର ଅନୁରୂପ । ମାତ୍ର ଗଙ୍ଗେଶ୍ୱର ଦେବ ଆଗ୍‌ମେମ୍‌ନନ୍‌ଙ୍କ ଭଳି ଦେବତାର ଅଭିଶାପ ଖଣ୍ଡନ ପାଇଁ ନିଜ କନ୍ୟାକୁ ବଳି ଦେଇନାହାନ୍ତି । ନିଜ ପାପ ପ୍ରବୃତ୍ତି ଚରିତାର୍ଥ କରିବାକୁ ଯାଇ କନ୍ୟା ପ୍ରତି ଦଣ୍ଡ ବିଧାନ କରିଅଛନ୍ତି । ପାର୍ବତୀଙ୍କ ବିରୋଧରେ କେହି ପ୍ରତିଶୋଧ ନେଇ ନାହାନ୍ତି । ଦେବତା ଯେଉଁ ପାପର ଦଣ୍ଡବିଧାନ କରି ନାହାନ୍ତି, ସେଇ ପାପର ଶାସ୍ତି ବିଧାନ କରିବାକୁ ଯାଇ ଆତ୍ମବଳି ଦେଇଛନ୍ତି ।

## ମାନବିକତାର ଆବେଦନ

କେବଳ ଯଦି ଗ୍ରୀକ୍ ପୁରାଣର ଆଦର୍ଶ ସମ୍ମୁଖରେ ରଖି ରାଧାନାଥ ପାର୍ବତୀ କାବ୍ୟର ପରିକଳ୍ପନା କରିଥାନ୍ତେ, ତେବେ ରାଜକୁମାର ଏକଜାତ ରତ୍ନପୁରର ରାଜକୁମାରୀ ଅନ୍ନପୂର୍ଣ୍ଣାଙ୍କ ପ୍ରେମ ପ୍ରସଙ୍ଗ ଉତ୍‌ଥାପନ କରି ନ ଥାନ୍ତେ । ପ୍ରାଚୀନ ଗ୍ରୀକ୍ ଜନ ସମାଜର ବିଗ୍ଭରରେ ରକ୍ତ ଲାଗି ରକ୍ତର ପ୍ରତିଶୋଧ ଏକମାତ୍ର ପନ୍ଥା ଥିଲା । ଆଧୁନିକ ଯୁଗର ମାନବିକ ଦୃଷ୍ଟିକୋଣରୁ ଏହା ଗ୍ରହଣଯୋଗ୍ୟ ନୁହେଁ । କେବଳ ହତ୍ୟାଦ୍ୱାରା ପ୍ରତିଶୋଧ ନେଇ ନିଜର ବିଗ୍ଭର ବୁଦ୍ଧି ଓ ସ୍ୱାଭାବିକ ଦୃଷ୍ଟିରେ ଗୃଳିତ ହୋଇ ମନୁଷ୍ୟ କିପରି ଅନ୍ୟାୟର ଉପଯୁକ୍ତ ପ୍ରତି-ରୋଧ କରିପାରେ ଓ ପ୍ରତିଶୋଧ ନେଇପାରେ ତାହା ସେକ୍‌ସପିଅର ହାମଲେଟ୍ ନାଟକରେ ଓ ଗ୍ୟେଟେ ଇଫିଜେନିଆ ନାଟକରେ ଦେଖାଇଅଛନ୍ତି । କେବଳମାତ୍ର ମୃତ ପିତାଙ୍କର

ପ୍ରେତର ବାରମ୍ବାର ପ୍ରରୋଚନାରେ ହାମଲେଟ୍ ପିତୃହନ୍ତାକୁ ହତ୍ୟାକରି ପ୍ରତିଶୋଧ ନେବାକୁ ଯାଇନାହାଁନ୍ତି। ସର୍ବଦା ନ୍ୟାୟ ଓ ଅନ୍ୟାୟର ବିଚାର ସେ ନୈତିକତା ଓ ଦ୍ୱୈତବାଦୀ ଦୃଷ୍ଟିରୁ କରିଅଛି। ଶେଷ ମୁହୂର୍ତ୍ତରେ ଆତ୍ମରକ୍ଷାର ଉପାୟ ବିଧାନ ସ୍ୱରୂପ ଘୃଣା ଓ କ୍ରୋଧରେ ସେ ପିତୃହନ୍ତା କ୍ଲଡିଆସ୍‌କୁ ହତ୍ୟା କରିଅଛି। ସେହିପରି ପାର୍ବତୀ ନିଜ ପ୍ରିୟତମା କନ୍ୟାର ମୃତ୍ୟୁର କାରଣ ବୋଲି ସ୍ୱାମୀ ଗଂଗେଶ୍ୱର ଦେବଙ୍କୁ ହତ୍ୟା କରି ନାହାନ୍ତି। ଭାବି ପୁତ୍ରବଧୂ ଅନ୍ନପୂର୍ଣ୍ଣାର ସତୀତ୍ୱ ତଥା ପ୍ରାଣ ରକ୍ଷା ଲାଗି ଏହି କଠୋର କର୍ମ କରିଛନ୍ତି। ପାର୍ବତୀଙ୍କ ଠାରେ ମାନବିକତାର ଏହି ଆଦର୍ଶ ପରିସ୍ଫୁଟ କରିବା ଲାଗି ଅନ୍ନପୂର୍ଣ୍ଣା ଓ ଏକଜାତଙ୍କ ପ୍ରେମ କାହାଣୀ କିପରି ଆବଶ୍ୟକ ଥିଲା, ତାହା ସହଜରେ କଳନା କରି ହୁଏ ଯାଇପାରେ।

ପାର୍ବତୀଙ୍କ କାର୍ଯ୍ୟ ନ୍ୟାୟପୂର୍ଣ୍ଣ ହୋଇଥିଲେ ବି ସେ ଆତ୍ମହତ୍ୟା କରିଅଛନ୍ତି। କାବ୍ୟିକ ଆଦର୍ଶ ଦୃଷ୍ଟିରୁ ଏହା ଯଥାର୍ଥ ହୋଇନାହିଁ। ମାତ୍ର ସାମାଜିକ ପରମ୍ପରା ଦୃଷ୍ଟିରୁ କବି ଏହା କଳ୍ପନା କରିଥିବା ଭଳି ମନେ ହୁଏ। ତୁଳନାରେ ଦେଖିଲେ ଗ୍ରୀକ୍ କାହାଣୀରେ ମାତୃହତ୍ୟା ଦୋଷରେ ଓରେଷ୍ଟିସ୍ ମରିନାହିଁ। ହାମଲେଟ୍ ନାଟକରେ ଘଟଣାର ସ୍ୱାଭାବିକ ପରିବେଶ ଭିତରେ ନାୟକର ମୃତ୍ୟୁ ଘଟିଅଛି। ସଂଘର୍ଷ ସମୟରେ ରାଜା କ୍ଲଡିଆସ ବିଷଲିପ୍ତ ଖଡ୍‌ଗ ପ୍ରୟୋଗ କରି ନ ଥିଲେ, ହ୍ୟାମଲେଟ୍ ମରଣ ମୁଖରେ ପଡ଼ି ନ ଥାନ୍ତା। କଥାବସ୍ତୁ ଓ ଘଟଣାବଳୀର ସ୍ୱାଭାବିକ ଗତିରେ ପାର୍ବତୀଙ୍କ ଆତ୍ମହତ୍ୟାର ଚିତ୍ର ରାଧାନାଥ ଅଂକନ କରି ପାରି ନାହାନ୍ତି। ମାତ୍ର, କାବ୍ୟର ପ୍ରଧାନ ନାୟିକା ବଞ୍ଚି ରହିଥିଲେ, କଳିତ ବିୟୋଗାନ୍ତ ଭୂମିକା ସୃଷ୍ଟି ହୋଇ ନଥାନ୍ତା। ପୁଣି ଆମର ସାମାଜିକ ପରମ୍ପରା ଦିଗରୁ ପତିଘାତିନୀ ସ୍ତ୍ରୀ ପକ୍ଷରେ ଆତ୍ମହତ୍ୟା ନକରି, ଅନ୍ୟ ଭାବରେ ଜୀବନକୁ ସାର୍ଥକ କରିବା ଅସ୍ୱାଭାବିକ ବୋଧ ହେବାର କଥା। ଏହା ରାଧାନାଥଙ୍କୁ ପ୍ରଭାବିତ କରିଥିବା ସମ୍ଭବ।

କିଂବଦନ୍ତୀକୁ କାବ୍ୟ ରୂପ ଦେବା ପାଇଁ ଯେତିକି ଉପାଦାନ ଲୋଡ଼ା ହୋଇଅଛି, କବି ତାହା ଆହରଣ କରିଛନ୍ତି। ରାଧାନାଥଙ୍କ ଦୃଷ୍ଟି ସମକ୍ଷରେ ହୋମାର, ସେକ୍ସପିୟର, ଅସ୍କାଇଲସ୍ ନଥିଲେ, ପାର୍ବତୀ କାବ୍ୟରେ ଆମେ କଂଚୁକୀ, ଅନ୍ନପୂର୍ଣ୍ଣା ଓ ଏକଜାତ ଏହି ଚରିତ୍ର ଗୁଡ଼ିକୁ ଦେଖିବାକୁ ପାଇ ନ ଥାନ୍ତୁ। କବି କେବଳ ଚରିତ୍ର ଆହରଣ କରି ନାହାନ୍ତି, ଅନେକ ସ୍ଥଳରେ ଘଟଣାବଳୀର ବର୍ଣ୍ଣନା କ୍ରମରେ ଆସ୍କାଇଲସ୍ ଓ ସେକ୍ସପିଅରଙ୍କ ଛାୟା ଅନୁସରଣ କରିଥିବା ଭଳି ଅନୁମିତ ହୁଏ। ପ୍ରେତ ମୁଖରେ ଗଂଗେଶ୍ୱର ଦେବଙ୍କ ଗୁପ୍ତ ପାପର ରହସ୍ୟ ଉନ୍ମୋଚନ, ଅଗ୍ନି ସାହାଯ୍ୟରେ ବିଜୟ ବାର୍ତ୍ତା ପ୍ରେରଣ ଓ କଂଚୁକୀର ଅଶୁଭ ଶକୁନ ଦର୍ଶନ ଆଦି ଏହାର ଦୃଷ୍ଟାନ୍ତ। ଏପରିକି ଅପେକ୍ଷ୍ୟମାଣ କଂଚୁକୀ ମୁଖରେ କବି ଯେଉଁ କ୍ଷୁଦ୍ର ସୁଲଭ ଶୋକ ସଙ୍ଗୀତ ଦେଇଅଛନ୍ତି, ସେଥିରେ ପର୍ଯ୍ୟନ୍ତ ଅସ୍କାଇଲସ୍‌ଙ୍କ କବିତାର ପ୍ରତିବିମ୍ବ ଦେଖିହୁଏ। ପ୍ରହରୀ ମୁଖରେ ପ୍ରଦତ୍ତ ଆସ୍କାଇଲସ୍‌ଙ୍କ ଏହି ପଂକ୍ତିମାନ ପ୍ରଣିଧାନ ଯୋଗ୍ୟ —

And woes, by heaven ordained, must fall—unsoothed by tears spilth of wine
Poured forth too late, the wrath divine glares vengeance on the flameless shine. [१४]

## ରାଧାନାଥଙ୍କ ମୌଳିକତା

ସମସ୍ତ ଆହରଣ ସତ୍ତ୍ୱେ ପାର୍ବତୀ ରାଧାନାଥଙ୍କ ମୌଳିକ ସର୍ଜନାଶକ୍ତିର ସୁନ୍ଦର ନିଦର୍ଶନ । ପ୍ରେତ ରୂପିଣୀ କୌଶଲ୍ୟାଠାରେ ନାରୀ ଜୀବନର କରୁଣ ଚିତ୍ର ଅତୁଳନୀୟ । ରାଜ ଅନ୍ତଃପୁରର ସୁକୁମାରୀ କନ୍ୟା ଓ ଅତ୍ୟାଚରିତା ଜନନୀ ରୂପେ ତା ଜୀବନରେ ଦୁଇ ସ୍ୱତନ୍ତ୍ର ବିରୋଧମାନ ଭୂମିକା ବିଦ୍ୟମାନ । ହ୍ୟାମଲେଟ୍‌ର ପ୍ରେତାତ୍ମା ପ୍ରତିଶୋଧ ଚାହୁଁଛି । ମାତ୍ର କୌଶଲ୍ୟାର ପ୍ରେତାତ୍ମା କୌଣସି ପ୍ରତିଶୋଧ ଚାହୁଁନାହିଁ । ଦୁଃଖୀ ନିଜର ଦୁଃଖ କାହାଣୀ ଦରଦୀ ପାଖରେ କହି ଯେଉଁ ମାନସିକ ଶାନ୍ତି ପାଏ, ସେହି ଶାନ୍ତି ସେ ଲୋଡ଼ୁଛି । ପାର୍ବତୀ କାବ୍ୟରେ ସମସ୍ତ ଘଟଣା ଓ ବର୍ଣ୍ଣନାରେ ମାନବୀୟ ରସ ସ୍ୱତଃସ୍ଫୂର୍ତ୍ତି ଭାବରେ ପ୍ରକାଶିତ ହୋଇଅଛି । କୌଣସିଠାରେ ଦେବତାର ଆଶୀର୍ବାଦ ବା ଅଭିଶାପ ମାନବ ଜଗତର କ୍ରିୟା କଳାପକୁ ନିୟନ୍ତ୍ରିତ କରିନାହିଁ । ମାନବର କର୍ମ ତାହାର ଭାଗ୍ୟ ନିୟନ୍ତ୍ରଣ କରିଅଛି । କଂଚୁକୀ କୌଣସି ଦେବତାଙ୍କର ଅଭିଶାପକୁ ଭୟ କରିନାହିଁ । ସେ କେବଳ ଗଂଗେଶ୍ୱର ଦେବଂକ ଦୁଷ୍କୃତ କଥାହିଁ ଭାବି ଚିନ୍ତିତ ହୋଇଅଛି । ବାହାର ଦୁନିଆ ଯେତେବେଳେ ଆନନ୍ଦବିଭୋର ଅଥବା ଗାଢ଼ ସୁଷୁପ୍ତି ଅନ୍ଧକାରରେ ମୁହ୍ୟମାନ, ସେତେବେଳେ କଂଚୁକୀର ମାନସ ଚକ୍ଷୁ ସମ୍ମୁଖରେ ସ୍ତରେ ସ୍ତରେ ଉନ୍ମୋଚିତ ହୋଇଛି, ଯୁଗ ଯୁଗାନ୍ତ ମାନବ କରଣୀର ରୂପ, ମାନବ ଜୀବନର ଅଳୀକତା ଓ ନଶ୍ୱରତାର ଚିତ୍ର । କଂଚୁକୀର ଭାବନା ଭିତରେ କବିଙ୍କ ବିଷାଦବାଦୀ ମନନଶୀଳ ମନର ଗହନ ଅନ୍ତସ୍ତଳ ଫୁଟି ପଡ଼ିଅଛି । ଯେଉଁ ଗଂଗେଶ୍ୱର ଦେବ ସାଧାରଣ ଦୃଷ୍ଟିରେ ପ୍ରବଳ ପ୍ରତାପୀ ମହାମାନ୍ୟ ସମ୍ରାଟ, ସେ କଂଚୁକୀ ଦୃଷ୍ଟିରେ ଅଜ୍ଞାନ, ମଦମତ୍ତ, ତମୋଧର୍ମବଶ, ପରପୀଡ଼କ । ସମସ୍ତ ଆଡ଼ମ୍ବର ଓ ଆଟୋପ ଆବରଣ ଭିତରେ ସାରସତ୍ତାରେ ସେ ସାମାନ୍ୟ ଅକିଂଚନ । ଦରବାରରେ କବି ନିଜେ ଯାହା କହିଛନ୍ତି, ପାର୍ବତୀ କାବ୍ୟରେ ତାହା କଂଚୁକୀ ମୁଖରେ କୁହାଇ ଅଛନ୍ତି । ମାନବୀୟ ଆଦର୍ଶର ଭୂମିକାରେ ମାନବର କର୍ମ, ସାଧନ ଓ ସିଦ୍ଧି କିପରି ରୂପାୟିତ ହୋଇପାରେ ତାହା ରତ୍ନପୁର ପତି ଓ ଗଙ୍ଗେଶ୍ୱରଦେବଙ୍କ ଚରିତ୍ରରେ ସୁନ୍ଦର ଫୁଟିଅଛି । ଯୁଦ୍ଧ ଓ ଦୁର୍ଗ ଅବରୋଧ ସମୟରେ ଏକଜାତ ଓ ଅନ୍ନପୂର୍ଣ୍ଣାଙ୍କ

ପ୍ରଣୟର ମୋହନ ଶକ୍ତି ରତ୍ନପୁର ପତିଙ୍କ ମୁଷ୍ଟିକୁ ଶିଥିଳ କରିଅଛି । ଅନ୍ୟପକ୍ଷରେ ଅସଂଯତ, ଅନଦମିତ ପ୍ରବୃତ୍ତିର ଲେଲିହାନ ଶିଖା ଗଙ୍ଗେଶ୍ୱରଙ୍କ ମୁଷ୍ଟିକୁ କଠୋର କରିଅଛି । ଫଳରେ ରତ୍ନପୁରର ଧ୍ୱଂସ ଘଟିବା ସଙ୍ଗେ ସଙ୍ଗେ ଗଙ୍ଗେଶ୍ୱରଙ୍କ ସମସ୍ତ ନୈତିକ ଶକ୍ତି ଧ୍ୱଂସ ହୋଇ ଯାଇଛି । ନୈତିକ ଦୃଷ୍ଟିରୁ ପରାଜୟହିଁ ରତ୍ନପୁର ପତିଙ୍କୁ ବିଜୟ ଆଣି ଦେଇଅଛି । ବିଜୟହିଁ ଗଙ୍ଗେଶ୍ୱରଦେବଙ୍କୁ ଚରମ ପରାଜୟର ସମ୍ମୁଖୀନ କରାଇଅଛି ।)

ରାଧାନାଥଙ୍କ ସମସ୍ତ କାବ୍ୟ ସୃଷ୍ଟିରେ ପାର୍ବତୀ ଅନନ୍ୟ ସାଧାରଣ । କାବ୍ୟର ପରିକଳ୍ପନା ଓ ବିଷୟ ବିନ୍ୟାସରେ କବିଙ୍କ ରୋମାଣ୍ଟିକ ପ୍ରାଣର ଭାବାବେଗ ସ୍ୱଚ୍ଛଧାରାରେ ପ୍ରବାହିତ ହୋଇଅଛି । ଅନୁରୂପ ଭାବରେ ବର୍ଣ୍ଣନା, କାବ୍ୟାଦର୍ଶ, ସୌନ୍ଦର୍ଯ୍ୟ ସୃଷ୍ଟି ଓ ଭାବ ସନ୍ନିବେଶରେ କବିଙ୍କର ଧ୍ୟାନଗମ୍ଭୀର କ୍ଲାସିକ ଶିଳ୍ପଦୃଷ୍ଟି ଉଦ୍‌ଭିନ୍ନ ହୋଇଅଛି । ଏକାଧାରରେ ରୋମାଣ୍ଟିକ ମନର କ୍ଷୁବ୍‌ଧତା, ଚଞ୍ଚଳତା, ଅଧୀରତା, ତନ୍ମୟ ଭାବ ବିଳାସିତା ଓ କ୍ଲାସିକ ଆଦର୍ଶର ସ୍ୱଚ୍ଛତା, ସ୍ନିଗ୍ଧତା ଓ ସ୍ଥିରତାର ସ୍ୱାଦ୍ୟ ଓ ସୁନ୍ଦର ସମନ୍ୱୟ ଏଥିରେ ଘଟିଅଛି । ପୁରୀ ବଡ଼ଦାଣ୍ଡର ଯାତ୍ରୀ, ବାହୁଷ୍ଟୋଠକାରୀ ମାଲ, କୁପାକାଠିଯୁଦ୍ଧ ନୋଳିଆ, ବାଲି ପ୍ରାନ୍ତରରେ ଗୋପ ବାଳକର ବର୍ଣ୍ଣନା, ମେଘାସନ, ଗନ୍ଧମାଦନ, ଗୋନାସା ପର୍ବତ ଶିଖେ ଶିଖେ ବିଜୟ ସଙ୍କେତ ଅଗ୍ନିର ଗତିପଥ ବର୍ଣ୍ଣନାରେ କବିଙ୍କ ଲେଖନୀରୁ ଚିରନ୍ତନ ସାହିତ୍ୟର ସ୍ଥିର ରୂପ ଦେଖିବାକୁ ମିଳେ । ମାନ ସମଗରା ଦହର ରଜତ ଆସ୍ତରଣ ପୃଷ୍ଠପଟରେ ଦୂର ଦିଗବଳୟର ରେଖାକୃତି ତରୁଶ୍ରେଣୀ, ତାରକା ଗୁମ୍ଫିତ ଆକାଶ, ତରଳ ଜ୍ୟୋତ୍ସ୍ନାର ଉଦାର ପରିବେଶ ଭିତରେ ଗୋଟିଏ ଠେଣ୍ଟୋଇର କଳସଙ୍ଗୀତ ଶୁଣାଇବା ଅଥବା ଶ୍ରୀଖଣ୍ଡ ଶୈଳର ପାରାବାରବାହୀ ମୃଦୁ ସମୀରଣରେ ଶ୍ରୀକ୍ଷେତ୍ର ଲଳନାର କପୋଳ ଅଳକର ମୃଦୁ ଦୋଳନ ଦେଖେଇବା, ଅଥବା ଗାଢ଼ ଅନ୍ଧକାର ଭିତରେ ପ୍ରକୃତ ଦେହରୁ ଜୀବନନାଟ୍ଟ ଛାଡ଼ି ଯିବାର ଅନୁଭୂତ ବର୍ଣ୍ଣନା ଜଣେ ଶ୍ରେଷ୍ଠ ରୋମାଣ୍ଟିକ କବିଙ୍କ ବିନା ଆଉ କାହା ପକ୍ଷରେ ସମ୍ଭବ ନୁହେଁ ।

ଆଧୁନିକ ଯୁଗ ଭାବ ସଂଘାତର ଯୁଗ । ମନୁଷ୍ୟ ନିଜର ବ୍ୟକ୍ତି ମନର ଅଭିଳାଷ, ଅଭିରୁଚି ଘେନି ବଞ୍ଚିବ, କି ନୈତିକ ଆବେଷ୍ଟନୀ ଓ ସାମାଜିକ ଚଳଣିର ଆବରଣ ଭିତରେ ଆତ୍ମବିଲୀନ ହେବାଏ ପ୍ରଶ୍ନ ଆଜି ଚିନ୍ତା ଜଗତରେ ଉନ୍ମୂଳ ଆଲୋଡ଼ନ ସୃଷ୍ଟି କରିଅଛି । କୃତ୍ରିମ ନୈତିକ ଆବେଷ୍ଟନୀ ଓ ସାମାଜିକ ବନ୍ଧନ ମାନବର ସ୍ୱଚ୍ଛନ୍ଦ ବିକାଶରେ ବାଧକ । ଏହା ମାନବାତ୍ମାକୁ ସତ୍ୟ ଶାଣିତ କରେ ନାହିଁ, ନୀତି ସମ୍ମତ ପଥରେ ଚାଲିବାକୁ ଦିଏନାହିଁ । ମାନବର ଅତୁଳନୀୟ ହେତୁଜ୍ଞାନର କଷଟିରେ ଯାହା ପରୀକ୍ଷିତ ନୁହେଁ, ତାହା ଅସାର । ଏହାର ସୁନ୍ଦର ଧାରଣା ପାର୍ବତୀ କାବ୍ୟରୁ ମିଳେ । ଏହି ଦୃଷ୍ଟିରୁ ବିଚାର କଲେ, କାବ୍ୟଟିରେ ଅତ୍ୟାଧୁନିକ ମତର ପରିଚୟ ମିଳେ । ଗଙ୍ଗେଶ୍ୱର, ପାର୍ବତୀ ଓ କୌଶଲ୍ୟା ଏହି ତିନିଜଣଙ୍କ

ଚରିତ୍ର କାବ୍ୟର କବିତାଂଶରେ ଯେତିକି ପ୍ରକାଶିତ ହୋଇଅଛି, ସେଥିରୁ ଏହା ନିଦର୍ଶନ ପାଇଥାଉଁ । ଗଙ୍ଗେଶ୍ୱର ବୀରତ୍ୱର ଗୌରବ ଗାନ କରନ୍ତି, ନାରୀର ମର୍ଯ୍ୟାଦା ବଖାନ କରନ୍ତି, ଦେବପୂଜା ଦ୍ୱିଜ ଅର୍ଚ୍ଚନା କରନ୍ତି । ସମାଜ ଭିତରେ ଜଣେ ସମ୍ପୂର୍ଣ୍ଣ ସାମାଜିକ ମନୁଷ୍ୟର ପ୍ରକାଶ୍ୟ ଅଭିନୟ ସେ କରିଛନ୍ତି । ମାତ୍ର ତାଙ୍କର ଅନ୍ତର୍ଜୀବନ ଏହି ବନ୍ଧା ସମାଜର ଏକ ତୀବ୍ର ଉପହାସ । ବାହାର ଜୀବନରେ ପାର୍ବତୀ ଜଣେ ପତିଭକ୍ତିମତୀ ହିନ୍ଦୁ ରମଣୀ । କିନ୍ତୁ ଅନ୍ତର୍ଜୀବନରେ ସେ ବନ୍ଧା ସମାଜର ଅନ୍ୟାୟ ଓ ଅନୀତି ବିରୋଧରେ ଏକ ଶାଣିତ ଅସ୍ତ୍ର ରୂପେ କାର୍ଯ୍ୟ କରିଅଛନ୍ତି । ବାହାର ଜୀବନରେ କୌଶଲ୍ୟା ଅଲଅଲ ରାଜକନ୍ୟା, କଲଙ୍କିନୀ ନାରୀ । ଅନ୍ତର୍ଜୀବନରେ ସେ ଜୀବନର ଦୀପ୍ତିମନ୍ତ ସତ୍ୟ, ବଞ୍ଚିବାର ଦୁରନ୍ତ ଆକାଂକ୍ଷାର ପ୍ରତୀକ । ମନୁଷ୍ୟ ଜୀବନର ନୈର୍ବ୍ୟକ୍ତିକ ହୃଦର କରୁଣ ମଧୁର ଭାବ ମୂର୍ଚ୍ଛନା ଏଥିରେ ଯେପରି ପ୍ରକାଶ ପାଇଅଛି, ତାହା ଯେକୌଣସି ସାହିତ୍ୟରେ ଓ କଳା ସୃଷ୍ଟିରେ ବରଣୀୟ ବିବେଚିତ ହେବ ।

ନାରୀ ଦେହରେ ତଥା ପ୍ରକୃତିରେ ସତ୍ୟ ଶାଣିତ ସୌନ୍ଦର୍ଯ୍ୟକୁ ଅଭିବ୍ୟକ୍ତ ଦେବାରେ ରାଧାନାଥଙ୍କ ଲେଖନୀ ସର୍ବତ୍ର କୁଶଳ । ପାର୍ବତୀର ବିଶେଷତ୍ୱ ହେଉଛି, ଏଥିରେ ପ୍ରକୃତି କୌଣସିଠାରେ ମାନବ ସାନ୍ନିଧ୍ୟରୁ ବଞ୍ଚିତ ହୋଇନାହିଁ । ବିଜୟ ସଙ୍କେତ ଅଗ୍ନିର ଯାତ୍ରା ପଥରେ କେବଳ କଲନାଦୀ ଝରଣାର ସଙ୍ଗୀତ ଶୁଣୁ ନାହିଁ, ଚିର ହରିତାୟମାନ ବନସ୍ପତିର ଶୋଭାର ସମ୍ଭାର ମାତ୍ର ଦେଖୁ ନାହିଁ । ସେଠାରେ ଆମେ ସଙ୍ଗୀତ ମୁଖର, ନୃତ୍ୟ ଚଞ୍ଚଳ ଭୂୟାଁ ପ୍ରମଦା, ଉଲ୍ଲାସ ଉତ୍ଫୁଲ୍ଲ ଜୁଆଙ୍ଗ, ମଦ୍ୟ ଓ ତପ୍ତମାଂସ ଭକ୍ଷଣ ରତ ଶବର ଯୁବାକୁ ଦେଖୁ । ଉତ୍କଳର ରାଜ ଅନ୍ତପୁରର ରମଣୀମାନଙ୍କ ବେଶ ଚର୍ଚ୍ଚା ପ୍ରସଙ୍ଗରେ କବି ଯେପରି ଭାବରେ ସମଗ୍ର ଉତ୍କଳର ଆର୍ଥିକ ଭୂଗୋଳର ଅବତାରଣା କରି ଅଛନ୍ତି, ତାହାର ତୁଳନା ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ପାର୍ବତୀ ରାଧାନାଥଙ୍କର ଏକମାତ୍ର କାବ୍ୟ, ଯେଉଁଥିରେ ଅଛି, ଗଭୀର ମାନବିକ ସ୍ପର୍ଶ, ଶାଣିତ ସତ୍ୟୋପଲବ୍ଧି, ଲଳିତ ସୌନ୍ଦର୍ଯ୍ୟ ଦୃଷ୍ଟି ।

କବିଙ୍କ ଅନ୍ୟ କାବ୍ୟ ତୁଳନାରେ ପାର୍ବତୀକାବ୍ୟର ସ୍ୱଭାବିକତା ଓ ବୈଶିଷ୍ଟ୍ୟ ସମ୍ବନ୍ଧରେ ସେକାଳର ପାଠକମାନେ ଧାରଣା କରି ନଥିଲେ । ଏଥିରେ କବି ଜାତୀୟ ଚରିତ୍ରକୁ କଳଙ୍କିତ କରିଛନ୍ତି ବୋଲି ସମାଲୋଚନା ହେଉଥିଲା । ଏହି ସମାଲୋଚନାର ଦୃଷ୍ଟିକୋଣ ବଳଭଦ୍ର ଗ୍ରନ୍ଥାବଳୀରେ 'ପାର୍ବତୀ କାବ୍ୟରେ ଉପସଂହାର' କଳ୍ପନାରେ ପ୍ରକାଶ ପାଇଅଛି । ରାଧାନାଥ ଉନ୍ନତ ରୁଚି, ବିପୁଳ ପୁରୋଦୃଷ୍ଟି ଓ ନିଷ୍ଠା ବଳରେ କେବଳ ମାତ୍ର ଏହି କାବ୍ୟରେ ସମସ୍ତ ଚରିତ୍ରକୁ ମାନବିକ କରି ପାରିଛନ୍ତି । ମାତ୍ର ତାଙ୍କର ଆଦର୍ଶ ଓ ଉଦ୍ଦେଶ୍ୟ ବୁଝିବାକୁ ପ୍ରୟାସ ନକରି "ଉପସଂହାର" ଲେଖକ ସମସ୍ତ ଚରିତ୍ରକୁ ଅପ୍ରାକୃତିକ ଓ ଦୈବଶକ୍ତିର ପ୍ରଭାବରେ ଆଚ୍ଛନ୍ନ କରି ଦେଇଛନ୍ତି । ସେଥିଲାଗି ଏହା ରାଧାନାଥଙ୍କ କାବ୍ୟର କୌଣସି ଦିଗକୁ ପୁଷ୍ଟ କରି ପାରିନାହିଁ ।

## ଯଯାତି କେଶରୀ

ପାର୍ବତୀ ଓ ମହାଯାତ୍ରା ଭଳି ଗମ୍ଭୀର, ମନନଶୀଳ କାବ୍ୟ ରଚନା ମଧ୍ୟରେ ମନେହୁଏ, ଯଯାତିକେଶରୀ ଏକ ଲଘୁମନର ସୃଷ୍ଟି । ଏହା ରଚନା କରିବାକୁ କବିଙ୍କୁ ମାତ୍ର ଦୁଇ ମାସ ଲାଗିଥିଲା । ୨୫ ଏହି କାବ୍ୟଟି ପ୍ରକାଶ ପାଇବାର ଅଳ୍ପ କେତେ ମାସ ପୂର୍ବରୁ କବି ଗଙ୍ଗାଧର ମେହେରଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ, "ରଚନା ପ୍ରବୃତ୍ତି ପ୍ରାୟଶଃ ରାଜସ ଭାବଦୂଷିତ ।" ଯଯାତିକେଶରୀ କାବ୍ୟ ପ୍ରତି ଏହି ଉକ୍ତି ଏକାନ୍ତ ସତ୍ୟ ମନେ ହୁଏ । କବିଙ୍କର ନୀତିବାଦୀ ଆଦର୍ଶଗ୍ରସ୍ତ ମନ ପ୍ରବୃତ୍ତିର ମୁକ୍ତ ଅଙ୍ଗନରେ ଯେପରିକି ଏଥିରେ ସ୍ୱଚ୍ଛନ୍ଦ ଭାବରେ ବିହାର କରିଅଛି । ଏହି କାବ୍ୟରେ କବି ଇନ୍ଦ୍ରିୟାନୁଭୂତି, ଯୌବନ ଓ ପ୍ରେମର ଯେପରି ଅନାବୃତ ଚିତ୍ର ପ୍ରଦାନ କରିଛନ୍ତି, ତାହାର ତୁଳନା ତାଙ୍କର ଅନ୍ୟ କାବ୍ୟରେ କ୍ୱଚିତ୍ ମିଳିଥାଏ ।

ଯଯାତିକେଶରୀ କବିଙ୍କ କଳ୍ପନାରେ ଏକ ଐତିହାସିକ କାବ୍ୟ । ମାତ୍ର ଏଥିରେ ଇତିହାସର ସତ୍ୟ କ୍ୱଚିତ୍ ପ୍ରତିଷ୍ଠିତ ହୋଇଅଛି । ହିରଣ୍ୟବର୍ମାଙ୍କ ବିଷୟରେ ଇତିହାସ ନୀରବ । ଯଯାତି, ବିମଳା ଓ ଲଳିତା—ତିନି ଜଣଯାକ ଚରିତ୍ର ଓ କର୍ମରେ ଏକାନ୍ତଭାବରେ କବିଙ୍କ କଳ୍ପନା ପ୍ରସୂତ । ଅବଶ୍ୟ ପରମ୍ପରାରେ ଯେ ଏଭଳି ଗୋପନ ସମ୍ଭୋଗ ଓ ଭୋଗବୃତ୍ତିର ଆଦର୍ଶ ନାହିଁ, ତାହା ନୁହେଁ । ଏଥିରେ ବର୍ଣ୍ଣିତ ହୋଇଥିବା ନାରୀର ପୁରୁଷ ବେଶ ଧାରଣ ଓ ପୁରୁଷର ନାରୀ ବେଶ ଧାରଣ ଆମର ପୁରାଣ କଳ୍ପନାରେ ଦେଖିବାକୁ ମିଳେ । ପୁରାଣର ଶିଖଣ୍ଡି ଉପାଖ୍ୟାନ କଥା କବି ତାଙ୍କର ଏକ ପାତ୍ର ମୁଖରେ ଗୋଟିଏ ସ୍ଥଳରେ ଉଲ୍ଲେଖ କରିଛନ୍ତି । ପୁଣି ରାଜ ଅନ୍ତଃପୁରରେ ନାୟିକଙ୍କର ଗୋପନ ପ୍ରଣୟ ପ୍ରସଙ୍ଗ ଲୋକକଥାରେ ଦେଖିବାକୁ ମିଳେ । ଚତୁର ବିନୋଦରେ ବ୍ରଜନାଥ ବଡ଼ଜେନାଙ୍କ ଗିରିଧାରୀ ଦତ୍ତ ଓ ମଞ୍ଜରୀ କୁମାରୀ କଥାରେ ଅନୁରୂପ ଘଟଣା ଚିତ୍ରିତ ହୋଇଅଛି । ପ୍ରାଚୀନ ବଙ୍ଗଳା ବିଦ୍ୟା ସୁନ୍ଦର କାବ୍ୟରେ ବେଶ ପରିବର୍ତ୍ତନ କରି ନାୟକ ନାୟିକା ସହ ପ୍ରଣୟାସକ୍ତ ହେଉଥିବାର କାହାଣୀ ବର୍ଣ୍ଣିତ ହୋଇଅଛି ।

କବିଙ୍କ ଅନ୍ୟ କାବ୍ୟ ଭଳି ଏଥିରେ ମଧ୍ୟ ପାଶ୍ଚାତ୍ୟ ଆହରଣର ଧାରା କଳ୍ପନା କରାଯାଇପାରେ । ସେକ୍ସପିଅରଙ୍କ ସିମ୍ବେଲାଇନ୍ ନାଟକର କଥାବସ୍ତୁର ବିନ୍ୟାସ ସହିତ ଏହି କାବ୍ୟର କାହାଣୀରେ କେତେକ ସାମଞ୍ଜସ୍ୟ ଦେଖି ହୁଏ । ୨୬ ସିମ୍ବେଲାଇନ୍ ନାଟକର ମୂଳ କଥାବସ୍ତୁ ଇଟାଲୀୟ ଲେଖକ ବୋକାସିଓଙ୍କ ଡେକାମେରନ୍ ଗ୍ରନ୍ଥରୁ ସେକ୍ସପିଅର ଗ୍ରହଣ କରିଥିବା କଥା ଅନୁମାନ କରାଯାଏ । ପତ୍ନୀର ସତୀତ୍ୱ ଘେନି ବୋକାସିଓଙ୍କ ସାଧବ ଗଳ୍ପକୁ ସେକ୍ସପିଅର ଏକ ରାଜ ଅନ୍ତଃପୁରର ଷଡ଼ଯନ୍ତ୍ର କାହାଣୀରେ ପରିଣତ କରିଅଛନ୍ତି । ନମ୍ର

ପ୍ରସଙ୍ଗ ଯେଉଁ ସେକ୍‌ସପିଅର ଓ ରାଧାନାଥଙ୍କ କାହାଣୀରେ ସୌସାଦୃଶ୍ୟ ଦେଖିବାକୁ ମିଳେ—(କ) ବିମାତାଙ୍କ ଦୃଷ୍ଟିରେ ଯଯାତି ଓ ବିମଳା ଗୃହଚ୍ୟୁତ ହେବା । (ଖ) ବିମଳାର ପୁରୁଷ ବେଶ ଓ ରାଜକୁମାରୀ ଲଳିତାର ପୁରୁଷବେଶିନୀ ବିମଳା ପ୍ରତି ଆକର୍ଷଣ । (ଗ)—ଯଯାତିଙ୍କ ଗୋପନ ପ୍ରଣୟ । (ଘ) ଦେବୀ ବିରଜାଙ୍କ ସ୍ୱପ୍ନାଦେଶରେ କାବ୍ୟର ସୁଖମୟ ପରିଣତି । ଗୋପନ ପ୍ରଣୟ ପ୍ରକାଶ ପାଇବା ପରେ ମୃତ୍ୟୁ ଦଣ୍ଡ ଆଦେଶ ପାଇ, ଯଯାତି ଯେପରି ଅପୂର୍ବ ସାହସ ଦେଖାଇଛନ୍ତି, ସେକ୍‌ସପିଅରଙ୍କ ନାଟକରେ ପୋଷ୍ଟୁମସ୍ ସେଇପରି ସାହସ ଦେଖାଇଛନ୍ତି । ଜୁପିଟର୍ ପୋଷ୍ଟୁମସ୍‌ଙ୍କର ଭୂତ ରୂପୀ ମୃତ ପିତାଙ୍କୁ ଭବିଷ୍ୟତ ବାଣୀ ଶୁଣାଇଲା ଭଳି ଦେବୀ ବିରଜା ସ୍ୱପ୍ନରେ ହିରଣ୍ୟବର୍ମାଙ୍କୁ ଭବିଷ୍ୟତ ବାଣୀ ଶୁଣେଇଛନ୍ତି ।

କାହାଣୀ, ଚରିତ୍ର ଓ ବର୍ଣ୍ଣନା ଯେଉଁ କାବ୍ୟ । ରାଧାନାଥଙ୍କ ଅନ୍ୟ କଥା-କାବ୍ୟ ତୁଳନାରେ ଯଯାତିକେଶରୀର କାହାଣୀ କିଞ୍ଚିତ୍ ବିଚିତ୍ର । ଏଥିରେ କାହାଣୀର ଗତି ଅଛି, ନାଟକୀୟ ପରିଣତି ଅଛି । ପ୍ରଥମ ସର୍ଗରେ ବିରଜା ମନ୍ଦିରରେ ଯଯାତି ଓ ଲଳିତାଙ୍କ ସାକ୍ଷାତରେ ଗଳ୍ପର ଅବତାରଣା କରାଯାଇଅଛି । ଦ୍ୱିତୀୟ ଓ ତୃତୀୟ ସର୍ଗରେ ବର୍ଣ୍ଣିତ ଘଟଣା ମଧ୍ୟରେ ଯଯାତି ଓ ଲଳିତାଙ୍କ ମିଳନର ସମ୍ଭାବନା ସ୍ପଷ୍ଟ ହୋଇଅଛି । ଚତୁର୍ଥ ସର୍ଗରେ ପରିଣତି ଘଟିଅଛି । ଦୈବଶକ୍ତିର ଇଚ୍ଛାରେ କାହାଣୀର ପରିଣତି ସୁଖାନ୍ତ ବା ମିଳନାତ୍ମକ ହୋଇଅଛି ।

ଏହି କାବ୍ୟରେ ମୁଖ୍ୟ ଚରିତ୍ର ତିନିଗୋଟି—ଯଯାତି, ବିମଳା ଓ ଲଳିତା । ସେମାନଙ୍କଠାରେ ବ୍ୟକ୍ତିମନର କୌଣସି ଦ୍ୱନ୍ଦ୍ୱ, ଚପଳତା, ଧୈର୍ଯ୍ୟ ଓ ସାହସର ଅଭିବ୍ୟକ୍ତି ଦେଖାଯାଇନାହିଁ । କୌଣସି ଏକ ମହତ୍ତ୍ୱର ଆଦର୍ଶର ସାଧନ ବା ପୂରଣରେ ଏମାନେ ବ୍ରତୀ ନୁହନ୍ତି । ଅକ୍ଷକ୍ରୀଡ଼ାର ସାରି ଭଳି ନାଟକୀୟ ଘଟଣାବଳୀର ଘାତ ପ୍ରତିଘାତ ମଧ୍ୟରେ ଏମାନେ ଦ୍ରୁତ ପଦରେ ଗତି କରିଅଛନ୍ତି । ଭଞ୍ଜୀୟ କାବ୍ୟର ନାୟକ ନାୟିକାଙ୍କ ଭଳି ଏହାର ନାୟକ ନାୟିକାଗଣ ମିଳନରେ ଆନନ୍ଦ ବିଭୋର ହେବା ଓ ବିରହରେ ଅଶ୍ରୁ ମୋଚନ କରିବା ବ୍ୟତୀତ ଅଧିକ କିଛି ଜାଣନ୍ତି ନାହିଁ । ଏମାନଙ୍କ ପ୍ରେମ ସାଧନାର ଉଚ୍ଚତର ସୋପାନକୁ ଉନ୍ନୀତ ହୋଇନାହିଁ । ପୁରୁଷ ଓ ନାରୀ ପ୍ରବୃତ୍ତି ଶୃଙ୍ଖଳିତ ଯୌବନର ଧର୍ମ ପାଳନ ଲାଗି ଏଠାରେ ସଦା ଉନ୍ମୁଖ । ଏମାନଙ୍କ କର୍ମ ଉଚ୍ଛୃଙ୍ଖଳ ପ୍ରବୃତ୍ତି ତାଡ଼ନାରେ ଶୃଙ୍ଖଳିତ ହୋଇ ସାମାଜିକ ବିଧି ନିଷେଧ ଲଙ୍ଘନ କରିଛନ୍ତି । ଏଥିଲାଗି ସମାଜ ଶାସ୍ତି ବିଧାନ କରିବାକୁ ଗ୍ରହିଁଲେ, ଦେବତା ବାଧା ଦେଇଛନ୍ତି । ସ୍ୱର୍ଗର ସିଂହାସନରୁ ସେ ଯେପରିକି ମର୍ତ୍ତ୍ୟଲୋକର କଳୁଷ ପଙ୍କକୁ ବରଣ କରିଛନ୍ତି ।

କବିଙ୍କ ବର୍ଣ୍ଣନା ମନୋରମ । ଏଥିରେ କାଳର ଚିହ୍ନ କାଳ୍ପନିକ, ମାତ୍ର ଦେଶର ଚିହ୍ନ ସତ୍ୟ ଉପରେ ପ୍ରତିଷ୍ଠିତ । ବିରଜା କ୍ଷେତ୍ରରେ ନଦୀ, ଅରଣ୍ୟ, ଜନପଦ ବର୍ଣ୍ଣନାରେ କବି କୌଣସି କଳ୍ପନାର ଆଶ୍ରୟ ଗ୍ରହଣ କରିନାହାନ୍ତି । ବୈତରଣୀ ନଦୀର ତୀରଭୂମି, ଏପରିକି ତୀରଭୂମିର ବୃକ୍ଷଲତା, ପକ୍ଷୀ, ପ୍ରାଣୀ, କାଇଜଙ୍ଗ ଅରଣ୍ୟର ଛୁଆଁଅନା କୁଞ୍ଜକୁ ପର୍ଯ୍ୟନ୍ତ ତାଙ୍କଠାରେ ଏକାନ୍ତ ପ୍ରିୟ ଓ ପରିଚିତ ଥିଲା । ମୃତ ଅତୀତର ଜୀବନ୍ତ ସ୍ମୃତିର ଉଦ୍‌ବୋଧକ ଜୀର୍ଣ୍ଣ ଦେବାଳୟ, ଦୁର୍ଗର ପ୍ରତି ଶିଳାଖଣ୍ଡ ପର୍ଯ୍ୟନ୍ତ ତାଙ୍କଠାରେ ବିଶେଷ ମୂଲ୍ୟବାନ ଥିଲା । କାବ୍ୟର ପାତ୍ରପାତ୍ରୀ ଆମର ଅପରିଚିତ ହୋଇ ପାରନ୍ତି, ସେମାନଙ୍କ ଗୁଣ ଓ କର୍ମ ଆମ ଆଦର୍ଶର ଅନୁକୂଳ ନ ହୋଇପାରେ, ମାତ୍ର ସେମାନେ ଯେଉଁ ଭୂମି ଖଣ୍ଡରେ ବିଚରଣ କରି ଅଛନ୍ତି ତାହା ଆମର ଏକାନ୍ତ ପରିଚିତ ।

କବିଙ୍କ ରୂପାନୁର ଆଖି କେବଳ ପ୍ରକୃତିରେ ନୁହେଁ, ନାରୀ ଦେହର ସୌନ୍ଦର୍ଯ୍ୟରେ ଯେପରିକି ବିଳାସ ଅନୁଭବ କରିଅଛି । ନାରୀ ଦେହରେ ପ୍ରକୃତିର ସମସ୍ତ ସରସ ସୁନ୍ଦର ଚିତ୍ରୋତ୍ପ୍ରେକ୍ଷାସକଳର ଦୃଶ୍ୟ ପ୍ରାଚୀନ ଓ ମଧ୍ୟଯୁଗର କବିଗଣ ଦେଖିଅଛନ୍ତି । ଅନୁରୂପ ନଖଶିଖ ବର୍ଣ୍ଣନାରେ କବିଙ୍କ ଆଗ୍ରହ ଲଳିତାର ରୂପ ଚିତ୍ରଣ ପ୍ରସଙ୍ଗରେ ଏହି ପଂକ୍ତିରୁ ବୁଝାଏ—

"ଠିକେ ବର୍ଣ୍ଣିବି ମୁଁ କେମା ରୂପ, କେମା-
ଚକୁର ଭାର ପଡ଼ିଏ
ଓଲ୍ଲାଇ ଯାଉ ମୋ ଭାରତୀ ତା ଶିର-
କମଳ୍ପ ପଯୂର ଯାଏ ।" ୨୮

ଏଠାରେ ମଧ୍ୟଯୁଗର କାବ୍ୟ ସହିତ ରୂପଗତ ସାମ୍ୟ ଥିଲେହେଁ, ଭାବଗତ ପାର୍ଥକ୍ୟ ସହଜରେ କଳନା କରି ହୁଏ । ଭଞ୍ଜ, ଅଭିମନ୍ୟୁଙ୍କ କାବ୍ୟରେ ନାରୀର ରୂପ ବର୍ଣ୍ଣନା କେବଳ ବୁଦ୍ଧିଗତ । ସପ୍ତଦଶ ଶତକର ପାଶ୍ଚାତ୍ୟ କବିମାନେ ଏହି ଭାବରେ ନାରୀର ରୂପ ଚିତ୍ରଣ କରୁଥିଲେ । ଏମାନେ ନାରୀ ଦେହରେ ଏକ ସ୍ଥିର ସୌନ୍ଦର୍ଯ୍ୟ କଳ୍ପନା କରିଥାନ୍ତି । ଆମ ପ୍ରାଚୀନ କବିତାରେ ସାମୁଦ୍ରିକ ଲକ୍ଷଣ, କାମ ଶାସ୍ତ୍ରରେ ବିଳାସିନୀ ନାରୀଙ୍କ ରୂପ ବର୍ଣ୍ଣନା ଓ ଧର୍ମଗ୍ରନ୍ଥରେ ଦେବୀରୂପ କଳ୍ପନା କ୍ରମରେ ଗତାନୁଗତିକ ଭାବରେ ନାରୀର ଦେହ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଅଛି । ରୋମାଣ୍ଟିକ କବିଙ୍କ ଭଳି ରାଧାନାଥଙ୍କ ବର୍ଣ୍ଣନା କେବଳ ବୁଦ୍ଧିଗତ ନ ହୋଇ ଭାବାନୁସାରୀ । ଏହା ଇନ୍ଦ୍ରିୟ ଗ୍ରାହ୍ୟ । ଘଟଣା ଓ ନାୟକ ନାୟିକାଙ୍କ ମାନସିକ ଭାବାବେଗ ସହିତ ଏହା ନିବିଡ଼ ଯୋଗସୂତ୍ର ରକ୍ଷା କରିଅଛି । ୨୯

## କାବ୍ୟଧାରାରେ ନବ ପରୀକ୍ଷା—ଚିଲିକା, ମହାଯାତ୍ରା ଓ ଦରବାର

ପ୍ରବୀଣ ଓ ପ୍ରୌଢ଼ ରାଧାନାଥ ଥରେ ଗୋଟିଏ ଚିଠିରେ ଲେଖିଥିଲେ, "ସାହିତ୍ୟାନୁରାଗ ମୋହର ବିଦ୍ୟାଦାନରୁ ଥିଲା, ମାତ୍ର ଉଚ୍ଚ ସାହିତ୍ୟ କଣ ସେ ଜ୍ଞାନ ବହୁତ ବିଳମ୍ବରେ ଲାଭ

ହେଲା ।"୬୩ ଏହି ଉକ୍ତିରୁ କବିଙ୍କ ଶିଳ୍ପୀ ମନର ଅନ୍ତରଙ୍ଗ ପରିଚୟ ମିଳେ । କାବ୍ୟ ରଚନା ତାଙ୍କଠାରେ ଯେପରିକି ଏକ ନିରନ୍ତର ପରୀକ୍ଷା ଥିଲା । ଗୋଟିଏ କାବ୍ୟ ଅନ୍ୟଠାରୁ ଯେପରି ରୂପ, ରସ, ଭାବ ଓ ଭଙ୍ଗୀରେ ସ୍ୱତନ୍ତ୍ର ହେବ ସେ ସେଥିଲାଗି ପ୍ରୟାସୀ ଥିଲେ । ଏହି ପ୍ରୟାସର ସଫଳତା ଚିଲିକା, ମହାଯାତ୍ରା ଓ ଦରବାରରୁ ସ୍ପଷ୍ଟ କଳନା କରିଯାଇ ପାରେ । ଏହି ତିନିଗୋଟି କାବ୍ୟ ଯେନି ଓଡ଼ିଆ କାବ୍ୟ ଧାରାରେ ସେ ନୂତନ ପରମ୍ପରା ସୃଷ୍ଟି କରିଛନ୍ତି ।

କଥା କବିତା ରଚନାର ଦ୍ୱିତୀୟ ପର୍ଯ୍ୟାୟରେ ପାର୍ବତୀ ଓ ଯଯାତିକେଶରୀ ମଧ୍ୟରେ ଚିଲିକା ଓ ଜୀବନର ଶେଷ ପର୍ଯ୍ୟାୟରେ ଦରବାର ରଚିତ ହୋଇଥିଲା । ରାଧାନାଥଙ୍କ ଅନ୍ୟ କାବ୍ୟରେ କଳ୍ପିତ ନାୟକ ନାୟିକା ଅଛନ୍ତି । କାବ୍ୟର ଆଦର୍ଶ ଓ ସଙ୍ଗତି ରକ୍ଷା ଲାଗି ଏମାନେ ଦେଶକାଳର ନିର୍ଦ୍ଦିଷ୍ଟ ସୀମାରେଖା ମଧ୍ୟରେ ବିଚରଣ କରିଛନ୍ତି । ମାତ୍ର ଚିଲିକା ଓ ଦରବାରରେ କୌଣସି କଳ୍ପିତ ନାୟକ ନାୟିକା ନାହାନ୍ତି । ସେମାନଙ୍କ ସ୍ଥାନ ନିଜେ କବି ଗ୍ରହଣ କରିଛନ୍ତି । କବି ହୃଦୟର ଗଭୀର ଅନୁଭୂତିହିଁ ଏହି କାବ୍ୟଦ୍ୱୟର ଆତ୍ମା । ଚିଲିକାରେ ପ୍ରକୃତି ଓ ଦରବାରରେ ତତ୍‌କାଳୀନ ସମାଜ ପ୍ରଧାନ ଉପଜୀବ୍ୟ । ପ୍ରଥମ କାବ୍ୟଟିରେ ବନ, ପର୍ବତ, ନଦୀ ହ୍ରଦ ସହିତ ଓ ଦ୍ୱିତୀୟ କାବ୍ୟରେ ରାଜା, ସାମନ୍ତ ଆଦି ସମ୍ଭ୍ରାନ୍ତଙ୍କଠାରୁ ଦୀନଦୁଃଖୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସହିତ କବି ମନଖୋଲି ଆଳାପ କରିଛନ୍ତି ।

ଏହି ଖଣ୍ଡକାବ୍ୟ ଦୁଇଟିରେ ରାଧାନାଥଙ୍କ କବିମାନସର ଦୁଇ ବିଶିଷ୍ଟ ଦିଗର ପରିଣତି ଦେଖିବାକୁ ମିଳେ । ଏକ ଦିଗରେ ସେ ବୈରାଗ୍ୟ-ଧର୍ମୀ । ନୈତିକ ଶୃଙ୍ଖଳା ଓ ଆଧ୍ୟାତ୍ମିକ ଶୁଚି ଓ ନିଷ୍ଠା ତାଙ୍କର ଭାବନା ଓ ଚିନ୍ତାକୁ ନିୟନ୍ତ୍ରଣ କରିଅଛି । ସଂସାରରେ ସମସ୍ତ ଅଳୀକତା ମୋହ, ଗର୍ବ ଓ ଆତ୍ମମ୍ଭରିତାକୁ କାଳର ସର୍ବଗ୍ରାସୀ କଷଟିରେ କଷି, ଏଇ ବୈରାଗୀ ମନ ମାନବ ପ୍ରବୃତ୍ତିର ସମସ୍ତ ସହଜାତ ସହଜ ସ୍ୱାଦ୍ୟ କାମନା ବର୍ଜ୍ଜନ କରିଛି । ଏଇ ମନରୁ ଝରିଛି ଯେଉଁ ଅଗ୍ନି, ତାହାର ଦାହ ଦୀପ୍ତିହିଁ ଦରବାର । ଅନ୍ୟ ଦିଗରେ କବି ମନ ଚିର ରସିକ । ତାହା ଭାବ ପ୍ରବଣ ହୃଦୟର ତନ୍ମୟ ଅନୁଭୂତ ରସରେ ଉଚ୍ଛଳ । ମାନବ ପ୍ରାଣର ଜୈବୀ ବୃତ୍ତିର ସମାହିତ ସମୁନ୍ନତ ସ୍ତରରେ ଥାଇ ପ୍ରକୃତିରେ ବା ନାରୀ ଦେହରେ ରୂପ ରସର ଯେଉଁ ସ୍ୱାଦ ପାଇଅଛି, ତାହା ନିବିଡ଼ ଭାବରେ ଏକାନ୍ତରେ ଭୋଗ କରିବାକୁ ଚାହିଁ ଅଛି । ନିବିଡ଼ ଅନୁଭୂତିରେ ପାଇ, ପ୍ରତିକୂଳ ପରିବେଶରେ ଯାହା ହଜାଇଛନ୍ତି, ସେଥିଲାଗି କବିଙ୍କ ହୃଦୟରୁ ଝରିଛି ଅଶ୍ରୁ । ଏହି ଅଶ୍ରୁର ଉଷ୍ଣତା ଚିଲିକାର ପ୍ରତି ପଂକ୍ତିକୁ କରୁଣ ରସାଳ କରିଅଛି । ଚିଲିକା ନିର୍ଜୀବ ପ୍ରକୃତି ମାତ୍ର ନୁହେଁ, କବିଙ୍କ ପ୍ରାଣର ଅନ୍ତରଙ୍ଗ ସହଚରୀ । ରାଧାନାଥଙ୍କ ଗୀତି କବିତାର ହୃଦୟ ଏହି ଖଣ୍ଡ କବିତାରେ ଯେପରି ଉଚ୍ଛଳ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ଖୋଜି ପାଇଛି, ଅନ୍ୟତ୍ର ତାହାର ତୁଳନା ମିଳେନାହିଁ ।

ମହାଯାତ୍ରା କବିଙ୍କ ଏକ ବହୁ କଳ୍ପିତ ପରୀକ୍ଷା । ନିଜର ସମସ୍ତ ପ୍ରବୀଣ ଚିନ୍ତା ଓ ଶ୍ରେଷ୍ଠ କଳାକୌଶଳ ଦେଖାଇବାକୁ କବି ଏଠାରେ ପ୍ରୟାସ କରିଥିଲେ ଭଳି ମନେ ହୁଏ । ମାତ୍ର କବିଙ୍କ ଭାବ ପ୍ରଧାନ ରୋମାଣ୍ଟିକ ମନ ଯେପରିକି ଏହି କାବ୍ୟର କଠିନ ଆବରଣ ଭିତରେ ଅଣନିଶ୍ୱାସୀ ହୋଇ ଯାଇଅଛି । ସେଥିଲାଗି ଏହି ପରୀକ୍ଷାକୁ ଏକ ନିର୍ଦ୍ଦିଷ୍ଟ ରୂପ ଦେବା କବିଙ୍କ ପକ୍ଷରେ ସମ୍ଭବ ହୋଇନାହିଁ ।

**ଚିଲିକା**

ପ୍ରକୃତି ସହିତ ରାଧାନାଥଙ୍କ ହୃଦୟର ଏକ ଦୃଢ଼ ଯୋଗସୂତ୍ର ଥିଲା—ଏହା ଚିଲିକା ପାଠ କଲେ ସହଜରେ ଅନୁଭୂତ ହୁଏ । ଏ ଅନୁଭବ ଅବଶ୍ୟ ଅଳ୍ପ ବହୁତ ତାଙ୍କର ସବୁ କାବ୍ୟରୁ ହୋଇଥାଏ । ଜୀବନ ଅପେକ୍ଷା ପ୍ରକୃତି ତାଙ୍କୁ ଅଧିକ ପ୍ରେରଣା ଦେଉଥିଲା । ନିଜର ଏହି ଅନୁଭବ ବର୍ଣ୍ଣନା କରି ଜଣେ ବନ୍ଧୁଙ୍କୁ ଲେଖିଥିଲେ—"ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ । ମୁଁ କେବଳ ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଧେନ ବ୍ୟାପୃତ ଥିଲି । ପାର୍ବତୀୟ ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି । ମୋର ଓଡ଼ିଆ କାବ୍ୟଗୁଡ଼ିକ ଉଚ୍ଛ୍ୱାସୟ ପ୍ରକୃତିର ପ୍ରତିକୃତି କହିଲେ ମଧ୍ୟ ଚଳେ ।"

ପ୍ରକୃତି ବା ଜୀବନର ଚିତ୍ରଣରେ ଦୁଇଟି ଧାରା କଳନା କରାଯାଇ ପାରେ । ଗୋଟିଏ କାଳ୍ପନିକ ଓ ଅନ୍ୟଟି ବାସ୍ତବ, ଗୋଟିଏ ବୁଦ୍ଧିଗତ ଓ ଅନ୍ୟଟି ଇନ୍ଦ୍ରିୟ ଗ୍ରାହ୍ୟ । ପ୍ରଥମ କ୍ଷେତ୍ରରେ କବି ନିଜର ବିଳାସ ଭବନରେ ବସି ଅଳଂକାର ଶାସ୍ତ୍ରର ସମର୍ଥନ କ୍ରମେ ସରୋବରରେ କୋକ ଦମ୍ପତିର ଶୋକ ବା ନଦୀର ଖରସ୍ରୋତରେ କମଳ ବନର ଶୋଭା କଳ୍ପନା କରିପାରନ୍ତି । ମାତ୍ର ଦ୍ୱିତୀୟ କ୍ଷେତ୍ରରେ କବି ନିଜ ଆଖିରେ ପ୍ରକୃତିର ଯେଉଁ ରୂପ ଦେଖନ୍ତି, ହୃଦୟରେ ପ୍ରକୃତିର ଯେଉଁ ଭାବ ଅନୁଭବ କରୁଥାନ୍ତି ତାହାହିଁ କାବ୍ୟରେ ପ୍ରକାଶ କରନ୍ତି । ରାଧାନାଥ ଏହି ଶ୍ରେଣୀର କବି । ସେ କେତେବେଳେ ହ୍ରଦ ବା ନଦୀର ମନୋହର କୂଳରେ, ମରୁଭୂମିର ରୁକ୍ଷ ବାଲୁକା ପ୍ରାନ୍ତରରେ ଅଥବା ବିଜନ ଅରଣ୍ୟରେ ବିଚରଣ କରି ନିଜର ଅନୁଭବ କବିତାରେ ପ୍ରକାଶ କରି ଯାଇଛନ୍ତି ।

ଆଧୁନିକ କବିତାରେ ଏହି ଧାରା ପାଶ୍ଚାତ୍ୟ ସାହିତ୍ୟରେ, ବିଶେଷତଃ ଇଂଲଣ୍ଡର ରୋମାଣ୍ଟିକ କବିଙ୍କଠାରେ ବିକଶିତ ହୋଇଥିଲା । ଏମାନଙ୍କ ଆଦର୍ଶ ବିଶ୍ଳେଷଣ କରିବାକୁ ଯାଇ ଜଣେ ଇଂରେଜ ସମାଲୋଚକ ଯଥାର୍ଥ କହିଛନ୍ତି—"ସମସ୍ତ ବସ୍ତୁକୁ ବୌଦ୍ଧିକ ପରମ୍ପରା ଦୃଷ୍ଟିରେ ନଦେଖି, ଶିଶୁ ଭଳି ସରଳ ହୃଦୟ ଘେନି ଦେଖିବାକୁ ଯେତେବେଳେ କବିମାନେ ଅଭ୍ୟସ୍ତ ହେଲେ, ସେତେବେଳେ ସେମାନେ ବହିର୍ଜଗତର ଆତ୍ମାକୁ ଚିହ୍ନିଲେ । ଯେଉଁ ସୌନ୍ଦର୍ଯ୍ୟରେ ଏହି ଆତ୍ମା ଗଠିତ ତାହା ଦେଖିବାକୁ ଏମାନେ ସମର୍ଥ ହେଲେ । ଏମାନେ

ଯଥାର୍ଥରେ ପ୍ରକୃତିକୁ ପୁଣି ପାଇଲେ, ଅନୁଭବ କଲେ ଓ ସମ୍ମାନ ଦେଲେ । ଦ୍ରୁତରୁ ଦ୍ରୁତତର ଆବେଗ ଯୋଗେ ଏଦ୍ୱାରା ଅସୀମ ସୌନ୍ଦର୍ଯ୍ୟ ଧୀରେ ଧୀରେ ଆବିଷ୍କାର କଲେ । ଏଦ୍ୱାରା ମାନବୀୟ ଆଦର୍ଶରେ ଉଦ୍‌ବୁଦ୍ଧ ହେଲେ । ପ୍ରକୃତିର ଶାଶ୍ୱତ ଜୀବନ ସ୍ରୋତରୁ ରସପାନ କରି ମନୁଷ୍ୟ ହୃଦୟରେ ନୂତନ ପ୍ରାଣ ସଞ୍ଚାର କଲେ । ପ୍ରକୃତି ଚିତ୍ରଣର ଏହି ଧାରା, ଓ୍ୱାର୍ଡସ୍‌ଓ୍ୱାର୍ଥ କୋଲେରିଜ୍, ସ୍କଟ୍, ବାଇରଣ୍, ଶେଲି ଓ କିଟ୍‌ସଙ୍କଠାରେ ଚରମ ଅଭିବ୍ୟକ୍ତି ଲଭିଲା ପର୍ଯ୍ୟନ୍ତ ଇଂରେଜୀ କବିତାରେ ଅଖଣ୍ଡ ସ୍ରୋତରେ ପ୍ରବାହିତ ହୋଇଥିଲା ।" ୩୨

ପ୍ରକୃତିର ସ୍ୱାଭାବିକ ବର୍ଣ୍ଣନା ଭାରତୀୟ କବିତାର ଏକ ପ୍ରାଚୀନ ପରମ୍ପରା । କବିତା ବା କଳା ସବୁଠାରେ ମନୁଷ୍ୟଙ୍କୁ ପ୍ରକୃତିର ଅଂଶ ବିଶେଷ ରୂପେ କଳ୍ପନା କରାଯାଉଥିଲା । ମନୁଷ୍ୟ ବା ଦେବତାଙ୍କ ଚିତ୍ର ଅଙ୍କନ କଲାବେଳେ ସେମାନଙ୍କ ମନର ଭାବ ଓ ଆଦର୍ଶକୁ ଫୁଟାଇବା ପାଇଁ ଅନୁରୂପ ପ୍ରକୃତିର ଚିତ୍ର ସୁନ୍ଦର ରୂପେ ପୃଷ୍ଠପଟରେ ସ୍ଥାନ ପାଉଥିଲା । ପ୍ରକୃତି ଚିତ୍ରଣର ଏହି ଆଭିମୁଖ୍ୟ ପ୍ରାଚୀନ ଭାରତରେ କିପରି ଫୁଟିଥିଲା, ତାହାର ସ୍ୱରୂପ ବିଶ୍ଳେଷଣ କରିବାକୁ ଯାଇ ଡଃ ସୁରେନ୍ଦ୍ରନାଥ ଦାଶ ଗୁପ୍ତ ସୁନ୍ଦର ଭାବେ କହିଛନ୍ତି—"ଫୁଲ ଯେପରି ଲତାର ଅଂଶ ପଲ୍ଲବ ଯେପରି ବୃକ୍ଷର ଅଂଶ, ମନୁଷ୍ୟଙ୍କୁ ସେହିପରି ପ୍ରକୃତିର ଅଂଶ ବିଶେଷ ରୂପେ କଳ୍ପନା କରାଯାଉଥିଲା । ପତ୍ର ସହିତ ବୃକ୍ଷର, ଫୁଲ ସହିତ ଲତାର ସମ୍ପର୍କ ପରି ପ୍ରକୃତି ସହିତ ମନୁଷ୍ୟର ସମ୍ପର୍କ ଭାରତୀୟ ଶିଳ୍ପୀଙ୍କ ଧାରଣାରେ ଥିଲା ସହଜ ଓ ମଧୁର ।" ୩୩ ବୈଦିକ ଋଷିଙ୍କ ଧ୍ୟାନ ଧାରଣାଠାରୁ ବ୍ୟାସ, ବାଲ୍ମୀକି ଓ କାଳିଦାସଙ୍କ ପର୍ଯ୍ୟନ୍ତ ପ୍ରକୃତି ଚିତ୍ରଣର ଏହି ସ୍ୱାଭାବିକ ଗତି ନାନା ଭାବରେ ପ୍ରକାଶ ପାଇ ଆସିଥିଲା । ମାତ୍ର କାଳକ୍ରମେ ଭାରତୀୟ ଜୀବନ ନାନା ଘାତ ପ୍ରତିଘାତ ଭିତରେ ଯେପରି ସଙ୍କୁଚିତ ହୋଇ ଯାଇଥିଲା, ସେଇପରି ପ୍ରକୃତି ଚିତ୍ର କୃତ୍ରିମ ଓ ଖଣ୍ଡିତ ହୋଇ ପଡ଼ିଥିଲା । ମାନବ ହୃଦୟର ଉଦାର ଆଦର୍ଶର ସହଚର ନହୋଇ ପ୍ରକୃତି ହେଲା ମାନବର ଦେହଗତ ରୂପାଭିବ୍ୟକ୍ତିର ସହଚର । ଉତ୍ତୁଙ୍ଗ ପର୍ବତମାଳା, ଉତ୍ତାଳ ସାଗର, ନଦୀର ପ୍ରବାହ କବିତାରେ ସ୍ଥାନ ପାଇଲା ନାହିଁ । ଚନ୍ଦ୍ର, ଚକୋର, ମୀନ, କମ୍ବୁ, ପଲ୍ଲବ ଓ ପୁଷ୍ପ ନାରୀ ରୂପ ବର୍ଣ୍ଣନାରେ ଉପମା ରୂପେ, ବସନ୍ତ, ଗ୍ରୀଷ୍ମ, ବର୍ଷା ନରନାରୀଙ୍କ ବିରହ ମିଳନର ଆଧାର ରୂପେ କାବ୍ୟରେ ବର୍ଣ୍ଣିତ ହେବାକୁ ଲାଗିଲା ।

ପ୍ରଥମେ ସାରଳା, ବଳରାମ ଆଦି କବିମାନେ ପ୍ରାକୃତିକ ସ୍ୱାଭାବିକତାର ଗତିରେ ଗ୍ରଥିତ ହୋଇ ଏହି ଘୋର ସଙ୍କୋଚନର ଧାରା କେତେକ ପରିମାଣରେ ଲଙ୍ଘନ କରିଥିଲେ । ମାତ୍ର ପରବର୍ତ୍ତୀ କାବ୍ୟଯୁଗରେ ପ୍ରକୃତି ଚିତ୍ରଣର ସମସ୍ତ କୃତ୍ରିମ ଗତି ପୁଣି ଆମ କାବ୍ୟରେ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଥିଲା । ରାଧାନାଥ ପ୍ରଥମେ ପ୍ରକୃତି ଚିତ୍ରଣରେ ସ୍ୱାଭାବିକତା ଫୁଟାଇଲେ । ପ୍ରକୃତି ସହିତ ମନୁଷ୍ୟର ସମ୍ପର୍କ ବୃହତ୍ତର ଓ ମହତ୍ତର ଦିଗରୁ ଧାରଣା କଲେ ।

ତାଙ୍କଠାରେ ଏକ ଦାଗରେ ପ୍ରାଚୀନ ଭାରତୀୟ ଆଦର୍ଶ ଓ ଆଧୁନିକ ଇଂରେଜ କବିଙ୍କ ଦୃଷ୍ଟି-କୋଣ ପ୍ରସାରିତ ଥିଲା । ସେ ନୂତନ ଭାବରେ ଆମର ମାନସିକ ଭାବାବେଗ ସହିତ ପ୍ରକୃତିର ପ୍ରାଣପୂର୍ଣ୍ଣ ସମ୍ବନ୍ଧ ସ୍ଥାପନ କଲେ ।

ଚିଲିକାରେ ରାଧାନାଥଙ୍କ ପ୍ରକୃତି ଚିତ୍ରଣର ସ୍ଥିତି ଓ ପ୍ରକୃତି ପ୍ରତି ଦୃଷ୍ଟିକୋଣ ସବୁଠାରୁ ପୁଷ୍କଳ ଭାବରେ ପ୍ରକାଶିତ ହୋଇଅଛି । ବାସ୍ତବତା ସମସ୍ତ ଆଧୁନିକ କବିଙ୍କର ଲକ୍ଷ୍ୟ ହୋଇଥିଲେ ବି, ସେମାନେ ବ୍ୟକ୍ତିକ ଭାବଦୃଷ୍ଟିରୁ ପ୍ରକୃତିର ରୂପ କଳ୍ପନା କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ପ୍ରକୃତିରେ ସ୍ୱର୍ଗୀୟ ଶକ୍ତି ଦେଖୁଥିଲେ । ସେ ପ୍ରକୃତିର ଅପାର୍ଥିବ ଆତ୍ମା ସହିତ ଭାବବିନିମୟ କରିବାକୁ ଚାହୁଁଥିଲେ । ଯେଉଁ ଅନନ୍ତଶକ୍ତିରେ ଜୀବନର ସମସ୍ତ ଦିଗ ଏକୀଭୂତ ଶେଲିଙ୍କଠାରେ ପ୍ରକୃତି ଥିଲା ସେଇ ଶକ୍ତିର ରହସ୍ୟମୟ ପ୍ରକାଶ । ବାଇରନ୍‌ଙ୍କଠାରେ ଉନ୍ମତ୍ତ ସ୍ୱାଧୀନତାର ପ୍ରତୀକ, ଆର୍ନଲଡ଼ଙ୍କଠାରେ ଜଞ୍ଜାଳପୂର୍ଣ୍ଣ ପ୍ରାଣର ଶାନ୍ତି ବିଧାୟକ ରୂପେ ପ୍ରକୃତି କଳ୍ପିତ ହୋଇଥିଲା । ରାଧାନାଥ ପ୍ରକୃତିର ବହିଃସୌନ୍ଦର୍ଯ୍ୟ ଚିତ୍ରଣ କଲା ବେଳେ ନାନା ଭାବରେ କାଳିଦାସ ଓ ଭବଭୂତିଙ୍କ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି । ଚିଲିକା କୂଳର ଜନପଦ, ଦଣ୍ଡକାରଣ୍ୟର ରୁଦ୍ର ସୁନ୍ଦରଶ୍ରୀ ସେ ଏଇ ପ୍ରାଚୀନ କବିଙ୍କ ଆଦର୍ଶରେ ଅଙ୍କନ କରିଛନ୍ତି । ମାତ୍ର ଯେଉଁଠାରେ ସେ ପ୍ରକୃତି ସହିତ ଭାବ ବିନିମୟ କରିଛନ୍ତି, ତାହାର ଶାନ୍ତିମୟ କୋଡ଼ରେ ଜୀବନ ଯାପନ କରିବାକୁ ଲୋଡ଼ିଛନ୍ତି, ସେଠାରେ ପାଶ୍ଚାତ୍ୟ କବିଙ୍କ ଧାରା ଅବଲମ୍ବନ କରିଛନ୍ତି ।

ଚିଲିକାରେ କବି ଏକ ଉଦାର ବ୍ୟକ୍ତିତ୍ୱ ଆରୋପ କରିଛନ୍ତି । ଏହା ଚିଲିକାର ଜଳରାଶି, ଦ୍ୱୀପ, ବନ, ଶୈଳ ଦନ୍ତୁରିତ ଉପକୂଳ, କୂଳର ଜନପଦ ସଙ୍ଗ ଗଠିତ ହୋଇଅଛି । ଏହି ବ୍ୟକ୍ତିତ୍ୱର ପୃଷ୍ଠ ପଟରେ କବିଙ୍କ ଦେଶପ୍ରେମ, ଅତୀତ ପ୍ରୀତି, ବର୍ତ୍ତମାନର ଦୁର୍ଦ୍ଦଶାରେ ବେଦନା ଓ ଭବିଷ୍ୟତ ସୁଖର ଆଶା ଅଙ୍କିତ ହୋଇଛି । ଚିଲିକାର କଳ୍ପିତ ମାନସ ମୂର୍ତ୍ତିକୁ କବି ସର୍ବଭାରତୀୟ ପ୍ରକୃତି ପୀଠରେ ପ୍ରତିଷ୍ଠା ଦେଇଛନ୍ତି । ହିମାଳୟ ତାଙ୍କ ଗୁରୁ, ସମୁଦ୍ର ବା ରାଜପୁତନାର ମରୁଭୂମି ତାଙ୍କର ଶତ୍ରୁ । ମାତ୍ର ଚିଲିକା ତାଙ୍କର ସଖୀ । ଏଥି ସହିତ କବିଙ୍କ ଆତ୍ମିକ ସମ୍ପର୍କର ରୂପ ବର୍ଣ୍ଣନା କରିବାକୁ ଯାଇ ଡଃ ମାନସିଂହ ଯଥାର୍ଥରେ କହିଛନ୍ତି—"ଚିଲିକାରେ ରାଧାନାଥଙ୍କ ଅନୁଭୂତି ଭକ୍ତର ଭଗବାନ ପ୍ରତି ଅନୁଭୂତି ପରି ପବିତ୍ର ଓ ଗଭୀର । ନାଗର ପ୍ରଣୟୀ ପ୍ରତି ଅନୁଭୂତି ପରି ନିବିଡ଼ ଓ ନିକଟ । ...ଚିଲିକାରେ କବିଙ୍କ ଆତ୍ମା ପ୍ରକୃତିର ଆତ୍ମାରେ ଲୟ ଭଜି ଅଛି । ଚିଲିକା ପ୍ରତି ତାଙ୍କର ଯେଉଁ ଆକର୍ଷଣ ତାହା କବି ଅନ୍ୟ କୌଣସି ପାର୍ଥିବ ସମ୍ବନ୍ଧରେ ପାଇ ନାହାନ୍ତି । ଏଠାରେ ପ୍ରକୃତି ତାଙ୍କର ପ୍ରେୟସୀ, ପ୍ରେମିକାର ପଦ ତଳେ ପ୍ରେମିକ ଯେପରି ଅର୍ଘ୍ୟ ଦାନ କରେ, କବି ସେଇପରି ପ୍ରକୃତି ପଦତଳେ ଅର୍ଘ୍ୟଦାନ କରିଅଛନ୍ତି ।"[୩୪]

ଚିଲିକାରେ ରାଧାନାଥଙ୍କ ସମଗ୍ର କାବ୍ୟଶୈଳୀର ପ୍ରତିବିମ୍ବ ପ୍ରତିଫଳିତ ହୋଇଛି । ଭୌଗଳିକ ପ୍ରକୃତିର ପ୍ରତ୍ୟକ୍ଷ ଦର୍ଶୀ ବର୍ଣ୍ଣନା, ପୌରାଣିକ ଐତିହାସିକ କାହାଣୀ ଓ କିଂବଦନ୍ତୀର ଅବତାରଣା, ସ୍ୱଦେଶର ଗୌରବମୟ ଅତୀତର ଚିତ୍ର, ନୀତି ବାକ୍ୟ ଓ ଆଦର୍ଶ କଥନ ପର୍ଯ୍ୟନ୍ତ ସବୁଥିରେ ଏହା କଳନା କରାଯାଇ ପାରେ ।

ମିତଆଭ୍ଲିନନ୍ ଓ ଅତୀତ ଚିତ୍ର ରାଧାନାଥଙ୍କ କବିତାର ଏକ ପ୍ରଧାନ ଗୁଣ । ଚିଲିକାରେ ଏହାର ସୁନ୍ଦର ନିଦର୍ଶନ ଦେଖିବାକୁ ମିଳେ । ଉତ୍କଳୀୟ ନୌବହରର ସମର ଯାତ୍ରା, ଗଜଦନ୍ତ ତଖ୍ତରେ ନାଗରିକା ଏ ନାଗରିକମାନଙ୍କର ନୌକା ବିହାର ବର୍ଣ୍ଣନା ଏହାର ଦୃଷ୍ଟାନ୍ତ । ଦୃଶ୍ୟାବଳୀର ନିର୍ବାଚନ ବୈଚିତ୍ର୍ୟପୂର୍ଣ୍ଣ । ନାଗରିକ ଚିତ୍ରରେ ବର୍ଣ୍ଣ ବିଭବ ଓ ଆଡ଼ମ୍ବର ଆଭିଜାତ୍ୟ ସହିତ ମୀନଜୀବୀଙ୍କ ନାବର ସରଳ ଗ୍ରାମ୍ୟ ଚିତ୍ର, କାଂଚି ବାହୁଡ଼ା ଯାତ୍ରାର ଲଳିତ ମଧୁର ଦୃଶ୍ୟ ସହିତ ରକ୍ତବାହୁ ଦର୍ପ ଚୂର୍ଣ୍ଣକାରୀ ଝଂକାର ରୁଦ୍ର କରାଳ ମୂର୍ତ୍ତିକୁ ତୁଳନା କଲେ ଏହା ସହଜରେ ଧାରଣା କରିହୁଏ ।

ଚିଲିକାରେ କବିଙ୍କ ପ୍ରତ୍ୟେକ ଚିତ୍ର ସଚଳ ଓ ଜୀବନ୍ତ । ଏହି ଗତି ଶୃଂଖଳାରେ ସୌନ୍ଦର୍ଯ୍ୟ ବିକଶିତ ହୋଇଅଛି । ହ୍ରଦ ବକ୍ଷରେ ସମୀରଣ ମୁଖରେ ଯେତେବେଳେ ସଙ୍ଗୀତର ଲହରି ଖେଳିଯାଏ, ଚଳମାନ ମେଘର ଭ୍ରମ ଜନ୍ମାଇ ଯେତେବେଳେ ପକ୍ଷୀ ଉଡ଼ିଯାନ୍ତି, ଶିଶୁମାର ତରଙ୍ଗ ସହିତ ତାଳ ରକ୍ଷି ଯେତେବେଳେ ବୁଡ଼ୁଥାଏ ଓ ଉଠୁଥାଏ, କିମ୍ବା ଚଳମାନ ନୌକାରୋହୀ ଦୃଷ୍ଟିରେ କୂଳ ଓ ଦ୍ୱୀପର ଅସ୍ଥିର ପାହାଡ଼ ମାଳା ଯେତେବେଳେ ଯୋଡ଼ି ହୋଇ ଏକ ହୋଇ ଯାଆନ୍ତି ପୁଣି ଗୋଟା ଗୋଟା ହୋଇ ଏକରୁ ଅନେକ ହୋଇ ଯାଉଥାନ୍ତି— ସେହି ସମୟରେ ଚଳ ଚଂଚଳ ଚିତ୍ରକୁ କବି ଭାଷାର ଇନ୍ଦ୍ରଜାଲ ଭିତରେ ବାନ୍ଧି ରଖିଛନ୍ତି । ଯେପରି ପ୍ରକୃତିରେ ସେଇପରି ନାରୀ ରୂପରେ ମଧ୍ୟ ଏହି ଗତି ଶୃଂଖଳା ଦେଖିବାକୁ ମିଳେ । କାଂଚି ଜେମାଙ୍କ କୁଞ୍ଚିତ କେଶ ପାଶର ଚକ୍ରରେ କମଳ ପାଖୁଡ଼ା ପଡ଼ିବା ଓ ଉଠିବାର ଚିତ୍ର—ଏହାର ଦୃଷ୍ଟାନ୍ତ ।

ବର୍ଣ୍ଣନା ଓ ଭାବ ସଙ୍ଗତି ଦୃଷ୍ଟିରୁ କବି ଏଥିରେ ଯେଉଁ ସଂଯମ ରକ୍ଷା କରିଛନ୍ତି ଅନ୍ୟତ୍ର ତାହାର ଦୃଷ୍ଟାନ୍ତ ମିଳେ ନାହିଁ । ଅନ୍ୟ କାବ୍ୟରେ କବି ମନୁଷ୍ୟର ଚିତ୍ର ପ୍ରଦାନ କରିବାକୁ ଯାଇ ଉତ୍କଳୀୟ ଭୂଗୋଳର ବିସ୍ତୀର୍ଣ୍ଣ ସୀମା ଭିତରେ ବୁଲାଇ ପାଠକର ଧୈର୍ଯ୍ୟକୁ କଠୋର ଭାବରେ ପରୀକ୍ଷା କରିଛନ୍ତି । ଉଷା, ପାର୍ବତୀ, ମହାଯାତ୍ରାର ଦୀର୍ଘ ଭୌଗୋଳିକ ବର୍ଣ୍ଣନା, ବର୍ଣ୍ଣନା ଦୃଷ୍ଟିରୁ ଯେତେ ସୁନ୍ଦର ହୋଇଥାଉ ନା କାହିଁକି କାବ୍ୟର ସମଗ୍ରତା ବଡ଼ ଅସଙ୍ଗତ ହୋଇଅଛି । ଚିଲିକା ଖଣ୍ଡକାବ୍ୟରେ ପ୍ରକୃତି ଚିତ୍ର, ଇତିହାସର ଘଟଣା ଓ କିଂବଦନ୍ତୀର ଅବତାରଣାରେ କୌଣସି ଅସଙ୍ଗତି ପରିଲକ୍ଷିତ ହୁଏନାହିଁ । କାରଣ

କି ପ୍ରକୃତି କି ମାନବ ଚରିତ୍ର, ଚିଲିକା ସହିତ ତାହା ସମ୍ବନ୍ଧ ସାମଞ୍ଜସ୍ୟ ରକ୍ଷା କରିଅଛି । ଏଠାରେ କବିଙ୍କ ଏହି ଉକ୍ତି ପ୍ରଣିଧାନ ଯୋଗ୍ୟ । "ବର୍ଣ୍ଣନା ଯେତେ ସୁନ୍ଦର ହେଉ ତାହା ବହିରଙ୍ଗ ମାତ୍ର । ମୂଳ ବିଷୟକୁ ବର୍ଣ୍ଣନା ଦ୍ୱାରା ଘୋଡ଼ାଇ ପକାଇବାର ଉଚିତ ନୁହେ ଏବଂ କବି ନିଜ ବର୍ଣ୍ଣନା ପାଟବ ଦେଖାଉଅଛନ୍ତି ପାଠକ ମନରେ ଏ ଭାବ ଉଦିତ ହେବାର ନୁହେଁ ।"[୩୫] ଏହି ଆଦର୍ଶ କବି ଚିଲିକାରେ ଏକାନ୍ତ ଭାବେ ପାଳନ କରିଅଛନ୍ତି । ଏହି ଖଣ୍ଡ କାବ୍ୟରେ କବିଙ୍କ ବର୍ଣ୍ଣନା ପାଟବ ଆମେ ଦେଖୁଁ । ମାତ୍ର ଏହି ବର୍ଣ୍ଣନା ଏଠାରେ ଏପରି ବିଷୟାନୁସାରୀ ହୋଇଅଛି ଯେ, କବି ବର୍ଣ୍ଣନା ପାଟବ ଦେଖାଉଅଛନ୍ତି ଅଥବା ଏହି ଉଦ୍ଦେଶ୍ୟରେ କବିତା ରଚନା କରିଛନ୍ତି ବୋଲି ଧାରଣା ଆମର କ୍ୱଚିତ୍ ହୋଇଥାଏ ।

ଗୀତି କବିଙ୍କ ପକ୍ଷରେ ନିଜକୁ ପ୍ରକାଶ କରିବାର ଯେପରି ସୁବିଧା ଥାଏ, ସାଧାରଣତଃ ବର୍ଣ୍ଣନା ପ୍ରଧାନ କବିଙ୍କୁ ସେ ସୁବିଧା ସହଜରେ ମିଳେନାହିଁ । ମାତ୍ର ଚିଲିକାରେ ବହିର୍ଜଗତରୁ କବି ନିଜ ଅନ୍ତର୍ଜଗତ ଦିଗକୁ ଆମର ଦୃଷ୍ଟି ଫେରେଇ ନେଇଛନ୍ତି । ନଦୀ ପ୍ରପାତର ଲଳିତ ଭୀଷଣ ଦୃଶ୍ୟ ଦେଖାଉ ଦେଖାଉ ନିଜ ହୃଦୟର ନିରାଶା ଓ ଆଶାର ମଳିନ ଉଜ୍ଜ୍ୱଳ ଚିତ୍ର ଦେଖାଇଛନ୍ତି । ଏହି ଚିତ୍ର ଦେଖାଇବା ଲାଗି ଯେପରି କି ପ୍ରକୃତି ପୃଷ୍ଠପଟ ଯୋଗାଇଅଛି । ପ୍ରକୃତି ଶାଶ୍ୱତ ସୌନ୍ଦର୍ଯ୍ୟ ନିକଟରେ କାଳେ କାଳେ ମନୁଷ୍ୟର କ୍ଷଣିକ ଜୀବନର ଚିତ୍ର ପ୍ରଦାନ କରି, ଜୀବନ ଦେନି ଆମର ଆଦର୍ଶକୁ କବି ନିଜର ଅନୁଭବର ନିକଟବର୍ତ୍ତୀ କରିବାକୁ ପ୍ରୟାସ କରିଛନ୍ତି । କବି ଆଧୁନିକ ଜୀବନର ଘାତ ପ୍ରତିଘାତ ପ୍ରାଣରେ ଅନୁଭବ କରିଥିଲେ । ଶ୍ରମର ସ୍ୱାଦ ଓ ପ୍ରକୃତିର ସ୍ପର୍ଶ ହରାଇ ଜୀବନ କିପରି ଭଗ୍ନ ଓ ନିର୍ଜ୍ଜୀବ ହୋଇ ପଡୁଥିଲା, ତାହା ଭାବି ସେ ବ୍ୟଥିତ ହେଉଥିଲେ । ଆଧୁନିକ ଜୀବନର ଏହି ଭଗ୍ନ ଦଶା ବର୍ଣ୍ଣନା କରିବାକୁ ଯାଇ ସେ ଏକ ସ୍ଥାନରେ ଲେଖିଥିଲେ—"ଭଗ୍ନମନସ୍କତା ଜୀବନର ଗୋଟିଏ ମହତ୍ତ୍ ବୋଝ । ପୂର୍ବ କାଳରେ ଏ ବୋଝ ଅନେକ ଲୋକ ବହୁ ନଥିଲେ । ବର୍ତ୍ତମାନ ଅନେକ ଲୋକଙ୍କୁ ବହିବାକୁ ହୁଏ । ଯେମାନେ ଶିକ୍ଷିତ ଅଟନ୍ତି, ଯେମାନେ ଶାରୀରିକ ଶ୍ରମଠାରୁ ମାନସିକ ଶ୍ରମରେ ଅଧିକ ରତ, ସେମାନେ ବହୁତରେ ହେଉ ବା ଅଳ୍ପରେ ହେଉ ଏ ବୋଝ ବହନ୍ତି । ସେମାନଙ୍କ ମନ ପ୍ରାୟ ସବୁବେଳେ ଏକ ପ୍ରକାର ଅନ୍ଧକାରରେ ଆଛନ୍ନ ଥାଏ । ଥରେ ଥରେ ଏପରି ବିକାର ଉପସ୍ଥିତ ହୁଏ ଯେ, କିଛି ଭଲ ଲାଗେ ନାହିଁ, ସଂସାର ଅସାର, ଜୀବନ ବିଡ଼ମ୍ବନା ବୋଧହୁଏ, ନାନା ପ୍ରକାର ବିଭୀଷିକା ହୃଦୟରେ ନୃତ୍ୟ କରୁଥାନ୍ତି ।"[୩୬] ଚିଲିକାରେ ନିଜ ଆତ୍ମ ପରିଚୟ ଛଳରେ କବି ଯେପରି ଘୋର ବିଷାଦ ଓ ବୈରାଗ୍ୟ ଭାବ ଅଙ୍କନ କରିଛନ୍ତି, ସେଥିରେ ଆଧୁନିକ ବିକାରଗ୍ରସ୍ତ ଜୀବନ ଧାରା ଅଖଣ୍ଡ ସ୍ରୋତରେ ପ୍ରବାହିତ ହୋଇଅଛି । କବି ନେତିବାଦୀ ନୁହନ୍ତି । ଏହି ବିକାରଗ୍ରସ୍ତ ଅବସ୍ଥାରୁ ମୁକ୍ତି ଲାଗି ପ୍ରକୃତିର ଶାନ୍ତ, ସୁନ୍ଦର ଓ ଶାଶ୍ୱତ

ଅନ୍ଧାରେ ଜୀବନର ଆଦର୍ଶ ଖୋଜି ପାଇଛନ୍ତି । ନୈରାଶ୍ୟର ଅନ୍ଧାର ଭିତରେ ଆଶାର ଆଲୋକ ରୂପେହିଁ ଚନ୍ଦ୍ରିକାର ସାର୍ଥକତା । ସେଇଥି ଲାଗି କବି ଗାଇଛନ୍ତି—

"ସେ ଛାୟା ଅନ୍ଧାରେ ଦେଖିଲି ସ୍ୱପ୍ନେ
ନୈରାଶ୍ୟ-ପ୍ରେତର ବିକଟ ନର୍ତ୍ତନ,
ଗୁଞ୍ଜୁଛିବ ତୋର ସେହି ବିଶ୍ୱପ୍ରିୟା
ଉଡ଼ି ଦେଲି ମନୁ ନାଫ୍ରକ୍ଷେ, ଚନ୍ଦ୍ରିକା ।" ୩୭

## ମହାଯାତ୍ରା

ମହାଯାତ୍ରାକୁ ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ ସ୍ଥାନ ଦେବାକୁ ହୁଏତ ସମସ୍ତେ ଏକମତ ହୋଇ ନପାରନ୍ତି । ମାତ୍ର କାବ୍ୟ ଦୃଷ୍ଟିରୁ ଏହା ଅନନ୍ୟ ସାଧାରଣ । ରଚନା କ୍ରମ, ଭାବବସ୍ତୁ ଉଭୟ ଦିଗରୁ ଓଡ଼ିଆ ସାହିତ୍ୟରେ ଏହା ଏକ ସ୍ୱତନ୍ତ୍ର ମହିମାରେ ପ୍ରତିଷ୍ଠିତ । ମହାଯାତ୍ରା ଏକ ଜ୍ଞାନ-କଳ୍ପିତ ମହାକାବ୍ୟ । ଆଧୁନିକ ମନ ଓ ମନନର ସ୍ୱାକ୍ଷର, ଇତିହାସ ଚେତନା ଘେନି ଏହା ଯେଉଁ ଗୌରବର ଅଧିକାରୀ ଆମ ସାହିତ୍ୟରେ ଏହାର ତୁଳନା ନାହିଁ । ଏହି କାବ୍ୟର ମହତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ ମଧୁସୂଦନ କହିଛନ୍ତି— "କବି ରାଧାନାଥ ଶୁଭ କ୍ଷଣରେ ଏହି ମହା ବିଷୟ ନିର୍ବାଚନ କରି ନିଜ କବି ଜୀବନକୁ ଧନ୍ୟ ଓ ସାର୍ଥକ କରିଅଛନ୍ତି ଏବଂ ଆଧୁନିକ ଉତ୍କଳ ସାହିତ୍ୟର ଆଶା ଓ ଗୌରବକୁ ଶତଗୁଣିତ କରି ଦେଇଛନ୍ତି । ମହାଯାତ୍ରା ପରି ମହାଗାନ ଯେଉଁ ସାହିତ୍ୟ ରୂପ ସାରସ୍ୱତାଶ୍ରମରେ ସଙ୍ଗୀତ ହୁଏ, ତାହା କବିଗୁରୁ ବ୍ୟାସଙ୍କ ବଦରିକାଶ୍ରମ ପରି ଅମର ଏବଂ ବନ୍ଦନୀୟ, ଏଥିରେ ସନ୍ଦେହ ନାହିଁ ।" ୩୮

ଏପର୍ଯ୍ୟନ୍ତ ରାଧାନାଥଙ୍କ ରଚନାବଳୀରେ ଯେଉଁ ପରିକ୍ରମା ହୋଇଅଛି, ସେଥିରେ ସର୍ବତ୍ର ତାହାଙ୍କୁ ରୋମାଣ୍ଟିକ ବା ସ୍ୱୈରବାଦୀ କବି ରୂପେ ଦେଖିବାକୁ ପାଇଅଛୁଁ । ସର୍ବତ୍ର କାହାଣୀରେ ସ୍ୱଚ୍ଛନ୍ଦ ଗତିଧାରା, ବର୍ଣ୍ଣନାରେ ପ୍ରଗୀତିର ସ୍ନିଗ୍ଧତା ଲକ୍ଷ୍ୟ କରିଅଛୁଁ । ମାତ୍ର ମହାଯାତ୍ରା ଏକ ବ୍ୟତିରେକ । ଏହାର ସ୍ୱରରେ ନିର୍ଝରର କଳ ସଙ୍ଗୀତ ନାହିଁ, ଅଛି ପ୍ରପାତର ମନ୍ଦ୍ର ନିର୍ଘୋଷ । ଏହାର ଭାଷା, ଛନ୍ଦ, ଭାବ, ବିଷୟ ଚୟନ ସର୍ବତ୍ର ଏକ ଗାମ୍ଭୀର୍ଯ୍ୟ ମନନଶୀଳତା, ବୋଧିଦୀପ୍ତତା ଅପସରୂ ଆଧିପତ୍ୟ ବିସ୍ତାର କରିଅଛି । ସ୍ୱୈର ଅସ୍ଥିରତା ନୁହେଁ, ସୁଶୃଙ୍ଖଳ ଶାଶ୍ୱତ ବାଣୀ ମୂର୍ତ୍ତି ଏଥିରେ ବିଧୃତ ହୋଇଅଛି । ତେବେ ଏହା ଯେ, ଏକାନ୍ତ ଲାଳିତ୍ୟବର୍ଜିତ, ତାହା ନୁହେଁ । ଝୁରୁଛି ମୁଁ ନିରାଶାର ଅତଳ କୁହରେ' ଭଳି ପଂକ୍ତିରେ କ୍ୱଚିତ ପ୍ରକାଣ୍ଡ ଗୀତି ଝଂକାର କୃଷ୍ଣ ଘନମେଘ କୋଳରେ କ୍ୱଚିତ୍ ଦୀପ୍ତ ବିଦ୍ୟୁତ୍‌ଶିଖା ଭଳି ଆମର ଦୃଷ୍ଟି ଝଲସାଇ ଦିଏ ।

ରାଧାନାଥ ଯଦି ମହାଯାତ୍ରା ଲେଖି ନଥାନ୍ତେ ତେବେ ତାଙ୍କ ଅନ୍ତର୍ନିହିତ ପ୍ରତିଭାର ପରିଚୟ ଆମକୁ ମିଳି ନଥାନ୍ତା । କେବଳ ପାର୍ବତୀ ଓ କେତେକ କ୍ଷୁଦ୍ର କବିତାକୁ ଛାଡ଼ିଦେଲେ, ତାଙ୍କର କଳ୍ପନା ଓ ଭାବନା ଲଘୁଭାବରେ ଗତି କରିଅଛି । ଅଭ୍ୟାସ-ବଶରେ ଗଢ଼ି ଉଠିଥିବା ରଚନା ପ୍ରବୃତ୍ତିରେ ଚାଳିତ ହୋଇ କେତେକ ପରିମାଣରେ ମାନସିକ ଆନନ୍ଦ ଓ କେତେକ ପରିମାଣରେ ଜାତୀୟ ଗୌରବ ଗାନ ଲାଗି ଆତ୍ମ ପ୍ରସାଦ ଲାଭ କରିବା ଉଦ୍ଦେଶ୍ୟରେ କବି ଦୁଏତ ଚନ୍ଦ୍ରଭାଗାଠାରୁ ଚିଲିକା ପର୍ଯ୍ୟନ୍ତ ରଚନା କରିଅଛନ୍ତି । ନିବେଦନ ଓ ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି ଭଳି କ୍ଷୁଦ୍ର କବିତାକୁ ବାଦ ଦେଲେ, ରାଧାନାଥଙ୍କ ଜାଗ୍ରତ ବିବେକ ମାତ୍ର ଦୁଇଟି ସ୍ଥାନରେ ଲେଖନୀ ସହିତ ସମାନ୍ତରାଳ ଭାବରେ ଗତି କରିଅଛି । ତାହା ହେଉଛି, ପାର୍ବତୀ ଓ ଦରବାରରେ । (କିନ୍ତୁ ହୃଦୟ ସହିତ ମନର, ଅନୁଭୂତି ସହିତ ମନନର ସ୍ୱାଦ୍ୟ ସମନ୍ୱୟ ମହାଯାତ୍ରାରେ ଯେପରି ଘଟିଅଛି, ତାହାର ତୁଳନା ଅନ୍ୟତ୍ର ମିଳିବା ଦୁର୍ଲଭ ।)

## ନବରୁଚି

ରାଧାନାଥଙ୍କ ରଚନାରେ ଯେଉଁ ଚିରନ୍ତନ ସାରସତ୍ତ୍ୱ ଅଛି, ତାହାର ଦୃଷ୍ଟାନ୍ତ ତାଙ୍କ ପୂର୍ବର ଓଡ଼ିଆ କବିତାରୁ ହୁଏତ ଅଭାବ ହେବ ନାହିଁ । ମାତ୍ର ରାଧାନାଥଙ୍କ କବିତାରେ ଯେଉଁ ନବ ରୁଚି ଓ ନବ ଭାବର ସମାବେଶ ଘଟିଅଛି, ତାହାର ତୁଳନା ଖୋଜି ପାଇବା କଠିନ । ରାଧାନାଥ ଏକ ଯୁଗର ଶ୍ରେଷ୍ଠ ପ୍ରତିନିଧି ମାତ୍ର ନୁହନ୍ତି, ସେ ଯୁଗ ସ୍ରଷ୍ଟା । ଦୃଢ଼ ଭିତ୍ତିରେ ପ୍ରତିଷ୍ଠିତ ହୋଇ ନଥିବା ଏକ ନୂତନ ଯୁଗକୁ ସେ ସ୍ୱୀକୃତି ଦେଇଛନ୍ତି ଓ ତାକୁ ପୂର୍ଣ୍ଣତା ଦେବାକୁ ଚେଷ୍ଟା କରିଅଛନ୍ତି । ଏଥିଲାଗି ସେ ଯେତିକି ସାର୍ବଜନୀନ ଶାଶ୍ୱତ, ସେହି ପରିମାଣରେ ଆତ୍ମ ସୃଷ୍ଟ ଏକ ନିର୍ଦ୍ଦିଷ୍ଟ ରୁଚିର ଅନୁବର୍ତ୍ତୀ ।

ସାହିତ୍ୟ ଓ ଲଳିତ କଳାର ମର୍ମ ଗ୍ରହଣ ଓ ପ୍ରାଣ ପ୍ରତିଷ୍ଠା ପାଇଁ ଯେଉଁ ଗୁଣ ଲୋଡ଼ା, ତାହା ରୁଚି । ସାଧାରଣ ଲେଖକ ପାଠକ ବା ସମାଜର ରୁଚିକୁ ଗ୍ରହି ଲେଖନ୍ତି । କିନ୍ତୁ ଉଚ୍ଚସ୍ତରର ଲେଖକ ବା କବି ଖାଲି ଚିରାଚରିତ ରୁଚି ଅନୁସରଣ କରନ୍ତି ନାହିଁ । ସେ ଯାହା ଲେଖନ୍ତି, ତାହା ପଢ଼ି ପାଠକଙ୍କ ରୁଚି ତିଆରି ହୁଏ । ରାଧାନାଥ ପ୍ରଥମରୁ ନବ ରୁଚି ପ୍ରବର୍ତ୍ତନ ପାଇଁ ଉଦ୍ୟମ କରିଅଛନ୍ତି । କିନ୍ତୁ ପ୍ରଚଳିତ ରୁଚି ଏକାନ୍ତ ଭାବେ ବର୍ଜନ ନକରି, ତାହାର ସାରସତ୍ତ୍ୱକୁ ପରିବର୍ତ୍ତିତ ରୂପରେ ଗ୍ରହଣ କରି ସମସ୍ତ କାବ୍ୟ କବିତା ରଚନା କରିଅଛନ୍ତି । କାହାଣୀ ପ୍ରଧାନ କାବ୍ୟ ଓଡ଼ିଆ ପାଠକଙ୍କ ଆଦର କାଳେ କାଳେ ଲାଭ କରିଅଛି । ପୁଣି କବିତାର ଆତ୍ମା ସଙ୍ଗୀତରେ ଓ କଥାର ରୂପ ସରସ କଳ୍ପନାର ବର୍ଣ୍ଣବିନ୍ୟାସରେ ପ୍ରକାଶ ପାଇ ଆସିଅଛି । ରାଧାନାଥ ଏ ପରମ୍ପରାରୁ ବିଚ୍ୟୁତ ହୋଇ ନାହାନ୍ତି । କିନ୍ତୁ ମହାଯାତ୍ରାର ବିଶେଷତ୍ୱ ହେଉଛି, ସେଥିରେ ସଙ୍ଗୀତର ତରଳ ଆତ୍ମା ଭାବର ଛନ୍ଦରେ ଗତି କରିଅଛି ।

କଥାର ସରସ କଳ୍ପନା ଇତିହାସର ସତ୍ୟନିଷ୍ଠ ତଥ୍ୟାନୁଶୀଳନରେ ପର୍ଯ୍ୟବସିତ ହୋଇଅଛି । ସମଗ୍ର ଓଡ଼ିଆ କାବ୍ୟ ଧାରାରେ ତଥା କବିଙ୍କ ଅନ୍ୟ ରଚନାବଳୀ ମଧ୍ୟରେ ଏହା ମହାଯାତ୍ରାର ବିଶେଷତ୍ୱ । ସାଧାରଣ କବିଙ୍କ ପ୍ରବର୍ତ୍ତିତ ଏହି ନବୀନତା ସହଜରେ ସର୍ବଜନ ଗ୍ରାହ୍ୟ ହୋଇ ନଥାନ୍ତା । ଏହାର ଅନୁକରଣ ଓ ଅନୁବର୍ତ୍ତନ ଲାଗି ସମକାଳୀନ ଓ ପରବର୍ତ୍ତୀ ଯୁଗରେ ଯେପରି ଆକୁଳତା ପ୍ରକାଶ ପାଇଅଛି, ତାହା ଏହି ଉକ୍ତିର ସତ୍ୟତା ପ୍ରମାଣିତ କରେ ।

## କ୍ଲାସିକ୍ କବି

ରାଧାନାଥ କେବଳ ନବୀନତାର ଉପାସକ ନଥିଲେ, ସେ ଥିଲେ ପ୍ରାଚୀନତାର ଉତ୍ତର-ସାଧକ । ନବୀନ ପ୍ରତି ତାଙ୍କର ଯେପରି ଆକର୍ଷଣ ଥିଲା,ପ୍ରାଚୀନ ପ୍ରତି ସେଇପରି ଅନୁରକ୍ତିଥିଲା । ପ୍ରାଚୀନ ଓଡ଼ିଆ ସାହିତ୍ୟର ଶକ୍ତି, ପ୍ରାଚୀନ ଭାରତୀୟ ସଂସ୍କୃତିର ଅଭିମୂଲ୍ୟ ବିଷୟରେ ସେ ସମ୍ପୂର୍ଣ୍ଣ ସଚେତନ ଥିଲେ । ପ୍ରାଚୀନ ସଂସ୍କୃତି ଓ ପରମ୍ପରାର ଧାରାକୁ ଏକ ଶୃଙ୍ଖଳିତ ନୂତନ ମାର୍ଗରେ ସେ ଚଳାଇ ନେଇଥିଲେ । ଖାଲି ତାଙ୍କ ରଚନାରେ ନୁହେଁ, ଭାବନାରେ ଭାଷାରେ ସର୍ବତ୍ର ଏକ ନିସ୍ତରଙ୍ଗ ପ୍ରବୀଣତାର ଦୀପ୍ତି ବିଭୂଷିତ । ଏହାହିଁ କ୍ଲାସିକ୍ ବା ଚିରନ୍ତନ ସାହିତ୍ୟର ଆଦର୍ଶ । ସଂସ୍କୃତି ପଣ୍ଡିତ ଯଥାର୍ଥ କହିଛନ୍ତି—"କ୍ଲାସିକ୍ ବୁଝାଏ ଏକ ବହମାନ ଶୃଙ୍ଖଳିତ ଧାରା । ଏହା ସଂହତି ଓ ପରମ୍ପରା ଗଢ଼େ, ନୂତନ ରୁଚି ଗଠନ କରେ, ନୂତନ ପ୍ରଭାବ ବିସ୍ତାର କରେ, ଓ ଏହି ଗତି ପ୍ରବାହରେ ସହଜରେ ପଥ ହରାଏ ନାହିଁ ।" ୩୯

କ୍ଲାସିକ୍ ରଚନା ପାଇଁ ତିନି ଗୋଟି ଉପାଦନ ଲୋଡ଼ା—ପ୍ରାଚୀନ ସଭ୍ୟତା, ପୋଖତ ଭାଷା, ଓ ପ୍ରବୀଣ ମନ । ୪୦ ମହାଯାତ୍ରା ଏହି ତିନି ଉପାଦାନରେ ଗଠିତ ହୋଇଅଛି । ଭାରତବର୍ଷ ପୃଥିବୀରେ ଏକ ପ୍ରାଚୀନ ସଭ୍ୟ ଦେଶ । ବ୍ୟାସଦେବଙ୍କ ମହାଭାରତରେ ଏହି ପ୍ରାଚୀନ ଦେଶର ଶାଶ୍ୱତ ରୂପ ବିରାଜିତ । ମହାଭାରତ ଯୁଗରୁ ଭାରତୀୟ ସଭ୍ୟତା, ଧର୍ମ, ରାଜନୀତିର ଐତିହାସିକ କ୍ରମବିବର୍ତ୍ତନ ଧାରାହିଁ ମହାଯାତ୍ରାର ଭୂମିକା ।

ସହସ୍ର ବର୍ଷର ବିକଶିତ ଓଡ଼ିଆ ଭାଷା ଓ ଅର୍ଦ୍ଧ ସହସ୍ର ବର୍ଷରେ ବିକଶିତ ଓଡ଼ିଆ ସାହିତ୍ୟ ଉପରେ ରାଧାନାଥଙ୍କ ଦୃଷ୍ଟି ନିବଦ୍ଧ ନୁହେଁ । ଅଧ୍ୟୟନ ଓ ଅନୁସନ୍ଧିତ୍ସା ବଳରେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ କ୍ଲାସିକ କବିଙ୍କଠାରୁ ପ୍ରବୀଣତା ଓ କାବ୍ୟାଦର୍ଶ ଆହରଣ କରିଅଛନ୍ତି । ଉଦାହରଣ ସ୍ୱରୂପ, ମହାଯାତ୍ରାର ଯୁଧିଷ୍ଠିର ମହାଭାରତର ଯୁଧିଷ୍ଠିର ନୁହନ୍ତି । ମହାଭାରତରେ ପାପ ପୁଣ୍ୟର ଜୟ ପରାଜୟ କଳ୍ପନାରେ କଳ୍ପିତ ଯୁଧିଷ୍ଠିର ବିଶ୍ୱମାନବିକ ଆଦର୍ଶର ପ୍ରତୀକ । ମାତ୍ର ମହାଯାତ୍ରାର କବିଙ୍କ ଦୃଷ୍ଟି ଗୋଟିଏ ନିର୍ଦ୍ଦିଷ୍ଟ ଜାତି ଓ ଦେଶର ଭାଗ୍ୟ ତଥା ଭବିଷ୍ୟତ ଉପରେ ନିବଦ୍ଧ । ଏହି ଦଗରେ ରୋମାନ କବି ଭର୍ଜିଲଙ୍କ ସହିତ ରାଧାନାଥଙ୍କୁ ତୁଳନା କରି ଯାଇ-ପାରେ । ଭର୍ଜିଲ ଯେପରି ରୋମୀୟ ସଭ୍ୟତାର ବିକାଶ ଧାରା ଓ ଆଦର୍ଶ ବ୍ୟାଖ୍ୟା କରିଛନ୍ତି, ରାଧାନାଥ ସେହିପରି ଭାରତବର୍ଷର ଆଦର୍ଶ ବ୍ୟାଖ୍ୟା କରିଛନ୍ତି । ମିଲ୍‌ଟନ୍

ପ୍ରଥମେ ସୁଦ୍ଧକୁ ଯେନ ମହାକାବ୍ୟ ରଚନାର ପରମ୍ପରା ଲଙ୍ଘନ କରିଥିଲେ । ସେ ବାହ୍ୟର ସଂଘର୍ଷ ଅପେକ୍ଷା ମନୁଷ୍ୟର ଆତ୍ମିକ ସଂଘର୍ଷକୁ ଯେପରି ପୁରୋସ୍ଥାନ ଦେଇଥିଲେ, ସେଇପରି ରାଧାନାଥ ମହାଭାରତ ଯୁଦ୍ଧରେ ବିଜୟୀ ପାଣ୍ଡବ ପାଞ୍ଚଭାଇଙ୍କର ମାନସିକ ଅନ୍ତର୍ଦ୍ୱନ୍ଦ୍ୱର ଚିତ୍ର ଦେଇଛନ୍ତି । ବିଶ୍ୱ ସାହିତ୍ୟରେ ଏହି ମହାନ୍ ସ୍ରଷ୍ଟାମାନେ ରାଧାନାଥଙ୍କ ପଥ ପ୍ରଦର୍ଶକ ।

ମହାଯାତ୍ରାରେ ହିଁ ରାଧାନାଥ ପ୍ରଥମେ ଓଡ଼ିଆ କବିତାକୁ ସଫଳ ଓ ସାର୍ଥକ ପ୍ରକାଶ ଭଙ୍ଗୀ ପ୍ରଦାନ କରିଛନ୍ତି । ଏହା ତାଂକର ଅମିତ୍ରାକ୍ଷର ଛନ୍ଦ । ଅମିତ୍ରାକ୍ଷର ରଚନା ସହଜ ବୋଲି ମନେ କରି ଅନେକେ ଏହାକୁ କବିତାରେ ବ୍ୟବହାର କରୁଥିଲେ । ମାତ୍ର ରାଧାନାଥ ଅମିତ୍ରାକ୍ଷର ରଚନା ଏକ ଦୁରୂହ କାର୍ଯ୍ୟ ବୋଲି ମନେ କରୁଥିଲେ । ଭାବ ପ୍ରକାଶର ଏକ ଶ୍ରେଷ୍ଠ ଶୃଙ୍ଖଳା ରୂପେ ସେ ଏହି ଛନ୍ଦର ବିକାଶ ସାଧନ କରିଛନ୍ତି । ନିଜ ଅନୁଭବ ବର୍ଣ୍ଣନା କରି ଲେଖିଅଛନ୍ତି—"ମିତ୍ରାକ୍ଷର ଅପେକ୍ଷା ଅମିତ୍ରାକ୍ଷର ସହଜ ଏମନ୍ତ କେତେ ଦୃଢ଼ ଠିକ୍, ମୁଁ କହି ନପାରେ । ନିଜ ଅନୁଭବରୁ ମୁଁ ଜାଣେ ଅମିତ୍ରାକ୍ଷର ରଚନା ଅଧିକତର କଠିନ ।" ୪୧ ( ପରିଶିଷ୍ଟରେ ଅମିତ୍ରାକ୍ଷର ଛନ୍ଦ ବିଷୟରେ ବିଶେଷ ଆଲୋଚନା ହୋଇଛି )

କେଉଁ ରଚନା କେତେ ପରିମାଣରେ କ୍ଲାସିକ୍—ସେଥିରେ ଇତର ବିଶେଷ ଏବେ ସମାଲୋଚକମାନେ ସ୍ଥିର କରୁଅଛନ୍ତି । ଏଲି ବିଗ୍ରହରେ ରାଧାନାଥଙ୍କ କୃତିରେ କେତେକ ବିଲକ୍ଷଣ ଅନୁଧ୍ୟାନ କରିବା ଯାଇପାରେ । ମହାକବିମାନେ ଯେଉଁଧରଣର ରଚନାରେ ହାତ ଦିଅନ୍ତି, ସେଥିରେ ଚରମ ନୈପୁଣ୍ୟ ପ୍ରଦର୍ଶନ କରିଥାନ୍ତି । ଏଥିରେ ଭାଷାର ଓ ଭାବ-ପ୍ରକାଶର ଚରମ ଅଭିବ୍ୟକ୍ତି ଘଟିଥାଏ । କଳା କୃତିତ୍ୱରେ ଏହା ଏପରି ଶୀର୍ଷ ସ୍ଥାନ ଅଧିକାର କରିଥାଏ ଯେ, ପରବର୍ତ୍ତୀ ବିକାଶ କଳ୍ପନା ଯେପରିକି ଅସମ୍ଭବ ମନେ ହୁଏ । ଇଲିଅଟ୍ କହନ୍ତି – କୌଣସି ଜୀବନ୍ତ ଓ ମନ ବର୍ଦ୍ଧମାନ ଭାଷାରେ ଏହି ଶ୍ରେଣୀର କ୍ଲାସିକ୍ ରଚିତ ହେବା ଅସମ୍ଭବ । ଯେତେବେଳେ କୌଣସି ଦେଶରେ ଏହି ଧରଣର ଚିରନ୍ତନ ସାହିତ୍ୟ ସୃଷ୍ଟି ହୁଏ, ଭବିଷ୍ୟତ ବିକାଶ ମାର୍ଗ ରୁଦ୍ଧ ହେବା ଫଳରେ ସେଇ ଭାଷା ମୃତ ଭାଷାରେ ପରିଣତ ହୋଇଯାଏ । ଏହି ଦୃଷ୍ଟିରୁ ରାଧାନାଥଙ୍କ ମହାକାବ୍ୟରେ ତ୍ରୁଟି ଥିବାରେ ଅସ୍ୱାଭାବିକତା ନାହିଁ । ବରଂ ଆମ ଭାଷା ଓ ସାହିତ୍ୟର ଭବିଷ୍ୟତ ସମ୍ଭାବନା ପାଇଁ ଏହା ଅନୁକୂଳ ବୋଲିବାକୁ ହେବ ।

କ୍ଲାସିକ କବିର ଅନ୍ୟ ଏକ ଲକ୍ଷଣ ସାର୍ବଜନୀନତା । ତାଙ୍କର ହୃଦୟ ସ୍ଥିର ଓ ନିସ୍ତରଙ୍ଗ । ଯେଉଁ ସବୁ ସାନ ସାନ ସୁଖ ଦୁଃଖର ଅନୁଭୂତି ଗୀତିକବିଙ୍କ ହୃଦୟକୁ ବିଚଳିତ କରେ, ତାହା ତାଙ୍କୁ ସ୍ପର୍ଶ କରିପାରେ ନାହିଁ । ରାଧାନାଥ ସର୍ବତ୍ର ଏ ଆଦର୍ଶ ରକ୍ଷା କରି ନାହାନ୍ତି ।

ବହୁସ୍ଥାନରେ ନିଜ ବ୍ୟକ୍ତି ମାନସର ଭାବନା କାମନା,ଭାବ ଉଚ୍ଛ୍ୱାସରେ ପ୍ରକାଶ କରିଅଛନ୍ତି । ସର୍ବ ଭାରତୀୟ ଭିତ୍ତିରେ କାବ୍ୟଟିର ପରିକଳ୍ପନା କରି ମଧ୍ୟ ସର୍ବ ଭାରତୀୟ ଭୂମିକା ରକ୍ଷା କରି ପାରିନାହାନ୍ତି । ନିଜର ପ୍ରିୟ ଉତ୍କଳ ଭୂମି ତାଙ୍କ ଦୃଷ୍ଟିକୁ ସର୍ବଦା ଆଚ୍ଛନ୍ନ କରି ରଖିଅଛି, ସ୍ୱତନ୍ତ୍ର ସତ୍ତ୍ୱରେ ପ୍ରକାଶିତ ହୋଇଅଛି । ତେଣୁ ତାଙ୍କ କଳ୍ପନାରେ ଦେଖୁ—

"ପର୍ଣ ଦଳେ ଶ୍ରେଷ୍ଠ ଯେସନ୍ତେ ପ୍ରସୂନ ଲଳିତ
ଶ୍ରେଷ୍ଠ ଏ ଉତ୍କଳ ଭୂମି ଗୁଣେ ଗରୀୟସୀ ।" ୪୨

## ମହାକାବ୍ୟ

ପାଶ୍ଚାତ୍ୟ ସମାଲୋଚକମାନେ ମହାକାବ୍ୟକୁ ମୌଳିକ ବା ସ୍ୱତଃସ୍ଫୂର୍ତ୍ତ ଓ ସର୍ଜନାତ୍ମକ ବା କଳାତ୍ମକ ଭେଦରେ ବିଚାର କରିଥାନ୍ତି । ଏ ଉଭୟ ଶ୍ରେଣୀର ମହାକାବ୍ୟ ମଧ୍ୟରେ ଯେପରି କେତେକ ସାମ୍ୟ ଦେଖାଯାଏ, ସେହିପରି ଅନେକ ପାର୍ଥକ୍ୟ ଦେଖାଯାଏ । ପୁରାଣ ଗାଥା,ଆଖ୍ୟାୟିକା ବା ପୁରାତନ କାହାଣୀ ଘେନି ମୌଳିକ ମହାକାବ୍ୟ ଗଠିତ ହୁଏ । ଏହା ଜଣକ ହାତର ସୃଷ୍ଟି ନୁହେଁ । ଅଫଖ୍ୟ ବୀର ପୁରୁଷଙ୍କ ଅଦ୍ଭୁତ କର୍ମ ବର୍ଣ୍ଣନା ପ୍ରସଙ୍ଗରେ ବହୁ ଅପ୍ରାକୃତିକ ଘଟଣା ଏଥିରେ ସ୍ଥାନ ପାଇଥାଏ । ଏହା ମୁଖ୍ୟତଃ ଧର୍ମ ମୂଳକ । ଭୟ ଓ ବିସ୍ମୟ ସୃଷ୍ଟି କରି ମନୁଷ୍ୟ ମନରେ ପୁରାତନ ଧାର୍ମିକ ଆଦର୍ଶର ଆଧିପତ୍ୟ ଅତୁଟ ରଖିବାର ପ୍ରୟାସ ଏଥିରେ ହୋଇଥାଏ । ଏଥିରେ ସଜ୍ଜା ଓ ଶୈଳୀ ବିଶୃଙ୍ଖଳ । ଏହା ପ୍ରକୃତିର ସୃଷ୍ଟି ଭଳି ସ୍ୱତଃସ୍ଫୂର୍ତ୍ତ ଓ ପ୍ରାଣପୂର୍ଣ୍ଣ ।

ଅନ୍ୟ ପକ୍ଷରେ କଳାତ୍ମକ ମହାକାବ୍ୟ ଏକକ ପ୍ରତିଭାର ସୃଷ୍ଟି । ବିଦଗ୍ଧ କବି ମନର ସ୍ୱାକ୍ଷର ଏହାର ପ୍ରତିଛନ୍ଦରେ ଦେଖିବାକୁ ମିଳେ । ଏହାର ବର୍ଣ୍ଣନା ଓ କଳାରୁଚି ଉନ୍ନତ । ଭାଷା ଓ ଶୈଳୀ ମାର୍ଜିତ । ଏହାର କାହାଣୀ ବୌଦ୍ଧିକ ହେତୁବାଦୀ ପରଂପରା ଉପରେ ପ୍ରତିଷ୍ଠିତ । ଏହାର ବିଷୟ ବିନ୍ୟାସରେ ଐତିହାସିକ ଦୃଷ୍ଟିକୋଣ ଓ ବାସ୍ତବତା ପରିସ୍ଫୁଟ । ନବରୁଚି ଓ ଆଦର୍ଶ ପ୍ରତିଷ୍ଠା ଏହାର ଅନ୍ୟତମ ଲକ୍ଷ୍ୟ ।

ମହାକାବ୍ୟ ମୌଳିକ ହେଉ ବା ସର୍ଜନାତ୍ମକ ହେଉ ତାହାର କାହାଣୀ ନାଟକୀୟ ହେବା ସ୍ୱାଭାବିକ । ଏଥିରେ ମନୁଷ୍ୟ ଜୀବନର କ୍ରିୟା ବିଶେଷ ଫମ୍ପୂର୍ଣ୍ଣ ଚିତ୍ରିତ ହେବା ବାଞ୍ଛନୀୟ । ଏହାର ଆରମ୍ଭ, ବିକାଶ ଓ ପରିଣତିରେ ଏକ ଜୀବନ୍ତ ଫହତି ଥିବା ଉଚିତ । ଏଇ ଫହତି ସାଧାରଣତଃ ସର୍ଜନାତ୍ମକ ବା କଳାତ୍ମକ ମହାକାବ୍ୟରେ ଅଧିକ ଲକ୍ଷଣୀୟ । ଏଥିରେ ଏପରି କୌଣସି ଘଟଣା,ଆଖ୍ୟାନ ବା ଦୃଶ୍ୟ ବର୍ଣ୍ଣନା ନଥିବା ଉଚିତ ଯାହାର ଫପର୍କ ମୂଳ ବିଷୟ ସହିତ ଶିଥିଳ । ଅବଶ୍ୟ କେତେକ ସମାଲୋଚକ ଏହି କାବ୍ୟକ ଫହତିରେ କେତେକ ବିଲକ୍ଷଣ ସ୍ୱାଭାବିକ ମନେ କରନ୍ତି । ସେମାନଙ୍କ ବିଚାରରେ ଯଦି ବଳିଷ୍ଠ ଆଦର୍ଶ

ଉପରେ ପ୍ରତିଷ୍ଠିତ ମହାକାବ୍ୟର ପରିସର ଖୁବ୍ ବ୍ୟାପକ ହୋଇଥାଏ ସେଥିରେ ବିଷୟ ଓ ଭାବ ବୈଚିତ୍ର୍ୟ ଆନୟନ ଲାଗି ମୂଳ ବିଷୟ ସହିତ କେତେକ ପରିମାଣରେ ଅସଂଲଗ୍ନ ଗୌଣ ଆଖ୍ୟାନ ବା ଘଟଣାର ବର୍ଣ୍ଣନା ଆବଶ୍ୟକ । ଏହା ଫଳରେ ମହାକାବ୍ୟର ସୁଦୀର୍ଘ ବର୍ଣ୍ଣନା ମଧ୍ୟରେ ପାଠକର ଅବସନ୍ନ ମନ ବିରାମ ଲାଭ କରେ ଓ ତତ୍କାଳୀନ ଓ ଆଞ୍ଚଳିକ ବିଷୟର କଳ୍ପିତ ଅବତାରଣା ଦ୍ୱାରା ପାଠକ ମନରେ ନୂତନ ଜୀବନ୍ତ କୌତୂହଳ ସୃଷ୍ଟି ସମ୍ଭବ ହୁଏ । ମହାକାବ୍ୟରେ କବିତାର ମହାକାଳ ସହିତ ପରିଣୟ ଘଟେ । ଏହାର ପରିସର ଅତି ବିପୁଳ ନିକଟ ସହିତ ସୁଦୂରର, ସ୍ୱକାଳ ସହିତ ସର୍ବକାଳର, ବ୍ୟକ୍ତି ଜୀବନର ଆବେଗ ଅନୁଭୂତି ସହିତ ସାର୍ବଜନୀନତାର ସମ୍ପର୍କ ସ୍ଥାପନ କାମ୍ୟ୍ ଏହିପରି କେତେକ ଖଣ୍ଡିତ ଭାବ, ବିଷୟ ଓ ଦୃଶ୍ୟର ଅବତାରଣା ଦ୍ୱାରା ସମ୍ଭବ ହୁଏ । ମହାଯାତ୍ରାରେ ପ୍ରସଙ୍ଗ ଅତିରିକ୍ତ ସାମୟିକ ବ୍ୟକ୍ତି, ଘଟଣା ଓ ଆଞ୍ଚଳିକ ଦୃଶ୍ୟରାଜିର ବର୍ଣ୍ଣନା ଦ୍ୱାରା ଏହି ଉଦ୍ଦେଶ୍ୟ ସାଧିତ ହୋଇଅଛି ।

ଆଧୁନିକ ଓଡ଼ିଆ କାବ୍ୟଧାରାରେ ମହାଯାତ୍ରାହିଁ ପ୍ରଥମ ଜ୍ଞାନ କଳ୍ପିତ ସର୍ଗନାତ୍ମକ ମହାକାବ୍ୟ । ମହାକାବ୍ୟ ରଚନାରେ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପରମ୍ପରାର ସୁନ୍ଦର ସମନ୍ୱୟ ଏଥିରେ ଘଟିଅଛି । ମହାକାବ୍ୟ ରଚନା ଏକ ପ୍ରାଚୀନ କଳା । ସବୁ ଦେଶରେ ସାଧାରଣତଃ ସାହିତ୍ୟର ଆଦ୍ୟ ବିକାଶ ମହାକାବ୍ୟ ମାଧ୍ୟମରେ ହୋଇଥାଏ । ଆଦି ଯୁଗର ଏହି ମହା-କାବ୍ୟଗୁଡ଼ିକ ନିସର୍ଗ ରଚନା ପ୍ରପାତ ଭଳି ସ୍ୱତଃସ୍ଫୂର୍ତ୍ତ । ଜାତିର ମୁକ୍ତ ତରୁଣ ଆତ୍ମା ଏଥିରେ କଥା କହେ । ଏଥିରେ ଅତୀତ ଓ ବର୍ତ୍ତମାନର ସ୍ୱତନ୍ତ୍ର ସତ୍ତା ନଥାଏ । ଜାତୀୟ ଆତ୍ମାର ଏକ ସର୍ବକାଳୀନ ଅଖଣ୍ଡ ସତ୍ତା ଏଥିରେ ବିରାଜିତ ହୋଇଥାଏ । ତରଙ୍ଗର ସମସ୍ତ ଘାତ ପ୍ରତିଘାତ ମଧ୍ୟରେ ସାଗର ବକ୍ଷର ଅଖଣ୍ଡ ସ୍ତବ୍ଧତା ଭଳି, ଜାତୀୟମାନସ ଓ କବିର ବ୍ୟକ୍ତି ମାନସର ଅନ୍ତସ୍ଥଳରେ ଏକ ନିସ୍ତରଙ୍ଗ ସ୍ତବ୍ଧତା ବିରାଜମାନ କରୁଥାଏ । ଏଥିରେ କବିଙ୍କୁ କୌଣସି ନୂତନ ଆଦର୍ଶ ପ୍ରଚାର କରିବାକୁ ହୁଏନାହିଁ । ନୂତନ ଜୀବନ ଧାରା, ନୂତନ ସମାଜ ପଦ୍ଧତିର ପ୍ରତିଷ୍ଠା ଦେବାକୁ ହୁଏ ନାହିଁ ।

ଆମ ଓଡ଼ିଆ ସାହିତ୍ୟ ପ୍ରତି ଲକ୍ଷ୍ୟ କଲେ, ଆଦି ଯୁଗରେ ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ ରୂପେ ସାରଳା ଓ ବଳରାମ ଦାସଙ୍କ ମହାଭାରତ ଓ ରାମାୟଣ ଭଳି ମହାଗ୍ରନ୍ଥ ରଚିତ ହୋଇଛି । ପରବର୍ତ୍ତୀ କାଳରେ ସଂସ୍କୃତ ଆଳଙ୍କାରିକମାନଙ୍କ ନିର୍ଦ୍ଧାରିତ ସାଞ୍ଚରେ ଭଞ୍ଜ, ଅଭିମନ୍ୟୁ ପ୍ରଭୃତି କବିମାନେ ମହାକାବ୍ୟ ରଚନା କରିଅଛନ୍ତି । ଏକ ନିସ୍ତରଙ୍ଗ, ଘାତ ପ୍ରତିଘାତ ରହିତ ସମାଜରେ ମନୁଷ୍ୟର ଜୀବନରେ ପ୍ରେମ ଓ ମାନବିକ ସମ୍ପ୍ରୀତିର ଆଦର୍ଶ ମନୋରମ ଲାବଣ୍ୟମୟୀ ବାଣୀ ମୂର୍ତ୍ତି ଘେନି ଏଥିରେ ଆତ୍ମ ପ୍ରକାଶ କରିଅଛି । ମହାକାବ୍ୟର ଗଠନ ସୌନ୍ଦର୍ଯ୍ୟ, ସମୃଦ୍ଧ ବର୍ଣ୍ଣନା ଓ ଭାବ ସମୁନ୍ନତିର ଅଭାବ ଏଥିରେ ନାହିଁ । ପୁରାଣ ବା ଇତିହାସ କଥାର ଅନୁବର୍ତ୍ତନ ବା କାଳ୍ପନିକ ଗଳ୍ପର ବିକାଶ, ଶୃଙ୍ଗାର, ବୀର, ଶାନ୍ତ ଆଦି ରସର

ଅଭିବ୍ୟକ୍ତି, ମହାନୁଭବ ଚରିତ୍ରର ଚିତ୍ରଣ, ଊଷା, ପ୍ରଦୋଷ, ଋତୁଚକ୍ର, ଅରଣ୍ୟ ପର୍ବତ ଆଦି ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା, ଶିକାର, ବିବାହ, ଜନ୍ମ, ମୃତ୍ୟୁ ଆଦି ସାମାଜିକ କ୍ରିୟା ବା ବିରହ ମିଳନ ଆଦି ମାନବିକ ସୁଖ ଦୁଃଖର ବର୍ଣ୍ଣନା ଏଥିରେ ମୁଖ୍ୟ ସ୍ଥାନ ଅଧିକାର କରିଛି । ମାତ୍ର ଆଧୁନିକ ଯୁଗର ସାହିତ୍ୟିକ ମହାକାବ୍ୟର ଆଦର୍ଶ ଏଥିରେ ଦେଖିବାକୁ ମିଳେନାହିଁ ।

ସାରଳା, ବଳରାମଙ୍କଠାରୁ ରାଧାନାଥଙ୍କ ପର୍ଯ୍ୟନ୍ତ ଆମ ସାହିତ୍ୟରେ ମହାକାବ୍ୟ ରଚନାର ଏକ ନିର୍ଦ୍ଧାରିତ କ୍ରମ ଖୋଜି ପାଇବା ଅସମ୍ଭବ । ଏହାର ପ୍ରଧାନ କାରଣ ଭାରତୀୟ ଓ ଇଉରୋପୀୟ ମହାକାବ୍ୟର ଆଦର୍ଶଗତ ପାର୍ଥକ୍ୟ । ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟରେ ପାଶ୍ଚାତ୍ୟ ଦେଶର ବୀର ନାୟକ ଆଦର୍ଶ ଭାରତ ବର୍ଷରେ ଦେଖାଯାଏ ନାହିଁ । ପାଶ୍ଚାତ୍ୟ ସମାଜର ଧାରଣାରେ ବୀରତ୍ୱହିଁ ସମାଜ ଜୀବନର ସ୍ୱାଭାବିକ ବିକାଶ । ମହାକାବ୍ୟର ବୀରନାୟକ ତ୍ୟାଗର ଆଦର୍ଶରେ ଦୀକ୍ଷିତ ନଥିଲେ । ବୈରାଗ୍ୟ ବା ଅଧ୍ୟାତ୍ମସାଧନା ତାଙ୍କର ପଣ ନଥିଲା । ଉଚ୍ଚ ଚରିତ୍ର ଶକ୍ତିରେ ଦୂଷିତ ନଥିଲେ । କେବଳ ନିଜର ଶୌର୍ଯ୍ୟ ବଳରେ ସମର କ୍ଷେତ୍ରର ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସମସ୍ତଙ୍କ ହୃଦୟ ଜୟ କରୁଥିଲେ ଓ ସମାଜର ଶୀର୍ଷସ୍ଥାନ ଅଧିକାର କରୁଥିଲେ । ଏହି ଶକ୍ତିଧର ପୁରୁଷ ସିଂହଙ୍କ ନିକଟରେ ଧର୍ମ, ଚରିତ୍ର ନୀତି, ସମାଜ ନୀତି ମସ୍ତକ ଅବନତ କରୁଥିଲା । ନ୍ୟାୟ ଓ ଅନ୍ୟାୟର ଊର୍ଦ୍ଧ୍ୱରେ ସେ ବିଚରଣ କରୁଥିଲେ ।

ମାତ୍ର କାଳକ୍ରମେ ଭାରତବର୍ଷରେ ମାନବ ଶକ୍ତିର ଏକ ସ୍ୱତନ୍ତ୍ର ମହିମା ଆବିଷ୍କୃତ ହୋଇଥିଲା । ମନୁଷ୍ୟର ଶୌର୍ଯ୍ୟ ବୀର୍ଯ୍ୟ ଓ ଅସୀମ ପ୍ରାଣ ଶକ୍ତିକୁ କେବଳ ମାତ୍ର ଶୂନ୍ୟ ସାଧୁବାଦ ଓ କ୍ଷଣସ୍ଥାୟୀ ଜୟମାଲ୍ୟଦ୍ୱାରା ଅଭ୍ୟର୍ଥନା ନକରି, ଏହି ଶକ୍ତିର ଏକ ବାସ୍ତବ ତାତ୍ପର୍ଯ୍ୟ, କଲ୍ୟାଣକର ରୂପାନ୍ତର ସାଧନ ଦିଗରେ ମନୁଷ୍ୟର ଭାବନା ଶକ୍ତି ଗ୍ରଥିତ ହୋଇଥିଲା । ରଚନାତ୍ମକ ସାହିତ୍ୟିକ ମହାକାବ୍ୟରେ ଏହି ମାନବ ମହିମାର ସ୍ଫୁରଣ ଦେଖିବାକୁ ମିଳେ । ପ୍ରାଚୀନ ଯୁଗର ବୀର ନାୟକଙ୍କ ଶୌର୍ଯ୍ୟ ବୀର୍ଯ୍ୟ ଓ ଆତ୍ମତ୍ୟାଗର ଅମ୍ଳାନ ଗୌରବ ଦୀପ୍ତି ସାହିତ୍ୟିକ ମହାକାବ୍ୟରେ ଦେଶାତ୍ମବୋଧ ସହିତ ଯୁକ୍ତ ହୋଇ ଅଧିକତର ଉଜ୍ଜ୍ୱଳ ହୋଇଛି । ବୀର ପୂଜା ରୂପ ସଂକୀର୍ଣ୍ଣ ଆଦର୍ଶ, ଦେଶ ଓ ଜାତିର ମଙ୍ଗଳକର ବ୍ୟାପକ ଆଦର୍ଶରେ ଲୀନ ହୋଇ ଅଧିକତର ଗୌରବ ଦୀପ୍ତ ହୋଇଅଛି । ସେଥିଲାଗି ଆମ ଦେଶରେ ଊନବିଂଶ ଶତକର ପୁନର୍ଜାଗରଣ ଯୁଗରୁ ସାହିତ୍ୟିକ ମହାକାବ୍ୟ ଗୁଡ଼ିକ କେବଳ ବୀର ପୂଜାର ଆଦର୍ଶ ପ୍ରଚାର ନକରି ଜାତୀୟ ଗୌରବ ପ୍ରଚାର କରିଅଛି । ମହାଯାତ୍ରା ଏହି ଆଦର୍ଶ ପ୍ରଭାବର ଫଳ ।

ପ୍ରାଚୀନ ଭାରତୀୟ ଆଦର୍ଶ କୌଣସି ଖଣ୍ଡ ଓ କ୍ଷୁଦ୍ରରେ ବିଭକ୍ତ ନଥିଲା । ଏକ ଅଖଣ୍ଡ ମାନବିକ ଆଦର୍ଶ ଦୃଷ୍ଟିରୁ ଏହି କବିମାନେ ସ୍ୱର୍ଗ, ମର୍ତ୍ତ୍ୟ ପାତାଳର ଧାରଣା କରୁଥିଲେ ।

ଏଥିରେ ଜାତୀୟ ଚେତନା ସ୍ଥାନରେ ମାନବିକ ଚେତନା ପ୍ରତିଷ୍ଠିତ ଥିଲା । ସାର୍ବଜନୀନ, ସାର୍ବଭୌମ ମୈତ୍ରୀ ଓ ହୃଦୟର ଅକୁଣ୍ଠ ଆବେଦନ ଏହାର ଅନ୍ତର୍ଗତ ବାଣୀ ଥିଲା । ଅଖଣ୍ଡ ଭୂମାନନ୍ଦର ସ୍ୱାଦ ଏହା ପ୍ରଦାନ କରୁଥିଲା । ମାତ୍ର ପାଶ୍ଚାତ୍ୟ ଜାତୀୟତାର ଆଦର୍ଶରେ ରାଧାନାଥ ପ୍ରଥମେ ଏହି ଧାରା ଛିନ୍ନ କଲେ । (ମହତ୍ତ୍ୱ ଭାରତୀୟ ଆଦର୍ଶର ଗୌରବ ଗୋଟିଏ ନିରାଶ, ଦୈନ୍ୟକ୍ଳିଷ୍ଟ, ଆତ୍ମଗ୍ଳାନିରେ ମ୍ରିୟମାଣ ଜାତି ପ୍ରାଣରେ ପ୍ରତିଷ୍ଠିତ କରିବାକୁ ଯାଇ ତାଙ୍କର କଳ୍ପନା ଓ ଭାବନା ଗୋଟିଏ ଦେଶ ଓ ଗୋଟିଏ ଜାତିକୁ କେନ୍ଦ୍ର କରି ସଞ୍ଚରଣ କଲା ।)

## ଯୁଗ ପରିବେଶ

ରାଧାନାଥ ଯେଉଁ ସମୟରେ ଲେଖନୀ ଧାରଣ କରିଥିଲେ ସେହି ଯୁଗ ପରିବେଶ ରଚନାତ୍ମକ ମହାକାବ୍ୟ ରଚନାର ଏକାନ୍ତ ଅନୁକୂଳ ଥିଲା । ସ୍ୱତଃସ୍ଫୂର୍ତ୍ତ ମହାକାବ୍ୟ ପରି ସାହିତ୍ୟିକ ମହାକାବ୍ୟ ମଧ୍ୟ କେତେକ ପରିମାଣରେ ଯୁଗର ରଚନା । ଏଥିରେ ଯୁଗ ବିଶେଷର ଆଶା ଆକାଂକ୍ଷା ଓ ସୁଖ ଦୁଃଖ କାହାଣୀ ବାଣୀମୂର୍ତ୍ତିରେ ରୂପାୟିତ ହୁଏ । କବି ଆପଣାଯୁଗର ଅଗ୍ରଗାମୀ ସାମାଜିକ ଚିନ୍ତାର ପ୍ରତିନିଧିତ୍ୱ କରନ୍ତି । କବିଙ୍କ ମନର ବ୍ୟକ୍ତିକ ସତ୍ତା ଯୁଗ ମାନସରେ ପରିବ୍ୟାପ୍ତ ହୁଏ । ଯୁଗ ମାନସ ଓ କବି ମାନସ ସମ୍ପୂର୍ଣ୍ଣ ରୂପେ ଏକୀଭୂତ ନହେଲେ, କବିଙ୍କ ମାନସିକ ଭାବାବେଗ ସହିତ ଯୁଗର ପ୍ରବୃତ୍ତି ନିର୍ଦ୍ଦିଷ୍ଟ ସାମଞ୍ଜସ୍ୟ ସମର୍ଥନ ସୂତ୍ରରେ ଗ୍ରଥିତ ନହେଲେ, ସାର୍ଥକ ସାହିତ୍ୟିକ ମହାକାବ୍ୟର ଉଦ୍‌ଭବ ସମ୍ଭବ ହୁଏନାହିଁ । ଜାତୀୟ ଜୀବନର ସମସ୍ତ ବିରୋଧମାନ ଶକ୍ତି ଗୋଟିଏ ଅଖଣ୍ଡଭାବ ସଂହତି ମଧ୍ୟରେ ବିରାମ ଲଭି କଲେ, ଜାତିର ଶକ୍ତି ଏକ ବୃହତ୍ତର ଆଦର୍ଶ ଲକ୍ଷ୍ୟରେ ସରଳ ଗତିରେ ଗୁଳିତ ହେଲେ— କବିଙ୍କୁ ମହାକାବ୍ୟ ଲେଖିବାକୁ ପ୍ରେରଣା ମିଳେ । ଜାତୀୟ ଜୀବନ ଯେତେବେଳେ ଗତିକ୍ଳାନ୍ତ ହୋଇପଡ଼େ, ଜାତିର ମାନସ ସମୁଦ୍ରରେ ଯେତେବେଳେ ଭଟ୍ଟା କାଳ ଆସେ, ନୂତନ ଶକ୍ତି ସଂଗ୍ରହ ପାଇଁ ନୂତନ ତରଙ୍ଗର ଉଦ୍‌ବେଳନ ସୃଷ୍ଟି ପାଇଁ କବି ଲେଖନୀ ଧାରଣ କରନ୍ତି । ସେଥିଲାଗି କୌଣସି ଦେଶରେ ଇତିହାସର ଗୌରବମୟ ଯୁଗରେ ଉନ୍ନତ ସାହିତ୍ୟିକ ମହାକାବ୍ୟ ରଚିତ ହୋଇଥିବାର ଦେଖିବାକୁ ମିଳେନାହିଁ । ଜାତିର ଦୁର୍ଦ୍ଦିନରେ ଯଥାର୍ଥ ସଫଳ, ସାହିତ୍ୟିକ ମହାକାବ୍ୟ ରଚିତ ହୁଏ । ୪୩ ଓଡ଼ିଶା ତଥା ଭାରତ ଇତିହାସରେ ମହାଯାତ୍ରା ରଚନାର କାଳ ଥିଲା, ଏକ ଦୁର୍ଦ୍ଦିନ, ଗଭୀର ଅନ୍ଧକାରମୟ ଯୁଗ ।

ଜାତୀୟ ଜୀବନର ଦୁର୍ଦ୍ଦିନରେ ଗଭୀର ଆତ୍ମଜିଜ୍ଞାସାହିଁ ମହାଯାତ୍ରା ରଚନାର ପ୍ରେରଣା ଯୋଗାଇଅଛି । ଆମ ଦେଶର ଇତିହାସରେ ଊନବିଂଶ ଶତକଠାରୁ ଅଷ୍ଟାଦଶ ଶତକ ହୁଏତ ଅଧିକ ଅବନତ ଥିଲା, ଅଧିକ ଅନ୍ଧକାରମୟ ଥିଲା । ମାତ୍ର ସେ ଯୁଗରେ ଆତ୍ମଜିଜ୍ଞାସା ଭାବ

ନଥିଲା । ଅନ୍ୟର ତୁଳନାରେ ବିଶ୍ୱରେ ନିଜର ସ୍ଥାନ ନିରୂପଣ କରିବାକୁ ସାମଗ୍ରିକ ଦୃଷ୍ଟି ନଥିଲା । ଉନବିଂଶ ଶତାବ୍ଦୀର ନୂତନ ଶିକ୍ଷା ବିସ୍ତାର ଫଳରେ ନବ ଜାଗରଣ ଦେଖାଦେଲା । ଇତିହାସ ଜାତୀୟ ଜୀବନରେ ଦୈନ୍ୟର ଚିତ୍ର ଯେପରି ଅଙ୍କନ କଲା, ତାହା କବି ଚିତ୍ତକୁ ବିଚଳିତ କରିଥିଲା । ଏହି ବେଦନା ବିକ୍ଷତ ହୃଦୟରେ ମହାଯାତ୍ରାର କବି ଭାରତର ଐତିହ୍ୟ ଉପରେ ଦୃଷ୍ଟି ନିବଦ୍ଧ କରି, ଜାତୀୟ ଜୀବନରେ ଯେଉଁ ଅବନତିର ଶିକ୍ଷାଥିଲା ତାହା ଆବିଷ୍କାର କରିବାକୁ ଲେଖିଥିଲେ ।

## ମହାକାବ୍ୟ ରୂପେ ସଫଳତା

ମହାଯାତ୍ରା ମହାକାବ୍ୟ ଭାବେ କେତେଦୂର ସଫଳ ହୋଇଅଛି, ତାହାର ବିଚାର ଆବଶ୍ୟକ । ଏହାର ମୌଳିକ ବିଷୟ ପୁରାଣ ପ୍ରସିଦ୍ଧ ଭାରତବର୍ଷର ଆଦର୍ଶ ବିକାଶର ଇତିହାସ । ସ୍ତରେ ସ୍ତରେ ଏ ଦେଶର ଗୌରବ ସମୁନ୍ନତି ଯେପରି ଖର୍ବ ହୋଇଛି, ସେହିପରି ଏହି ଅଧଃପତନ ଭିତରେ ହିଁ ତାହାର ଆଦର୍ଶର ଆତ୍ମା ଅବିନଶ୍ୱର ସତ୍ତାରେ ଜାଗ୍ରତ ହୋଇଅଛି । ମହାଯାତ୍ରାର ନାୟକ ଯୁଧିଷ୍ଠିର ଏହି ସତ୍ତାର ପ୍ରତୀକ । ଭାରତୀୟ ପୁରାଣ କଳ୍ପନାରେ ସେ ଆଦର୍ଶର ଉତ୍ତୁଙ୍ଗ ଶିଖର ଉପରେ ଅଧିଷ୍ଠିତ । ଆଦର୍ଶର ଉଚ୍ଚ ହିମାଳୟ ଉପରେ ଥାଇ, ଜାତୀୟ ଜୀବନର ସମସ୍ତ ଅଧୋଗତି ଓ ଅନ୍ଧକାରର ପଙ୍କିଳତା ସେ ଅବଲୋକନ କରିଛନ୍ତି । ଏହି ଅଧୋଗତିର ଭିତ୍ତି ଉପରେ ନୂତନ ଆଦର୍ଶର ସୌଧ ନିର୍ମାଣର ଇଙ୍ଗିତ ଦେବାପାଇଁ ଭାରତବର୍ଷର ଧର୍ମ ଓ ରାଜନୈତିକ ଇତିହାସ ପ୍ରତି କବି ଦୃଷ୍ଟିପାତ କରିଛନ୍ତି ।

ମହାଯାତ୍ରା ସମ୍ପୂର୍ଣ୍ଣ ନୁହେଁ । ଏହାକୁ ସମ୍ପୂର୍ଣ୍ଣ କରିବାର ବାସନା ପୋଷଣ କରି ଥରେ କବି ଗଙ୍ଗାଧର ମେହେରଙ୍କୁ ଲେଖିଥିଲେ—'ମହାଯାତ୍ରାକୁ ମୋର ଶେଷ କରିବାର ଇଚ୍ଛା ଥିଲା । ମାତ୍ର ସରକାରୀ କାର୍ଯ୍ୟ ହେତୁରୁ ଲେଶମାତ୍ର ଅବକାଶ ପାଇବା କଠିନ । ସେଥିରେ ପୁଣି ଶରୀର ପ୍ରାୟ ସଦା ଅସୁସ୍ଥ । ଏହି ହେତୁରୁ ସେ ସଂକଳ୍ପ ପରିତ୍ୟାଗ କରିଅଛି ।"୪୪ କିନ୍ତୁ ଅପୂର୍ଣ୍ଣତା ଫଳରେ ମହାକାବ୍ୟ ରୂପେ ମହାଯାତ୍ରାର ମୌଳିକ ଲକ୍ଷ୍ୟ ଅପୂର୍ଣ୍ଣ ହୋଇ ରହିନାହିଁ । ଏହା ଏକ ସମଗ୍ର ଜାତିର ଜୀବନ କାହାଣୀ । ଜାତୀୟ ଆତ୍ମା ସଦା ବିକାଶଶୀଳ । ପୂର୍ଣ୍ଣତା ଦାନକରି ଅନନ୍ତ ବିକାଶର ମାର୍ଗ ରୁଦ୍ଧ କରିବା ଅସମ୍ଭବ । ଏହି ଧରଣର ମହାକାବ୍ୟ ପୂର୍ଣ୍ଣାଙ୍ଗ ହେବା କପରି ଅସମ୍ଭବ, ଆନିଡ଼ ତାହାର ଏକ ସୁନ୍ଦର ଉଦାହରଣ । ଭର୍ଜିଲ ଏହି କାବ୍ୟ ରଚନାରେ ଦୀର୍ଘ ବାରବର୍ଷ ବିତାଇ ଭାବିଥିଲେ, କାବ୍ୟଟିର ମୂଳ ପରିକଳ୍ପନାରେ କୌଣସି ଭୁଲ ରହି ଯାଇଛି । ଅପୂର୍ଣ୍ଣ କାବ୍ୟଟିକୁ ସେ ନଷ୍ଟକରି ଦେବାକୁ ଚାହିଁଥିଲେ । ସେହିପରି ରାଧାନାଥ ଯଦି ଦୀର୍ଘଜୀବନ ଓ ଅନୁକୂଳ ପରିବେଶ ଲାଭ କରି ମହାଯାତ୍ରାର

ସାତୋଟି ସର୍ଗରେ ଆଉରି କେତେଗୋଟି ସର୍ଗ ଯୋଡ଼ିଥାନ୍ତେ, ତାହାହେଲେ ଏହି ମହାନ୍ କାବ୍ୟ ସୌଧ ହୁଏତ ବହୁତଳ ସମନ୍ୱିତ ହୋଇଥାନ୍ତା, ମାତ୍ର ମୌଳିକ ଲକ୍ଷ୍ୟ ପୂରଣ ଦିଗରେ ଅଧିକ ଅଗ୍ରଗତି କରିଥାନ୍ତା କି ନାହିଁ ସନ୍ଦେହ ।

ମାନବିକ ଆଦର୍ଶ ମହାପ୍ରସ୍ଥାନରେ ପ୍ରଧାନ ସ୍ଥାନ ଗ୍ରହଣ କରିଛି । ଆଦର୍ଶ ମନୁଷ୍ୟତା ତିନୋଟି ଗୁଣ ଉପରେ ନିର୍ଭର କରେ—ଦେଶପ୍ରେମ ବା ଏକ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ ସେବାରେ ଆଗ୍ରହ, ଏକ ଆଦର୍ଶ ସାଧନ ଲାଗି ଆତ୍ମୋତ୍ସର୍ଗ ଭାବନା ଓ ନୈତିକତା । ଏହି ଭାବରେ ଅଟଳ ରହି ଜୀବନକୁ ସଫଳ କରିବା ସହଜ ସୁଖାମୋଦୀ ପକ୍ଷରେ ସମ୍ଭବ ନୁହେଁ । ଜୀବନର ସୀମା, ନଶ୍ୱରତା, ସାଂସାରିକ ସୁଖର ଅନିତ୍ୟତା ବିଷୟରେ ସଚେତନ ମନୁଷ୍ୟହିଁ ଜୀବନର ସାର୍ଥକତା ଲୋଡ଼େ । ପ୍ରଥମ ସର୍ଗରୁ କବି ଏହାର ସୂଚନା ଦେଇଛନ୍ତି । ଯୁଧିଷ୍ଠିରଙ୍କ ଆଖିରେ ମୃତ୍ୟୁର ଚିତ୍ରହିଁ ନାଚିଛି । କାଳଦ୍ୱାରା କବଳିତ ହେବା ପୂର୍ବରୁ ସେ କାଳକୁ ଖୋଜିବାକୁ ଅଗ୍ରସର ହୋଇଛନ୍ତି । ଏହିରୂପେ କାବ୍ୟର ଆଦର୍ଶର ଭୂମିକାକୁ କବି ସ୍ପଷ୍ଟ କରି ଦେଇଛନ୍ତି ।

ଦ୍ୱିତୀୟ ଓ ତୃତୀୟ ସର୍ଗରେ କବି ଯୁଧିଷ୍ଠିରଙ୍କୁ ଭାରତ ଓ ଉତ୍କଳର ପ୍ରାକୃତିକ ଦୃଶ୍ୟ ରାଜି ଦେଖାଇ ଅଛନ୍ତି । ତୀର୍ଥ, ନଗର, ଶୈଳ, କାନ୍ତାର ସମେତ ଭୂମିଖଣ୍ଡର ଗୌରବ ପ୍ରକଟ କରିଛନ୍ତି । ଚତୁର୍ଥ ସର୍ଗରେ ମାନବ ଚରିତ୍ରରେ ଦେବତ୍ୱ ଓ ଦାନବତ୍ୱର ସଂଘର୍ଷର ଚିତ୍ର ଭିତରେ ବ୍ୟକ୍ତି ଚରିତ୍ରର ଉତ୍କର୍ଷ ଓ ଅପକର୍ଷ ଉପରେ କିପରି ଜାତୀୟ ଜୀବନର ଉତ୍କର୍ଷ ଓ ଅପକର୍ଷ ନିର୍ଭର କରେ ତାହାର ସୂଚନା ଦେଇଛନ୍ତି । ଏଠାରେ ମାନବୀୟ ଗୁଣାବଳୀକୁ ଘେନି କବି ଯେପରି ରୂପକମାଳା ସୃଷ୍ଟି କରିଛନ୍ତି, ତାହା ବିଶେଷ ପ୍ରଣିଧାନର ବସ୍ତୁ । ଏହାକୁ ଲକ୍ଷ୍ୟ କରି ମଧୁସୂଦନ ଲେଖିଛନ୍ତି ··· "କୌଣସି କୌଣସି ବର୍ଣ୍ଣନା ପ୍ରାଚୀନ କବି-ମାନଙ୍କର ଉପଯୁକ୍ତ ହେଲେହେଁ କୁସଂସ୍କାର ପରିପୋଷକତା ହେତୁରୁ ଆଧୁନିକ ପ୍ରଶସ୍ତ ବିଶ୍ୱାସର ବିରୋଧୀ ହୋଇଛି ।" ୪୫ ଏହା ଏକ ଆପାତଃ ଦୃଷ୍ଟି । ରୂପକର ରୂପ ନୁହେଁ, ଅନ୍ତର୍ନିହିତ ଆତ୍ମିକ ଭାବବସ୍ତୁହିଁ ଗ୍ରହଣୀୟ । ଯେଉଁ ଭାବ ଓ ରୂପ ବର୍ଣ୍ଣନା ଦ୍ୱାରା ପ୍ରକାଶ କରିବା ସମ୍ଭବ ନୁହେଁ, ରୂପକରେ ତାହା ସ୍ପଷ୍ଟ ହୋଇଅଛି । ସମସ୍ତ ପୌରାଣିକ ପରିଚ୍ଛଦ ଭିତରେ ଆଧୁନିକ ମନ ଓ ମନନର ସତ୍ୟ ଶାଣିତ ଦୃଷ୍ଟି ପ୍ରତିଫଳିତ ହୋଇଛି ।

କାଳ ପ୍ରବାହରେ ଭାରତବର୍ଷର ଧର୍ମ ଓ ସମାଜ ଜୀବନ କଳଙ୍କିତ ହୋଇଯାଇଥିଲା । ପ୍ରାଚୀନ କାଳରେ ଦେଶର ପତନ ବ୍ରାହ୍ମଣମାନଙ୍କର ଅପଶ୍ୱର ଓ ମଧ୍ୟଯୁଗରେ ଭାରତର ପତନ ଇସ୍‌ଲାମ ଶକ୍ତିର ଆକ୍ରମଣ ହେତୁରୁ ଘଟିଥିଲା । ଏହି ଦୁଇ ବିଷୟ ବିରୋଧରେ ବୁଦ୍ଧଦେବ ଓ ସେହି ଧର୍ମାବଲମ୍ବୀଗଣ ; ତଥା ରାଜପୁତ ଜାତି ସଂଗ୍ରାମ କରିଥିଲେ । ମାତ୍ର

ପ୍ରତିକୂଳ ପ୍ରବାହର ବେଗ ଅଧିକ ଥିବାରୁ ଏହି ଉଭୟ ପ୍ରଚେଷ୍ଟା ବ୍ୟର୍ଥ ହୋଇଥିଲା । ତେଣୁ ବୁଦ୍ଧ ବା ପୃଥ୍ୱୀରାଜ ସମସ୍ତଙ୍କୁ କବି ବିୟୋଗାନ୍ତ ନାଟକର ଭୂମିକାରେ ଅବତରଣ କରାଇଛନ୍ତି ।

ମହାଯାତ୍ରା ବୀର ରସର କାବ୍ୟ ନୁହେ । ଏହା ଶାନ୍ତ ଓ କରୁଣ ରସ ପ୍ରଧାନ । ସଂଗ୍ରାମ ପାଇଁ ଉନ୍ମାଦନା ଯେଉଁ ଭୋଗବୃତ୍ତିରୁ ଜନ୍ମନିଏ, ତାହାର ଅଭିବ୍ୟକ୍ତି ମହାଯାତ୍ରାରେ କୌଣସିଠାରେ ଦେଖିବାକୁ ମିଳେନାହିଁ । ଯୁଦ୍ଧର ଯେଉଁ ବର୍ଣ୍ଣନା ପଢ଼ିଲେ ପାଠକ ମନରେ ଜିଘାଂସା ବୃତ୍ତି ଜାଗ୍ରତ ହୁଏ, ମହାଯାତ୍ରାରୁ ତାହା ମିଳେନାହିଁ । ଏହି ବର୍ଣ୍ଣନା ପ୍ରବୃତ୍ତିକ ସଂସ୍କୃତ ନ କରି, ହୃଦବୃତ୍ତିକୁ ସମ୍ମୋହିତ ଓ କରୁଣାର୍ଦ୍ର କରେ । ମାନବ ମର୍ଯ୍ୟାଦାର ଅପମାନ ବିବେକକୁ ଜାଗ୍ରତ କରେ । ସଂଗ୍ରାମ କ୍ଷେତ୍ରରେ ରାଧାନାଥ ଏକ ଆଧ୍ୟାତ୍ମିକ ଶୁଚିତା ପ୍ରତିଷ୍ଠା କରିବାକୁ ଚାହିଁ ଅଛନ୍ତି । ଏହାର ସୁନ୍ଦର ଦୃଷ୍ଟାନ୍ତ ତଳ ପଂକ୍ତିରେ ରହିଅଛି—

"ବିଳାସର କ୍ଷେତ୍ର ନୁହେ ସଂଗ୍ରାମ ଅଗଣା
ତପସ୍ୟାର କ୍ଷେତ୍ର ଏହୁ ତପସ୍ୱୀ କାଂକ୍ଷିତ
ବିପଦର ଯଜ୍ଞବେଦୀ...... ।" ୪୭

ଥରେ ଭର୍ଜିଲଙ୍କ ଯୁଦ୍ଧ ବର୍ଣ୍ଣନା ପଢ଼ି ନେପୋଲିୟନ୍ କହିଥିଲେ, "ଭର୍ଜିଲ ଜଣେ ବିଦ୍ୟାଳୟର ଶିକ୍ଷକ ଭଳି କେବେ ଯୁଦ୍ଧ କ୍ଷେତ୍ରକୁ ନଯାଇ, ସେନା ବାହିନୀ କ'ଣ ଥରେ ବୋଲି ନଦେଖି କଳ୍ପନାରୁ ଯୁଦ୍ଧ ବର୍ଣ୍ଣନା କରିଅଛନ୍ତି ।" ରାଧାନାଥଙ୍କ ବର୍ଣ୍ଣନା ପ୍ରସଙ୍ଗରେ ମଧ୍ୟ ଏହି ଉକ୍ତି ସତ୍ୟ । କବି ଯୋଦ୍ଧାର ଆଖିରେ ଯୁଦ୍ଧ କ୍ଷେତ୍ରକୁ ଦେଖି ନାହାନ୍ତି । ଜଣେ ମାନବ ପ୍ରେମୀ ଶିଳ୍ପୀର ରସ ଦୃଷ୍ଟିରେ ଯୁଦ୍ଧର କଳ୍ପନା କରିଅଛନ୍ତି । ତାଙ୍କର ଯୁଦ୍ଧ ଯାତ୍ରାର ବର୍ଣ୍ଣନା ଆଳଙ୍କାରିକ । ପ୍ରକୃତ ଯୁଦ୍ଧକ୍ଷେତ୍ର ସହିତ ତାହାର କୌଣସି ସମ୍ପର୍କ ନାହିଁ । ତାଙ୍କ ଦୃଷ୍ଟିରେ ଯୁଦ୍ଧ ଯେପରି ଏକ ପ୍ରଳୟଙ୍କରୀ ବନ୍ୟା ବା ବାତ୍ୟା । ଗୋଟିଏ ସଇତାନର ନିର୍ମମ ଧ୍ୱଂସ ଶକ୍ତି—ମନୁଷ୍ୟର ସୃଷ୍ଟିକୁ ଗୋଟିଏ ଫୁତ୍କାରରେ ଉଡ଼ାଇ ଦେବାକୁ ଚାହେଁ—

"ପ୍ରଳୟ ଜୀମୂତ ଯେହ୍ନେ ପୂର୍ଣ୍ଣ ଇରମ୍ମଦେ,
ପ୍ରଭଞ୍ଜନ ପୃଷ୍ଠେନଭେ ବେଗେ ଉଡ଼ିଆସି
ବେନିଆଡ଼ୁ, ବେନି ପରେ ପଡ଼ନ୍ତି ବେନିଏ ।" ୪୭

ଗମ୍ଭୀର ମାନବୀୟ ରସରେ ଯୁଦ୍ଧ ବର୍ଣ୍ଣନା କିପରି କରୁଣ ହୋଇଅଛି ନିମ୍ନ ଚରଣଟି ତାହାର ସୁନ୍ଦର ଉଦାହରଣ—

"ଶୈଳ ଖୋଳେ ଭ୍ରମୁଁ ଭ୍ରମୁଁ ମୃଗୟା ଆଶୟେ
ହରିଣୀ ଶିଶୁକୁ ପଥେ ହର୍ଯକ୍ଷ ଯେସନ
ହାବୋଡ଼ି, କାମୋଡ଼ି ଦନ୍ତେ କ୍ଷୀଣ ପ୍ରାଣ ତାର
ଦଏ ଛାଡ଼ି, ଅକ୍ଷମ ସେ ଶିଶୁର ରକ୍ଷଣେ
ମାସେ ମୃଗୀ ସେହି ଦୃଶ୍ୟ ଗୁଳ୍ମ ତଳେ ଲୁଚି
ଦେଖୁଥାଇ ଥର ଥର ସ୍ୱିନ୍ନ କଳେବରେ
ପୁତ୍ରଙ୍କର ଏହି ଦଶା ଅଦୂରୁ ନରେନ୍ଦ୍ର
ରହିଲେ ଅଦୂରେ ଉଭି କାନ୍ୟକୁବ୍‌ଜ ପତି
ସ୍ତମ୍ଭୀଭୂତେ, ଶସ୍ତ୍ର ହସ୍ତେ, ଲୋତକ ନୟନେ ।" ୪୮

ଏଠାରେ ଯୁଦ୍ଧର ଆଦର୍ଶ ଭୁଲି ହୋଇଯାଏ । ଅନ୍ୟାୟକାରୀର ଦଣ୍ଡ ବିଧାନ ହେଉ, ପତନ ଘଟୁ, ଏ ଚିନ୍ତା କ୍ଷଣକ ଲାଗି ମନରେ ଉଦୟ ହୁଏନାହିଁ । କେବଳ ମାତ୍ର ଯୁଦ୍ଧର ଭୟାବହ ପରିଣତି ଚିନ୍ତା କରି ସ୍ତମ୍ଭିତ ହେଉ । ନୟନ ଲୋତକରେ ପୂର୍ଣ୍ଣ ହୋଇଉଠେ ।

ରାଧାନାଥ ମହାଯାତ୍ରାରେ ସାହିତ୍ୟିକ ମହାକାବ୍ୟର ସଫଳ ପରୀକ୍ଷା କରିଅଛନ୍ତି । ମହାକାବ୍ୟର ଆଦର୍ଶ ମାନବାତ୍ମାର ଗୌରବ ସମୁନ୍ନତି, ତାହା ସେ ରକ୍ଷା କରିଛନ୍ତି ।

"ସଂସାର ବିଷୟ ବିଷେ ଜର ଜର ହୋଇ
ସାରସଙ୍ଗ ପାଶୋରିଣ ସାରିଲୁ ଆୟୁଷ ।" ୪୯

ଯୁଧିଷ୍ଠିରଙ୍କ ଏହି ଆତ୍ମଚିନ୍ତନରେ ଚିର ଜାଗ୍ରତ ମାନବ ବିବେକର ବାଣୀ ପ୍ରକାଶିତ । ମନୁଷ୍ୟର ମହତ୍ତ୍ୱ ସଂଗ୍ରାମ କ୍ଷେତ୍ରରେ କେବଳ ପ୍ରକାଶ ପାଏନାହିଁ; ନିଜ ବ୍ୟକ୍ତିତ୍ୱର ଦୋଷ ଦୁର୍ବଳତା ଉପରେ ବିଜୟ ସାଧନରେ ପ୍ରକାଶିତ ହୁଏ । ବ୍ୟକ୍ତି ଓ ଜାତି ଜୀବନରେ ଏହି ଆଦର୍ଶର ବିକାଶ, ମହାଯାତ୍ରାର ଲକ୍ଷ୍ୟ । (ଯେତେବେଳେ ପରାଭବ ଜୀର୍ଣ୍ଣ ଜାତିର ନୈତିକତା ଭାଙ୍ଗି ପଡ଼ୁଥାଏ । ଜାତୀୟ ଚରିତ୍ର ଶକ୍ତିରେ ଅବିଶ୍ୱାସ ଆସୁଥାଏ । ଜାତିର ଅତୀତ ଜୀବନର ବିଚିତ୍ର ଉତ୍ଥାନପତନର ଛାୟାଚିତ୍ର ଦେଖାଇ ନୂତନ ଶକ୍ତି ଓ ସାହସ ସଂଚାର ଉଦ୍ୟମ ମହାଯାତ୍ରାରେ ହୋଇଅଛି । ମହାଯାତ୍ରା ନବ ଅଭ୍ୟୁଦୟ ଯୁଗର ଆଦର୍ଶବୋଧ ଓ ଜାଗ୍ରତ ଚେତନାର ପ୍ରତୀକ ।)

## ଦରବାର

୧୮୯୭ ଖ୍ରୀଷ୍ଟାବ୍ଦରେ ଉପାଧି ବିତରଣ ଲାଗି ବାରବାଟୀରେ ଅନୁଷ୍ଠିତ ଦରବାରକୁ ଲକ୍ଷ୍ୟକରି କବି, ବଡ଼ଲୋକଙ୍କ ଅଳୀକତା ଦେଖାଇବା ଓ ସେମାନଙ୍କୁ ଶୁଦ୍ଧ ମନୁଷ୍ୟତା ଶିକ୍ଷା ଦେବା ଲାଗି 'ବୟୋସିନ୍ଧୀ ବାଣୀ' ନାମରେ ଏକ ବିଦ୍ରୂପ କବିତା ରଚନା କରିଥିଲେ । ମାତ୍ର ଏହି କବିତାଟିର ବିସ୍ତୃତ ବିଷୟ ଓ ଗମ୍ଭୀର ଭାବପ୍ରତି ଲକ୍ଷ୍ୟରଖି, ନିଜର ସାହିତ୍ୟିକ

ପୁତ୍ର ଶଶିଭୂଷଣଙ୍କ ସୂଚନାକ୍ରମେ ଗ୍ରନ୍ଥାକାରରେ ପ୍ରକାଶ କଲାବେଳେ ଦରବାର ନାମ ଦେଇଥିଲେ । ଏହି ଗ୍ରନ୍ଥଟି ପ୍ରକାଶ ପାଇବାର ଅଳ୍ପକାଳ ପରେ କବି ଜଣେ ବନ୍ଧୁଙ୍କୁ ଲେଖିଥିଲେ, 'ଦରବାର ପଦ୍ୟରେ କବିତାଂଶ ଅତ୍ୟଳ୍ପ ଅଛି । ପ୍ରକୃତ ପକ୍ଷରେ ତାହା କବିତା ନୁହେଁ,ଉପଦେଶ ମାତ୍ର ।'[୫୦] ଏହି ସ୍ୱୀକାରୋକ୍ତିରୁ କବିଙ୍କ ଶିଳ୍ପୀ ମାନସର ରୂପ ସୁନ୍ଦର ଧାରଣା କରିହୁଏ । ରାଧାନାଥଙ୍କ ସମସ୍ତ ଗ୍ରନ୍ଥାବଳୀରେ ଦରବାରର ସ୍ଥାନ ସ୍ୱତନ୍ତ୍ର । କବି ନିଜର ସମସ୍ତ କବିତାରେ ପ୍ରାୟ ଅତୀତରେ କଳ୍ପନାର ସୌଧ ନିର୍ମାଣ କରିଛନ୍ତି । ମାତ୍ର ଦରବାରରେ ବର୍ତ୍ତମାନର ବାସ୍ତବ ଜଗତରେ କଳୁଷ କାଳିମାର ବିଷ ପାନକରି ଭବିଷ୍ୟତ ଲାଗି ଅମୃତର ସନ୍ଧାନ ଦେଇଛନ୍ତି । ଆଧୁନିକ ଓଡ଼ିଆ କାବ୍ୟ ଧାରାରେ ଖୋଜିଲେ, ଦରବାରର ଅନୁରୂପ କୃତି ପ୍ରାୟ ମିଳେନାହିଁ । ସେ ସମୟରେ ଲେଖା ଗୋବିନ୍ଦ ରଥଙ୍କ 'କଟକ ଦର୍ଶନ' ବା ଫକୀର ମୋହନଙ୍କ 'ଉତ୍କଳ ଭ୍ରମଣ'କୁ ଏହା ସହିତ ତୁଳନା କଲେ ସାମ୍ୟ ଅପେକ୍ଷା ବୈଷମ୍ୟ ଅଧିକ ଦେଖାଯାଏ । କଟକ ଦର୍ଶନ ବା ଉତ୍କଳ ଭ୍ରମଣରେ ସାଧାରଣ ସମାଜର ଚିତ୍ର ଅତି ଅଳ୍ପ ଅଛି । ଏସବୁ ବ୍ୟକ୍ତିଗତ ନିନ୍ଦା ବା ପ୍ରଶଂସାରେ ପୂର୍ଣ୍ଣ । ମାତ୍ର ଅତି ଅଳ୍ପ କେତୋଟି ସ୍ଥଳ ବାଦ ଦେଲେ ଦରବାର ଏହାର ଊର୍ଦ୍ଧ୍ୱରେ । ସମକାଳୀନ ସମାଜର ପୃଷ୍ଠ ଭୂମିରେ ମନୁଷ୍ୟର ଅନ୍ତରଲୋକର ନିରାବରଣ ଚିତ୍ର ଏଥିରେ ବିଶଦଭାବରେ ଅଙ୍କିତ ହୋଇଅଛି । ବାହାର ଆଡମ୍ବର ଓ ଅଳୀକ ଗର୍ବର ଆବରଣ ଭିତରେ ଖାଣ୍ଟି ମନୁଷ୍ୟତାକୁ ଚହ୍ନାଇ ଦେବାର ପ୍ରୟାସ ହୋଇଛି ।

ପାଶ୍ଚାତ୍ୟ ଜଗତରେ ରୋମାନ୍‌ମାନେ ସେଟାୟାରର ଉଦ୍‌ଭାବନ କରିଥିବା କଥା ଦାବୀ କରିଥାନ୍ତି । କାରଣ ଗ୍ରୀକମାନଙ୍କୁ ବିଦ୍ରୂପ ରଚନାର ସ୍ୱତନ୍ତ୍ର ରୀତି ଜଣା ନଥିଲା । ମାତ୍ର ହୋମାରଙ୍କଠାରୁ ଆରିଷ୍ଟୋଫାନ୍‌ଙ୍କ ପର୍ଯ୍ୟନ୍ତ ସବୁ ଗ୍ରୀକ କବିଙ୍କ ରଚନାରେ ପ୍ରଚୁର ଭାବରେ ବିଦ୍ରୂପ ବାଣୀ ଦେଖାଯାଏ । ବିଦ୍ରୂପର ବ୍ୟାପକତା ବିଷୟରେ ମଧ୍ୟ ବାଇବେଲରୁ ଯଥେଷ୍ଟ ପ୍ରମାଣ ମିଳିଥାଏ । ଏଇଭାବରେ ଦେଖିଲେ, ବିଦ୍ରୂପ ରଚନା ସାହିତ୍ୟର ଏକ ପ୍ରାଚୀନ କଳା । ସବୁ ଦେଶରେ ସାହିତ୍ୟର ବିକାଶ ଦିନରୁ ଏହା ପରୋକ୍ଷଭାବରେ ପ୍ରକାଶ ପାଇଅଛି । କାବ୍ୟ, ନାଟକ ଗଳ୍ପ ଆଦି ସାହିତ୍ୟର ଯେ କୌଣସି ଧାରାରେ ଏହାର ପ୍ରକାଶ ଦୁର୍ଲଭ ନୁହେଁ ।[୫୧]

କେହି କେହି ମନେ କରନ୍ତି –ଆମ ପ୍ରାଚୀନ ସମାଜରେ ବ୍ୟକ୍ତିର ଅଧିକାର ଯେଉଁ ଜନକଲ୍ୟାଣ ଭାବନା ଜନ୍ମଲାଭ କରି ନଥିବାରୁ ଯଥାର୍ଥରେ ବିଦ୍ରୂପ ରଚନା ଲାଗି ସୁଯୋଗ ନଥିଲା । ଆମ ପ୍ରାଚୀନ ସାହିତ୍ୟରେ ସାଟାୟାରର ସ୍ୱତନ୍ତ୍ର ରୂପ ଦେଖିବାକୁ ମିଳୁ ନଥିବାରୁ ଏହା କେତେକ ପରିମାଣରେ ସତ୍ୟ ମନେହୋଇ ପାରେ । ମାତ୍ର ସ୍ୱତନ୍ତ୍ର ଭାବରେ ବିଦ୍ରୂପ ରଚନାର ରୀତି ନ ଜାଣିଥିଲେ ବି ଗ୍ରୀକ୍‌କବିମାନେ ଯେପରି କାବ୍ୟ ଓ ନାଟକରେ ଏହାର

ବିନିଯୋଗ କରିଛନ୍ତି, ସେଇପରି ଆମ ପୁରାଣ ଓ କାବ୍ୟ ସାହିତ୍ୟରେ ଏହାର ପ୍ରଚୁର ନିଦର୍ଶନ ମିଳେ । ସଂସ୍କୃତ ସାହିତ୍ୟ କଥା ବାଦ୍‌ଦେଇ କେବଳ ପୁରାଣ ଯୁଗର ଓଡ଼ିଆ ସାହିତ୍ୟ ପ୍ରତି ଲକ୍ଷ୍ୟକଲେ, ବହୁ ସୁନ୍ଦର ଦୃଷ୍ଟାନ୍ତ ଦେଖାଯାଏ ।

'ଭେକର ବେଳେ ଅନ୍ନ ନ ଦଅଇ ପାପୀ
ଆଭେକ ବେଳରେ ଅନେକ କରି ଯାଚ ।' ୫୨

ଏହିଭଳି ଉକ୍ତିରେ ବିଦ୍ରୂପ ବାଣୀ ପ୍ରୟୋଗ କରି ଲୋକ ଚରିତ୍ର ଗଠନ ଲାଗି ସାରଳା ଦାସ ଇଙ୍ଗିତ କରିଛନ୍ତି । ଦାଣ୍ଡି ରାମାୟଣରେ ତୀର୍ଥରେ ବ୍ରାହ୍ମଣଙ୍କ ଲୋଭ, କଳିଯୁଗରେ ପ୍ରଜାଙ୍କ ଅନୀତି, ରାଜାଙ୍କ କୁକର୍ମ ବର୍ଣ୍ଣନାରେ ଏହାହିଁ ଦେଖିବାକୁ ମିଳେ । ପୁରାଣ କଳ୍ପନାର ଆଚ୍ଛାଦନ ଭିତରେ ସତ୍ୟର ଶୁଭ୍ର ନିରଞ୍ଜନ ରୂପ ଲୁଚି ରହିଛି ।

ରାଧାନାଥଙ୍କ ଦରବାର ଆମ ପ୍ରାଚୀନ କବିତା ତୁଳନାରେ ଉନବିଂଶ ଶତକର ଇଂରେଜୀ ସାଟାୟାରର ଆଦର୍ଶର ନିକଟବର୍ତ୍ତୀ—ଏଥିରେ ସନ୍ଦେହ ନାହିଁ । ଏହି ଯୁଗରେ କାବ୍ୟ ପ୍ରଗୀତି ପ୍ରଧାନ ହୋଇ ପଡ଼ିଥିଲା । ପ୍ରଗୀତିର ଆଦର୍ଶ କାବ୍ୟ ଓ ନାଟକ ଭଳି ସାଟାୟାରରେ ବିଶେଷ ଭାବରେ ଅନୁଭୂତ ହୋଇଥିଲା । ମନୁଷ୍ୟ ପ୍ରକୃତିର ଦୁର୍ବଳ ଦିଗ, ଯୁଗର ସାମାଜିକ ଦୁର୍ନୀତି, ବା ବ୍ୟକ୍ତି ବିଶେଷଙ୍କ ନିନ୍ଦା ଘେନି କବିମାନେ କେବଳ ସାଟାୟାର ରଚନା କରୁନଥିଲେ । ସେମାନେ ଗୀତି କବି ଭାବରେ ପ୍ରଥମେ ନିଜ ଅନ୍ତରକୁ ଦେଖିଥିଲେ । କବିଙ୍କ ଆଦର୍ଶ, ବିଶ୍ୱାସ, ରୁଚି ବ୍ୟକ୍ତିତ୍ୱ ଏଥିରେ ବିଶେଷରୂପେ ଅଭିବ୍ୟକ୍ତ ହୋଇଥିଲା । ୫୩ ଏହି ଦୃଷ୍ଟିରେ ଦେଖିଲେ, ଦରବାରରେ ରାଧାନାଥଙ୍କ ଅନ୍ତର୍ଜୀବନର ଚିତ୍ର ଯେପରି ସ୍ତରେ ସ୍ତରେ ଉନ୍ମୋଚିତ ହୋଇଅଛି, ଅନ୍ୟତ୍ର ତାହାର ତୁଳନା କ୍ୱଚିତ୍ ମିଳିଥାଏ । କବିଙ୍କ ଆତ୍ମ ବିବୃତ୍ତି ଏଠାରେ ଉଲ୍ଲେଖ ଯୋଗ୍ୟ । ପ୍ରାଚୀନ କବିଙ୍କ ବିନୟ ପ୍ରଦର୍ଶନ ଭଳି ଏହା କାବ୍ୟରେ ଏକ ବିଦଗ୍ଧ ପରମ୍ପରା ନୁହେ । ଆତ୍ମ ଦୈନ୍ୟର ମଧୁର ଆଚ୍ଛାଦନ ଭିତରେ ଆତ୍ମମ୍ଭରିତାର ଗୋପନ ଇଙ୍ଗିତ ଏଥିରୁ ଫୁଟି ଉଠେନାହିଁ । କବିଙ୍କ ଜୀବନର ଆଦର୍ଶ ଓ ବାଣୀ ସାଧନାର ମୌଳିକ ପ୍ରେରଣାର ସଙ୍କେତ ଏଥିରୁ ଫୁଟି ଉଠେ । ସାଧାରଣ ମନୁଷ୍ୟ ମୂକ ଭାବରେ ମନର ସମସ୍ତ ବେଦନା ସହିଯାଏ । ତାହାର କ୍ରନ୍ଦନ ଜଗତ ଶୁଣେନାହିଁ । ମାତ୍ର କବିଙ୍କ ଅନ୍ତରର ବାଣୀ ସମବେଦନାର ଭାବ ସମସ୍ତଙ୍କ ହୃଦୟରେ ଖେଳାଇଦିଏ । ରାଧାନାଥଙ୍କ ଆତ୍ମବିବୃତ୍ତି ଜର୍ମାନ କବି ଗ୍ୟଟେଙ୍କ ଆତ୍ମବିବୃତ୍ତି ଭଳି ଆତ୍ମିକ ପରିବେଦନାରେ କରୁଣାର୍ଦ୍ର । ଏଥିରେ କୌଣସି କୃତ୍ରିମତା ନାହିଁ । କବି, ଗଙ୍ଗାଧର ମେହେରଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ—'ଭାବ ପ୍ରଧାନ ପ୍ରକୃତିର ସୁଖ ଏବଂ ଦୁଃଖର ଅନୁଭବ ଅତି ତୀବ୍ର ।' ସେ ପୁଣି ଦେଖିଥିଲେ, 'ସଂସାରରେ ସୁଖ ଅପେକ୍ଷା ଦୁଃଖ ପରିମାଣ ଅନେକ ଅଧିକ । ସୁତରାଂ ଯେମାନଙ୍କର ପ୍ରକୃତି ଭାବପ୍ରଧାନ ସେମାନେ ପ୍ରାୟଶଃ

ଦୁଃଖୀ ।' ୫୪ ଏଇ ଭାବରେ କବି ଚିର ଦୁଃଖୀ ଥିଲେ । ସଂସାରର ସମସ୍ତ ଦୁଃଖର ଦହନ ଜ୍ୱାଳା ଭୋଗ କରିବାକୁ ଯେପରିକି ଭାଗ୍ୟ ତାଙ୍କୁ ଜଗତକୁ ପଠାଇଥିଲା । ଏହି ଅନୁଭବ ଦରବାରର ପଂକ୍ତିରେ ଜୀବନ୍ତ ହୋଇଅଛି ।

"ହେଉଅଛି ନାହା କେତେ ଝଳମଳ
ତୋଫାନ ଉପର ହେଉଛି ପ୍ରବଳ
ସବୁଠାରୁ ମୁହିଁ ଜଳୁଛି ଅଧିକ
ସବୁଠାରୁ ଯେଣୁ ହାଲୁଛି ଅଧିକ
ତେଣୁ ଆଡ଼ିଓ୍ୱି ସିନା ପକାଉଛି ଦୂର
ନୋହେ ଏହା ଜ୍ଞାନ ଗୁମାନ ଗୁରୁଷ" । ୫୫

ଯେଉଁ କଳୁଷ ଦୂର କରିବା ଲାଗି କବି ବିଦ୍ରୂପବାଣୀ ରଚନା କରିଥାନ୍ତି ତାହା ବାସ୍ତବ ହୋଇ ନଥିଲେ ସାଟାୟାରର୍ ମହତ୍ତ୍ୱ ଖଣ୍ଡିତ ହୋଇଥାଏ । ଏଇ ଦୃଷ୍ଟିରୁ ବିଷୟ ଯେତେ ମହାନ୍ ହୁଏ, ବିଦ୍ରୂପ ବାଣୀ ସେତେ ଉଚ୍ଚ କୋଟୀର ହୋଇଥାଏ । ରୋମ ସମ୍ରାଟଙ୍କ ଦରବାରର ଦୁର୍ନୀତି ଓ ଇଂଲଣ୍ଡର ରେଷ୍ଟୋରେଶନ୍ ଯୁଗର କଳୁଷ ଜୁଭେନାଲ ଓ ଡ୍ରାଇଡ଼େନ୍‌ଙ୍କୁ ଉପାଦାନ ଯୋଗାଇଥିଲା । ୫୬ ଦରବାର ରାଧାନାଥଙ୍କ ସମକାଳୀନ ଅଭିଜାତ ସମାଜର ଏକ ତୀବ୍ର ସମାଲୋଚନା । କବିଙ୍କ ନିଜ କଥାରେ 'ଇଦାନୀନ୍ତନ ବଡ଼ଲୋକମାନଙ୍କର ଅଳୀକ ଓ କ୍ଷଣିକ ଯଶଲୋଲୁପତାର ଚିତ୍ର ।' ୫୭ ଗତ ଶତକରେ ପରାଧୀନତାର ନାଗପାଶରେ ମୃତକଳ୍ପ ଏକ ଜାତିର ଆତ୍ମିକ ଆଦର୍ଶରେ ଯେଉଁ ଭଗ୍ନଦଶା ଦେଖା ଦେଇଥିଲା, ତାହାହିଁ ଦରବାର ଲାଗି ଉପାଦାନ ଯୋଗାଇଥିଲା । ସମାଜର ପ୍ରାଚୀନ ଧର୍ମ ବିଶ୍ୱାସ ଭାଙ୍ଗି ପଡ଼ିଥିଲା, ମାତ୍ର ତାହା ସ୍ଥାନରେ ନବ୍ୟ ମାନବିକତାର ଆଦର୍ଶ ପ୍ରତିଷ୍ଠିତ ହୋଇ ନଥିଲା । କି ସାମାଜିକ ଚଳଣିରେ, କି ଶାସନରେ ସର୍ବତ୍ର ଏହି ବିଫଳତାର କରୁଣ ଛବି ଆଖିରେ ପଡ଼ୁଥିଲା । ଯେଉଁମାନେ ସମାଜର ପୁରୋଭାଗରେ ଅଧିଷ୍ଠିତ ଥିଲେ, ସେମାନଙ୍କ କର୍ମ ଓ ଚିନ୍ତା ଧର୍ମ ସାଧନ ଅଥବା ଲୋକ ପାଳନ ଦିଗରେ ଧାବିତ ହେଉ ନଥିଲା । ଉଚ୍ଚ ଆସନ ଓ ପଦ ଲାଭ ଲାଗି ଉପର ସ୍ତରରେ ଥିବା ଶାସକଦଳଙ୍କୁ ତୋଷାମୋଦ କରିବା, ସେମାନଙ୍କ ତୁଷ୍ଟି ବିଧାନ ନିମନ୍ତେ ନିମ୍ନସ୍ଥ ଜନସାଧାରଣଙ୍କୁ ନିର୍ମମଭାବରେ ଲୁଣ୍ଠନ କରିବା ଥିଲା ଏମାନଙ୍କର ପ୍ରିୟକାର୍ଯ୍ୟ । ଏହି ଚିତ୍ରର ପୃଷ୍ଠପଟରେ ଆମ ଦେଶର ପ୍ରାଚୀନ ଶାସନର ରୂପ, ଧର୍ମର ଆଦର୍ଶ କବି ଦରଦୀ ଦୃଷ୍ଟିରେ ବର୍ଣ୍ଣନା କରିଛନ୍ତି । ଏହା ତାଙ୍କର ପ୍ରାଚୀନ ପ୍ରୀତି ନୁହେ, ଆଧୁନିକ ଜୀବନର ଅସାରତା ଉପଲବ୍ଧିର ପରିପୋଷକ ।

ଦରବାରରେ ରାଧାନାଥ ଆଧୁନିକ ଜୀବନର ଭାଷ୍ୟ ରଚନା କରିଛନ୍ତି । କେତେବେଳେ ବିଦ୍ରୂପର ତୀବ୍ର ସମାଲୋଚନାରେ, ପୁଣି କେତେବେଳେ ଭାବୁକର ଗମ୍ଭୀର ଧ୍ୟାନ ନେତ୍ରରେ [illegible] ବନକୁ ଦେଖିଛନ୍ତି । ଏହି କ୍ଷେତ୍ରରେ ରାଧାନାଥଙ୍କ ଆହରଣ ସୁଦୂର ପ୍ରସାରୀ । ଜର୍ମାନ-

କବି ଗ୍ୟେଟେଙ୍କ ଭଳି ସେ ମନୁଷ୍ୟର ମୋହ ଓ ପ୍ରତାରଣା ପ୍ରତି ଆକ୍ଷେପ କରିଛନ୍ତି, ଇଂରେଜ କବି ପୋପ୍‌ଙ୍କ ଭଳି ସମାଜର ନୈତିକ ଅଧଃପତନରେ ବିଚଳିତ ହୋଇ ଉଚ୍ଚ ନୀତି ଓ ଆଦର୍ଶ ଘେନି ଉପଦେଶ ବାଣୀ ରଚନା କରିଛନ୍ତି, ଡ୍ରାଇଡ଼େନ୍‌ଙ୍କ ପରି କଳୁଷିତ ଶାସକ ଦଳୀଙ୍କୁ ତୀବ୍ର ସମାଲୋଚନା କରିଛନ୍ତି, ବାଇରନ୍‌ଙ୍କ ପରି ଅନ୍ୟକୁ ପରିହାସ କରିବା ସଙ୍ଗେ ସଙ୍ଗେ ନିଜ ଅନ୍ତର ଖୋଲି ଦେଖାଇ ଦେଇଛନ୍ତି। ଅଭ୍ୟାଗୃହୀ ସାମନ୍ତଙ୍କୁ ବାଇରଣ୍ ‘ଶେଷ ବିଗ୍ରହ’ ଦିନ କଥା ଚେତାଇଲାଭଳି, ରାଧାନାଥ ଯମ ଦରବାର ଚିତ୍ର ଦେଖାଇଛନ୍ତି। ସେ ଅନୁଭବ କରୁଥିଲେ—“ପ୍ରତ୍ୟେକ ଲୋକର ଘରେ ମୃତ୍ୟୁ ଶଯ୍ୟାର ଗୋଟିଏ ଭଲ ଚିତ୍ର ରହିବା ଉଚିତ। ପ୍ରତ୍ୟହ ମୃତ୍ୟୁର ସ୍ମରଣ ହେଲେ ଲୋକେ ସହଜରେ ପାପୀହୋଇ ପାରନ୍ତେ ନାହିଁ।” ୬୮ ରାଧାନାଥଙ୍କ ମାନସଲୋକର ପୂର୍ଣ ଚିତ୍ର ଦରବାରରେ ଦେଖିବାକୁ ମିଳେ। ଦରବାର ଏକ ନିର୍ଦ୍ଦିଷ୍ଟ ଯୋଜନାରେ କଳ୍ପିତ ଭଳି ମନେହୁଏ ନାହିଁ। ଏଠାରେ କବି ନିଜ ଜୀବନ ଓ ସମାଜ ଘେନି ଯେପରିକି ଆଳାପ କରିଛନ୍ତି।

ସାର୍ଥକ ବ୍ୟଙ୍ଗ ସାହିତ୍ୟର ରୂପ ବର୍ଣନା କରି ଯଥାର୍ଥରେ କୁହାଯାଇଛି, ‘ଏହା ଲୋକ ଚରିତ୍ରରେ ପରିଦୃଷ୍ଟ ଅସାମଞ୍ଜସ୍ୟର ଆଲେଖ୍ୟ। ପାଠକ ମନରେ ଏହା ଆନନ୍ଦ ଓ ବିରକ୍ତି ଉଭୟ ଜନ୍ମାଇଥାଏ। ପରିହାସର ବ୍ୟଞ୍ଜନା ଓ ସାହିତ୍ୟିକ ଅଭିବ୍ୟକ୍ତି ଏହାର ପ୍ରାଣ। ପରିହାସ ନଥିଲେ, ଏହା ଶୁଷ୍କ, ସାହିତ୍ୟିକ ଅଭିବ୍ୟକ୍ତି ନଥିଲେ, ଗ୍ରାମ୍ୟ ଓ ସାହିତ୍ୟ ପଦବାଚ୍ୟ ହେବାର ଅଯୋଗ୍ୟ ମନେ ହୋଇଥାଏ। ୬୯ ଦରବାରରେ ଶୁଦ୍ଧ ହାସ୍ୟ, ଅବିମିଶ୍ର ଗାଳିବର୍ଷଣ, ଅଭ୍ରାନ୍ତ ପୂର୍ବୋଦ୍ଦିଷ୍ଟ ପ୍ରତି ଲକ୍ଷ୍ୟ କଲେ, ଏହାର ସାର୍ଥକତା ସହଜରେ ଧାରଣା କରାଯାଇ ପାରେ। ଦରବାର କେବଳ ମନୁଷ୍ୟର ବିଫଳତାର ଚିତ୍ରରେ ମଣ୍ଡିତ ନୁହେ, ସାଫଲ୍ୟର ଦୀପ୍ତିରେ ବିଭୂଷିତ। ବିଶେଷତଃ ସବୁ ଅମନୁଷ୍ୟଙ୍କ ଭିତରେ ଆଦର୍ଶ ମନୁଷ୍ୟ ରୂପେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ସେ ଯେପରି ଆବିଷ୍କାର କରିଛନ୍ତି, ସେଥିରେ ଏହା ସ୍ପଷ୍ଟ ହୋଇଛି। ତାଙ୍କୁ ଚିହ୍ନାଇବାକୁ ଯାଇ କବି କହିଛନ୍ତି—

“ଭୋଗ ବିଳାସର କୀଟ ଦୁନିଆର
ଅସାର, ତପସ୍ୱୀ, ତୁମ୍ଭେ ବିଜ୍ଞସାର।” ୭୦

ରାଧାନାଥଙ୍କ ସାହିତ୍ୟର ସ୍ଥାୟୀ ଉପାଦାନ ଦରବାରରେ ବହୁ ପରିମାଣରେ ଅଛି। ମନୁଷ୍ୟର ମହତ୍ତ୍ୱର ଆତ୍ମା ସେ ଏହି କ୍ଷୁଦ୍ର କବିତାଂଶରେ ଆବିଷ୍କାର କରିଛନ୍ତି। (ଏଥିରେ ଅଳଂକୃତ ବର୍ଣନା ନାହିଁ, ତରଳ ରୂପ ସୃଷ୍ଟି ନାହିଁ, ମଧୁର ବଚନ ବିନ୍ୟାସ ନାହିଁ, ଅଛି ବେଦନା ବିକ୍ଷୁବ୍ଧ ଆତ୍ମାର ଦାବଦାହ। ଏହାର ଅଗ୍ନିଗର୍ଭ ବାଣୀର ଭୈରବୀରେ ଆଦର୍ଶ ମାନବିକତାର ସାମ ସଙ୍ଗୀତ ଗୀତ ହୋଇଛି। ଏହା ଉତ୍କଳର ଜାତୀୟ ଜୀବନର

ଗୀତା ।) ଅତୀବ ବ୍ୟବହାରୋପଯୋଗୀ ଉପଦେଶ ବା ଉପଦେଶ ବ୍ୟଞ୍ଜକ ବାକ୍ୟ ପରେ ଅଳଂକୃତ ଏହି କବିତାରେ ମାନବାତ୍ମାର ଜଣେ ଅବିନଶ୍ୱର ବିଜ୍ଞାନୀଙ୍କ ସତ୍ୟ ଶାଣିତ ଦୃଷ୍ଟି ଉଦ୍‌ଭିନ୍ନ ହୋଇଅଛି । ରୂପର ସହଜ ଆକର୍ଷଣ ରାଧାନାଥଙ୍କ ଲେଖନୀକୁ ବହୁ ସ୍ଥାନରେ ଶ୍ରେୟ ଧର୍ମରୁ ବିଚ୍ୟୁତ କରିଅଛି । ମାତ୍ର ମିଥ୍ୟାର ମୋହନ ଆବରଣ ଯେ କବିଙ୍କ ଦୃଷ୍ଟିକୁ ଆଚ୍ଛନ୍ନ କରିନାହିଁ, ଦରବାର ଏହାର ସ୍ପଷ୍ଟ ନିଦର୍ଶନ ।

## କବି ପ୍ରତିଭାର ପରିଣତି

୧୯୦୦ ଖ୍ରୀଷ୍ଟାବ୍ଦରୁ ୧୯୦୩ ପର୍ଯ୍ୟନ୍ତ କବି ସ୍କୁଲରେ ଥିଲେ । ଏହି ସମୟରେ ସେ ନଗେନ୍ଦ୍ରବାଳା ନାମକ ଜଣେ ଶିକ୍ଷିତା ମହିଳାଙ୍କ ସାହଚର୍ଯ୍ୟରେ ଆସିଥିଲେ । ଏହାର କଥିତ ପୂର୍ବରୁ ମହାଯାତ୍ରା, ଦରବାର, ସାବିତ୍ରୀ ଚରିତ ଓ ଦଶରଥ ବିୟୋଗ ଭଳି ନୀତିପୂର୍ଣ୍ଣ କବିତା ରଚନା କରିଥିଲେ । କବିଙ୍କ ଚିତ୍ତ ପାପ ପୁଣ୍ୟର ଜଟିଳ ବିଚାରରେ ଆନ୍ଦୋଳିତ ହୋଇଥିଲା । ଜୀବନ ସନ୍ଧ୍ୟାରେ ଲିଖିତ ଆତ୍ମକଥାରେ କବି ଲେଖିଥିଲେ, 'ପ୍ରଥମରୁ ପାପ ସାହିତ୍ୟର ପରିଚ୍ଛଦରେ ମୋତେ ପ୍ରଲୋଭିତ କଲା ।' ଏକଥା ଯେ କବି ରୁଗ୍‌ଣ ଦେହ ଭଗ୍ନ ମନ ନେଇ ମୃତ୍ୟୁକୁ ଅପେକ୍ଷା କରିଥିଲାବେଳେ କେବଳ ଚିନ୍ତା କରୁଥିଲେ, ତାହା ନୁହେଁ । ଅନ୍ତତଃ କଥା-କାବ୍ୟ ରଚନାର ଶେଷ ପର୍ଯ୍ୟାୟରୁ ଅର୍ଥାତ୍ ପାର୍ବତୀ, ଯଯାତିକେଶରୀ ରଚନା ସମୟରୁ ତାଙ୍କ ମନରେ ଏପରି ଏକ ପ୍ରତିକ୍ରିୟା ଉଦୟ ହୋଇଥିବା ସମ୍ଭବ । ମହାଯାତ୍ରା, ଦରବାର, ସାବିତ୍ରୀ ଚରିତ ଓ ଦଶରଥ ବିୟୋଗ ଆଦିରେ ଏହାର ସଂକେତ ସ୍ପଷ୍ଟ । କ୍ରମଶଃ ତାଙ୍କର ସରସ କବି ହୃଦୟ ଉପଦେଷ୍ଟା, ନୀତିବାଦୀ ଗୁରୁ ହୃଦୟରେ ପରିଣତ ହୋଇଥିଲା । କଥା-କାବ୍ୟର ଯେଉଁ ଆଦର୍ଶ ନେଇ କବି କେଦାର-ଗୌରୀଠାରୁ ଯଯାତିକେଶରୀ ପର୍ଯ୍ୟନ୍ତ, ୧୮୮୫ରୁ ୧୮୯୫ ପର୍ଯ୍ୟନ୍ତ ଜୀବନର ଶ୍ରେଷ୍ଠ ସମୟଟିକ ସାହିତ୍ୟ ସାଧନାରେ ଅତିବାହିତ କରିଥିଲେ ତାହା ଜୀବନର ଏକ ଭ୍ରାନ୍ତ ପଥ ବୋଲି କବିଙ୍କର ଧାରଣା ହୋଇଥିଲା । ଶେଷ ଜୀବନର ଏହି ଉପଲବ୍ଧି ଭିତରେ କି ପରିମାଣରେ ସତ୍ୟ ନିହିତ ଥିଲା, ତାହା କବି ଜୀବନର ପ୍ରାଥମିକ ଆଦର୍ଶ, ଅର୍ଥାତ୍ ବଙ୍ଗଳା କବିତାବଳୀର ଗୀତି କବିତା ଓ ଶେଷ ଜୀବନରେ ରଚିତ ନିବେଦନ, ସତୀ ପ୍ରତି ସତୀଦ୍ରୋହୀ ପତିର ଉକ୍ତି ଆଦି କବିତାରେ ପ୍ରକାଶିତ ଆଦର୍ଶକୁ ତୁଳନାତ୍ମକ ଭାବରେ ବିଚାର କଲେ ସ୍ପଷ୍ଟ କଳନା କରିହୁଏ ।

ପ୍ରଥମତଃ ଦେଖିବା, ରାଧାନାଥ କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟିକ ଆଦର୍ଶ ନେଇ ରଚନା ଆରମ୍ଭ କରିନଥିଲେ । ତେବେ ତାଙ୍କର ଭାବ ପ୍ରବଣ ମନ ଥିଲା, ସରସ କବି ହୃଦୟ ଥିଲା । ସେ ଜଣେ ପଣ୍ଡିତ ବ୍ୟକ୍ତି ଥିଲେ । ପ୍ରାଚୀନ ସଂସ୍କୃତ, ଓଡ଼ିଆ, ଆଧୁନିକ ବଙ୍ଗ ଓ ଇଂରେଜ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ଏହି ଛାତ୍ରାବସ୍ଥା ବେଳେ ବେଳେ ତାଙ୍କୁ ରଚନା ପ୍ରବୃତ୍ତି ଆଡ଼କୁ ନେଇ ଯାଉଥିଲା । ପ୍ରଥମେ ସେ ଅନୁବାଦ ପ୍ରତି

ଆକୃଷ୍ଟ ହୋଇଥିଲେ । ମୁକ୍ତି ଜୀବନର ସୁଖ ଦୁଃଖର ଅନୁଭବ ଯେତେବେଳେ ତାଙ୍କ ହୃଦୟକୁ ଆନ୍ଦୋଳିତ କରୁଥିଲା, ସେତେବେଳେ ସେ ଲେଖନୀ ଚାଳନା କରୁଥିଲେ । ଫଳରେ ସେ ଲେଖୁଥିଲେ ଗୀତି କବିତା, କ୍ଷୁଦ୍ର ସନେଟ୍, ଓଡ୍ ବା ଉଦ୍‌ବୋଧନ କବିତା । ଏସବୁ ସେ ବଙ୍ଗଳାରେ ଲେଖିଥିଲେ । ହଠାତ୍ ଭୂଦେବଙ୍କ ପରାମର୍ଶରେ ସେ ବଙ୍ଗଳା ଲେଖା ଛାଡ଼ିଲେ । ପ୍ରାଚୀନ ପୁରାଣ ବିଷୟକୁ ନିଜ କାବ୍ୟର ଉପାଦାନ ରୂପେ ଗ୍ରହଣ କରିବାରୁ ବିରତ ହେଲେ । ପାଶ୍ଚାତ୍ୟ ଆହରଣ ଓ ନୂତନ ପରିକଳ୍ପନା ଭିତ୍ତିରେ କଥା-କାବ୍ୟ ରଚନାରେ ଧ୍ୟାନ ଦେଲେ । ଏହାର ଆତ୍ମମୁଖୀ ପୂର୍ବ‌ଂ ବିଶ୍ଳେଷଣ କରି ଯାଇଅଛି ।

## ପାଶ୍ଚାତ୍ୟ ଆହରଣର ବ୍ୟର୍ଥତା

ରାଧାନାଥ ପାଶ୍ଚାତ୍ୟ ସାହିତ୍ୟ ଖୁବ୍ ଅନୁଶୀଳନ କରିଥିଲେ । କିନ୍ତୁ ସମକାଳୀନ ପାଶ୍ଚାତ୍ୟ ସାହିତ୍ୟର, ଏପରିକି ଇଂରେଜ ସାହିତ୍ୟର ଅନ୍ତର୍ଗତ ପ୍ରାଣ ପ୍ରବାହର ଧାରାକୁ ଯଦିବା ଠିକ୍‌ରୂପେ ବୁଝିଥିବେ, ତେବେ ସେ ଆଦର୍ଶକୁ ନିଜ ସାହିତ୍ୟରେ ଅନୁସରଣ କରିବାକୁ ଅବସର ପାଇ ନାହାନ୍ତି—ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏଥିଲାଗି ରାଧାନାଥ ମୌଳିକ ଭାବରେ କୌଣସି ନୂତନ ଧାରା ସୃଷ୍ଟି କରିପାରି ନାହାନ୍ତି । ତାଙ୍କ ନିଜ କଥାରେ କହିଲେ, ତାଙ୍କ ପ୍ରତିଭା 'ପୁରାତନରେ ନୂତନତା ଏବଂ ଅନୁକୃତରେ ମୌଳିକତା ପ୍ରତିଫଳିତ' କରିବାରେ ଶେଷ ହୋଇଯାଇଅଛି ।

ଦୀର୍ଘ ବର୍ଣ୍ଣନାତ୍ମକ କଥା-କାବ୍ୟ ରଚନା ଆମ ସାହିତ୍ୟରେ ଏକ ପ୍ରାଚୀନ ପରମ୍ପରା । ପାଶ୍ଚାତ୍ୟ ଆହାରଣ ବଳରେ ରାଧାନାଥ ନିଶ୍ଚୟ ଏହାକୁ ପୁଷ୍ଟ କରିଅଛନ୍ତି । କେତେ ପରିମାଣରେ ସ୍ୱତନ୍ତ୍ର ପ୍ରକୃତି ପ୍ରଦାନ କରିଅଛନ୍ତି । କିନ୍ତୁ, ଆଧୁନିକ ଇଉରୋପୀୟ କାବ୍ୟ କଥା-କାବ୍ୟ ସର୍ବସ୍ୱ ନୁହେଁ । ଲିରିକ୍, ସନେଟ୍, ଓଡ୍, କେତେ ନୂତନ ଧାରଣର ବାଲଡ୍ ଭିତରେ କାବ୍ୟ ସ୍ଥିତିରେ ନୂତନ ଶୈଳୀ ସେ ଦେଶରେ ପ୍ରକାଶ ପାଇଅଛି । ରାଧାନାଥ ପ୍ରତିଭା ଏସମସ୍ତଙ୍କୁ ଆମ ଭାଷାରେ ଫୁଟାଇ ପାରିନାହିଁ ।

ରାଧାନାଥ ଯେପରି ପ୍ରକୃତି, ଦେଶପ୍ରେମ, ପ୍ରାଚୀନ ଇତିହାସ ଓ କିମ୍ବଦନ୍ତୀ ଘେନି କାବ୍ୟ ରଚନା କରିଛନ୍ତି, ସେ କାଳରେ ତାଙ୍କର କିଛିଦିନ ପୂର୍ବରୁ ଇଂରେଜ କବି ସ୍କଟ ସେହି ଧରଣର ଅନେକ କାବ୍ୟ ରଚନା କରିଛନ୍ତି । ସ୍କଟ୍ କିନ୍ତୁ ଯୁଗଧର୍ମ ବୁଝିଥିଲେ । ତେଣୁ ସେ କେବଳ କଥା-କାବ୍ୟ ବା ଗାଥା କାବ୍ୟ ନ ଲେଖି, ରୋମାଞ୍ଚକର ଉପନ୍ୟାସ ରଚନା କଲେ । ସେଥିରେ ସେ ହେଲେ ଇଉରୋପୀୟ ସାହିତ୍ୟରଥୀଙ୍କର ଆଦର୍ଶ । ସ୍କଟ୍‌ଙ୍କ କବିତା ବିଷୟରେ ସମାଲୋଚକ କହନ୍ତି 'ସେ ଏପିକ୍ ଲେଖିଛନ୍ତି ସତ୍ୟ, ମାତ୍ର ସେସବୁ ସମୁନ୍ନତ ଶୈଳୀର ନୁହେଁ । ସେଗୁଡ଼ିକ ନିକୃଷ୍ଟ ଶ୍ରେଣୀର ଏପିକ୍, ବାଲଡ୍ ଏପିକ୍; ତାହାର ଜାତିଗୋତ୍ର ଠିକ୍ ନାହିଁ ।' ୭୧ ମାତ୍ର ତାଙ୍କ ଉପନ୍ୟାସ ସମ୍ବନ୍ଧରେ

ସମସ୍ତେ ପ୍ରଶଂସା ମୁଖର । କାରଣ କଥାସାହିତ୍ୟରେ ଆପଣା ଯୁଗର ଜାଗ୍ରତ ଚେତନାର ଗଭୀର ଦାଗ ସେ ରଖିଯାଇଛନ୍ତି । ଭବିଷ୍ୟତ ଇତିହାସରେ ସାହିତ୍ୟ ଉପରେ ସ୍ଥାୟୀ ପ୍ରଭାବ ପକାଇ ଯାଇଛନ୍ତି । ଇତିହାସର ବିଷୟ ଦେଇ ମୁକ୍ତ କଳ୍ପନା ବଳରେ ଉପନ୍ୟାସ ରଚନା କରିବାରେ ତାଙ୍କ ପ୍ରଭାବ ଇଂଗ୍ଲେ, ଫ୍ରାନ୍ସର ମେରିମେ ଓ ହ୍ୟୁଗୋ, ରୁଷିଆର ଡୁମା, ଆଲେକ୍ସି ଟଲଷ୍ଟୟ ଓ ବଙ୍ଗର ବଙ୍କିମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଅନୁଭୂତ ହୁଏ । ପୁଣି ତାଙ୍କର ଆଦର୍ଶ ଅନୁସରଣ କରି ଏମାନେ ମଧ୍ୟ ପ୍ରଭୂତ ସଫଳତା ଅର୍ଜନ କରିଛନ୍ତି । ମାତ୍ର ରାଧାନାଥଙ୍କ ଆଦର୍ଶ କୌଣସି ପରବର୍ତ୍ତୀ ଲେଖକଙ୍କୁ ଏପରି ସଫଳତା ଆଣି ଦେଇନାହିଁ ।

ଯଥାର୍ଥରେ ଯେଉଁମାନେ ଯୁଗସ୍ରଷ୍ଟା ସେମାନଙ୍କ ସାଫଲ୍ୟ କେବଳ ମାତ୍ର ନିଜ ସୃଷ୍ଟିରୁ ଯେ ମିଳେ ତାହା ନୁହେଁ । ସେମାନେ ପୂର୍ବଦ୍ରଷ୍ଟା । କାଳଜୟୀ ପୂର୍ବଦୃଷ୍ଟି ଦେଇ ସେମାନେ ଯେଉଁ ଜଗତ ସୃଷ୍ଟି କରନ୍ତି, ତାହା ବହୁଦିନ ସ୍ଥାୟୀ ହୁଏ । ଏଇ ଭାବ ପ୍ରଭାବ ଅନୁସରଣ କରି ବହୁ ପରବର୍ତ୍ତୀ ସାଧକ ସିଦ୍ଧିଲାଭ କରନ୍ତି । ଏହି ଦୃଷ୍ଟିରେ ଦେଖିଲେ ଭବିଷ୍ୟତ ଗଠନ ଲାଗି ଯଥେଷ୍ଟ ଉପାଦାନ ଯେପରିକି ରାଧାନାଥଙ୍କ ରଚନାରେ ନଥିଲା । ତାଙ୍କୁ ସମାଲୋଚନା କରି ସତ୍ୟବାଦୀ ଯୁଗ ବଡ଼ ହୋଇଛି । ମାତ୍ର ଅନୁସରଣରେ ପ୍ରତିଭାର ବିକାଶ ଘଟିନାହିଁ । ରାଧାନାଥଙ୍କ ଅନୁସରଣକାରୀ ଚିନ୍ତାମଣି ମହାନ୍ତି ଏଥିର ନିଦର୍ଶନ । ଏକ ସ୍ୱତଃସ୍ଫୂର୍ତ୍ତ ପ୍ରତିଭାର ବିଫଳ ପରିଣତି ତାଙ୍କଠାରେ ଯେପରି ଦେଖାଯାଇଛି ତାହାର ଦୃଷ୍ଟାନ୍ତ ଅନ୍ୟତ୍ର କ୍ୱଚିତ୍ ମିଳିଥାଏ । ଆଦର୍ଶରେ ଭୁଲ ଥିଲେ ବି, ଗତିଧାରା ବିପଥଗାମୀ ହୋଇଥିଲେ ବି, ଉନ୍ନତ ପ୍ରତିଭା, ଧୀଶକ୍ତି, ସର୍ଜନାତ୍ମକ ଆହରଣ ବଳରେ ରାଧାନାଥ ନିଜ କାବ୍ୟ ସମୂହକୁ ପ୍ରତିଷ୍ଠା ଦେଇ ପାରିଛନ୍ତି । କିନ୍ତୁ ଏହି ଧାରା ଅନୁସରଣ କରି ଆଉ କେହି ସଫଳ ହୋଇ ପାରି ନାହାନ୍ତି ।

ଏକ ଦିଗରେ ରାଧାନାଥଙ୍କ କାବ୍ୟ ସାଧନା ଯେପରି ଅପଥରେ ଚାଳିତ ହୋଇଅଛି, ସେହିପରି କବି ଜୀବନର ସ୍ୱତଃସ୍ଫୂର୍ତ୍ତ ପ୍ରାଣଧର୍ମର ସ୍ୱାଭାବିକ ପ୍ରକାଶ ପ୍ରବାହରୁ ବିଚ୍ଛିନ୍ନ ହୋଇ ଗତି କରିଅଛି । ଶେଲି, କୀଟ୍ସ, ଡ୍ରାଇଡନଙ୍କଠାରୁ ଆରମ୍ଭ କରି ସେକାଳର ଅନେକ ସ୍ୱୈରବାଦୀ କବିଙ୍କ କବିତା ସେତେବେଳେ ଯେପରି ଆଦୃତ ହୋଇଥିଲା, ଆଜି ବି ସେହିପରି ଆଦର ଲାଭ କରୁଛି । କାରଣ, ଯୁଗର ଯେଉଁ ଅଶାନ୍ତ, ଉଦ୍‌ବେଳ ଆତ୍ମାର ଦୋଳନ ସେମାନଙ୍କ ହୃଦୟରେ ଦେଖା ଦେଇଥିଲା, ଜୀବନ ଓ କର୍ମଧାରାରେ ଫୁଟିଥିଲା, ତାହାର ସ୍ୱାଭାବିକ ପ୍ରକାଶ ସେମାନଙ୍କ କବିତାରେ ଘଟିଥିଲା । କିନ୍ତୁ ରାଧାନାଥଙ୍କ କାବ୍ୟ ରାଜିରେ ଏହି ଦିଗ ଅତି ଅପୁଷ୍ଟ ଓ ଅସ୍ପଷ୍ଟ । କଳନାଦୀ ଝରଣାର ସଙ୍ଗୀତ କିମ୍ବା ମନ୍ଦ୍ରନାଦୀ ପ୍ରପାତର ଉଚ୍ଛ୍ୱାସ ଉଦଗୀରଣ ରାଧାନାଥଙ୍କ କବିତାରେ କ୍ୱଚିତ୍ ଘଟିଅଛି । ତାହା ଏକ ନିପୁଣ

ହୋଇ, ମାତ୍ର କୃତ୍ରିମ ବାତାବରଣରେ ସୃଷ୍ଟ । ଆହରଣ, ମନନ, ସଂଯୋଜନା ଓ ସୁପରିକଳ୍ପନା ସତ୍ତ୍ୱେ ବି ଜୀବନର ସ୍ୱାଭାବିକ ସୌନ୍ଦର୍ଯ୍ୟ ଓ ପ୍ରାଣଶକ୍ତି ଏଥିରୁ ଖୋଜି ପାଇବା ସମ୍ଭବ ନୁହେଁ । କବିଙ୍କ ବ୍ୟକ୍ତିତ୍ୱ ଓ କାବ୍ୟ ଭିତରେ ସଙ୍ଗତ ଏକାତ୍ମତା ଘଟିନାହିଁ ।)

ରାଧାନାଥ ନରନାରୀଙ୍କ ବିରହ ମିଳନ ଘେନି ଅନେକ ପ୍ରେମକାବ୍ୟ ଲେଖିଛନ୍ତି । କିନ୍ତୁ ପ୍ରେମିକର ମନ, ଆବେଗ ଓ ପ୍ରବଣତା ଯେ କେତେକ ପରିମାଣରେ କବିଙ୍କ ନିକଟରେ ଥିଲା, ତାହାର ବ୍ୟଞ୍ଜନା କାବ୍ୟରୁ କିମ୍ବା କବିଙ୍କ ଜୀବନରୁ ମିଳେ ନାହିଁ । ରାଧାନାଥ ବହୁ ପରିମାଣରେ ନୀତିବାଦୀ, ସମାଜ ଶୃଙ୍ଖଳାର ବଶବର୍ତ୍ତୀ ଓ ପରମ୍ପରାର ଅନୁବର୍ତ୍ତନକାରୀ ଥିଲେ । ମାତ୍ର କାବ୍ୟରେ ସେ ସେହି ରୂପରେ ଆତ୍ମପ୍ରକାଶ କରି ନାହାନ୍ତି । ତାଙ୍କର ନାୟକ ନାୟିକା ଆମ ପରମ୍ପରାରୁ ଗୃହୀତ ହୋଇ ନାହାନ୍ତି । ସେମାନଙ୍କ ପ୍ରେମ ସୀତା ସାବିତ୍ରୀଙ୍କ ପାତିବ୍ରତ୍ୟର ଛାୟାଛବି ନୁହେଁ । ତାହା ଏକ ସ୍ୱତନ୍ତ୍ର ବସ୍ତୁ । ମାତ୍ର ପ୍ରାଣପୂର୍ଣ୍ଣ ଓ ମନୁଷ୍ୟର ସ୍ୱାଭାବିକ ସମାଜ ଧର୍ମରେ ଜୀବନ୍ତ ନୁହେଁ । କେଦାରଗୌରୀ, ଯଯାତିକେଶରୀ, ଉଷା—ସବୁଠି ପ୍ରେମିକ ପ୍ରେମିକା ଏକତ୍ର ହୋଇଛନ୍ତି । ମାତ୍ର ସେମାନେ ନିଷ୍ପ୍ରାଣ । ସେମାନଙ୍କ ଲୀଳା ବିଳାସ ନେପଥ୍ୟର ଏକାନ୍ତ କବି କଳ୍ପନା । ସେଥିରେ ରକ୍ତମାଂସ ଦେହଧାରୀ ନରନାରୀଙ୍କ ବାସ୍ତବ ଜୀବନର ରସଘନ ମୁହୂର୍ତ୍ତର ଅନୁଭୂତିର କାବ୍ୟିକ ରୂପାନ୍ତର ଘଟିନାହିଁ । ଜୀବନରେ ଯେ ପ୍ରେମିକ ନୁହନ୍ତି, କାବ୍ୟରେ ତାଙ୍କ ପକ୍ଷରେ ପ୍ରେମିକ ସୃଷ୍ଟି କରିବା ସମ୍ଭବ ନୁହେଁ । ରାଧାନାଥ ଏହାର ବ୍ୟତିକ୍ରମ ନୁହନ୍ତି ।

ରାଧାନାଥ ଅତୀତର ଧ୍ୟାନ କରୁଥିଲେ । ସତେ ଯେପରି ଅତୀତରେ ବିଚରଣ କରି ତାଙ୍କର ଆତ୍ମା ଶାନ୍ତିଲାଭ କରୁଥିଲା । କି ଆବେଗରେ କବି କହି ନାହାନ୍ତି—

ଅତୀତର ଲୀଳା ଖେଳା ଦେଖି ରଙ୍ଗେ
ଏକୀଭୂତ ହୋଇଯାଏ ତହିଁ ସଙ୍ଗେ ;
ଅତୀତର ଧ୍ୟାନେ ହୋଇ ଏକତାନ
ଅତୀତକୁ ମଣେ ଯେସନେ ବର୍ତ୍ତମାନ । ୭୨

କବି ଓ ଐତିହାସିକଙ୍କ ଦୃଷ୍ଟି ସ୍ୱତନ୍ତ୍ର । (ଯେତେ ଗଭୀର ଭାବରେ ଅଧ୍ୟୟନ କଲେ ବି ଐତିହାସିକ ଅତୀତ ଜୀବନର ପୂର୍ଣ୍ଣ ଚିତ୍ର ଦେବାକୁ ସମର୍ଥ ହୁଅନ୍ତି ନାହିଁ । ତଥ୍ୟ ଯେଉଁଠି ପରାଜୟ ସ୍ୱୀକାର କରେ, ସତ୍ୟ ଯେଉଁଠି ଅପୂର୍ଣ୍ଣ ରହେ, ସେଇଠାରେ କଳ୍ପନାର ଜୟହୁଏ । ସାହିତ୍ୟିକ ବା କବିଙ୍କ ଇତିହାସ ଧ୍ୟାନରେ ସଫଳତା ଏଇଠାରେ । ରାଧାନାଥ କୃତିତ୍ୱ ଏଇ ସଫଳତାର ଅଧିକାରୀ ହୋଇଛନ୍ତି ।)

ନନ୍ଦିକେଶ୍ୱରୀ, ପାର୍ବତୀଠାରୁ ମହାଯାତ୍ରା ପର୍ଯ୍ୟନ୍ତ ବହୁ ଐତିହାସିକ ଯୁଦ୍ଧର ଚିତ୍ର ରାଧାନାଥ ଅଙ୍କନ କରିଛନ୍ତି । ସେଥିରେ ଆମେ ରଥୀ, ସାଦୀ, ପଦାତିଙ୍କ ଅସ୍ତ୍ରର ଝଙ୍କାର

ଶୁଣୁ, ବର୍ମର ଉଜ୍ଜ୍ୱଳ ଆବରଣ ଦେଖୁ ; କର୍ଣ୍ଣର ଝୁଲ୍‌ପୀ, ଗାଲମୋଚ୍ଛଠାରୁ ରଣବାଦ୍ୟର ତାଳେ ତାଳେ ଏହି ବୀରଗଣଙ୍କ ଉଷ୍ଣୀଷରେ କୌଞ୍ଚପକ୍ଷ ଚୂଡ଼ାର ନର୍ତ୍ତନ ପର୍ଯ୍ୟନ୍ତ ଦେଖୁ । ମାତ୍ର ଯଥାର୍ଥରେ ଏହି ବୀର ସୈନିକମାନଙ୍କୁ ପାରିବାରିକ ବା ସାମାଜିକ ଜୀବନରେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଘେନି ଆତ୍ମପ୍ରକାଶ କରିଥିବାର ଦେଖୁ ନାହିଁ । ରାଧାନାଥଙ୍କ ଅଙ୍କିତ ଚରିତ୍ରରେ ରାଜା, ବା ରାଜଅନ୍ତଃପୁରର ନାରୀ କାହାର ଅନ୍ତରଙ୍ଗ ଜୀବନର ଚିତ୍ର ବିକଶିତ ହୋଇନାହିଁ । (ମନେହୁଏ କବି ଇତିହାସରେ ଜୀବନର ଛବି ଅଙ୍କନ ନକରି, ତାହାର ଛାୟାମୂର୍ତ୍ତି ଦେଖାଇଛନ୍ତି । ସେଥିରେ ଇତିହାସର ରଙ୍ଗ ଅଛି, ବର୍ଣ୍ଣବହୁଳତା ଅଛି, ଆଡ଼ମ୍ବରପୂର୍ଣ୍ଣ ସଜ୍ଜା ଅଛି, କିନ୍ତୁ ଜୀବନ ନାହିଁ ଯାହା ସାହିତ୍ୟର ଏକାନ୍ତ କାମ୍ୟ ।)

ରାଧାନାଥଙ୍କ କାବ୍ୟର ଏକ ପ୍ରଧାନ ବିଭବ ପ୍ରକୃତି ଚିତ୍ରଣ । ଏଥିରେ ସ୍ୱାଭାବିକତା ଓ ସୌନ୍ଦର୍ଯ୍ୟ ଅଛି । ସାର୍ବଜନୀନତା ନାହିଁ । ଦେଶ ପ୍ରେମିକ ଦୃଷ୍ଟିରେ ନ ଦେଖିଲେ ବାଲେଶ୍ୱର ବା ପୁରୀର ଜନପଦର ସୌନ୍ଦର୍ଯ୍ୟ ଅନୁଭବ କରିହୁଏ ନାହିଁ । ପୁଣି ଅରଣ୍ୟ ପର୍ବତ, ସନ୍ଧ୍ୟା, ଉଷା ଆଦିର ଯେଉଁ ସାର୍ବଜନୀନ ସାଧାରଣ ବର୍ଣ୍ଣନା ଅଛି, ତାହା ଗତାନୁଗତିକ ପୁନରାବୃତ୍ତିରେ ପୂର୍ଣ୍ଣ । କେବଳ ଜୀବନ ଚିତ୍ରର ପରିପୂରକ ରୂପେହିଁ ତାଙ୍କ ପ୍ରକୃତି ଚିତ୍ରଣର ସାର୍ଥକତା । ଡ଼ଃ କୁଞ୍ଜବିହାରୀ ଯଥାର୍ଥରେ କହିଛନ୍ତି—"କବିଙ୍କ ଗ୍ରନ୍ଥାବଳୀରେ ଜୀବନର ଯାହା କିଛି ଅଭିବ୍ୟକ୍ତି ଘଟିଛି, ତାକୁ ଅମୃତ ସଞ୍ଜୀବନୀ ଦେଇ ବଞ୍ଚାଇଛି ପ୍ରକୃତି । ପ୍ରକୃତି ଚିତ୍ରଣ ହିଁ ତାଙ୍କ କାବ୍ୟ ଏକ ମଧୁସ୍ରାବୀ ମଧୁଚକ୍ର...।" ୬୩

ଯଥାର୍ଥ ଜୀବନର ଅନୁଭବ କବିଙ୍କ ଜୀବନର ଅନ୍ତିମ ଦଶାରେ ହୋଇଥିଲା । ୬୪ ମାତ୍ର ସେତେବେଳକୁ ଏ ଅନୁଭବକୁ କାର୍ଯ୍ୟରେ ଲଗାଇବା ଭଳି ମାନସିକ ସ୍ୱାସ୍ଥ୍ୟ ବା ଶାରୀରିକ ଶକ୍ତି ତାଙ୍କର ନଥିଲା । ମୃତ୍ୟୁର କଠୋର ହସ୍ତ ଅକାଳରେ କବିଙ୍କ ଜୀବନ ଦୀପ ନିର୍ବାପିତ କରିଦେଲା । ତାଙ୍କର କବି ପ୍ରତିଭା ଗୀତି କବିତାର ସ୍ୱଭାବ ସ୍ଫୂର୍ତ୍ତି ଭିତରେ ଯେଉଁ ଅବସ୍ଥାରେ ପ୍ରଥମ ପ୍ରକାଶ ପଥ ଖୋଜି ପାଇଥିଲା, ଠିକ ସେହି ଅବସ୍ଥାରେ ଅନ୍ତିମ ସମାପ୍ତି ହୋଇଗଲା । ଆତ୍ମାର ବିକାଶ ହେଲା ନାହିଁ । କଥା ଓ କାବ୍ୟର ଅପାର ଅରଣ୍ୟରେ ବୁଲି ବୁଲି, ରାଧାନାଥ କାବ୍ୟ ଜଗତର ଉଚ୍ଚ ସିଂହାସନକୁ ଉଠି ପାରିଲେ ନାହିଁ । (ମହାନ୍ ପ୍ରତିଭା, ନିରବଚ୍ଛିନ୍ନ ସାଧନା, ଅସାଧାରଣ ଧୀଶକ୍ତି, ସୁଦୂରପ୍ରସାରୀ ଆହରଣ କ୍ଷମ ମନ, ଭାବପ୍ରବଣ ହୃଦୟ, ଆଦର୍ଶ ମନୁଷ୍ୟତାର ଯୋଗ୍ୟତମ ଅଧିକାରୀ ରାଧାନାଥ ବିପୁଳ ସମ୍ଭାବନା ଘେନି ଓଡ଼ିଆ ସାହିତ୍ୟରେ ଆବିର୍ଭୂତ ହେଲେ । ସେ ଯୁଗର ଦିଗ୍‌ବଳୟକୁ ଆଲୋକିତ, ମାନସ ଭୂମିକୁ ମୁଗ୍ଧ କରି ଯାଇଥିଲେବି, ଯୁଗାତୀତ ଓ କାଳାତୀତ ନିମନ୍ତେ କିଛି ଦେଇ ଯାଇ ପାରିଲେ ନାହିଁ । ରାଧାନାଥ, ଆମ ସାହିତ୍ୟରେ ବିରାଟ ସମ୍ଭାବନା ଓ ବିପୁଳ ବ୍ୟର୍ଥତାର ମୂର୍ତ୍ତି ପ୍ରତିନିଧି ।)

ସପ୍ତମ ଅଧ୍ୟାୟ

## ଫକୀର ମୋହନ ସେନାପତି

( ୧୮୪୩-୧୯୧୮ )

"ପୀଡ଼ାଜନିତ ଯନ୍ତ୍ରଣା ବା ଅନ୍ୟ ପ୍ରକାର ବିପ୍ଳବ ହେତୁରୁ ଚିତ୍ତ ଅବସନ୍ନ ହୋଇ ପଡ଼ିଲେ ଶାନ୍ତି ଓ ଧୈର୍ଯ୍ୟଲାଭନିମନ୍ତେ କବିତା ରଚନା ବା ଗ୍ରନ୍ଥପାଠରେ ମନୋନିବେଶ କରେଁ । ଯାହା କିଛି ଦୃଷ୍ଟିଗୋଚରରେ ଆସେ ବା ଯେଉଁଭାବ ମନରେ ଉଦୟ ହୁଏ, କବିତାକାରରେ ଚିତ୍ର କରି ପକାଏଁ ।" ୧

ଫକୀରମୋହନ

କବି ଜନ୍ମ ହୁଅନ୍ତି । ଜନ୍ମଗତ ପ୍ରତିଭା, ସାଧନା ଓ ଅନୁଶୀଳନ ଦ୍ୱାରା ବିକଶିତ ହୁଏ । ଆମ ଦେଶରେ ପ୍ରାଚୀନ ଓ ମଧ୍ୟଯୁଗର କବିମାନଙ୍କର ଏହାହିଁ ବିଶ୍ୱାସ ଥିଲା । ଆଧୁନିକ ଯୁଗ ପ୍ରବର୍ତ୍ତକ ରାଧାନାଥ ଓ ମଧୁସୂଦନ ଏହିପରି ମତ ପୋଷଣ କରିଛନ୍ତି ବୋଲି ମନେହୁଏ । ଗଭୀର ଅନୁଧ୍ୟାନ ଓ ଅନୁଶୀଳନ ଫଳରେ ସେମାନଙ୍କ କବିତା ରୂପଲାଭ କରିଅଛି । ମାତ୍ର ଫକୀରମୋହନ ପ୍ରତିଭା ବା ବ୍ୟୁତ୍ପତ୍ତି ଦେଇ କବିତା ରଚନା ପ୍ରୟାସ କରି ନାହାନ୍ତି । ଆତ୍ମପ୍ରକାଶର ଏକ ସାଧାରଣ ଓ ସ୍ୱାଭାବିକ ମାଧ୍ୟମ ରୂପେ ସେ କବିତାକୁ ଗ୍ରହଣ କରିଛନ୍ତି । ଏଥିଲାଗି ସେ ବିଶ୍ୱାସ କରିଛନ୍ତି—

> ମୋ ବିଶ୍ୱାସ ଜଗତର କବି ସର୍ବଲୋକ
> କେହି ବା ବିଶେଷ, କେହି ଅଲପ ମାତ୍ରିକ ।" ୨

ଏପରି କଥା କହିବାକୁ ତାଙ୍କ ସମୟରେ ଆଉ କେହି ସାହସ କରି ନାହାନ୍ତି । ଫକୀର-ମୋହନ ଯୁକ୍ତିବଳରେ ନୁହେଁ, ଅନୁଭବରୁ ଏହା କହିଛନ୍ତି । କବିତା ତାଙ୍କର ରୋଗ ଯନ୍ତ୍ରଣା ଓ ବିପଦର ସହଚର ଥିଲା । ଦୁଃଖ, ବିପଦ, ରୋଗ ଯନ୍ତ୍ରଣା ଅଙ୍ଗରେ ନିଭେଇ

ନଥିବା ଲୋକ ଦୁନିଆରେ ବିରଳ । କବିତା ଯଦି ଅଶ୍ରୁର ସାଥୀ ହୁଏ, ତେବେ ମାନବ ମାତ୍ରେହିଁ କବି । ଆପଣା ବେଦନାତୁର ହୃଦୟର ସ୍ୱପ୍ରକାଶହିଁ କବିତା ଓ ଏହି ପ୍ରକାଶ ଶକ୍ତିହିଁ କବିତ୍ୱ ବୋଲି ଗ୍ୟେଟେ ଏକାନ୍ତଭାବେ ବିଶ୍ୱାସ କରୁଥିଲେ । ଫକୀରମୋହନ ଗଦ୍ୟରେ ଧୁରନ୍ଧର ଥିଲେ । ମାତ୍ର ନିଜ ଦୁଃଖପୂର୍ଣ୍ଣ ଜୀବନର ଏକାନ୍ତ ପ୍ରାଣର କଥା, କେବଳ କବିତାରେ କହିହେବା ସମ୍ଭବ ବୋଲି ଆଜୀବନ କବିତାହିଁ ଲେଖିଛନ୍ତି ।

ଫକୀରମୋହନଙ୍କ ସାହିତ୍ୟିକ ଜୀବନ କବିତାରେ ଆରମ୍ଭ ହୋଇଥିଲା । କାବ୍ୟ ରଚନା ସହିତ ନିଜ ଜୀବନର ସମ୍ପର୍କ କେତେ ନିବିଡ଼ ଥିଲା, କି ଅବସ୍ଥାରେ କେଉଁ କବିତା ରଚନା ଲାଗି ସେ ଅନୁପ୍ରେରିତ ହୋଇଥିଲେ, ତାହାର ସୁନ୍ଦର ସଙ୍କେତ ସେ ଆତ୍ମଜୀବନ ଚରିତରେ ଦେଇଛନ୍ତି । କେହି କବି କବିତାରେ ସତ୍ୟ ବା ସୌନ୍ଦର୍ଯ୍ୟ ଖୋଜିଥାନ୍ତି ମାତ୍ର ଫକୀରମୋହନ କବିତାରେ ଯେପରିକି ନିଜ ଜୀବନକୁ ଖୋଜିଛନ୍ତି ।

୧୮୬୪ ଖ୍ରୀଷ୍ଟାବ୍ଦରେ ଏକୋଇଶି ବର୍ଷ ବୟସରେ ସେ ବାଲେଶ୍ୱର ମିସନ୍ ସ୍କୁଲରେ ଶିକ୍ଷକ ହୋଇଥିଲେ । ଜୀବନର ଏହି ଆଦ୍ୟ ସୋପାନରେ କବିତା ରଚନା ତାଙ୍କଠାରେ ଏକ ସ୍ୱାଭାବିକ ପ୍ରବୃତ୍ତି ଥିଲା । ସେତେବେଳେ ବାଲେଶ୍ୱରରେ ତାଙ୍କର ଉଦ୍ୟମରେ 'ବୋଧ ଦାୟିନୀ' ସାମୟିକ ସାହିତ୍ୟ ପତ୍ରିକା ପ୍ରକାଶିତ ହୋଇଥିଲା । ଫକୀର ମୋହନ ଏଥିରେ ଆମୋଦଜନକ କବିତା ଲେଖୁଥିଲେ । ପତ୍ରିକା ପୃଷ୍ଠା ପୂର୍ଣ୍ଣ କରିବା ହୁଏତ ତାଙ୍କ କବିତା ରଚନାର ଏକ କାରଣ ହୋଇପାରେ । ସେ ସମୟରେ ଏହି ପତ୍ରିକାକୁ ରଚନା ଯୋଗାଇବାକୁ ମଧ୍ୟ ରାଧାନାଥ ଓ ମଧୁସୂଦନ ଲେଖନୀ ଧାରଣ କରିଥିଲେ । (୩)

କବି ଯଶ ଆକାଂକ୍ଷା ନେଇ କବିତା ରଚନାର ପ୍ରବଳ ବାସନା ଫକୀରମୋହନଙ୍କର ନଥିଲା । ସେଥିଲାଗି ଗଡ଼ଜାତରେ କର୍ମମୟ ଜୀବନ ଆରମ୍ଭ କରିବା ପରେ କବିତା ଲେଖିବା ବା ଅନ୍ୟ ସାହିତ୍ୟ ସାଧନା ସେ ଛାଡ଼ି ଦେଇଥିଲେ । ଏହାର ସୂଚନା ଦେଇ ଜୀବନ ଚରିତରେ ଲେଖିଛନ୍ତି, "ମୁଁ ବାଲେଶ୍ୱରରୁ ଗୁଲିଆସି, ଯେତେବେଳେ ଗଡ଼ଜାତ-ମାନଙ୍କରେ କର୍ମ କରିବାକୁ ଗଲି, ସେତେବେଳେ ମୋର ସାହିତ୍ୟ ଲେଖା ବନ୍ଦ ହୋଇଗଲା । ଅଠରଶ ବର୍ଷ କାଳ ମୁଁ ଲେଖା ଛାଡ଼ିଦେଲି ।" ୪ ମାତ୍ର ସାହିତ୍ୟ କ୍ଷେତ୍ରରୁ ଚିର ବିଦାୟ ନେବା ତାଙ୍କ ପକ୍ଷରେ ଅସମ୍ଭବ ଥିଲା । ଢେଙ୍କାନାଳରେ ଥିବା ସମୟରେ ୧୮୮୦ ଖ୍ରୀଷ୍ଟାବ୍ଦରେ କବିଙ୍କର ପ୍ରଥମ ଶିଶୁପୁତ୍ରର ମୃତ୍ୟୁ ହେବାରେ ବ୍ୟଥିତ ପତ୍ନୀଙ୍କୁ ସାନ୍ତ୍ୱନା ଦେବାପାଇଁ ରାମାୟଣ ଓ ମହାଭାରତ ଅନୁବାଦ କରିଥିଲେ । ପୁଣି ୧୮୯୪ରେ ନିଜ ପ୍ରିୟତମା ପତ୍ନୀଙ୍କ ଅକାଳ ବିୟୋଗରେ ଆତ୍ମସାନ୍ତ୍ୱନା ପାଇଁ ନିଃସଙ୍ଗ ଜୀବନର ବ୍ୟାକୁଳତା ପ୍ରକାଶ

କରି କବିତା ରଚନା କରିଥିଲେ । ଏହି ପ୍ରସଙ୍ଗ ଉଲ୍ଲେଖ କରି ସେ ଜୀବନ ଚରିତରେ ଲେଖିଛନ୍ତି, "ମୁଁ ଯେ କବିତା ଲେଖିବାକୁ ଶିଖିଛି, ସେଥିରେ ଅନ୍ୟତମ କାରଣ ମୋ ସ୍ତ୍ରୀ । ସେ ମୋ କବିତା ଶୁଣିବାକୁ ବଡ ଭଲ ପାଉଥିଲା । ପ୍ରଥମେ ତାଙ୍କ ମନୋରଞ୍ଜନ ପାଇଁ ମୁଁ କବିତା ଲେଖୁଥିଲି । ତାଙ୍କ ମୃତ୍ୟୁ ପରେ ମୋ ମନର ବ୍ୟାକୁଳତା ନିବାରଣ ନିମନ୍ତେ ମୁଁ କବିତା ଲେଖେଁ । ମୋର ଅଧିକାଂଶ କବିତା ଦାରୁଣ ପୀଡା, ବିପଦ ଓ ମନର ଅସ୍ଥିରତା ସମୟରେ ଲେଖା ।" ୫

ଫକୀରମୋହନଙ୍କ ମୌଳିକ କବିତାବଳୀ ଅନୁଭୂତିର ରସରୁ ସୃଷ୍ଟି । ତାଙ୍କ ହୃଦୟ ବହୁ ବ୍ୟାପକ ଓ ବିଚିତ୍ର ଅନୁଭୂତିରେ ପୂର୍ଣ୍ଣଥିଲା । ଜୀବନରେ ସେ ବହୁ ବିଚିତ୍ର ଅବସ୍ଥାରେ ଗତି କରିଥିବାରୁ ଏହି ବ୍ୟାପକ ଅନୁଭୂତି ଲାଭ କରିବା ତାଙ୍କ ପକ୍ଷରେ ସମ୍ଭବ ଥିଲା । ସେ ଦାରିଦ୍ର୍ୟ କୋଳରେ ବଢିଥିଲେ । ମାତ୍ର ଏକବର୍ଷ ପାଞ୍ଚ ମାସରେ ପିତା ଓ ତାହାର ବର୍ଷକ ପରେ ମାତାଙ୍କୁ ହରାଇଥିଲେ । ସମସ୍ତ ଶୈଶବ ଦାରୁଣ ରୋଗ ଯନ୍ତ୍ରଣାରେ ଜୀବନ ଓ ମୃତ୍ୟୁର ସଂଗ୍ରାମ ଭିତରେ କଟିଥିଲା । ଏହି ସମୟର ଅନୁଭୂତି ବର୍ଣ୍ଣନା କରି ସେ ଲେଖିଛନ୍ତି, "ଜନନୀଙ୍କ ପରଲୋକ ଗମନ ଉତ୍ତାରେ ଗ୍ରହଣୀ, ଅର୍ଶ ପ୍ରଭୃତି ଯନ୍ତ୍ରଣା ଦାୟକ ରୋଗରେ ଶଯ୍ୟାଗତ ହୋଇ ପଡ଼ିଥିଲି । ଠାକୁରମା ଦିବା ନିଶି ମୋ ଶଯ୍ୟା ପାଖରେ ଜଗି ବସିଥାନ୍ତି । ଯେମନ୍ତ ମୃତ୍ୟୁ ମୋହର ଗୋଟିଏ ହାତ ଏବଂ ଠାକୁରମା ଅନ୍ୟ ହାତ ଧରି ଟାଣୁଥାନ୍ତି ।"୬ ଏହି ଅସହାୟ ଶୈଶବର ଏକ କରୁଣ ସ୍ମୃତି ତାଙ୍କ ସାରା ଜୀବନରେ ଜାଗ୍ରତ ଥିଲା ।

ତାଙ୍କର ଯୌବନ ଥିଲା ସଂଘର୍ଷମୟ । ଏକ ଦିଗରେ ପ୍ରତିକୂଳ ପରିବେଶ ଭିତରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରଚାର ପାଇଁ ଉଦ୍ୟମ, ଅନ୍ୟ ଦିଗରେ ଅନ୍ନ ସଂସ୍ଥାନ ପାଇଁ ସ୍କୁଲ ଶିକ୍ଷକଠାରୁ ଗଡଜାତର ଖିଆଲି ରାଜାଙ୍କର ଆଜ୍ଞାବହ ହୋଇ କର୍ମ କରିବା ପର୍ଯ୍ୟନ୍ତ— ସେ ବହୁ ବିଚିତ୍ର ଅନୁଭୂତିର ଅଧିକାରୀ ହୋଇଥିଲେ । ପୁଣି ବାର୍ଦ୍ଧକ୍ୟରେ ଆତ୍ମୀୟ ସ୍ୱଜନଙ୍କ ସେବା ଓ ସାନ୍ନିଧ୍ୟହୀନ ନିଃସଙ୍ଗ ଜୀବନ ଏହି ଅନୁଭୂତିକୁ ମର୍ମେ ମର୍ମେ ଗଭୀର ଭାବରେ ଉପଲବ୍ଧି କରିବାକୁ ଅବସର ଦେଇଥିଲା । ବାଅଷଠି ବର୍ଷ ବୟସରେ ନିଜର ଏହି ନିଃସଙ୍ଗ ଜୀବନର ଅନୁଭୂତି ବର୍ଣ୍ଣନା କରି ଲେଖିଥିଲେ, "ଚିରଦିନ ଏକାକୀ ରହିବା ମୋ ଭାଗ୍ୟ ଲିପିରେ ଲେଖାଅଛି । ବାଲ୍ୟକାଳରେ ପିତୃମାତୃହୀନ ଥିଲି । ଯୌବନରେ ପତ୍ନୀ ବିରହିତ ହୋଇ ଦୂର ଦେଶରେ ଥିଲି । ଏବେ ବାର୍ଦ୍ଧକ୍ୟରେ ସୁଦ୍ଧା ସନ୍ତାନଠାରୁ ବିଚ୍ଛିନ୍ନ ହୋଇ ନିର୍ଜନ ବାସ କରୁଅଛି । ଏକାକୀ ଥିବାରୁ ଚିନ୍ତା କରିବାକୁ ଯଥେଷ୍ଟ ସମୟ ପାଏଁ ।"୭ ଫକୀରମୋହନଙ୍କ କବିତା ଏହି ଅନୁଭୂତି ଓ ଚିନ୍ତାର ବହିଃପ୍ରକାଶ ମାତ୍ର ।

**କାବ୍ୟ ଜଗତ**

ଫକୀରମୋହନଙ୍କ କାବ୍ୟ ଜଗତ ବିପୁଳ ଓ ବିଚିତ୍ର । ଯୌବନର ସ୍ୱପ୍ନ ଓ ବାର୍ଦ୍ଧକ୍ୟର ସତ୍ୟୋପଲବ୍ଧି ଏହାର ଉପଜୀବ୍ୟ । ଅଧିକାଂଶ କବିତା ଜୀବନର ଶେଷ ଭାଗରେ ଲିଖିତ । ତାଙ୍କର ପ୍ରଥମ କବିତା ପୁସ୍ତକ ଉପହାର ଓ ଦ୍ୱିତୀୟ ପୁସ୍ତକ ପୁଷ୍ପମାଳା ଯଥାକ୍ରମେ ୧୮୯୪ ଓ ୯୫ରେ ପ୍ରକାଶିତ ହୋଇଥିଲା । ଏହି ଦୁଇ ସଂଚୟନରେ ତରୁଣ ବୟସର ଲେଖା କେତେକ ଆମୋଦ ଜନକ କବିତା ସହିତ ପତ୍ନୀ ବିରହରେ ଲେଖା ଶୋକଗୀତିଗୁଡ଼ିକ ପ୍ରକାଶ ପାଇଥିଲା । ଏଥିରେ ଥିବା କେତୋଟି ଶିଶୁ କବିତା ଓ ପୌରାଣିକ, ଐତିହାସିକ ଗାଥା ବ୍ୟତୀତ ଅନ୍ୟ ସମସ୍ତ କବିତା ପ୍ରଣୟ ବିଚ୍ଛେଦ ଘଟିତ ରସରେ ପୁଷ୍ଟ । ଏହାର ତେର ବର୍ଷ ପରେ "ଅବସରବାସରେ" ୧୯୦୮ରେ ପ୍ରକାଶିତ ହୋଇଥିଲା । ଗଳ୍ପ ଉପନ୍ୟାସ ରଚନା, ବୌଦ୍ଧାବତାର କାବ୍ୟ ଭଳି ଅନୁକୃତ କାବ୍ୟ ଓ ପୁରାଣସବୁ ଅନୁବାଦ ଭିତରେ ପୀଡ଼ା, ରୋଗଯନ୍ତ୍ରଣା ଓ ଖଣ୍ଡିତ ଅବସର ସମୟରେ ଏହି କ୍ଷୁଦ୍ର କବିତାଗୁଡ଼ିକ ରଚିତ ହୋଇଥିଲା । ଶାରୀରିକ ପୀଡ଼ା ଓ ଅବସର ଜୀବନ ଏହି କବିତା ରଚନା ଲାଗି ପ୍ରେରଣା ଯୋଗାଇଥିଲେ ବି, ଓଡ଼ିଆ ଭାଷାରେ ମୂଳୋପଯୋଗୀ ସୁକୁମାର ସାହିତ୍ୟର ଅଭାବ ଲକ୍ଷ୍ୟକରି କବି ନିଜର କ୍ଷୁଦ୍ର କବିତାବଳୀ ରଚନାରେ ଅଭିନିବିଷ୍ଟ ହୋଇଥିଲେ । ଏହାର ପାଠକ ରୂପେ କବି ସମଗ୍ର ସମାଜର ରୂପ ଆଖି ଆଗରେ ରଖିଥିଲେ । କବିତା ସମୂହର ବିଷୟବସ୍ତୁ ଯେପରି ସମସ୍ତଙ୍କ ମନକୁ ଛୁଇଁବ, ସଂଚୟନ ଯେପରି ବିଷୟ ଚୟନରେ ବିଚିତ୍ର ଓ ବିଭବ ପୂର୍ଣ୍ଣ ହେବ, ସେଥିପ୍ରତି ତାଙ୍କର ଦୃଷ୍ଟି ସଦା ପ୍ରସାରିତ ଥିଲା । 'ଅବସରବାସରେ' ମୁଖବନ୍ଧରେ ସେ ଲେଖିଥିଲେ, "ଏଥିରେ ଦାର୍ଶନିକ, ଐତିହାସିକ, ପୌରାଣିକ ଜୀବନଚରିତ, ମନସ୍ତତ୍ତ୍ୱ ସମ୍ବନ୍ଧୀୟ ଏବଂ ସାମାଜିକ ପ୍ରସଙ୍ଗର କେତେଗୁଡ଼ିଏ କବିତା ସଂଗୃହୀତ ହୋଇଅଛି । ଅଳ୍ପ ବୟସ୍କ ବାଳକ ବାଳିକାମାନଙ୍କ ଚିତ୍ତ ବିନୋଦନ ଅଥଚ ଉପଦେଶ ପୂର୍ଣ୍ଣ କେତେଗୁଡ଼ିଏ କବିତା ମଧ୍ୟ ସନ୍ନିବେଶିତ କରିବାକୁ ତ୍ରୁଟି କରିନାହିଁ । ଏଥିକୁ କି ଧର୍ମ ପିପାସୁ ପରିଣତ ବୟସ୍କ ଲୋକ, କି କାବ୍ୟାମୋଦୀ ଶିକ୍ଷିତ ଯୁବକ କି ତରଳ ମତି ଆମୋଦପ୍ରିୟ ବାଳକ ବାଳିକା, ସର୍ବ ଶ୍ରେଣୀ ସ୍ୱୀୟ ପାଠୋପଯୋଗୀ କବିତା ଏଥିରୁ ପ୍ରାପ୍ତହେବେ ବୋଲି ମୁଁ ଆଶାକରେଁ । ଏଥିରେ ଧର୍ମନୀତି ସମ୍ବନ୍ଧୀୟ କେତେଗୁଡ଼ିଏ କବିତା ଥିଲେ ମଧ୍ୟ, ସେ ସମସ୍ତ ସର୍ବବାଦୀ ସମ୍ମତ ଅଟେ । ଏଥିକୁ କି ହିନ୍ଦୁ, କି ମୁସଲମାନ, କି ଖ୍ରୀଷ୍ଟିୟାନ କାହାର ପକ୍ଷରେ ପାଠ ବିଷୟରେ ଆପତ୍ତି ଥିବାର କାରଣାଭାବ ।"[୮] 'ପୂଜା ଫୁଲ' 'ଧୂଳି' ଓ 'ପ୍ରାର୍ଥନା ସଙ୍ଗୀତ' କବିଙ୍କ ଅନ୍ତିମ ବୟସର ରଚନା । କବିଙ୍କର ଗଭୀର ଈଶ୍ୱର ବିଶ୍ୱାସ ଓ ଆଧ୍ୟାତ୍ମିକ ଭାବରାଜି ଏଥିରେ ପ୍ରକାଶିତ ହୋଇଛି । 'ଉତ୍କଳ ଭ୍ରମଣଂ' ଏକ କୌତୁକ କାବ୍ୟ ।

ବିଷୟଗତ ବୈଚିତ୍ର୍ୟ ଧାରଣା ଦେବା ଲାଗି 'ଅବସରବାସରେ' କବିତାବଳୀକୁ ନିମ୍ନ ଢଙ୍ଗରେ ସାତଗୋଟି ଅଧ୍ୟାୟରେ ବିଭକ୍ତ କରାଯାଇଛି, ଯଥା—ଭଗବାନ, ବ୍ୟକ୍ତି ବିଶେଷ, ସ୍ଥାନ ବିଶେଷ, ପ୍ରାକୃତିକ ବସ୍ତୁ, ମାନବ ଜୀବନ, ଜରା ଓ ମୃତ୍ୟୁ, ବିବିଧ। ଏହି ଶ୍ରେଣୀ କରଣ ପୂର୍ଣ୍ଣାଙ୍ଗ ମନେହୁଏ ନାହିଁ। ରଚନା ଢଙ୍ଗ ପ୍ରତି ଦୃଷ୍ଟି ରଖି ସମସ୍ତ କବିତାକୁ ନିମ୍ନ ଢଙ୍ଗରେ ବିଚାର କରାଯାଇ ପାରେ। ଯଥା—କୌତୁକ କାବ୍ୟ—ଉତ୍କଳ ଭ୍ରମଣଂ; ପ୍ରେମ ଓ ଶୋକଗୀତି, ରୂପକ କବିତା, ପୌରାଣିକ ଓ ଐତିହାସିକ ଗାଥା, ପ୍ରକୃତି ଚିତ୍ର, ଶିଶୁ କବିତା, ଅନୁବାଦ ଓ ବୌଦ୍ଧାବତାର କାବ୍ୟ ※।

### କୌତୁକ-କାବ୍ୟ 'ଉତ୍କଳ ଭ୍ରମଣଂ'

ସମସ୍ତ କାବ୍ୟଟି ଆଧୁନିକ ପାଶ୍ଚାତ୍ୟ ରୀତିର ବିଦ୍ରୂପ ବା ପରିହାସ ମୂଳକ ରଚନା ନୁହେଁ। ବ୍ୟକ୍ତି ବିଶେଷର ନିନ୍ଦା ବା ପ୍ରଶଂସା ଏଥିରେ ଅତି ପ୍ରଚ୍ଛନ୍ନ ଭାବରେ କରା ଯାଇଥାଏ। ମାତ୍ର ଫକୀରମୋହନ ଅତି ଖୋଲାଖୋଲି ଭାବରେ ନାମଧାମ ପର୍ଯ୍ୟନ୍ତ ଉଲ୍ଲେଖ କରିଛନ୍ତି। ସାହିତ୍ୟ ସାଧକ, ନେତା, ବ୍ରାହ୍ମଣ, ବୈଦ୍ୟ, ମଠ ମହନ୍ତ ଏକୁକେଟେଡ୍ ବାବୁଙ୍କଠାରୁ ପାଟଣା ମାଆର ମୂର୍ତ୍ତି ପର୍ଯ୍ୟନ୍ତ ଏଠାରେ ସ୍ଥାନ ପାଇଛି। ୧୮୯୨ ଖ୍ରୀଷ୍ଟାବ୍ଦରେ 'ଉତ୍କଳ ଭ୍ରମଣଂ' ପ୍ରଥମେ ପ୍ରକାଶ ପାଇବା ବେଳକୁ ରାଧାନାଥଙ୍କ ମହାଯାତ୍ରାର ଅଂଶ ବିଶେଷ ଉତ୍କଳ ପ୍ରଭାରେ ପ୍ରକାଶ ପାଇଥିଲା। ଦରବାର ପ୍ରକାଶ ପାଇ ନଥିଲା। ମହାଯାତ୍ରାରେ ରାଧାନାଥ ସେ ସମୟରେ ଓଡ଼ିଆ କାବ୍ୟରେ ମହାରାଜା ରାମଚନ୍ଦ୍ର ଭଞ୍ଜ ଓ ସୁଢ଼ଳ ଦେବଙ୍କ ସ୍ତୁତିଗାନ ପ୍ରତ୍ୟକ୍ଷ ଭାବରେ କରିଥିଲେ। ଫକୀରମୋହନ ପ୍ରଥମେ ବ୍ୟାପକ ଭାବରେ ଏହି ରୀତିରେ ସମଗ୍ର ଜାତୀୟ ଜୀବନରେ ପ୍ରତିଷ୍ଠିତ ବିଶିଷ୍ଟ ଲୋକଙ୍କ ନାମ ଓ ଗୁଣ କବିତାର କୌତୁକ କଳା ଭିତରେ ପ୍ରକାଶ କଲେ। ସେ ଏହି କାବ୍ୟ ରଚନାର ଉଦ୍ଦେଶ୍ୟ ବର୍ଣ୍ଣନା କରି ଆତ୍ମଜୀବନୀରେ ଲେଖିଛନ୍ତି—'ହଠାତ୍ ମୋ ମନରେ ଉଦୟ ହେଲା, ବର୍ତ୍ତମାନ ଉତ୍କଳରେ ଯେତେ ସାହିତ୍ୟକ ଓ ପ୍ରଧାନ ଲୋକ ଅଛନ୍ତି ସେମାନଙ୍କ ନାମ ସାହିତ୍ୟ ମଧ୍ୟରେ ଲିଖିତ ରହିବା ଉଚିତ। ପରେ ମନେକଲି, କେବଳ ନାମମାଳା ଗୁନ୍ଥି ରଖିଲେ ଲୋକେ ପଢ଼ିବାକୁ ସୁଖ ପାଇବେ ନାହିଁ। ନାମ ସହିତ ସେମାନଙ୍କ ଗୁଣାବଳୀ ଲିପିବଦ୍ଧ କରିବା ପାଇଁ ମୋର ଇଚ୍ଛା ହେଲା।' ୯

---

※ ଏହି ଶ୍ରେଣୀକରଣ ବ୍ୟାପକ ବିଷୟ ଦିଗରୁ ପୂର୍ଣ୍ଣାଙ୍ଗ ନୁହେଁ। ମାତ୍ର କବିଙ୍କ ଦେଶ-ପ୍ରୀତି ଓ ଜାତୀୟତା, ଦାର୍ଶନିକ ଦୃଷ୍ଟିକୋଣ, ସମାଜ ଚିନ୍ତା ମୂଳକ କବିତାବଳୀ ଏହି ପ୍ରବନ୍ଧର ପ୍ରଥମ ଭାଗରେ ଆଲୋଚିତ ହୋଇଥିବାରୁ ସୂଚିତ ଢଙ୍ଗ ଗୃହୀତ ହୋଇଛି। ଅନୁବାଦ ଓ ବୌଦ୍ଧାବତାର କାବ୍ୟ ପରିଶିଷ୍ଟରେ ଆଲୋଚିତ ହୋଇଛି।

ଏଥିରେ କବିଙ୍କ ବ୍ୟକ୍ତିତ୍ୱ ଉଜ୍ଜ୍ୱଳ ବର୍ଣ୍ଣରେ ଚିତ୍ରିତ ହୋଇଛି । ତାଙ୍କର ଜୀବନରେ ସେ ଯେଉଁ ସଂସ୍କାର ସୃଷ୍ଟି କରୁଥିଲେ, ତାଙ୍କର ସାହିତ୍ୟର ଯେଉଁ ବିକାଶ ସେ କଳ୍ପନା କରୁଥିଲେ ତାହାର ଅତି ସ୍ପଷ୍ଟ ଚିତ୍ର ଏଥିରେ ଅଙ୍କନ କରିଛନ୍ତି । ନିଜ ଆଶା ଓ ଅଭିପ୍ରାୟର ଆଦର୍ଶରେ ସମସ୍ତଙ୍କୁ ଗୃହୀତ କରି ନେବାର ପ୍ରବଳ ଆଗ୍ରହ ଏହି କବିତାରେ ସର୍ବତ୍ର ପ୍ରକାଶ ପାଇଅଛି । କୌଣସି ବ୍ୟକ୍ତି ବିଶେଷଙ୍କ ନିନ୍ଦା ବା ପ୍ରଶଂସା କଲା ବେଳେ, ସାଧାରଣତଃ ଆମ ମନରେ ବ୍ୟକ୍ତିଗତ ସମ୍ପର୍କର ଭାବ ପରିସ୍ଫୁଟ ହୋଇପଡ଼େ । ମାତ୍ର ଫକୀରମୋହନ ତତ୍କାଳୀନ ଓଡ଼ିଶାର ପ୍ରଧାନ ବ୍ୟକ୍ତିମାନଙ୍କ ସହିତ ବିଦ୍ୟମାନ ନିଜର ବ୍ୟକ୍ତିଗତ ଅନୁଭୂତି ସ୍ତରରେ ଏହି କବିତା ରଚନା କରିଥିଲେ ମଧ୍ୟ ଏହାର ଆଦର୍ଶ ସଙ୍କୁଚିତ ହୋଇ ଯାଇନାହିଁ । ବ୍ୟକ୍ତିଗତ ନିନ୍ଦା ବା ପ୍ରଶଂସା ଏହାର ଧର୍ମ ନୁହେଁ । ସର୍ବବାଦୀ ସମ୍ମତ ଉଚ୍ଚ ଜାତୀୟ ପୀଠରୁ ଜାତୀୟ ଜୀବନରେ ପ୍ରତିଷ୍ଠିତ ବ୍ୟକ୍ତି ବିଶେଷଙ୍କର ଗୁଣ ଓ କର୍ମ କବି ବିଶ୍ଳେଷଣ କରିଛନ୍ତି । ଏହା ଗଠନାତ୍ମକ । ଜାତି ଗଠନରେ ନିଜର ଆଦର୍ଶ ଯେଉଁଠି ପୁଷ୍ଟ ହେବାର ଦେଖିଛନ୍ତି, ତାକୁ କବି ସ୍ୱାଗତ କରିଛନ୍ତି ; ଯେଉଁଠି କ୍ଷୁଣ୍ଣ ହେବାର ଦେଖିଛନ୍ତି, ତାକୁ ସମାଲୋଚନା କରିଛନ୍ତି । ଏହାର ଭିତରେ ଅନୁନୟ, ଅନୁରୋଧ, ଅଭିଶାପ ଓ ଉଦ୍‌ବୋଧନ ବାଣୀରେ କବି, ଦ୍ରଷ୍ଟା, ସଂସ୍କାରକ ଓ ସାଧକ ଫକୀରମୋହନ ମୂର୍ତ୍ତିମନ୍ତ ହୋଇ ଦିଶୁଛନ୍ତି ।

'ଉତ୍କଳ ଭ୍ରମଣଂ' କୌଣସି ନିର୍ଦ୍ଦିଷ୍ଟ କାବ୍ୟିକ ପରିକଳ୍ପନା ଘେନି ଗଠିତ ନୁହେଁ । ଏଥିରେ ଗଳ୍ପାଂଶ ନାହିଁ, ବିଷୟ ବସ୍ତୁର ପରିବେଷଣରେ ନାଟକୀୟତା ନାହିଁ, ମାତ୍ର ବାସ୍ତବ ଅଧ୍ୟୟନ ରହିଅଛି । ସମାଜ ଜୀବନକୁ ଓ ବ୍ୟକ୍ତି ବିଶେଷଙ୍କୁ ନିଜର ବାସ୍ତବ ସନ୍ଧାନୀ ଦୃଷ୍ଟିରେ କବି ଦେଖିଅଛନ୍ତି । କବିଙ୍କ ବର୍ଣ୍ଣନାରେ ରସିକତା ଅଛି, କିନ୍ତୁ ଅଳୀକତା ନାହିଁ । ଦେଶ, ସମାଜ ଓ ବ୍ୟକ୍ତି ବିଶେଷଙ୍କୁ ଘେନି କବି ଯେପରିକି ମନଖୋଲି ଆଳାପ କରିଛନ୍ତି । ଏଥିରେ କବିଙ୍କ କଣ୍ଠ ଅଭିମାନୀ । ସତ୍ୟ ଅନୁରୋଧରେ କବି ଅପ୍ରିୟ କଥା କହିବାକୁ କୁଣ୍ଠା ବୋଧ କରି ନାହାନ୍ତି । ଏହାର ସୂଚନା ଦେଇ ପ୍ରଥମରୁ କହିଛନ୍ତି—

'କେ ହସିବ, କେ ରାଗିବ ବାହି ପଡିସାରି,
କେହି ଦେବ ଗାଳି କରି ମନ ଉଣା ଭାରି ।' ୧୦

କବିଙ୍କ ଜୀବନ କାଳରେ ଏହା ବିଶେଷ ଜନ ପ୍ରିୟତା ଅର୍ଜନ କରି, ଏକାଧିକ ସଂସ୍କରଣରେ ପ୍ରକାଶିତ ହୋଇଥିଲା । କବିଙ୍କ ଦେହାନ୍ତ ପରେ ତାଙ୍କର ପୁତ୍ର ମୋହିନୀ

ମୋହନ ଏହାର ଏକ ସଂସ୍କରଣ ସମ୍ପାଦନା କରିଥିଲେ *। ଏହି ଜନପ୍ରିୟତାର ଏକାଧିକ କାରଣ ନିର୍ଣ୍ଣୟ କରାଯାଇ ପାରେ। ପ୍ରଥମତଃ ଏହାର ଭାଷା ଏକାନ୍ତ ସରଳ, ଲୋକଙ୍କ କଥିତ ଭାଷାର ନିକଟବର୍ତ୍ତୀ ଥିଲା। ଦ୍ୱିତୀୟରେ ଜାତୀୟ ଜୀବନରେ ପ୍ରତିଷ୍ଠିତ ମହାନ୍ ବ୍ୟକ୍ତିଙ୍କ ଚରିତ ଓ ଆଦର୍ଶର ଚିତ୍ର ସମସ୍ତଙ୍କୁ ଆକର୍ଷଣ କରିବା ସ୍ୱାଭାବିକ ଥିଲା। ପୁଣି ସର୍ବୋପରି ଏଥିରେ କବିଙ୍କ ସରସ ବ୍ୟକ୍ତିତ୍ୱ ଅନୁରଂଜିତ ହୋଇଥିଲା। ଠିକ୍ ଫକୀରମୋହନଙ୍କ ରଚନା ରୀତି ଅନୁସରଣରେ ଏହି ପୁସ୍ତକର ପ୍ରଶଂସା କରି ଜଣେ ପାଠକ ସେ ସମୟରେ ନିଜର ଯେଉଁ ମତ ବ୍ୟକ୍ତ କରିଛନ୍ତି, ସେଥିରେ ଏହି ଜନ ପ୍ରିୟତାର କାରଣ ସୁସ୍ପଷ୍ଟ ପ୍ରକାଶ ପାଇଛି।

'ପଢ଼ିଲି ପଢ଼ିଲି ମୁହିଁ ଉତ୍କଳ ଭ୍ରମଣ
ଓଡ଼ିଆରେ ବହି ଖଣ୍ଡେ ଏକା ଯୁକ୍ତି ଗଣ।
. . .  . . .  . . .
କବିତା ସରଳ ଲୋକ ଏଥି ନାହିଁ ଭୁଲ
କ୍ୟାରକ୍‌ଟର ଷ୍କେଚ୍ କରିଅଛ ସେ ଅତୁଳ।
ଠାଏ ଠାଏ ସ୍ଥାନ ଦେଖି ଦେଇଅଛ ଲିଚ୍ଛ
ଦେବଲୋକ ହୋଇ କିଏ ମର୍ତ୍ତେ ଓହ୍ଲାଇଛି।
ଯାହାକୁ ଲେଖିଛ ଦେଇ ଫିନିସିଂ ଟଚ୍
ସାଧ୍ୟକାର କହିଦେବ ଏଥି ଅଛି ଖଚ। ୧୧"

## ପ୍ରେମ ଓ ଶୋକଗୀତି

ନରନାରୀଙ୍କ ସହଜ ସମ୍ପର୍କକୁ ଧର୍ମ ଓ ଦର୍ଶନର ନାନା ଆବରଣ ଆଚ୍ଛାଦନ ଭିତରେ ଅଥବା ଆଲଙ୍କାରିକ ବର୍ଣ୍ଣନା ଛଟାରେ ଘୋଡ଼ାଇ ପ୍ରାଚୀନ ଓ ମଧ୍ୟ ଯୁଗର କବିମାନେ ଆମ କବିତାରେ ପ୍ରକାଶ କରିଥିଲେ। ରାଧାନାଥ କଳ୍ପିତ ପରିବର୍ତ୍ତିତ ରୂପରେ କାଳ୍ପନିକ ନାୟକ ନାୟିକାଙ୍କର କଳନା ପ୍ରସୂତ ପ୍ରେମ ଚିତ୍ର ପ୍ରଦାନ କରିଅଛନ୍ତି। ମାତ୍ର ଫକୀରମୋହନଙ୍କ ପ୍ରେମ କବିତା ଓଡ଼ିଆ ସାହିତ୍ୟରେ ଏକ ସମ୍ପୂର୍ଣ୍ଣ ନୂତନ ବସ୍ତୁ। ଏଥିରେ ହୃଦୟ ବିନିମୟର ଚିତ୍ର ବ୍ୟକ୍ତିଗତ ଅନୁଭୂତିରୁ ସେ ପ୍ରକାଶ କରିଅଛନ୍ତି। ନିଜ ଜୀବନରେ ଘଟିତ ପ୍ରଣୟ ବିଚ୍ଛେଦର ଏହି ଅନୁଭୂତି ନିରାବରଣ ଭାବରେ ପ୍ରକାଶକରି,

---

* ୧୯୨୫ରେ ମୋହିନୀ ମୋହନ ଉତ୍କଳ ଭ୍ରମଣର ଚତୁର୍ଥ ସଂସ୍କରଣ ପ୍ରକାଶ କରିଥିଲେ। ଏଥିରେ କବିଙ୍କ ମୂଳ କବିତାରେ ଯେପରି ପରିବର୍ତ୍ତନ କରାଯାଇଥିଲା ତାକୁ ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ କହିଛନ୍ତି, 'ଏହି କାବ୍ୟଟିର ଯୌବନ ଉପରେ ବାର୍ଦ୍ଧକ୍ୟର ସ୍ତର, କୌତୁକ ଉପରେ ବିମୃଷ୍ୟକାରିତାର ଆଚ୍ଛାଦନ ପଡ଼ି ଯାଇଛି ବୋଲି ବେଶ ବୁଝାଯିବ।'

ଫକୀରମୋହନ କେବଳ କାବ୍ୟର ବିଷୟ ବସ୍ତୁରେ ନୂତନତା ଆଣିଛନ୍ତି, ତାହା ନୁହେ । ଆମର ସାମାଜିକ ଚିନ୍ତାରେ ପ୍ରଣୟ ଚେତନାର ନୂତନ ଦୃଷ୍ଟିକୋଣ ଫିଟାଇଛନ୍ତି ।

ସୁସ୍ଥ ସମାଜରେ କେବଳ ସ୍ୱଭାବ ସୁନ୍ଦର ସ୍ୱଚ୍ଛ ପ୍ରେମଧାରା ପ୍ରକାଶପାଏ । ଏହା ମନୁଷ୍ୟର ହୃଦୟକୁ ମହାନ୍ କରେ, ଚିନ୍ତା ଓ ଭାବନାକୁ କୋମଳ ଓ ସର୍ଜନକ୍ଷମ କରେ । ଏହି ପ୍ରେମ କବିତା ଓ କଳା ସୃଷ୍ଟିରେ ଶାଶ୍ୱତ ପ୍ରେରଣା ଜାଗ୍ରତ କରେ । ପ୍ରାଚୀନ ଓ ମଧ୍ୟଯୁଗର ଭାରତୀୟ ସମାଜ ଆଦର୍ଶଗ୍ରସ୍ତ ଓ ନାନା ଅହେତୁକ ବିଧି ନିଷେଧର ବନ୍ଧନରେ ସଂକୁଚିତ ଓ ରୁଗ୍‌ଣ ଥିବାରୁ ଏହି ଧରଣର ପ୍ରେମଚିତ୍ର ଭାରତୀୟ ସାହିତ୍ୟରେ କ୍ୱଚିତ୍ ଦେଖିବାକୁ ମିଳେ । ମାତ୍ର ଏହି ପ୍ରେମର ସରସତା, ଜୀବନଶକ୍ତି ଓ ଆଦର୍ଶ ପ୍ରଭାବରେ ଆଧୁନିକ ଇଉରୋପୀୟ ସମାଜ ଓ ଜୀବନ ପରିଚାଳିତ । ବିଶେଷତଃ ରୋମାଣ୍ଟିକ ଓ ଭିକ୍‌ଟୋରିଆ ଯୁଗର ଇଂରେଜ କବିମାନେ ନିଜ ଜୀବନର ପ୍ରଣୟ ଅନୁଭୂତି ବର୍ଣ୍ଣନା କରି ଅମର କବିତାବଳୀ ରଚନା କରିଯାଇଛନ୍ତି । ସେହି ଭାବ ପ୍ରଭାବରେ ଆଧୁନିକ ଓଡ଼ିଆ କବିତାରେ ପ୍ରଣୟର ସ୍ୱଚ୍ଛନ୍ଦ ଚିତ୍ର ଏବେ ପ୍ରକଟିତ ହେଉଅଛି । କିନ୍ତୁ ଆଦ୍ୟ ଅଭ୍ୟୁଦୟ ଯୁଗରେ କେବଳ ଫକୀରମୋହନଙ୍କଠାରେହିଁ ଏହା ଦେଖିବାକୁ ମିଳେ । ଫକୀରମୋହନଙ୍କ ପ୍ରେମ କବିତାର ସ୍ୱରୂପ ଧାରଣାପାଇଁ ଜୀବନରେ ପ୍ରେମର ଗତି ଓ ପ୍ରକୃତି କଳନା କରିବା ଉଚିତ ।

ସବୁ ଯୁଗରେ ଓ ସମାଜରେ ନରନାରୀଙ୍କ ପ୍ରଣୟର ସ୍ୱରୂପ ବିଶ୍ଳେଷଣ କରି ଫରାସୀ ଦାର୍ଶନିକ ଷ୍ଟେଣ୍ଡାଲ ପ୍ରେମକୁ ଅନୁରାଗାତ୍ମକ, ବୋଧ୍ୟଗତ, ଦେହଗତ ଓ ପରିକଳ୍ପିତ— ଏହି ଚାରିଭାଗରେ ବିଭକ୍ତ କରି ଅଛନ୍ତି । 'ଦେହଗତ ପ୍ରେମ ସବୁଠାରୁ ପ୍ରାଚୀନ । ଏହା ମନୁଷ୍ୟ ସମାଜର ଜନ୍ମ ଓ ବିକାଶ ନିୟନ୍ତ୍ରଣ କରେ । 'ବୋଧ୍ୟଗତ' ପ୍ରେମ ଅଳସ ମୁହୂର୍ତ୍ତର ଭାବନାରୁ ଜାତ । ସମାଜରେ ଧନିକ ଓ ଅଭିଜାତ ଶ୍ରେଣୀରେ ଦେଖିବାକୁ ମିଳୁଥିବା ଅସାମାଜିକ ପ୍ରେମ ଏହି ଶ୍ରେଣୀର ଅନ୍ତର୍ଗତ । ନାନା ଶ୍ରେଣୀ ଓ ଜାତିରେ ବିଭକ୍ତ ସମାଜରେ ପରିକଳ୍ପିତ ପ୍ରେମ ସମାଜ ଶୃଂଖଳା ରକ୍ଷାରେ ସାହାଯ୍ୟ କରେ । ବିବାହ ଓ ସାମାଜିକତା ପ୍ରତିଷ୍ଠା ଏହି ପ୍ରେମର ମୂଳ ଓ ଶେଷ କଥା । ମାତ୍ର ଅନୁରାଗାତ୍ମକ ପ୍ରେମରେ ହୃଦୟର ବିନିମୟ ଘଟେ । ପ୍ରଣୟୀ ଓ ପ୍ରଣୟିନୀଙ୍କ ମାନସିକ ଭାବଗତ ଆକର୍ଷଣରୁ ଏହି ପ୍ରେମର ଜନ୍ମ । ପାଶ୍ଚାତ୍ୟ ସଂସ୍କୃତିର ମାନବ ସଭ୍ୟତାକୁ ଏହା ଏକ ବଡ଼ ଦାନ । ଏହା ଯଥାର୍ଥ ପ୍ରଣୟର ସ୍ୱାଭାବିକ ସ୍ଥିତି । ପ୍ରାଚୀନ ଗ୍ରୀସ୍, ରୋମ ବା ପ୍ରାଚ୍ୟ ଦେଶରେ ଯଦି ଏହି ଅନୁରାଗାତ୍ମକ ପ୍ରେମ ପ୍ରକାଶ ପାଉଥିଲା, ତେବେ ତାକୁ ଏକ ଚିତ୍ତ ବିକୃତି ବୋଲି ମନେ କରାଯାଉଥିଲା ।

ବିରହିତ ହୃଦୟର ବ୍ୟାକୁଳତା ଶାନ୍ତ ପାଇଁ ଫକୀରମୋହନ ପ୍ରେମଗୀତି ରଚନା କରିଥିଲେ । ଏଗୁଡ଼ିକ କରୁଣ, ସ୍ୱଚ୍ଛ, ସ୍ୱତଃସ୍ଫୂର୍ତ୍ତ । ଭାବ ସାରଲ୍ୟ ଏହାର ଧର୍ମ ।

ବିରହିତ ଏକକ ହୃଦୟର ସ୍ୱଗତ ଚିନ୍ତା ଏହାର ଉପଜୀବ୍ୟ । ସ୍ମୃତି ଏହାର ପ୍ରାଣ । ସ୍ମୃତିରେ ବାସ୍ତବତାର ଚିତ୍ର ଜୀବନ୍ତ । କବିଙ୍କ ପ୍ରଣୟିନୀଙ୍କ ସାନ୍ନିଧ୍ୟ, ସ୍ୱଭାବ, କାର୍ଯ୍ୟ ଓ ଚିନ୍ତାର ସ୍ୱରୂପ ଏହି କବିତାରୁ ସ୍ପଷ୍ଟଭାବରେ ମିଳେ । କେତେବେଳେ ଉପାସନା ମନ୍ଦିରରେ ତାଙ୍କର ଭକ୍ତି ବିହ୍ୱଳ ଅଶ୍ରୁଳ ଆଖି ଦେଖୁଁ, କେତେବେଳେ ଅବା ସ୍ୱାମୀ ସୋହାଗରେ ଲଜ୍ଜାବତୀ ବଧୂ, ଅଥବା ସ୍ୱାମୀ ଦୁଃଖରେ ସମବ୍ୟଥିନୀ ପ୍ରଣୟବତୀ ରୂପରେ ତାଙ୍କ ହୃଦୟର ଉଚ୍ଛ୍ୱାସ ଅନୁଭବ କରୁଁ ।

"ଉପାସନା ବେଳେ ହୋଇ ଭକ୍ତିରେ ବିହ୍ୱଳ
ବେନି ନେତ୍ରୁ ବହି ଯାଉଥାଏ ଅଶ୍ରୁଜଳ ।

କେତେ ଲାଜ ପାଇଯାଅ ଦେଲେ ଫୁଲ ହାରେ ;
ନାହିଁ ନାହିଁ କରି ବାନ୍ଧିଦିଅ ମୋ ଗଳାରେ ।
ମନେ ପଡେ ଲାଜ ମିଶା ସେ ହାସ୍ୟ ମାଧୁରୀ
ଏତେ ଜାଣିଥିଲେ ଦେଖିଥାନ୍ତି ନେତ୍ର ପୂରି । ୧୪

ମୋ ନେତ୍ରରେ ଦେଖେ ଯେବେ ଜଳ
ନୟନ ତା କରେ ଛଳ ଛଳ ।" ୧୫

କବିଙ୍କ ହୃଦୟର ଏହି ଅନୁରାଗ ବିମୂର୍ତ୍ତ ନୁହେଁ, ଆଦର୍ଶ ଗ୍ରସ୍ତ ନୁହେ, ପାରମ୍ପରିକ ନୁହେ, କେବଳ ବାଣୀର ଉଚ୍ଛ୍ୱାସରେ ଫେନିଳ ବା ଅଳଂକୃତ ନୁହେଁ । ସୁଖରେ, ଦୁଃଖରେ, ଦୈନନ୍ଦିନ ଜୀବନର କ୍ରିୟା କଳାପରେ, କ୍ଷଣିକ ମିଳନରେ ଦୀର୍ଘ ବିଚ୍ଛେଦରେ ଅନୁରାଗର ସମସ୍ତ ଦିଗ ଏଥିରେ ପ୍ରକଟିତ । ସଂସାର ଦ୍ୱୈତ ହୃଦୟ ବିନିମୟର ଚିତ୍ର ପ୍ରକାଶିତ ହୋଇଛି । ଏଥିରେ ଚପଳ କଳ୍ପନା ନାହିଁ, ତରଳ ରୂପ ସ୍ତୁତି ନାହିଁ, ତାରୁଣ୍ୟର ରକ୍ତ ପ୍ରତି ରକ୍ତର ଆକର୍ଷଣ ଜନିତ ଉନ୍ମତ୍ତତା ନାହିଁ । ଏହି କବିତାରେ ସୁସ୍ଥ ସାମାଜିକ ଚିନ୍ତା ଓ ଆଧ୍ୟାତ୍ମିକ ଆଦର୍ଶ ପ୍ରକଟିତ । ପ୍ରେମିକା କବିଙ୍କ ପତ୍ନୀ । ପାରିବାରିକ ଜୀବନର ପବିତ୍ରତା, ଶାନ୍ତି, ଶାଳୀନତା ଭିତରେ ସେ ପ୍ରଣୟିନୀଙ୍କୁ ଲାଭ କରିଛନ୍ତି ।

"ଅଶାନ୍ତ କାଳର ଶାନ୍ତି ଦୁଃଖରେ ଦୁଃଖିନୀ
ବିପଦରେ ମନ୍ତ୍ରୀ ସୁଖେ ଚିତ୍ତ ବିନୋଦିନୀ
ପ୍ରିୟ ଶିଷ୍ୟା ଲୀଳାବତୀ
ପବିତ୍ରା ଧାର୍ମିକା ସତୀ ।" ୧୬

ପ୍ରଣୟିନୀଙ୍କ ସୁଖ ସ୍ମୃତି ସହିତ କବି ପାରିବାରିକ ଜୀବନର ଆଦର୍ଶ ନିଜର ଗାର୍ଢ ଅନୁଭୂତିରୁ ବର୍ଣ୍ଣନା କରିଛନ୍ତି ।

"ଚକୁଆ ଚକୋଇ ପରି ଥିଲୁ ଦୁଇଜଣ
ଏକକୁ ଆରେକ କରି ଆତ୍ମ ସମର୍ପଣ
ସୁଖେ ଦୁଃଖେ ହୋଇ ସାହା
ସ୍ୱର୍ଗ ସୁଖ ମଣି ଆହା
କୋଡ଼ିଏ ବରଷ କାଳ ଗଲା କାଳ ପରି ।" ୧୭

ଦେହ ନଶ୍ୱର, ମାତ୍ର ଆତ୍ମା ଅବିନଶ୍ୱର । ଏହି ଦାର୍ଶନିକ ଭାବ କବିଙ୍କ ସନ୍ତପ୍ତ ହୃଦୟରେ ସାନ୍ତ୍ୱନା ଦେଇଛି । ପାର୍ଥିବ ବିଚ୍ଛେଦ ସ୍ୱର୍ଗୀୟ ମିଳନରେ ପରିଣତ ହେବ ବୋଲି କବି ଆଶା ପୋଷଣ କରିଛନ୍ତି ।

"ରହିଲି ଯେ ପୁଷ୍ପ ଗୋଟି—ଯାବତ ଜୀବନ
ଭୂପତିତ ପୁଷ୍ପ ପାଇଁ କରିବ ରୋଦନ ।
ଯେ କାଳେ ସେ ପୁଷ୍ପ ହେବ ଭୂତଳେ ପତିତ
ଦୁଇଟି କୁସୁମ ପୁଣି ହେବେ ସମ୍ମିଳିତ ।" ୧୮

ପ୍ରଣୟିନୀଙ୍କୁ ସ୍ଥୂଳ ଶରୀରରେ କବି ଧ୍ୟାନ କରି ନାହାନ୍ତି । ସୂକ୍ଷ୍ମ ଆନନ୍ଦମୟ, ଅମୃତମୟ ରୂପରେ ତାଙ୍କୁ କଳ୍ପନା କରିଛନ୍ତି ।

"ସେ କି ଥିଲା ମୋର ତପସ୍ୟାର ଫଳ ଆନନ୍ଦ ଉତ୍ସବ ସିନ୍ଧୁ
ସେ କି ଥିଲା ମୋର ହୃଦୟ ଆକାଶ ଶାରଦ ପୂର୍ଣ୍ଣିମା ଇନ୍ଦୁ,
ସେ କି ଥିଲା ମୋର ସନ୍ତାପହାରିଣୀ ମୃତ୍ୟୁ ସଞ୍ଜୀବନୀ ଗୀତ
ଜୀବନ ସଙ୍ଗୀତେ ଥିଲା କି ମୂର୍ଚ୍ଛନା ଜୀବନ ଚରିତେ ନୀତି ।" ୧୯

ରୂପର ଧାରଣା ଯେତେବେଳେ ରୂପାତୀତ ହୋଇଯାଏ, ସେତେବେଳେ ରୂପକର ଆବଶ୍ୟକ ହୁଏ । ପ୍ରଣୟିନୀଙ୍କର ରୂପହୀନ, ଅଶରୀର ଆଦର୍ଶମୟ ମୂର୍ତ୍ତିକୁ ଏକ କ୍ଷୁଦ୍ର ତାରା ରୂପେ କଳ୍ପନା କରିଛନ୍ତି । ବିଶାଳ ଆକାଶରେ ଏହି ତାରକାର ସ୍ନିଗ୍ଧ ମଧୁର ରୂପର ପ୍ରାଣ ସ୍ପର୍ଶ ଅନୁଭବ କରିଛନ୍ତି । ଏହି ତାରକା ଯେତେବେଳେ ଅସ୍ତ ହୋଇ ଯାଇଛି ତାହାର ଶୂନ୍ୟତା ଅତି ନିବିଡ଼ ଭାବେ ଅନୁଭବ କରିଛନ୍ତି । ୨୦ ସମସ୍ତ ଦାର୍ଶନିକ ଯୁକ୍ତି, ମାନସିକ ତନ୍ମୟତା ଭିତରେ କବିଙ୍କ ବାସ୍ତବ ଦୃଷ୍ଟି ପ୍ରକାଶିତ ହୋଇଛି । ବିଚ୍ଛେଦକୁ ସେ ବିଚ୍ଛେଦରୂପେ, ମୃତ୍ୟୁକୁ ସେ ମୃତ୍ୟୁ ବୋଲି ଗ୍ରହଣ କରିଛନ୍ତି । ନିଜ ମନୋବେଦନାର ପରିସମାପ୍ତି ପାଇଁ ଏହି ସତ୍ୟୋପଲବ୍ଧି ତାଙ୍କୁ ସାହାଯ୍ୟ କରିଛି । ମନୁଷ୍ୟର ଜୀବନ କାମନା ବହୁଳ, ବହୁ ଆଘାତରେ ବିକ୍ଷୁବ୍ଧ । ଅତୃପ୍ତି ଓ ଅବସାଦରେହିଁ ଏହାର ସ୍ୱାଭାବିକ ପରିଣତି । କବିଙ୍କ ଭାଷାରେ—

ସୌନ୍ଦର୍ଯ୍ୟର ତୃଷା ପ୍ରଣୟ ପିପାସା ତୃପ୍ତ ହୋଇଅଛି କାହିଁ
ସଫଳ କାମନା ସନ୍ତୃପ୍ତ ବାସନା ଜଗତେ ମିଳଇ ନାହିଁ ।" ୨୧

ଯେଉଁ କରୁଣ ରସର ଅଭିବ୍ୟକ୍ତି କବିଙ୍କ ପ୍ରେମଗୀତିଗୁଡ଼ିକରେ ଦେଖୁ, ସେହି କରୁଣ ରସର ଅଭିବ୍ୟକ୍ତି ଶୋକଗୀତିରେ ପ୍ରକାଶିତ ହୋଇଅଛି । ଏଥିରେ ତାଙ୍କ ପ୍ରାଣ ସାଙ୍କଜନୀନ ଓ ଜାତୀୟ ଜୀବନର ଶୋକରେ ଅଶ୍ରୁମୋଚନ କରିଅଛି । ଏହି ଶୋକର ଗମ୍ଭୀର ଓ ବହୁମୁଖୀ ଉଚ୍ଛ୍ୱାସ କବିଙ୍କ ଚିନ୍ତାର ସକଳ ଦିଗକୁ ସ୍ପର୍ଶ କରିଅଛି । କବି ନିଜେ ନିଜ ଅଧୀର ମନ ସହିତ ବାର୍ତ୍ତାଳାପ କରିଛନ୍ତି । ଏଥିରେ ନଶ୍ୱର ଶରୀର ଓ ଅମର ଆତ୍ମାର ଧାରଣା କେବଳ ହୃଦୟର ଶାନ୍ତି ଲାଗି ସେ କରିନାହାନ୍ତି । ମୃତ୍ୟୁର ବିଚ୍ଛେଦଜନିତ ସଂଶୟ, ଅସ୍ଥିରତା ଓ ଅଧୀରତାରୁ ମୁକ୍ତ ହୋଇ ମନୁଷ୍ୟର ମନ ନୂତନ ଭବିଷ୍ୟ ଗଠନ ଲାଗି ଯେପରି ଦୃଢ଼ ବିଶ୍ୱାସ ଲାଭ କରି ପାରିବ, ଜୀବନରେ କାର୍ଯ୍ୟକାରୀ ନୀତି ସ୍ଥିର କରି ପାରିବ —ସେଥିପ୍ରତି କବି ଦୃଷ୍ଟି ଦେଇଛନ୍ତି । ଏହି ଶୋକଗୀତିଗୁଡ଼ିକରେ ମୃତ ବ୍ୟକ୍ତିଙ୍କ ଆଦର୍ଶ, ଗୁଣ ଓ କର୍ମ ବିଶ୍ଳେଷିତ ହୋଇଛି । ମହତ୍ ପୁରୁଷଗଣଙ୍କ ଆଦର୍ଶର ବିକାଶ, କର୍ମଧାରାର ବିସ୍ତାର ଲାଗି କବି ବ୍ୟାକୁଳତା ପ୍ରକାଶ କରିଛନ୍ତି । ରାଧାନାଥ, ମଧୁସୂଦନଙ୍କ ବିୟୋଗରେ ରଚିତ କବିତାରେ ସେମାନଙ୍କ ଜୀବନର ଆଦର୍ଶ, ସାହିତ୍ୟ ସାଧନାରେ ନିଷ୍ଠା ଓ ରୁଚିକୁ କବି ଶ୍ରଦ୍ଧାର ସହିତ ସ୍ମରଣ କରିଛନ୍ତି ।

## ରୂପକ କବିତାରେ ମନୁଷ୍ୟ ଜୀବନର ଚିତ୍ର

ଫକୀରମୋହନ ରୂପକ କବିତାଗୁଡ଼ିକରେ ମନୁଷ୍ୟ ଜୀବନର ଅନ୍ତରଙ୍ଗ ଚିତ୍ର ପ୍ରଦାନ କରିଛନ୍ତି । ମରୁଭୂମିର ଉତ୍ତପ୍ତତା, ଆକାଶର ଶୂନ୍ୟତା, ସୂର୍ଯ୍ୟଙ୍କ ଉଦୟାସ୍ତର ଛବି ସେ ମନୁଷ୍ୟ-ଠାରେ ଦେଖିଛନ୍ତି । ମନୁଷ୍ୟର ଅନ୍ତର ଓ ଜୀବନ କବିଙ୍କଠାରେ ଏକ ଚିତ୍ରପଟ ରୂପେ ପ୍ରତିଭାତ ହୋଇଅଛି । ଏଠାରେ ଏକ ସରସ କବି ହୃଦୟ ଓ ଦାର୍ଶନିକ ସନ୍ଧାନୀ ମନ ଏକତ୍ର ଆତ୍ମପ୍ରକାଶ କରିଅଛି । କବି ଦୃଷ୍ଟିରେ ସେ ଆକାଶରେ ଚନ୍ଦ୍ର, ତାରକାର ଖେଳା, ଭ୍ରମମାନ ଚଳମେଘର ଶୋଭା ଦେଖିଅଛନ୍ତି । ମାତ୍ର ତାଙ୍କର ଦାର୍ଶନିକ ଧ୍ୟାନ ଦୃଷ୍ଟିରେ ଅନନ୍ତ କାଳର ଗତିରେ ମନୁଷ୍ୟ ଜୀବନର ଚିତ୍ରପଟ ଭାସି ଉଠିଅଛି । ମହାଶୂନ୍ୟକୁ ଅନନ୍ତ କାକ, କଳା ମେଘକୁ ଅକାଳ ମରଣ, ଧୂମକେତୁକୁ ଅହଂକାରୀ ପାଷାଣ୍ଡ ବ୍ୟକ୍ତି ବୋଲି ଚିତ୍ର କରିଛନ୍ତି । "ସନ୍ଧ୍ୟାବେଳେ ବିଦେଶୀର ଚିନ୍ତା" କବିତାରେ ଗ୍ରାମ ସନ୍ଧ୍ୟାର ସ୍ୱାଭାବିକ ଚିତ୍ରଣ ସହିତ କବିଙ୍କ ଦାର୍ଶନିକ ଚିନ୍ତା ମିଶି ରହିଅଛି । ଗ୍ରାମ ବୋହୂଙ୍କ ପାଣି ଅଣା, ଚଷାପୁଅର ଘର ବାହୁଡ଼ା, ଅସ୍ତଗିରେ ବିଚିତ୍ର ବର୍ଣ୍ଣଛଟାର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ କବି ମନୁଷ୍ୟ ଜୀବନର ଏକ ପୂର୍ଣ୍ଣ ଚିତ୍ର ପ୍ରଦାନ କରିଛନ୍ତି । ବାହାର ଦୃଶ୍ୟପଟ ଭିତରେ କେବଳ କବିଙ୍କ ଦୃଷ୍ଟି ହଜି ଯାଇନାହିଁ । ସେ ନିଜ ଅନ୍ତରକୁ ଦେଖି ମନୁଷ୍ୟ

ଜୀବନର ଚିରନ୍ତନ ଗତିର ରୂପ ପ୍ରକାଶ କରିଛନ୍ତି । ସୂର୍ଯ୍ୟ ଉଦୟରେ ମାତ୍ର ଆଲୋକିତ ହୁଏ, ମଧ୍ୟାହ୍ନର ତେଜରେ ପ୍ରଦୀପ୍ତ ହୁଏ, ସୂର୍ଯ୍ୟାସ୍ତରେ ସମସ୍ତ ତେଜ ଅନ୍ଧକାରରେ ମିଶିଯାଏ । ଏହି ପ୍ରାକୃତିକ ସତ୍ୟକୁ କବି ମନୁଷ୍ୟ ଜୀବନ ସହିତ ତୁଳନା କରିଛନ୍ତି । ଶିଶୁ ଜାତହେଲେ ଜାତି କୁଟୁମ୍ବ ଆନନ୍ଦିତ ହୁଅନ୍ତି, ଏହି ଶିଶୁ ଯୌବନ ମଦରେ ମତ୍ତ ହୋଇ ନାନା କୁକର୍ମରେ ରତ ହେଲେ ସମସ୍ତେ ପୀଡ଼ିତ ହୁଅନ୍ତି । ବାର୍ଦ୍ଧକ୍ୟରେ ତାହାର ପ୍ରଭାବ କେହି ଅନୁଭବ କରନ୍ତି ନାହିଁ । ମୃତ୍ୟୁ ପରେ ତାକୁ ସମସ୍ତେ ଭୁଲିଯାନ୍ତି ।

ପିଞ୍ଜର ପକ୍ଷୀ, ଜୀବନ ନଦୀ, ରଜା ଓ ଫକୀର, ମରୁଭୂମି, ଡ଼ାଆଣୀ ଆଲୁଅ ଆଦି କବିତାଗୁଡ଼ିକରେ ଏହି ରୂପେ କବି ମନୁଷ୍ୟ ମନକୁ ବହିର୍ଜଗତରୁ ଅନ୍ତର୍ଜଗତ ଆଡ଼କୁ ଫେରାଇ ନେଇଛନ୍ତି । ଅନନ୍ତ କାଳର ପ୍ରବାହରେ ମନୁଷ୍ୟ ଜୀବନ କିପରି କ୍ଷଣସ୍ଥାୟୀ ଓ ଅଳୀକ, ମନୁଷ୍ୟର ଅନ୍ତରାତ୍ମା କିପରି ନାନା ରିପୁର ତାଡ଼ନାରେ ଅସ୍ଥିର ଓ ଅଧୀର ତାହା ବର୍ଣ୍ଣନା କରିଛନ୍ତି । ଆମର ଆତ୍ମାକୁ ଉଜ୍ଜ୍ୱଳ, ବିବେକକୁ ପ୍ରଖର କରିବା ଲାଗି ନୀତି ଉପଦେଶ ପ୍ରଦାନ କରିଅଛନ୍ତି । ସ୍ଥଳେ ସ୍ଥଳେ କବି ଗୁରୁର ଆସନ ଅଧିକାର କରିଛନ୍ତି । ସବୁଗୁଡ଼ିକ କବିତା ପ୍ରାୟ ଗୋଟିଏ ଆଦର୍ଶରେ ଓ ଛନ୍ଦରେ ଢଳା ହୋଇଛି । ମରୁଭୂମିର ଭୟଙ୍କର ଦୃଶ୍ୟ ଦେଖାଇ ସାରି ସେହି ଚିତ୍ର କବି ମନୁଷ୍ୟ ମନରେ ଦେଖି ଅଛନ୍ତି । ଏଠାରେ ଗୋଟିଏ ଉଦାହରଣ ଦେଉଛି

"ଦେଖିବାକୁ ଯେବେ କେହି ଲୋଡ଼େ ସେହି ମରୁ
ମୁଁ ତାକୁ ବୋଲୁଛି ଦେଖୁ କଠିନ ମନରୁ ।
ନୀରସ ହୃଦୟ ଅଟେ ମରୁମୟ ଦେଶ
ତୁଳନାରେ ନାହିଁ କିଛି ଇତର ବିଶେଷ
କାମ କ୍ରୋଧ ତପ୍ତ ବାଲି ଗର୍ବ ରବି କର
ଲୋଭ ତପ୍ତବାୟୁ ବହୁଅଛି ନିରନ୍ତର ।
ନାହିଁ ପ୍ରେମ ବୃକ୍ଷ ପୁଣି ନାହିଁ ଶାନ୍ତିଜଳ
ମୋହ ବାଲିଗଦା ଧାଉଁଅଛି ଅବିରଳ ।
ପରମାର୍ଥ ଧନ ପାଇଁ ହେ ଜ୍ଞାନି ବେପାରୀ
ଧୈର୍ଯ୍ୟ ଉଟେ ଚଢ଼ି ମରୁଭୂମି ହୁଏ ପାରି ।" [୨୨]

## ଗାଥା କବିତା

ବର୍ଣ୍ଣନାତ୍ମକ କବିତାର ଏକ ପ୍ରଧାନ ଧାରା ଗାଥା କବିତା । ଆଦ୍ୟ ଅଭ୍ୟୁଦୟ ଲୋକ ସାହିତ୍ୟର ପରମ୍ପରାରେ ଘଟିଥିଲେହେଁ, ଆଧୁନିକ କବିଙ୍କ କୃତିରେ ଏହାର ବିକାଶ ଦେଖିବାକୁ ମିଳେ । [୨୩] ପ୍ରାଚୀନ ଲୌକିକ ଗାଥାର ସମସ୍ତ ପ୍ରକୃତି ଅନୁସରଣ କରିବା

ସଙ୍ଗେ ସଙ୍ଗେ ଆଧୁନିକ କବିମାନେ ବର୍ଣ୍ଣନା ବୈଚିତ୍ର୍ୟ ; ନାଟକୀୟ ଛଟା, ମନସ୍ତାତ୍ତ୍ୱିକ ଆବେଦନରେ ଆଧୁନିକ ଗାଥା କବିତାକୁ କଳା ଦିଗରୁ ସମୃଦ୍ଧ କରିଅଛନ୍ତି । ଗାଥାର ଆଦିମ ରୂପ ଓ ଆଧୁନିକ ବିକାଶ ପର୍ଯ୍ୟନ୍ତ ସବୁଠାରେ ଏହି ଚରିତ୍ର ଦେଖାଯାଏ । ଏଥିରେ ଆଖ୍ୟାନ ମୁଖ୍ୟ, ସ୍ୱର ଗୌଣ, ପୁଣି ଗତାନୁଗତିକ । ଗୋଟିଏ ମାତ୍ର ଆଖ୍ୟାନ ଏହି ଗୀତିକାର ଉପଜୀବ୍ୟ । ଗୀତି ଆଉ ସଂଳାପ ମଧ୍ୟରେ କାହାଣୀ ଦ୍ରୁତ ଗତିରେ ପ୍ରବାହିତ ହୁଏ । ପୂର୍ଣ୍ଣାଙ୍ଗ ଚରିତ୍ର ଚିତ୍ରଣ ଲାଗି ଅବକାଶ ନଥାଏ. ପରିବେଶର ସୂକ୍ଷ୍ମ ଚିତ୍ର ଦେବା ଲାଗି କାହାଣୀର ଧାରାକୁ ବ୍ୟାହତ କରାଯାଏ ନାହିଁ । ଗାଥା ଗୀତିକା କ୍ରିୟା ପ୍ରଧାନ, ସେହି ହିସାବରେ ନାଟକୀୟ । ଏହା ବର୍ଣ୍ଣନାତ୍ମକ ହେଲେହେଁ ଘଟଣାକୁ ଆଗେଇ ନେଉ ନଥିବା ଯେ କୌଣସି ବିଷୟ ଏଥିରେ ଅପ୍ରାସଙ୍ଗିକ ବିବେଚିତ ହୋଇପାରେ । ପୁରାଣ ଇତିହାସ ବା ଜନଶ୍ରୁତିମୂଳକ ରୋମାଂଚକର କାହାଣୀ ଗାଥା-ଗୀତିକାର ଅବଲମ୍ବନ । ଏହା ଇଙ୍ଗିତ ପ୍ରଧାନ, ଇଙ୍ଗିତରେ କାହାଣୀକୁ ଅଳ୍ପ ପରିସର ମଧ୍ୟରେ କୁହାଯାଏ । ୨୪

ବେଣୀସଂହାର, ତାରିବାଇ, ଯୋଷେଫାଇନ୍, କ୍ଲିଓପେଟ୍ରା ଓ ଲୁକ୍ରେସିଆ ଫକୀରମୋହନଙ୍କ ପ୍ରଧାନ ଗାଥା କବିତା । ଆମ ଦେଶର ତଥା ପାଶ୍ଚାତ୍ୟ ଦେଶର ପୁରାଣ ଓ ଇତିହାସରୁ ଏହି କାହାଣୀଗୁଡ଼ିକ ସଂଗୃହୀତ ହୋଇଅଛି । କଳା ଦିଗରୁ ଏହି ଗାଥାଗୁଡ଼ିକ ବିଶେଷ ସମୃଦ୍ଧ ମନେହୁଏ ନାହିଁ । ଏଥିରେ ବର୍ଣ୍ଣନା ଗଦ୍ୟାତ୍ମକ, ନୀରସ ଓ ଶୁଷ୍କ । କାହାଣୀ ପରିବେଷଣରେ କ୍ୱଚିତ ନାଟକୀୟତା ଫୁଟିଛି । ପଢ଼ିଗଲେ ମନେହୁଏ, ପୁରାଣ ବା ଇତିହାସର କାହାଣୀକୁ କୌଣସି ପ୍ରକାରେ ଅଳଂକୃତ ନକରି ସରଳ ପଦ୍ୟରେ ଯେପରିକି ପ୍ରକାଶ କରାଯାଇଅଛି । ଫକୀରମୋହନଙ୍କ ମନ ଏକ ଲୋକଶିକ୍ଷକର ନୀତି-ବାଦୀ ମନ । ତାହାର ସ୍ୱାକ୍ଷର ଏଥିରେ ସ୍ପଷ୍ଟ । ଲୋକଶିକ୍ଷା ଉଦ୍ଦେଶ୍ୟରେ ନାରୀ ଚରିତ୍ରରେ ଭକ୍ତି, ସାହାସ, ପାତିବ୍ରତ୍ୟ ଓ କର୍ତ୍ତବ୍ୟର ଦିଗ ଏହି ଗାଥାଗୁଡ଼ିକରେ ଚିତ୍ରିତ ହୋଇଅଛି । ଚରିତ୍ର ଚିତ୍ରଣରେ ଫକୀରମୋହନଙ୍କର ଏକ ସ୍ୱଭାବ ସିଦ୍ଧ ନିପୁଣତା ଥିଲା । ତାହାର ବ୍ୟତିକ୍ରମ ଏହି ଗାଥାରେ ଦେଖାଯାଏ ନାହିଁ । (କାହାଣୀର ଗତିଧାରା ଏଥିରେ ଆଦୌ ବ୍ୟାହତ ହୋଇନାହିଁ । ସରଳ ବର୍ଣ୍ଣନାରେ କଥାର ଦ୍ରୁତଗତି, ନୀତିକଥନରେ କବିଙ୍କର ଅତ୍ୟଧିକ ଆଗ୍ରହକୁ ଗ୍ରହିତ କରି କେତେକ ପରିମାଣରେ ଏହି ଗାଥାଗୁଡ଼ିକୁ ଉପଭୋଗ୍ୟ କରିଅଛି ।)

## ପ୍ରକୃତି ଚିତ୍ର

ଜୀବନ ଚିତ୍ରଣରେ, ଜୀବନର ଆଦର୍ଶ ଚିନ୍ତାରେ ଫକୀରମୋହନଙ୍କ ସମସ୍ତ ଶକ୍ତି ବିନିଯୁକ୍ତ ହୋଇଅଛି । ପ୍ରକୃତିର ସ୍ଥିର ରୂପ ସୌନ୍ଦର୍ଯ୍ୟରେ ବିଳାସ ଅନୁଭବ କରିବାକୁ ସେ ଯେପରିକି ଅବସର ପାଇ ନାହାନ୍ତି । ନିଜର ଗାଥା ଓ ବର୍ଣ୍ଣନାତ୍ମକ କାବ୍ୟରେ ସ୍ଥାନେ ସ୍ଥାନେ

ମାନବୀକ ଦୃଶ୍ୟ ଲାଗି ପରିବେଶ ସୃଷ୍ଟିରେ ସାହାଯ୍ୟ କରିବାକୁ ପ୍ରକୃତି ଚିତ୍ର ସନ୍ନିବେଶିତ ହୋଇଅଛି। ଠିକ୍ ଏହିପରି ଆତ୍ମଚିନ୍ତନ ପ୍ରଧାନ ଗୀତି କବିତାରେ କବି ନିଜ ମାନସିକ ଭାବାବେଗକୁ ଏକ ପୃଷ୍ଠଭୂମି ଯୋଗାଇ ଦେବା ପ୍ରୟାସରେ ପ୍ରକୃତି ଚିତ୍ର ଅଙ୍କନ କରିଛନ୍ତି । 'ନିଦାଘ ନିଶୀଥ ସ୍ୱପ୍ନ' ସନ୍ଧ୍ୟାବେଳେ ବଦେଶୀର ଚିନ୍ତା' ଓ 'ଡାଆଣୀ ଆଲୁଅ' ଆଦି କବିତାରେ ଏହା ନିଦର୍ଶନ ରହିଅଛି ।

ପ୍ରକୃତିର ସୁନ୍ଦର ଦୃଶ୍ୟାବଳି ଭିତରେ ଏକ ଶାନ୍ତ ପରିବେଶର ପରିଚୟ କବି ଲାଭ କରିଛନ୍ତି । ଜୀବନର ଜଞ୍ଜାଳରୁ ଏହା ମନୁଷ୍ୟର ମନକୁ ମୁକ୍ତ କରେ । କ୍ଷଣିକ ଓ କ୍ଷୁଦ୍ର ଭିତରୁ ମନୁଷ୍ୟର ମନକୁ ଶାଶ୍ୱତ ଓ ଅନନ୍ତ ଆଡ଼କୁ ନେଇଯାଏ । ପ୍ରକୃତିର ଏହି ଚିତ୍ରଣ ଭିତରେ କବିଙ୍କ ମାନସିକ ଭାବ ଓ ଜୀବନ ଅନୁଭୂତି ବିଶଦ ରୂପେ ଦେଖିବାକୁ ମିଳେ । ଏକ ନିଦାଘ ସନ୍ଧ୍ୟାରେ କାଠଯୋଡ଼ି କୂଳ ଦୃଶ୍ୟ ଦେଖିସିବା ପୂର୍ବରୁ କବି ନିଜ ମନୋଗତ ଭାବ ବର୍ଣ୍ଣନା କରି ଲେଖିଛନ୍ତି —

ନିର୍ଜନରେ ବସି ବସି ମନର ଆକୁଳେ
ସନ୍ଧରେ ଗୁଳିତ ପରି ଗଳି ନଦୀକୂଳେ ।

ପ୍ରକୃତି ଭିତରେ ସେ ଶାଶ୍ୱତ ସତ୍ତା ଅନୁଭବ କରିବା ସଙ୍ଗେ ସଙ୍ଗେ ନିଜ ଜୀବନର ନଶ୍ୱରତା ଅନୁଭବ କରି କହିଛନ୍ତି—

ଏତିକି ଜାଣିଲି ଏହା ଥିବ ଚିରଦିନ,
ନ ରହିବ କିଛି ଦିନ ଅନ୍ତେ ମୋର ଚିହ୍ନ ।" ୨୫

ପ୍ରକୃତିର ରୂପ ଓ ଗୁଣକୁ ମନୁଷ୍ୟ ଜୀବନ ସହିତ ତୁଳନା କରିବା, ପ୍ରକୃତିର କ୍ରିୟାରୁ ନୀତି ଓ ଉପଦେଶ ଗ୍ରହଣ କରିବା କବିତାରେ ଏକ ପ୍ରାଚୀନ ଓ ପରିଚିତ କଳା । ଫକୀରମୋହନ ଏହା ବହୁ ସ୍ଥଳରେ ଗ୍ରହଣ କରିଛନ୍ତି । ଗୋଲାପକୁ ସାଧୁ ହୃଦୟ, ରଜନୀଗନ୍ଧାକୁ କୁଳବତୀ ନାରୀ ସହିତ ତୁଳନା କରିଛନ୍ତି । ପ୍ରକୃତି ନିଜର ବିଶାଳତା, ସୌନ୍ଦର୍ଯ୍ୟ ଓ ଅଜ୍ଞେୟ ରହସ୍ୟ ନେଇ ତାହାର ସ୍ରଷ୍ଟା ପରମେଶ୍ୱରଙ୍କ ପ୍ରତି କବିଙ୍କ ଭାବନା ମୁଳିତ କରିଅଛି । କ୍ଷୁଦ୍ର ପୁଷ୍ପଠାରୁ ବିରାଟ ଆକାଶ ପର୍ଯ୍ୟନ୍ତ ସବୁଠି କବି ଏହି ପ୍ରକୃତିର ସ୍ରଷ୍ଟା ପରମେଶ୍ୱରଙ୍କୁ ଅନୁଭବ କରିଛନ୍ତି ।

ସମଗ୍ର ଭାବରେ ଦେଖିଲେ ପ୍ରକୃତି ଫକୀରମୋହନଙ୍କ କବିତାରେ ଏକ ଅବହେଳିତ ଉପାଦାନ । ନୀତି ଓ ଆଦର୍ଶର ବାହକ, ଅଥବା ମାନବୀୟ ଦୃଶ୍ୟ ଓ ଚିନ୍ତାର ଅନ୍ତରାଳରେ ପୃଷ୍ଠଭୂମି ରୂପେ ଏହାର ସାର୍ଥକତା । ମାତ୍ର ବହିଃଦୃଶ୍ୟ ବର୍ଣ୍ଣନା ମୋହରେ ମୁଗ୍ଧ ହୋଇ ଫକୀରମୋହନ ଯେଉଁଠି ପ୍ରକୃତି ଚିତ୍ର ଅଙ୍କନ କରିଛନ୍ତି, ସେଠାରେ ସେ କ୍ୱଚିତ୍ ସଫଳ ହୋଇଛନ୍ତି । ତାଙ୍କର ବର୍ଣ୍ଣନା ପ୍ରକୃତିର ଏକ ଗଦ୍ୟାତ୍ମକ ବିବରଣୀ, ଏଥିରେ ଦୃଶ୍ୟ ସଜ୍ଜାରେ ବା ବର୍ଣ୍ଣ ଯୋଜନାରେ କୌଣସି କଳ୍ପନା ବା ସୌନ୍ଦର୍ଯ୍ୟ ଦେଖିବାକୁ ମିଳେନାହିଁ ।

## ଶିଶୁ କବିତା

ଶିଶୁ ଅନୁରଞ୍ଜନ ଲାଗି କବି ଅଳ୍ପ କେତେଗୋଟି କବିତା ରଚନା କରିଛନ୍ତି । ପ୍ରାକୃତିକ ବସ୍ତୁ ପ୍ରତି ଶିଶୁ ମନରେ କୌତୁହଳ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ନୀତିଶିକ୍ଷା ଦେବା ଏହି କବିତାଗୁଡ଼ିକର ଲକ୍ଷ୍ୟ । ହାସ୍ୟ ରସ ଅବତାରଣା ଦ୍ୱାରା କବିତାକୁ ସରସ କରିବା ପ୍ରୟାସ ସର୍ବତ୍ର ପ୍ରକାଶ ପାଇଅଛି । ଏଥିରେ କବି ସଫଳ ହୋଇଛନ୍ତି ।

ଗର୍ଦ୍ଧଭର ସୂକ୍ଷ୍ମ ବୁଦ୍ଧି, ଶଂଖୀ ବିରାଡ଼ି ଓ ବଣୀ ପକ୍ଷିଣୀ, ଭୁଆ ବିରାଡ଼ି ଓ କାଳିଆ କୁକୁର କବିତାରେ ପ୍ରାଚୀନ ନୀତିକଥାମାନ ପରିବେଷିତ ହୋଇଅଛି । ଲୋଭ ଓ ଈର୍ଷାର କୁପରିଣାମ ଦେଖାଇ ଦିଆ ହୋଇଅଛି ।

ଜହ୍ନମାମୁଁ କବିତାରେ କାବ୍ୟରେ ବର୍ଣ୍ଣିତ ତାରାପତି, କୁମୁଦ ବାନ୍ଧବ ଆଦି ନାମର ଅସାରତା ପ୍ରତିପାଦନ ଦ୍ୱାରା ହାସ୍ୟରସର ଅବତାରଣା କରାଯାଇଅଛି ।

"ତାରାପତି ବୋଲି ଲୋକେ କହୁଥାନ୍ତି ତୋତେ
ତୁ ନ ଥିଲେ ତାରାମାନେ କାହୁଁଥାନ୍ତି କେତେ ?
କୁମୁଦ ବାନ୍ଧବ ପରା ଉଆଁସ ଦିନରେ
କେତୋଟି କୁମୁଦ ବୁଡ଼ି ମରନ୍ତି ଜଳରେ ?" ୧୭

'ବେଙ୍ଗଭାଇ' କବିତାରେ ଆତ୍ମସୁଖରେ ରତ ବଡ଼ଲୋକଙ୍କୁ କବି ନିନ୍ଦା କରିଛନ୍ତି । ପର ଦୁଃଖରେ ଦୁଃଖ ଅନୁଭବ କରିବାକୁ ଶିଶୁକୁ ଉଦ୍‌ବୁଦ୍ଧ କରିଅଛନ୍ତି । ବେଙ୍ଗଟି ସାମାନ୍ୟ ନୂଆ ପାଣି ମୁନ୍ଦେ ପାଇଲେ, ଆନନ୍ଦରେ ଅଧୀର ହୋଇ ରଡ଼ିଛିତେ । ମାତ୍ର ଏହି ରଡ଼ିରେ ଆଉ କାହାର କି କ୍ଷତି ହୁଏ, ସେ ଖବର ସେ ରଖେନାହିଁ । ଆତ୍ମସୁଖରେ ରତ ବଡ଼-ଲୋକଙ୍କଠାରେ ଏହି ନୀତି ଦେଖାଯାଏ ।

'ଜଣାଗଲି କହିବାକୁ ହେବନାହିଁ ମୋତେ
ବଡଲୋକ ଆଚରଣ ଶିଖନ୍ତି ସମସ୍ତେ ;
ଘରେ ଭୋଜବାଜି, ଗୀତନାଚ ବାଦ୍ୟଯାକ
ବେଳେ ନ ଶୁଣନ୍ତି କାନେ ପଡ଼ଶୀଙ୍କ ଡାକ ।' ୧୭

ଏହି ବଡଲୋକମାନେ ଅପରିଣାମଦର୍ଶୀ । ବର୍ଷା ଛାଡ଼ିଗଲେ ବା ଧଣ୍ଡ ଆଗରେ ପଡ଼ିଲେ ବେଙ୍ଗଟିର ଯେଉଁ ଅବସ୍ଥା ହୁଏ, ପରର ଦୁଃଖସୁଖ ପ୍ରତି ଦୃଷ୍ଟି ନଦେଇ ଆତ୍ମସୁଖରେ ରତ ରହିଲେ ଅପରିଣାମଦର୍ଶୀ ଲୋକେ ଏହି ଅବସ୍ଥା ଭୋଗନ୍ତି ।

## ଫକୀରମୋହନଙ୍କ କବିତାର ଧର୍ମ

କବିଙ୍କ ଭିତରେ ଦୁଇଟି ବ୍ୟକ୍ତିତ୍ୱ ଥାଏ । ଗୋଟିଏ ରଚୟିତା ଓ ଅନ୍ୟଟି ପାଠକ ବା ସମାଲୋଚକ । ପ୍ରଥମ ବ୍ୟକ୍ତିତ୍ୱଦ୍ୱାରା ଚାଳିତ ହୋଇ କବି ସୃଷ୍ଟି କରନ୍ତି । ଦ୍ୱିତୀୟ

ବ୍ୟକ୍ତିତ୍ୱ ଯେଉଁ ଏହି ସୃଷ୍ଟିକୁ ସୁନ୍ଦର କରନ୍ତି । କୌଣସି ଗୋଟିଏ ଦିଗ ଅଭାବ ଥିଲେ, କେହି କବି ହୋଇ ପାରନ୍ତି । ମାତ୍ର ସେ ଅତି ସାଧାରଣ ସ୍ତରରେ ରହିଯାନ୍ତି । ଫକୀରମୋହନଙ୍କଠାରେ ଏହି ଦ୍ୱିତୀୟ ବ୍ୟକ୍ତିତ୍ୱର ଏକାନ୍ତ ଅଭାବ ଥିଲା । ତେଣୁ ସେ ଯେଉଁ ସ୍ତରରେ କବିତାରେ ପ୍ରଥମେ ଆତ୍ମପ୍ରକାଶ କରିଥିଲେ, ସେହି ସ୍ତରରୁ ଉପରକୁ ଉଠି ପାରିନଥିଲେ । ଏପରିକି ଶେଷ ପର୍ଯ୍ୟନ୍ତ ନିଜ ରଚନାର ଶୈଳୀ ବିଷୟରେ ତାଙ୍କର ଏକ ସୁସ୍ପଷ୍ଟ ଧାରଣା ଜନ୍ମି ନଥିଲା । ଯାହା ଲେଖୁଥିଲେ, ସେଥିରେ ତାଙ୍କର ଏକ ଦୃଢ଼ ଆତ୍ମବିଶ୍ୱାସ ଆସୁନଥିଲା । ନିଜର ଏହି ଗୌଣ ମନୋଭାବ ବ୍ୟକ୍ତ କରି କବିତା ରଚନାର ଶେଷ ପର୍ଯ୍ୟାୟରେ ସଂଶୋଧନ ପାଇଁ ଅନ୍ୟମାନଙ୍କଠାକୁ ପଠାଉଥିଲେ । ରାଧାନାଥଙ୍କୁ ଲିଖିତ ପତ୍ରଟି ଏଠାରେ ଏହାର ଯଥେଷ୍ଟ ସୂଚନା ଦେଉଅଛି । "ଏହି କବିତାଟି ଦେଖିବେ । ମାତ୍ର ମୋହର ମନଃପୂତ ହେଲାନାହିଁ । ଯେପରି ଭାଷାରେ, ଯେପରି ସୁନ୍ଦରଭାବେ ଲେଖାହେବା ଉଚିତ ତାହା ନିଶ୍ଚୟ ହୋଇନାହିଁ । ଆପଣ ଭଲକରି ଆପଣଙ୍କ ଭାଷାରେ ଲେଖିଦେବେ । ଏହା ମୋହର ଗୋଟିଏ ସମ୍ପଦ ହେବ ।" ୧୮

କୌଣସି ରଚନାରେ ହାତଦେବା ପୂର୍ବରୁ ପ୍ରତ୍ୟେକ କବିଙ୍କୁ ନିଜ ରଚନାର ଏକ ରେଖାଚିତ୍ର ଅଙ୍କନ କରି ନେବାକୁ ହୁଏ । ଏହାର ଉପରେ ବିଶେଷ ରୂପେ କବିତାର ଆକୃତି ନିର୍ଭର କରେ । ଏହି ଆକୃତି ଅଭାବରେ କବିତାର ସମସ୍ତ କିଛି ଅସାର ମନେହୁଏ । ୧୯ ନିଜ କାବ୍ୟର ଆକୃତି ବିଷୟରେ ପ୍ରଥମରୁ କବି ଯଦି ପାଠକ ମନରେ ଏକ ସ୍ପଷ୍ଟ ଧାରଣା ନ ଦିଅନ୍ତି; ତେବେ ସେହି କବିତା କେତେଦୂର ସଫଳ ବା ବିଫଳ ତାହା ବୁଝିବାର ଅବକାଶ ନଥାଏ । ଫକୀରମୋହନଙ୍କ କବିତାଗୁଡ଼ିକ ପଢ଼ିଲେ, ସେ 'ବିଷୟ ବର୍ଣ୍ଣନାମୂଳକ' ବା 'ଗୀତି କବିତା' ଲେଖିଛନ୍ତି ତାହାର ନିର୍ଦ୍ଦିଷ୍ଟ ଲକ୍ଷଣ ମିଳେନାହିଁ । ତେଣୁ କବିତାଗୁଡ଼ିକରେ ଏକ ନିର୍ଦ୍ଦିଷ୍ଟ ଆରମ୍ଭ, ବିକାଶ ଓ ପରିଣତି ଖୋଜିଲେ ବ୍ୟର୍ଥ ହେବାକୁ ପଡ଼େ । (ଫକୀରମୋହନଙ୍କ ଅଧିକାଂଶ କବିତାର ପ୍ରଥମ, ମଧ୍ୟ ବା ଶେଷରୁ ଯଦି ଦୁଇଚାରି ପଦ ବାଦ୍‌ଦେଇ କାହାରିକୁ ପଢ଼ିବାକୁ ଦିଆଯାଏ, କବିତାଟି ଯେ ଅସମ୍ପୂର୍ଣ୍ଣ ତାହା ସହଜରେ ଧାରଣା ହୁଏନାହିଁ । କବି କବିତାର ଏକ ନିର୍ଦ୍ଦିଷ୍ଟ ଆକୃତି ବିଷୟରେ ସଚେତନ ନଥିବାରୁ ପ୍ରାୟ କୌଣସି କବିତାରେ ସମଗ୍ରତାର ପ୍ରଭାବ ପକାଇବାକୁ ସମର୍ଥ ହୁଅନ୍ତି ନାହିଁ । ବହୁ କବିତାରେ ଭାବସଂହତି ରକ୍ଷିତ ହୋଇନାହିଁ ।)

ପ୍ରକାଶ ଶକ୍ତି କବିଙ୍କର ଅନ୍ୟ ଏକ ଗୁଣ । ଗଦ୍ୟ କେବଳ ପ୍ରାଞ୍ଜଳ ହେଲେ, ସାର୍ଥକ ହୋଇପାରେ । ମାତ୍ର କବିତାରେ ପ୍ରାଞ୍ଜଳତା ସହିତ ବ୍ୟଞ୍ଜନା ଦରକାର । ବହୁତ କଥାକୁ ଅଳ୍ପରେ ଓ ସୂଚନାରେ କହିଲେ କବିତା ମନୋଜ୍ଞ ହୁଏ । କବିତାରେ

ଅନ୍ତର୍ନିହିତ ରସ ବା ଭାବବସ୍ତୁ ପ୍ରତି ପାଠକର ଆକର୍ଷଣ ସହଜରେ କମିଯାଏ ନାହିଁ । ବାରମ୍ବାର ପଢ଼ିଲେ, କବିତାର ରସାନୁଭବ ଘନରୁ ଘନତର ହୁଏ । ପୁଣି ଏହି ଗୁଣରେ କବିତା ସମସ୍ତଙ୍କଠାରେ ସମାନ ଅର୍ଥ ବ୍ୟକ୍ତକରେ ନାହିଁ । ପାଠକର ହୃଦୟ ଓ ଚିତ୍ତ ଯେତିକି ବିକଶିତ, ସେ ସେତିକି କବିତାକୁ ଉପଭୋଗ କରେ । ମାତ୍ର ଫକୀରମୋହନଙ୍କୁ ଏ କଳା ଆଦୌ ଜଣା ନଥିଲା । ସେ ବରଂ ଅଳ୍ପ କଥାକୁ ବେଶୀ କରି କହନ୍ତି ; ସହଜ କଥାକୁ ଅନାବଶ୍ୟକ ବ୍ୟାଖ୍ୟା ଓ ବର୍ଣ୍ଣନାରେ ଅଧିକ ସହଜ କରି କହନ୍ତି । ଫଳରେ ଥରେ ପଢ଼ିଦେଲେ, ତାଙ୍କ କବିତାର ମୁଦାଗନ୍ତାଧର ଖୋଲି ହୋଇଯାଏ । ଆଉ ଥରେ ପଢ଼ିବାକୁ ପାଠକ ମନ ବଳାଏ ନାହିଁ ।

ଗଦ୍ୟରେ ମନୀଷା ଓ ପଦ୍ୟରେ ଅନୁଭବର ଭାଷା ପ୍ରକାଶପାଏ । ୩୦ ଫକୀରମୋହନଙ୍କ କ୍ଷୁଦ୍ର କ୍ଷୁଦ୍ର କବିତାଗୁଡ଼ିକରେ ଏକତ୍ର ଜ୍ଞାନ ଓ ଅନୁଭବ ବଡ଼ ସାମଞ୍ଜସ୍ୟହୀନ ଭାବରେ ପ୍ରକାଶିତ ହୋଇଅଛି । ଜ୍ଞାନର ବିସ୍ତୃତି ବା ଅନୁଭବର ଗାମ୍ଭୀରତା କୌଣସି ଗୋଟିଏ ଦିଗ ଏଥିରେ ପୂର୍ଣ୍ଣତା ଲାଭ କରିନାହିଁ । ତେଣୁ କବିତାଗୁଡ଼ିକ ସ୍ୱାଭାବିକ ପଦ୍ୟ ହୋଇ-ନାହିଁ । ଗଦ୍ୟର ବିଷୟ ଓ ଭାବ ଯେପରିକି କେବଳ ଯତିପାତରେ ପଦ୍ୟାୟିତ ହୋଇଅଛି । ଏଥିଲାଗି ଯଥାର୍ଥ କବିତାର ଦ୍ୟୋତନା ଏହା ସୃଷ୍ଟି କରିପାରି ନାହିଁ ।

ଏହି ସମସ୍ତ ଅପୂର୍ଣ୍ଣତା ଓ ତ୍ରୁଟି ସତ୍ତ୍ୱେ ମନେହୁଏ ଆଧୁନିକ ଓଡ଼ିଆ କାବ୍ୟଧାରାରେ ଫକୀରମୋହନ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ଫକୀରମୋହନଙ୍କ ଭଳି ଏତେ ବିଚିତ୍ର ଅନୁଭୂତି ଏତେ ବେଶୀ ସଂଖ୍ୟକ କ୍ଷୁଦ୍ର କବିତାରେ ସେ ସମୟରେ କେହି ପ୍ରକାଶ କରି ନଥିଲେ । ଊନବିଂଶ ଶତକରୁ ପାଶ୍ଚାତ୍ୟ ଭାବ ପ୍ରଭାବରେ ଉଭୟ ଶଙ୍କର ମନରେ ଆମ ସମାଜର ଖଣ୍ଡିତାବସ୍ଥା ବିଷୟରେ ଚିନ୍ତାଶୀଳ ଲୋକେ ଭାବିବାକୁ ଆରମ୍ଭ କରିଥିଲେ । ଏହି ଭାବନାର ସମସ୍ତ ଦିଗ ଫକୀରମୋହନଙ୍କ କାବ୍ୟରେ ପ୍ରତିବିମ୍ବିତ ହୋଇଅଛି । ଏଥିରେ ସୌନ୍ଦର୍ଯ୍ୟ ଚେତନା ଅପେକ୍ଷା ସମାଜ ଚେତନା ଅଧିକ ବ୍ୟାପକ ଭାବରେ ପ୍ରକାଶ ପାଇଅଛି । ଯଦି କେହି ଊନବିଂଶ ଶତକ ଓ ଆଦ୍ୟ ଭାଗର ବିଂଶ ଶତକରେ କେବଳ ଓଡ଼ିଶାରେ ନୁହେ, ସମଗ୍ର ପୃଥିବୀର ଚିତ୍ର ଓଡ଼ିଆ କବିତାରୁ ପାଇବାକୁ ଇଚ୍ଛା କରନ୍ତି, ତେବେ ରାଧାନାଥ ଓ ମଧୁସୂଦନଙ୍କ କବିତାରୁ ସେ ଯେଉଁ ଚିତ୍ର ପାଇବେ, ଫକୀରମୋହନଙ୍କ କବିତାରୁ ତାହାଠାରୁ ଯଥେଷ୍ଟ ପୁଷ୍କଳ ଚିତ୍ର ପାଇପାରିବେ ।

ଊନବିଂଶ ଶତକ କେବଳ ରାଜନୀତିରେ ନୁହେ, ସାହିତ୍ୟରେ ମଧ୍ୟ ଜନତାର ଯୁଗ ଥିଲା । ଦମସାମୟିକ ଭିକ୍ଟୋରିୟା ଯୁଗ ଇଂଲଣ୍ଡରେ ସାହିତ୍ୟିକ ଓ କବିମାନଙ୍କ ପକ୍ଷରେ ଏହା ଏକ ସମସ୍ୟା ସୃଷ୍ଟି କରିଥିଲା । ଶିଳ୍ପ ସୌନ୍ଦର୍ଯ୍ୟ ଓ ରଚନା ରୀତି ଦୃଷ୍ଟିରୁ କବିତାର

ଉଚ୍ଚମାନ କବିମାନେ ରକ୍ଷା କରିବେ, କି ଜନସାଧାରଣଙ୍କ ସ୍ତରକୁ ଓହ୍ଲାଇ ଆସିବେ, ସେ ବିଷୟରେ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଅନେକ ପହଞ୍ଚି ପାରି ନଥିଲେ । ପୁଣି ଯେଉଁମାନେ ଜନସାଧାରଣଙ୍କ ସ୍ତରକୁ ଓହ୍ଲାଇ ଆସୁଥିଲେ, ସେମାନେ ନିକୃଷ୍ଟ ଦରର କବି ବା ଲେଖକ ବୋଲି ସୁଧୀ ସମାଲୋଚକମାନେ ସମାଲୋଚନା କରୁଥିଲେ । ଟେନିସନ ମଧ୍ୟବର୍ତ୍ତୀପନ୍ଥା ଅବଲମ୍ବନ କରିଥିଲେ । ଗୋଲ୍ଡସ୍ମିଥ ଓ ଡିକେନ୍ସ ଜନସାଧାରଣଙ୍କ ସ୍ତରକୁ ଓହ୍ଲାଇ ଆସିଥିଲେ । ଆର୍ନଲଡ, ସ୍ୱିନ୍‌ବାର୍ଣ୍ଣ ଏହାର ଏକାନ୍ତ ବିରୋଧ କରୁଥିଲେ । ଆଧୁନିକ ଓଡ଼ିଆ କବିତାରେ ରାଧାନାଥ ଏକ ମଧ୍ୟ ପନ୍ଥା ଅବଲମ୍ବନ କରିଅଛନ୍ତି । ମଧୁସୂଦନ ସଂସ୍କୃତ ଓ ମାର୍ଜିତ ବାତାବରଣରୁ ଛାଡ଼ି ନିମ୍ନସ୍ତରକୁ ଓହ୍ଲାଇ ଆସିବାକୁ ଆଦୌ ପସନ୍ଦ କରି ନାହାନ୍ତି । ମାତ୍ର ଫକୀରମୋହନ ଅସଂକୋଚଭାବରେ ଜନସାଧାରଣଙ୍କ ଭିତରକୁ ନିଜକୁ ଖପାଇ ଦେଇଛନ୍ତି । ଜନସାଧାରଣଙ୍କ କଥିତ ଭାଷାରେ ସେମାନଙ୍କୁ ଶିକ୍ଷା ଦେବା ପାଇଁ ସମସ୍ତ କିଛି ରଚନା କରିଅଛନ୍ତି । କେବଳମାତ୍ର ବର୍ଣ୍ଣ ପରିଚୟ ଥିଲେ, ଲୋକେ ଯେପରି ତାଙ୍କ ଲେଖାକୁ ପଢ଼ି ବୁଝି ପାରିବେ, ସେଥିପ୍ରତି ସତତ ସେ ଦୃଷ୍ଟି ଦେଇଅଛନ୍ତି । ଆଜୀବନ ସେ ଓଡ଼ିଶାର କୃଷକ, ନାରୀ ଓ ଅଶିକ୍ଷିତ ବା ଅଳ୍ପ ଶିକ୍ଷିତ ଜନସାଧାରଣଙ୍କ ପାଇଁ ଭାବିଛନ୍ତି । ସେମାନଙ୍କ ଉନ୍ନତି ପାଇଁ ଯେତେବେଳେ ଯାହା ସମ୍ଭବ ହୋଇଛି, କାର୍ଯ୍ୟ କରିଅଛନ୍ତି । ତାଙ୍କ କବିତା ଏହି ଭାବନା ଓ କର୍ମର ଅଂଶ ବିଶେଷ ରୂପେ କଳ୍ପିତ ହୋଇଅଛି ।

ଫରାସୀ କବି ବୋଦ୍‌ଲେର୍ ମନେ କରୁଥିଲେ, ଯେଉଁ କବିମାନେ ନିର୍ଣ୍ଣିତଭାବରେ ଜନସାଧାରଣଙ୍କ ସ୍ତରକୁ ଓହ୍ଲାଇ ଯାନ୍ତି, ସେମାନେ କବି ଭାବରେ ଆତ୍ମହତ୍ୟା କରନ୍ତି । ଏହିରୂପେ ଦେଖିଲେ ଫକୀରମୋହନ କବି ହିସାବରେ ଅପମୃତ୍ୟୁ ଭୋଗ କରିପାରି ଥାନ୍ତି । ତାଙ୍କ ଦାନରେ ଓଡ଼ିଆ କାବ୍ୟଧାରା ହୁଏତ କଲା ଦିଗରୁ ସମୃଦ୍ଧ ହୋଇନାହିଁ । ମାତ୍ର କବିତା ଅପେକ୍ଷା ଜୀବନ ଅଧିକ ମୂଲ୍ୟବାନ । ଏହି ଜୀବନର ଭାସ୍କର ରୂପେ ଫକୀରମୋହନ ମହୀୟାନ୍ ।

অষ্টম অধ্যায়

## ମଧୁସୂଦନ ରାଓ

( ୧୮୫୩-୧୯୧୨ )

"ଜନ୍ମଭୂମି ପୁଣି ଜନନୀ ତାଙ୍କ ପାଦ ପରଶି
ଦେଉଅଛି ମୁହିଁ ଦୋହାଇ ତାଙ୍କ ପବିତ୍ର ନାମେ
ପୂର୍ଣ୍ଣ ସ୍ତ୍ରୀ ସ୍ତ୍ରୀ, ପୁଣି ଉତ୍କଳ ରତ୍ନ ସାହିତ୍ୟ ଧାମେ ।"

ମଧୁସୂଦନ

ମଧୁସୂଦନଙ୍କ ଯତ୍ନବର୍ଦ୍ଧିତ କାବ୍ୟଶ୍ଳୋକ ଅପେକ୍ଷା ସାଧନାଲବ୍ଧ ଜୀବନ ମହତ୍ତର ଥିଲା । ସେ ଋଷିର ଜୀବନ ଯାପନ କରୁଥିଲେ । ଶୈଶବରୁ ଧର୍ମ ତାଙ୍କଠାରେ ଏକ ଗଭୀର ବିଶ୍ୱାସର ବସ୍ତୁ ଥିଲା । ପରବର୍ତ୍ତୀ ଜୀବନରେ ଏହି ବିଶ୍ୱାସର ପରିଣତି ବ୍ରାହ୍ମଧର୍ମ ପ୍ରତି ଅଚଳ ନିଷ୍ଠାରେ ପ୍ରକାଶ ପାଇଥିଲା । ଏହି ଯୁଗରେ ବ୍ରାହ୍ମଧର୍ମ ଭିତରେ ବୈଜ୍ଞାନିକ ହେତୁଜିଜ୍ଞାସା ସହିତ ପ୍ରାଚୀନ ଭାରତୀୟ ଦର୍ଶନଧର୍ମର ସମନ୍ୱୟ ଘଟିଥିଲା । ଏହି ଧର୍ମର ଏକେଶ୍ୱରବାଦ ଜାତିଭେଦ ଓ ମୂର୍ତ୍ତିପୂଜା ପ୍ରତି ବିରୋଧ ଭଳି ପ୍ରଶସ୍ତ ଆଦର୍ଶ ପ୍ରଗତିଶୀଳ ଲୋକେ ଗ୍ରହଣ କରିଥିଲେ । ଫକୀରମୋହନ ଓ ରାଧାନାଥ ଏହି ଭାବରେ ପ୍ରଭାବିତ ଥିଲେ । ମାତ୍ର ମଧୁସୂଦନ ଅତୁଳ ସାହସରେ ସମାଜର ତୀବ୍ର ପ୍ରତିରୋଧରେ ବିଚଳିତ ନ ହୋଇ ଏହି ଧର୍ମ ଗ୍ରହଣ କରିଥିଲେ । ଧର୍ମ ଜୀବନରେ ସେ ଯେଉଁ ଆତ୍ମବିଶ୍ୱାସ ଓ ଆନ୍ତରିକତା ଦେଖାଇଥିଲେ, ତାଙ୍କ କାବ୍ୟରେ ତାହା ପ୍ରତିବିମ୍ବିତ ହୋଇଅଛି ।

ଧର୍ମବିଶ୍ୱାସ ଓ ଈଶ୍ୱର ଭକ୍ତି କବିଙ୍କୁ ଜୀବନର ସମସ୍ତ ଦୁଃଖ ଝଞ୍ଜା ସମ୍ମୁଖରେ ସାହସୀ ଓ ଆଶାବାଦୀ କରିଥିଲା । ଶୈଶବରୁ ମାତୃହୀନ ହୋଇ ମାତୁଳାଳୟରେ ସେ ଅଯତ୍ନରେ ବଢିଥିଲେ । ପିତା ଭାଗୀରଥୀ ରାଓ ଜଣେ ପୋଲିସ କର୍ମଚାରୀ ଥିଲେ । ତାଙ୍କର କଡା ନଜରରେ ପୁରୀ ଜିଲ୍ଲାର ଗୋପଗ୍ରାମର ଏକ ଚାଟଶାଳୀରେ ପ୍ରଥମେ କବିଙ୍କ ଶିକ୍ଷା ଆରମ୍ଭ

ହୋଇଥିଲା । ଭୁବନେଶ୍ୱର ଭର୍ଣ୍ଣାକୁଲାର ସ୍କୁଲ ଓ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ସମୟରୁ କିଶୋର ମଧୁସୂଦନଙ୍କର ଦେବଦର୍ଶନ ଓ ଧର୍ମଚର୍ଚ୍ଚା ନିୟମିତ କାର୍ଯ୍ୟ ଥିଲା । ମାତ୍ର ଏଗାର ବର୍ଷ ବୟସରେ ପାଚୀନ ସୂତ୍ରରେ ତାଙ୍କର ବିବାହ ହୋଇଥିଲା । ଏହିରୂପେ ଆଧୁନିକତାରୁ ବହୁଦୂରରେ ତାଙ୍କର ଶୈଶବ ବିତିଥିଲା ।

ପୁରୀ ଜିଲ୍ଲା ସ୍କୁଲରେ କବି ଛାତ୍ର ଥିଲାବେଳେ ତରୁଣ କାବ୍ୟାମୋଦୀ ରାଧାନାଥ ଶିକ୍ଷକ ଥିଲେ । ସାମାନ୍ୟ ପରିଚୟରୁ ଗୁରୁଶିଷ୍ୟଙ୍କ ସମ୍ପର୍କ ନିବିଡ଼ ପରିଣୟରେ ପରିଣତ ହୋଇଥିଲା । ଏହିଠାରୁ କବିଙ୍କ କୋମଳ ହୃଦୟରେ ନବ ସାହିତ୍ୟ ଆଦର୍ଶର ପ୍ରଥମ ରେଖା ଆଙ୍କିଲେ ରାଧାନାଥ । ନିଭନ୍ଦେ ମିଶନସ୍କୁଲ ବିଦ୍ୟାପୀଠର ପ୍ରତିଷ୍ଠାତା ପ୍ରସିଦ୍ଧ ପଣ୍ଡିତ ହରିହର ଦାସଙ୍କ ସାହଚର୍ଯ୍ୟରେ ଆସି ଧର୍ମର ଦାର୍ଶନିକ ଉଦାର ଆଦର୍ଶର ପରିଚୟ ଲାଭ କରିଥିଲେ । ଜ୍ଞାନଦୃଷ୍ଟିରେ ଧର୍ମ ଓ ଜୀବନକୁ ବିଚାର କରିବାର ପ୍ରେରଣା ଏହିଠାରୁ ସେ ପାଇଥିଲେ । ପ୍ରାଚୀନ ଭାରତୀୟ ଧର୍ମର ଉଦାର ଆଦର୍ଶ ପ୍ରତି ଆଗ୍ରହ, ପ୍ରଚଳିତ ଧର୍ମର କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରତି ଘୃଣା ତାଙ୍କ ମନରେ ଜନ୍ମିଥିଲା । ୧୮୭୦ ଖ୍ରୀଷ୍ଟାବ୍ଦରେ ସେ କଟକ ଆସି ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ପ୍ରଭାବରେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ଏହିଠାରୁ ଜୀବନର ଶେଷ ମୁହୂର୍ତ୍ତି ପର୍ଯ୍ୟନ୍ତ ତିରିଶ ବର୍ଷରୁ ଅଧିକକାଳ ଓଡ଼ିଶାରେ ଏହି ଧର୍ମର ପ୍ରସାର ପାଇଁ କାର୍ଯ୍ୟ କରିଥିଲେ ।

କବି, ଶିକ୍ଷକ ଓ ଶିକ୍ଷାପ୍ରେମୀ ଥିଲେ । ଶିକ୍ଷା ପ୍ରସାର ଉଦ୍ଦେଶ୍ୟରେ ସେ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିଲେ । ୧୮୭୩-୭୪ରେ ବାଲେଶ୍ୱରରେ ଶିକ୍ଷକତା କରୁଥିଲାବେଳେ ରାଧାନାଥଙ୍କ ସାହଚର୍ଯ୍ୟରେ କବିତାବଳୀ ରଚନା କରିଥିଲେ । ଶିଶୁ ଓ କିଶୋର ପାଠ୍ୟ ଲାଗି କବିତାବଳୀ ସାଙ୍ଗକୁ ସେ ଛନ୍ଦମାଳା (ପ୍ରଥମ ଓ ଦ୍ୱିତୀୟ ଭାଗ) ମଧ୍ୟ ପ୍ରକାଶ କରିଥିଲେ । ବିବିଧ କବିତା ଓ କୁସୁମାଞ୍ଜଳିରେ କବିଙ୍କ ଧାର୍ମିକ ଆଦର୍ଶ ଓ ଆଧ୍ୟାତ୍ମିକ ଅନୁଭୂତି ପ୍ରସ୍ଫୁଟିତ ହୋଇଅଛି । ଇଂରେଜୀ ଗୀତିକବିତାର ବୈଚିତ୍ର୍ୟ କିପରି ଧ୍ୟାନର ସହିତ କବି ଅନୁସରଣ କରିଥିଲେ, ତାହାର ପରିଚୟ ତାଙ୍କର ଏହି କବିତାମାଳାରୁ ମିଳିଥାଏ । ଚତୁର୍ଦ୍ଦଶପଦୀ ରଚନାରେ ସାଫଲ୍ୟ 'ବସନ୍ତଗାଥା'ରେ ଓ ଜାତୀୟ ଭାବ ଉଦ୍ଦୀପକ କବିତା ରଚନାରେ ନୈପୁଣ୍ୟ ଉତ୍କଳଗାଥାରେ ଦେଖିବାକୁ ମିଳେ । ଦେଶ ବିଦେଶର ସମକାଳୀନ ପ୍ରସିଦ୍ଧ ପୁରୁଷଙ୍କ ବିୟୋଗରେ ରଚିତ ଶୋକ କବିତାଗୁଡ଼ିକରେ କବିଙ୍କ ମାନବିକ ଆଦର୍ଶ ଓ ପ୍ରାଣର ଆକୁଳତା ଅଭିବ୍ୟକ୍ତ ହୋଇଅଛି । ଏକ ଦୃଷ୍ଟିରେ ଦେଖିଲେ, ଏହାହିଁ ମଧୁସୂଦନ କାବ୍ୟଲୋକ, ଏଥିରେ ପ୍ରକାଶିତ କବିଙ୍କ ଧର୍ମବିଶ୍ୱାସ ତଥା ଜାତୀୟତାରଆଦର୍ଶ ଏହି ପ୍ରବନ୍ଧରେ ଧର୍ମ ଓ ଜାତୀୟତା ପ୍ରସଙ୍ଗରେ ଆଲୋଚିତ ହୋଇଅଛି । ଏଠାରେ କବିଙ୍କ ଖଣ୍ଡକବିତା ଗୁଡ଼ିକର ଆଙ୍ଗିକ ବୈଚିତ୍ର୍ୟ ଓ ରଚନା ପଦ୍ଧତି ଆଲୋଚନା କଲେ ଯଥେଷ୍ଟ ହେବ ।

## ଖଣ୍ଡ କବିତାର ଆଦର୍ଶ ଓ ପରମ୍ପରା

ସବୁ ଦେଶରେ ଖଣ୍ଡ ବା କ୍ଷୁଦ୍ର କବିତାର ଆଦିରୂପ ସଙ୍ଗୀତରେ ଦେଖିବାକୁ ମିଳେ । ଆଧୁନିକ ଯୁଗରେ ଗୀତି କବିତାରେ ଏହାର ବିକାଶ ଘଟିଅଛି । ଏହା ମନୋମୟ, କବିଙ୍କ ବ୍ୟକ୍ତିଗତ ଅନୁଭୂତିରେ ଅନୁରଞ୍ଜିତ ।

ସଙ୍ଗୀତ ଗ୍ରୀକ୍ ନାଟକର ଅଙ୍ଗ ଥିଲା । ତାହାକୁ ବୀଣା ଭଳି ଏକ ତାରଯନ୍ତ୍ରରେ ଗାନ କରି ଯାଉଥିଲା । ସେଥିଲାଗି ଏହାର ନାମ ଥିଲା ଲିରିକ୍ । ଏଥିରେ ନାଟ୍ୟକାର ପ୍ରତ୍ୟକ୍ଷ ଭାବରେ ନିଜର ମନକଥା, ନାଟକୀୟ ଘଟଣାବଳୀ ଉପରେ ଦାର୍ଶନିକ ସୁଲଭ ଚିନ୍ତା ପ୍ରକାଶ କରୁଥିଲେ । ଏ ପରମ୍ପରା ଗୀତିକବିତାର ବ୍ୟକ୍ତିଗତ ଅନୁଭୂତି ପ୍ରକାଶ ଭଙ୍ଗୀରେ ଜୀବନ୍ତ ହୋଇ ରହିଅଛି ।

ନାଟକରେ ନୃତ୍ୟର ଅଙ୍ଗ ରୂପେ ଯେଉଁ ସଙ୍ଗୀତ ପରିବେଶିତ ହେଉଥିଲା, ତାହା ନାଟ୍ୟ ରଚନାର ରୀତି ଅବଲମ୍ବନ କରୁଥିଲା । ଏଥିରେ ତିନିଗୋଟି ପର୍ଯ୍ୟାୟ ରହୁଥିଲା । ପରବର୍ତ୍ତୀ କାଳରେ ଓଡ୍ ବା ଭାବଉଦ୍‌ବୋଧକ କବିତା ଓ ସନେଟ ଆଦି ଏଇଥିରୁ ବିକଶିତ ହୋଇଅଛି ।

ଗୀତି କବିତାର ବିକାଶ ଲୋକ ସଙ୍ଗୀତରୁ ଘଟିଥିବା କଥା ପଣ୍ଡିତମାନେ ବିଶ୍ୱାସ କରନ୍ତି । ଲୋକ ସଙ୍ଗୀତରୁ ବିକଶିତ ଗୀତି କବିତାରେ ନାଟକଜାତ ଗୀତି କବିତା ଭଳି ପ୍ରଣାଳୀବଦ୍ଧ ରଚନା ରୀତି ଦେଖାଯାଏ ନାହିଁ । ମାତ୍ର ଭାବ ଓ ବିଷୟବସ୍ତୁ ଦିଗରୁ ବୈଚିତ୍ର୍ୟ ଦେଖାଯାଏ । ଏହାକୁ ପ୍ରେମଗୀତି ଓ ଶୋକଗୀତି ରୂପେ ଭାଗ କରାଯାଇଥାଏ ।

ଯେଉଁ ଭାବରେ ଉତ୍ପତ୍ତି ହୋଇଥାଉନା କାହିଁକି, ଗୀତି କବିତାର ଆବେଦନ ସାର୍ବଜନୀନ । ଏହାର ଭାବ ସରଳ, ଆକୃତି କ୍ଷୁଦ୍ର । ଏଥିରେ ଗୋଟିଏ ମାତ୍ର ବିଷୟର ଅବତାରଣା କରାଯାଇଥାଏ । ଆନନ୍ଦ ବା ବିଷାଦ ଗୋଟିଏ ପ୍ରକାର ଅନୁଭୂତି ଏଥିରେ ପ୍ରଧାନଭାବେ ପ୍ରକାଶ ପାଇଥାଏ । ଏହାର ବୈଚିତ୍ର୍ୟ ସମସ୍ତଙ୍କୁ ମୁଗ୍ଧ କରେ । ବିଷୟଗତ ଐକ୍ୟ ଓ ଅନୁଭୂତିର ନିବିଡ଼ତା ଗୀତି କବିତାକୁ ସାର୍ଥକ କରେ । ଊନବିଂଶ ଶତକର ପାଶ୍ଚାତ୍ୟ ରୋମାଣ୍ଟିକ କବିମାନେ ନିଜ ଅନ୍ତରର ଭାବୋଚ୍ଛ୍ୱାସ ପ୍ରକାଶ ଲାଗି କଥା-କାବ୍ୟ ବା ଦୀର୍ଘ ବର୍ଣ୍ଣନାତ୍ମକ କବିତା ଅପେକ୍ଷା କ୍ଷୁଦ୍ର ଗୀତି କବିତାକୁ ଅଧିକ ଉପଯୋଗୀ ମନେ କରିଥିଲେ । ଏମାନଙ୍କ କୃତିରେ ଗୀତି କବିତାର ବହୁଳ ବିକାଶ ଘଟିଥିଲା ।

ମଧୁସୂଦନଙ୍କ କ୍ଷୁଦ୍ର କବିତାଗୁଡ଼ିକ ରଚନା ପଦ୍ଧତି ଦିଗରୁ ମୁଖ୍ୟତଃ ପାଶ୍ଚାତ୍ୟ ଗୀତି କବିତାର ଧାରା ଅନୁସରଣ କରିଅଛି । ମାତ୍ର ନାନାଭାବରେ ସେସବୁ ଆମ ପ୍ରାଚୀନ

ପରମ୍ପରା ଦ୍ୱାରା ପୁଷ୍ଟ । ପ୍ରାଚୀନ ଛନ୍ଦ ଯୁଗର ବିଭିନ୍ନ ରାଗରାଗିଣୀ ସେ ବ୍ୟବହାର କରିଛନ୍ତି । ପ୍ରାଚୀନ ଜଣାଣ ଓ ଭଜନର ରଚନା ରୀତି ଅନୁସରଣରେ ସେ ବହୁ ସଙ୍ଗୀତ ରଚନା କରିଅଛନ୍ତି ।

## ଶିଶୁ ଓ କିଶୋର କବିତା

ଶିଶୁ ଓ କିଶୋରଙ୍କ ପାଠୋପଯୋଗୀ କବିତା ରଚନାରେ ମଧୁସୂଦନ ପ୍ରଥମେ ହାତ ଦେଇଥିଲେ । ଏଥିରେ ମନୋରଞ୍ଜନ ଅପେକ୍ଷା ଶିଶୁକୁ ନୀତି ଉପଦେଶ ଦେବାର ପ୍ରୟାସ ଅଧିକ ପରିସ୍ଫୁଟ । ଶିଶୁର ମାନସିକ କୌତୂହଳ ଚରିତାର୍ଥ ନ କରି, ସାଂସାରିକ ନୀତି କଥା ସରଳ ଓ ସହଜ ଭାବରେ ଏଥିରେ ପ୍ରଚାରିତ ହୋଇଅଛି । ବିଦ୍ୟା, ପରିଶ୍ରମ ସଙ୍ଗ, ସୁଶୀଳତା, ସତ୍ୟବ୍ରତ ଭଳି କବିତାଗୁଡ଼ିକ ଏହି ଶ୍ରେଣୀର । ଇଂଲଣ୍ଡର ଅଷ୍ଟାଦଶ ଶତକର କ୍ଲାସିକେଲ ଯୁଗର କବିମାନେ ଶିଶୁମାନଙ୍କ ଲାଗି ଏହି ଧରଣର କବିତା ରଚନା କରୁଥିଲେ । ଫଳରେ ମନେହୁଏ, ସେପରିକି କବିତାଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ପ୍ରେରଣାହୀନ ।[୨]

ଶିଶୁର ମନ ସର୍ବଦା ସଜୀବ, ମୁକ୍ତ ଓ ଚଞ୍ଚଳ । ପ୍ରତ୍ୟେକ ବସ୍ତୁକୁ ବା ବହିଃପ୍ରକୃତିକୁ ସେ ବୁଦ୍ଧି ବଳରେ ନ ବୁଝି ସହଜ ଅନୁଭୂତି ବଳରେ ବୁଝେ । ସେଥିଲାଗି ବୟସ୍କ ବ୍ୟକ୍ତି ଯାହାକୁ ଅହେତୁକ, ଅସମ୍ଭବ ଓ ମିଥ୍ୟା ମନେ କରନ୍ତି, ଶିଶୁ ତାକୁ ସହଜରେ ସତ୍ୟ ଓ ସମ୍ଭବ ମନେକରେ । ଶିଶୁ ସେଥିଲାଗି ଭିନ୍ନ ଭିନ୍ନ ବିଚିତ୍ର ବସ୍ତୁ ମଧ୍ୟରେ ଐକ୍ୟ ବା ସମ୍ପର୍କ ଖୋଜେନାହିଁ । ସେ ଦେଖେ ସଚଳ ଜୀବନ୍ତ ଚିତ୍ର । ନିଜ ଇଚ୍ଛାଶକ୍ତି ବଳରେ ସେ ବାଲିରେ ଘର କରେ, ଭାତ ରାନ୍ଧେ, କନା ବୁଜୁଲା ବା ମାଟିର କଣ୍ଢେଇକୁ ନିଜର ଏକାନ୍ତ ପ୍ରିୟଜନ ବୋଲି ଭାବେ । ଶିଶୁ ମନର ଏହି ବୈଶିଷ୍ଟ୍ୟ ବିଶ୍ଳେଷଣ କରି ରବୀନ୍ଦ୍ରନାଥ ଯଥାର୍ଥରେ କହିଛନ୍ତି, 'ଇଚ୍ଛାଶକ୍ତି ସମ୍ବନ୍ଧରେ ଶିଶୁ ସହିତ ଦେବତାଙ୍କୁ ତୁଳନା କରାଯାଇ ପାରେ । ଶିଶୁ ଯେତେ ସହଜରେ ଇଚ୍ଛା ଅନୁସାରେ ସୃଷ୍ଟି କରିପାରେ ଆମେ ପାରୁନା ।'[୨୩] ଶିଶୁର ମନସ୍ତତ୍ତ୍ୱ ସମ୍ପର୍କରେ ଏହିପରି ଜୀବନ୍ତ ଚିତ୍ର ଅଙ୍କନର ପ୍ରୟାସ ମଧୁସୂଦନ କରିନାହାନ୍ତି ।

ମଧୁସୂଦନଙ୍କ ଶିଶୁ କବିତାଗୁଡ଼ିକ ପ୍ରକାଶିତ ହେବାପୂର୍ବରୁ ପଲ୍ଲୀ ଜନନୀଙ୍କ ମୁଖେ ମୁଖେ ସଂଚରିତ ଶିଶୁ ମନୋରଞ୍ଜକ ଲୋକଗୀତ ଓ ଗ୍ରାମ ଚାଟଶାଳୀରେ ଅବଧାନଙ୍କ କଂଠ ନିଃସୃତ ଚୋଇଲି ଚଉତିଶା ଓ କଳା ମାତ୍ରିକ ଛନ୍ଦ ଶୁଣି ଶିଶୁର ପ୍ରାଣ ଶାନ୍ତି ଲଭୁଥିଲା । ଏହି ସଙ୍ଗୀତରେ ନୀତି ଉପଦେଶ ନଥାଇ ଥିଲା ପଲ୍ଲୀର ମନୋହର ପରିବେଶରେ କଳ୍ପିତ ଜୀବନ୍ତ ଚିତ୍ର । ମାତ୍ର,—

'ବାଳକେ ମୋର ବୋଲ କର
ସତ୍ୟ ପାଳିବ ନିରନ୍ତର ।'

ଏହି ଆଦର୍ଶରେ ମଧୁସୂଦନଙ୍କ କବିତା ରଚିତ ହୋଇଥିଲା । ଏହାର ଅରୂପ ଭାବ କଳ୍ପନା ସହିତ ଶିଶୁ ମନର କୌଣସି ଯୋଗସୂତ୍ର କଳନା କରିହୁଏ ନାହିଁ । ଏମାନେ ସଚେତନ, ଜୀବନ ସଂଗ୍ରାମରେ କ୍ଷତ ବିକ୍ଷତ, ଜୀବନର ଅନିଶ୍ଚିତତା ଓ ନଶ୍ୱରତା ଯେଉଁ ଚିନ୍ତାକୁଳ ଏକ ପ୍ରବୁଦ୍ଧ ମନର ଚିନ୍ତା ଏଥିରେ ପ୍ରତିଫଳିତ ହୋଇଛି । ସାର୍ଥକ ଶିଶୁ ଗୀତର ପ୍ରକୃତି ନିରୂପଣ କରିବାକୁ ଯାଇ ରବୀନ୍ଦ୍ରନାଥ କହିଛନ୍ତି, 'ସଦ୍ୟ କର୍ଷିତ ମାଟିର ଯେଉଁ ସୌରଭ ଅଥବା ଶିଶୁର ନବନୀତ କୋମଳ ଦେହରେ ଯେଉଁ ସ୍ନେହୋଦ୍ରେକକର ସୁବାସ, ତାହାକୁ ପୁଷ୍ପ, ଚନ୍ଦନ, ଗୋଲାପ ଜଳ ଅତର, ବା ଧୂପର ସୁଗନ୍ଧ ସହିତ ଶ୍ରେଣୀଭୁକ୍ତ କରିହୁଏ ନାହିଁ । ସମସ୍ତ ସୁଗନ୍ଧ ଭିତରେ ତାହା ମଧ୍ୟରେ ଯେପରି ଏକ ଆଦିମତା ଅଛି, ଶିଶୁ ଗୀତ ମଧ୍ୟରେ ସେହିପରି ଏକ ଆଦିମ ସୌକୁମାର୍ଯ୍ୟ ଅଛି । ସେହି ମାଧୁର୍ଯ୍ୟକୁ ବାଲ୍ୟରସ ନାମ ଦିଆ ଯାଇପାରେ । ତାହା ତୀବ୍ର ନୁହେଁ, ଗାଢ ନୁହେଁ ; ତାହା ଅତ୍ୟନ୍ତ ସ୍ନିଗ୍ଧ, ସରସ ଓ ଯୁକ୍ତିସଙ୍ଗତିହୀନ ।'[୪] ମଧୁସୂଦନଙ୍କ କବିତାରୁ ଯଥେଷ୍ଟ ଭକ୍ତିରସ ମିଳିପାରେ । ମାତ୍ର ଏହି ସ୍ନିଗ୍ଧ, ସରସ ଯୁକ୍ତିସଙ୍ଗତିହୀନ 'ବାଲ୍ୟରସ' ମିଳେନାହିଁ ।

ଛନ୍ଦମାଳା ଓ ଅନ୍ୟ ଶିଶୁକବିତାଗୁଡ଼ିକୁ ବିଷୟ ବୈଚିତ୍ର୍ୟ ଦଗରୁ ବିଚାର କରାଯାଇ ପାରେ । ଏଥିରେ ଈଶ୍ୱରଙ୍କ କଳ୍ପନା, ପ୍ରକୃତି ଚିତ୍ର, ଗ୍ରାମ ଦୃଶ୍ୟହିଁ ପ୍ରଧାନ ଉପାଦାନ । କେବଳ 'ମୋ ଜନନୀ' କବିତାରେ କବି ନିଜ ମାତୃ ବିୟୋଗର ଅନୁଭୂତି ବର୍ଣ୍ଣନା କରିଛନ୍ତି ।

ଗ୍ରନ୍ଥାବଳୀର ପ୍ରଥମ କବିତାରେହିଁ ପରମେଶ୍ୱରଙ୍କ ଧାରଣା ଦିଆ ହୋଇଅଛି । ଶିଶୁ ଯାହା କରେ, କହେ, ଓ ଭାବେ—ତାହା ପରମେଶ୍ୱର ସର୍ବଦା ଜାଣନ୍ତି । ସେ ସର୍ବଦା ତା ପାଖେ ପାଖେ ରହିଥାନ୍ତି । ତାଙ୍କର ଏହି ସର୍ବଜ୍ଞ ଓ ସର୍ବବ୍ୟାପୀମାନ ରୂପ ସ୍ମରଣ କରି ସତତ ତାଙ୍କୁ ପୂଜା କରିବାହିଁ କର୍ତ୍ତବ୍ୟ । ଏହି କର୍ତ୍ତବ୍ୟ ପାଳନରେ ସଦା ତତ୍ପର ରଖିବା ଉଦ୍ଦେଶ୍ୟରେ ଯେପରିକି ମଧୁସୂଦନ କେବଳ ଶିଶୁମାନଙ୍କ ଲାଗି ନୁହେଁ, ସମସ୍ତଙ୍କ ଲାଗି ଏ କବିତା ରଚନା କରିଛନ୍ତି ।

ପରମେଶ୍ୱରଙ୍କୁ କବି ସମସ୍ତ ପ୍ରକୃତି ଭିତରେ ଅବତୀର୍ଣ୍ଣ ଦେଖିଛନ୍ତି । ପ୍ରକୃତି ବର୍ଣ୍ଣନା ଯେପରିକି ତାଙ୍କର ଲକ୍ଷ୍ୟ ନୁହେଁ ; ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭର ଏହା ଏକ ଉପାୟ । ସମସ୍ତ ଜଗତ ତାଙ୍କର ମହିମା ଘୋଷଣା କରେ । ପ୍ରଭାତ, ସନ୍ଧ୍ୟା ସମସ୍ତ ତାଙ୍କର ଦୟାର ନିଦର୍ଶନ । ପ୍ରକୃତି ଭିତରେ ଈଶ୍ୱରଙ୍କ ସତ୍ତା ଅନୁଭବ କରିବା ସଙ୍ଗେ ସଙ୍ଗେ କବି ପ୍ରକୃତିକୁ ଏକ ଆନନ୍ଦମୟ ଓ ପ୍ରାଣମୟ ରୂପରେ କଳ୍ପନା କରିଅଛନ୍ତି । ପ୍ରକୃତି ମନୁଷ୍ୟର ସୁଖ

ଦୁଃଖର ଭାବ କେବଳ ବର୍ଦ୍ଧନ କରେନାହିଁ ; ମାତ୍ର ତାର ସୁନ୍ଦର ରୂପରେ ମନୁଷ୍ୟର ପ୍ରାଣ ପୁଲକିତ କରେ । ଯେଉଁ ହୃଦୟରେ ସନ୍ତୋଷର ରାଜୁତି, ସେଠାରେ ପରମେଶ୍ୱରଙ୍କ ଆସନ । ଏହି ଭାବରେ ଏହି ଆମ ମନକୁ ଈଶ୍ୱରଙ୍କ ଆଡ଼କୁ ଘେନିଯାଏ । ପ୍ରକୃତିର ଜୀବନ୍ତ ଚିତ୍ର ଅଙ୍କନରେ କବି ସ୍ଥାନେ ସ୍ଥାନେ କୁଶଳତା ଦେଖାଇଛନ୍ତି । ତାଙ୍କ କଳ୍ପନାରେ ରଜନୀ ରାଣୀ କଳା ବେଶ ଧରି ଆସନ୍ତି, ପ୍ରଭାତ ମନ୍ଦ ପଡ଼ିଦେଲକ୍ଷଣି ସମସ୍ତେ ନବ ପ୍ରାଣରେ ଜାଗି ଉଠନ୍ତି, ସମୀର ଫୁଟିଲି ଫୁଲର ଗନ୍ଧ ଗ୍ରହିଇ, ନଦୀ ସରୋବରର ଜଳ ଓ ଶସ୍ୟ କ୍ଷେତ୍ରରେ ତରଙ୍ଗ ଖେଳାଇ ବହିଯାଏ । ଏଇ ଚିତ୍ରରେ ଏକ ଜୀବନ୍ତ ପ୍ରାଣଶକ୍ତିର ସ୍ଫୁରଣ ସହଜରେ କଳନା କରିହୁଏ । ଏହି ଦିଗରୁ ଗୋଟିଏ ଇଂରାଜୀ କବିତାର ଛାୟାରେ ରଚିତ 'ପବନ' କବିତାଟି ଏକ ସାର୍ଥକ ଦୃଷ୍ଟାନ୍ତ ।

> ମୋତେ ନୟନରେ କେହି ଦେଖିନାହିଁ, ଅଛି ମୁହିଁ ସବୁଠାରେ,
> ସମସ୍ତଙ୍କୁ ଛୁଇଁ ପଳାଇଯାଏଁ ମୁଁ, କିଏ ମୋତେ ଧରିପାରେ ;

ଏହି ସହଜ ଓ ସ୍ୱାଭାବିକ ଚିତ୍ରଣ ଭିତରେ ଶିଶୁ ମନର କୌତୁହଳ ବିହି ପରିମାଣରେ ଚରିତାର୍ଥ ହୋଇଥାଏ ।

**ଷଡ ଋତୁ ବର୍ଣନା**

ଷଡ଼ଋତୁ ବର୍ଣ୍ଣନା ଆମର ଏକ ପ୍ରାଚୀନ ପରମ୍ପରା । ପୁରାଣ ଯୁଗର ସାରଳା, ବଳରାମଙ୍କ ଚିତ୍ରଣରେ ପ୍ରାକୃତିକତା ଅଛି । ମାତ୍ର ସେଥି ସହିତ ମନୁଷ୍ୟ ମନରେ କେଉଁ ଋତୁ କି ପ୍ରଭାବ ବିସ୍ତାର କରେ, କିପରି ଭାବରେ କାମ ଭାବନା ଉଦ୍ରେକ କରେ ତାହା ବିସ୍ତୃତ ଭାବରେ ଏହି କବିମାନେ ବର୍ଣ୍ଣନା କରିଛନ୍ତି । ଏହି ପରମ୍ପରା କାବ୍ୟ ଯୁଗରେ କବିମାନେ ଗ୍ରହଣ କରିଛନ୍ତି । ସେମାନଙ୍କ ଋତୁ ଚିତ୍ର ନାଗରିକ ସମ୍ଭୋଗ ବର୍ଣ୍ଣନାର ଏକ ଅଙ୍ଗମାତ୍ର ।

ବହିଃଦୃଶ୍ୟ ଚିତ୍ରଣରେ କେତେକ ସାମ୍ୟ ଥିଲେହେଁ, ମଧୁସୂଦନ ଏହି ପରମ୍ପରାର ଅନୁସରଣ କରି ନାହାନ୍ତି । ପ୍ରକୃତି ଏଠାରେ ଉଦ୍ଦୀପନ ବିଭାବର କାର୍ଯ୍ୟ କରିନାହିଁ । ଏହା ପର୍ବତ, ପ୍ରତି ଋତୁର ଫୁଲ, ଫଳ, ତରୁଲତା, ନଦୀ ଅରଣ୍ୟ ଓ ପର୍ବତର ସ୍ୱାଭାବିକ ଚିତ୍ରରେ ଜୀବନ୍ତ । ଏହି ବର୍ଣ୍ଣନାରେ ମନୁଷ୍ୟକୁ କବି ଗୌଣ ସ୍ଥାନ ଦେଇଛନ୍ତି ; ଠିକ୍ ଯେପରି ଦିଗ୍‌ଦୃଶ୍ୟରେ ଶିଳ୍ପୀ ମନୁଷ୍ୟର ଚିତ୍ର ଅଙ୍କନ କରିଥାନ୍ତି । ଶରତ ସନ୍ଧ୍ୟାରେ ଗାନରତା କୁମାରୀ, ଅଥବା ଆଖୁ ଶାଳରେ ଗଳ୍ପରତ ଗ୍ରାମବାସୀଙ୍କ ଚିତ୍ର ଏହି ଦୃଶ୍ୟ ଓ ପରିବେଶକୁ ସ୍ପଷ୍ଟ ଓ ପ୍ରତ୍ୟକ୍ଷୀଭୂତ କରିବା ଲାଗି ପ୍ରଦତ୍ତ ହୋଇଅଛି ।

ମଧୁସୂଦନଙ୍କ ବର୍ଣ୍ଣନା ଅଧିକାଂଶ ସ୍ଥାନରେ ନୀରସ, ଶୁଷ୍କ ବିବରଣୀ । ଏଥିରେ ଘଟଣା ଓ ତଥ୍ୟର ପ୍ରାକୃତିକତା ଥାଇପାରେ. ମାତ୍ର ଅନୁଭୂତିର ସଜୀବତା ଓ ସ୍ୱାଭାବିକ ଚିତ୍ରଣ ନାହିଁ । ବସନ୍ତ ପରେ ଗ୍ରୀଷ୍ମ ଆସେ, ଏହିପରି ବାକ୍ୟ ଶିଶୁକୁ ବୁଝେଇଲି ଭଳି କୁହା

ଯାଇଅଛି । ଏହା ସାଧାରଣ ପ୍ରତ୍ୟକ୍ଷୀଭୂତ ଘଟଣା । ଏଥିରେ କବିଙ୍କ କଳ୍ପନା, ଅନୁଭୂତ ବା ବ୍ୟକ୍ତିଗତ ଦୃଷ୍ଟିକୋଣ ମିଶିନାହିଁ । ଅନୁଭୂତି ଅଭାବରୁ କେତେକ ଚିତ୍ର ଅସ୍ୱାଭାବିକ ହୋଇଛି । ବସନ୍ତ ଋତୁରେ ଅରଣ୍ୟବର୍ଣ୍ଣନା ଏହାର ଏକ ଦୃଷ୍ଟାନ୍ତ । ପୁଷ୍ପ ପରିମଳ ଓ ମଳୟର ମାଦକତା ଯାହା ପ୍ରକୃତିପ୍ରାଣ ମନୁଷ୍ୟଠାରେ ମୂଲ୍ୟବାନ ତାହା ଅରଣ୍ୟ ଜୀବ ଅନୁଭବ କରୁଥିବାର କବି ଦେଖିଛନ୍ତି । ଏଥିରେ ଅରଣ୍ୟ ପ୍ରକୃତି ବା ବସନ୍ତର ପରିବେଶ ଆଦୌ ଜୀବନ୍ତ ହୋଇନାହିଁ ।

## ଗ୍ରାମ ଚିତ୍ର

ଊନବିଂଶ ଶତକର ଇଂଲଣ୍ଡରେ ଶିଳ୍ପସମୃଦ୍ଧ ନାଗରିକ ଜୀବନର ବିକାଶ ସଙ୍ଗେ ସଙ୍ଗେ ପଲ୍ଲୀର ଦୃଶ୍ୟ, ପଲ୍ଲୀର ପ୍ରକୃତି ପ୍ରତି ଏକ ପ୍ରକାର ମୋହ କବି ଓ ଭାବୁକଙ୍କ ମନରେ ଜାତ ହୋଇଥିଲା । ସେମାନଙ୍କଠାରେ ପଲ୍ଲୀର କୋଳ ଥିଲା ଶାନ୍ତ ଓ ସୁନ୍ଦର, ପବିତ୍ର ଓ ମଧୁର । ତୁଳନାରେ ନଗର ଥିଲା କୁତ୍ସିତ ଅପବିତ୍ର ଅନୀତି ଓ ଅନ୍ୟାୟର ପୀଠସ୍ଥଳ । ଏକ ମାନସିକ ଭାବାବେଗରେ ପ୍ଳାବିତ ହୋଇ ନିବିଡ଼ ଭାବରେ ପଲ୍ଲୀର ପରିବେଶ, ପ୍ରକୃତି ଓ ସରଳ ଜନସାଧାରଣଙ୍କୁ ହୃଦୟର ସହିତ ସୁଖ ପାଇବା, ସେଇମାନଙ୍କ ସୁଖଦୁଃଖ ପୂର୍ଣ୍ଣ ଜୀବନକୁ ସାହିତ୍ୟରେ ଚିତ୍ର କରିବା ଲାଗି ବିଶେଷ ଆଗ୍ରହ ଏଇ ଯୁଗର କବିମାନଙ୍କଠାରେ ପ୍ରକାଶ ପାଇଥିଲା । ପଲ୍ଲୀର ଶାନ୍ତିମୟ କୋଳକୁ ଫେରିଯିବା ଲାଗି ବ୍ୟାକୁଳତା ଗୋଲ୍‌ଡସ୍ମିଥ୍‌ଙ୍କଠାରୁ ଓ୍ୱାଡ୍‌ସ ଓ୍ୱାର୍ଥଙ୍କ ପର୍ଯ୍ୟନ୍ତ ବହୁ କବିଙ୍କଠାରେ ଦେଖିବାକୁ ମିଳେ ।

ଓଡ଼ିଆ କବିତା ଆରମ୍ଭ ଦିନରୁ ପଲ୍ଲୀ ପରିବେଶ ଭିତରେ ବଢ଼ିଥିଲା । ପୂର୍ବଯୁଗର ସାରଳା, ବଳରାମଙ୍କଠାରୁ କାବ୍ୟ ଯୁଗର ଭକ୍ତଚରଣ, ଦୀନକୃଷ୍ଣ, ଅଭିମନ୍ୟୁଙ୍କ ପର୍ଯ୍ୟନ୍ତ ନଗର ଥିଲା କଳ୍ପନାର ବସ୍ତୁ; ମାତ୍ର ପଲ୍ଲୀ ଥିଲା ସାଧାରଣ ସ୍ୱୀକୃତ ସତ୍ୟ । ଏପରିକି ବଳରାମ ଦାସ ଅଯୋଧ୍ୟାର ବର୍ଣ୍ଣନା ପ୍ରସଙ୍ଗରେ ପୁରସବୁ ତେଜପତ୍ରରେ ଛାଆଣି ହୋଇଥିବାର କଳ୍ପନା କରିଛନ୍ତି । ଏହା ଘଟିବା ସ୍ୱାଭାବିକ । କୃଷି ସଭ୍ୟତାର ପରିପ୍ରେକ୍ଷୀରେ ନଗରର ବିକାଶ ଘଟିବା ସମ୍ଭବ ନଥିଲା । ଊନବିଂଶ ଶତକକୁ ପ୍ରଥମ କରି ନଗର ଜୀବନର ଭିତ୍ତି ପଡ଼ିଲା । ପରବର୍ତ୍ତୀ କାଳରେ ଭଗ୍ନ ପ୍ରାୟ ଗ୍ରାମଜୀବନର ପୁନର୍ଗଠନ କଳ୍ପନାକୁ କେନ୍ଦ୍ରକରି ରାଜନୀତିକ ଓ ସାମାଜିକ ଚିନ୍ତା ପ୍ରକାଶ ପାଇଥିଲା ।

ଆଧୁନିକ କାବ୍ୟଧାରାର ପ୍ରଧାନ ପ୍ରବର୍ତ୍ତକ ରାଧାନାଥଙ୍କ ଦୃଷ୍ଟି ପ୍ରକୃତିର ଭୀଷଣ, ରୁଦ୍ର ମନୋହର ରୂପ ଅଙ୍କନ ଲାଗି, ବିଜନ ଅରଣ୍ୟ, ଦୁର୍ଗମ ଗିରିମାଳା, ନଦନଦୀ, ହ୍ରଦ ସମୁଦ୍ର ପ୍ରତି ଧାବିତ ହୋଇଅଛି । ପଲ୍ଲୀ ତାଙ୍କ କବିତାରେ କ୍ୱଚିତ୍ ସ୍ଥାନ ପାଇଅଛି ।

"ଖେଳା ଅଗଣାରେ          କଲେଇ ଗଦାର
ଆମୋଦ ସଙ୍ଗତେ ପୁଣି
ବବୁର ପ୍ରସୂନ—          ବାସ ଜନପଦେ
ପ୍ରସରଇ ଅହର୍ନିଶି ।" *

ଏହି ଧରଣର ପଂକ୍ତି ରାଧାନାଥଙ୍କ କବିତାରେ ଯେପରିକି ନିପାତନ । ଏପରିକି ଉଷା କାବ୍ୟରେ ଜାନପଦ ପୀଠଗୁଡ଼ିକୁ ସେ କଳ୍ପନାରେ ଗୋଟିଏ ଗୋଟିଏ ସମୃଦ୍ଧ ନଗର ରୂପେ ଦେଖିଛନ୍ତି । ସେଠାରେ ସିନ୍ଦୂର ହରିଦ୍ରା ରଞ୍ଜିତ ଗ୍ରାମ ଦେବତା ଅଭିଜାତ ଦେବାଦେବୀ ରୂପେ, ସରଳ କୃଷକ କୃପାଣହସ୍ତ ବୀର ରୂପରେ ଅବତୀର୍ଣ୍ଣ । ସମସ୍ତ ଚିତ୍ର ଏକ କାଳ୍ପନିକ ପୌରାଣିକତା ଓ ଆଭିଜାତ୍ୟରେ ଆଚ୍ଛନ୍ନ ।

ପଲ୍ଲୀର ସ୍ୱାଭାବିକ ପ୍ରାକୃତିକ ପରିବେଶରୁ ଆଧୁନିକ ଜୀବନ କିପରି ବିଚ୍ଛିନ୍ନ ହୋଇ ଯାଉଅଛି, ତାହା ଯେପରିକି ମଧୁସୂଦନ ପ୍ରଥମେ ଅନୁଭବ କରିଛନ୍ତି । ନଗରର କୋଲାହଳ ପୂର୍ଣ୍ଣ କୃତ୍ରିମ ଜୀବନ ଛାଡ଼ି ପଲ୍ଲୀର ସରଳ କୃଷକ ଓ ଗୋପାଳଙ୍କ ଗହଣକୁ ଫେରିଯିବାକୁ ବ୍ୟାକୁଳତା ପ୍ରକାଶ କରିଛନ୍ତି । 'ନଗରତ ପ୍ରଭାତ' କବିତାଟି ଏହାର ସୁନ୍ଦର ନିଦର୍ଶନ ।

'ଛାଡ଼ି ବନ୍ଧୁ ନଗର ଚହଳ,
ଯିବା ଚାଲ ଯେଉଁସ୍ଥାନେ          ଗୋପାଳ କୃଷକମାନେ
ଆନନ୍ଦେ କଟାନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।' ୭

ଋତୁ କବିତାଗୁଡ଼ିକରେ ଗ୍ରାମର ବାଳକ, ବାଳିକା, କୃଷକଙ୍କ ଚିତ୍ର ସ୍ୱାଭାବିକ ଓ ସୁନ୍ଦର ହୋଇଅଛି । ସନ୍ଧ୍ୟାରେ ଗାଆଁ ବାଡ଼ରେ ଜହ୍ନିଫୁଲ ଫୁଟିଲେ ପିଲାଏ ଖୁସିରେ ତୋଳି କିପରି ଖେଳନ୍ତି, ଶରତର ଜହ୍ନ ଆଲୁଅରେ ଅଳଅଳ କୁମାରୀ ଝିଏ ଘନକୃଷ୍ଣ ଜୁଡ଼ାରେ ଧଳା ଫୁଲଟିମାନ ଖୋସି, ଗୀତ ଗାଇ କିପରି ଆନନ୍ଦରେ ଲୋଟି ପଡ଼ନ୍ତି, ଆଖୁଶାଳରେ ଗାଆଁର ସୁଖ ଦୁଃଖ କାହାଣୀ କହି ବୃଷୀଏ କିପରି ରାତି ପୁହେଇ ଦିଅନ୍ତି—ସେ ସବୁ ଚିତ୍ର ଅନ୍ତରର ଅନ୍ତରଙ୍ଗ ଅନୁଭୂତିରୁ କବି ପ୍ରଦାନ କରିଥିଲେ ଭଳି ମନେହୁଏ । ଏଇ ସବୁଥିରେ ଯେପରିକି ଆମର ପଲ୍ଲୀର ଆନନ୍ଦମୟୀ ଆତ୍ମା ରୂପ ପରିଗ୍ରହ କରିଅଛି । ମାତ୍ର ବାସ୍ତବ ଦୃଷ୍ଟିରେ ପଲ୍ଲୀ ଜୀବନର କଳୁଷ କାଳିମା, ଅଭାବ ଓ ଅସଙ୍ଗତି ଦିଗ ପ୍ରତି କବି ଧ୍ୟାନ ଦେଇ ନାହାନ୍ତି । ପରବର୍ତ୍ତୀ କାଳରେ ନନ୍ଦକିଶୋର, ପଦ୍ମଚରଣଙ୍କଠାରୁ ଅତ୍ୟାଧୁନିକ କବି ସଚ୍ଚିଦାନନ୍ଦଙ୍କ ପର୍ଯ୍ୟନ୍ତ ପଲ୍ଲୀ ଜୀବନ ଧେନି କବିତା ରଚନାରେ ଯେପରି ଆଗ୍ରହ ପ୍ରକାଶ ପାଇଛି, ତାହାର ପ୍ରଥମ ସୂତ୍ରପାତ ଯେ ମଧୁସୂଦନ କରିଥିଲେ ଏହା ସହଜରେ ଧାରଣା କରି ଯାଇପାରେ ।

## ପାରିବାରିକ ଚିତ୍ର

ପ୍ରାଚୀନ କାଳରେ କାବ୍ୟ ଶେଷରେ କବିମାନେ ଭଣିତା ଦେଉଥିଲେ । ସେଥିରେ କବିଙ୍କ ବ୍ୟକ୍ତିଗତ ପରିଚୟ, ନାମ, ଜାତି, ପେଶା, ପିତାମାନଙ୍କ ପରିଚୟ, ବାସସ୍ଥାନ ଓ ଆରାଧ୍ୟ ଦେବତାଙ୍କ ପ୍ରସଙ୍ଗ ସ୍ଥାନ ପାଉଥିଲା । ମାତ୍ର ଆଧୁନିକ କବି ଏହାକୁ ଅନାବଶ୍ୟକ ମନେ କରନ୍ତି । କବିଙ୍କ ବୃହତ୍ତର ଜୀବନ ବୃତ୍ତର, ଚର୍ଯ୍ୟା ଓ ବ୍ୟକ୍ତିତ୍ୱର ପରିଚୟ କାବ୍ୟର ଶୈଳୀ, ଭାବ, ଭାଷା ସୂଚେଇ ଦିଏ ।

ଅନୁଭୂତି କବିତାର ପ୍ରାଣ । ଏହା ଯେଉଁ ପରିମାଣରେ ନିବିଡ଼ ଓ ଅନ୍ତରଙ୍ଗ ହୁଏ, ସେହି ପରିମାଣରେ କବିତା ସାର୍ଥକ ହୁଏ । ଏଇ ଅନୁଭୂତି ସମାଜ ସମ୍ପର୍କରୁ, ଅଥବା ପରିବାର ଓ ପୁରଜନଙ୍କ ସମ୍ପର୍କରୁ ଜାତ ହୋଇପାରେ । ନିଜ ପାରିବାରିକ ଅନୁଭୂତି କପରି ଗଭୀର ହୋଇପାରେ, ମଧୁସୂଦନଙ୍କ 'ମୋ ଜନନୀ' କବିତାଟି ତାହାର ଏକ ଦୃଷ୍ଟାନ୍ତ । ଏଥିରେ ଅନୁଭୂତି ସହିତ ସ୍ମୃତି, ପୁଣି ସ୍ମୃତି ସହିତ ସତ୍ୟୋପଲବ୍ଧି ମିଶି ରହିଅଛି । କବି କଳ୍ପନାରେ ଜନନୀଙ୍କ ମୁଖ ଦେଖିଚାନ୍ତି, ତାଙ୍କ ସ୍ନେହମୟ କୋଳର ସ୍ପର୍ଶ ଅନୁଭବ କରିଛନ୍ତି । ଶୈଶବରେ ମାତୃବିୟୋଗର ଦୁଃଖ ସ୍ମରଣ କରି, ସେଥିରେ ଆତ୍ମବିସ୍ମୃତ ବା ଅଭିଭୂତ ହୋଇ ଯାଇ ନାହାନ୍ତି । ନିଜ ସ୍ନେହମୟୀ ଜନନୀଙ୍କ ରୂପ ସମଗ୍ର ବିଶ୍ୱବ୍ରହ୍ମାଣ୍ଡରେ ଜଳ, ସ୍ଥଳ, ଆକାଶ ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ଦେଖିଛନ୍ତି । ବିଶ୍ୱାସପୂର୍ଣ୍ଣ ହୃଦୟରେ ରକ୍ତମାଂସର ଜନନୀ ମୂର୍ତ୍ତିକୁ ଅଶରୀରୀ ଅଖଣ୍ଡ ଭାବଲୋକରେ ଚିର ସୁନ୍ଦର, ଚିର ଶାନ୍ତିମୟ ରୂପେ ଉପଲବ୍ଧି କରିଛନ୍ତି ।

## ଭାବଉଦବୋଧକ କବିତାମାଳା – କବିତାବଳୀ ଓ କୁସୁମାଞ୍ଜଳି

ପ୍ରାଚୀନ ଯୁଗରେ କୋଇଲି, ମେଘ ଓ ହଂସ ଆଦିକୁ ଉଦ୍‌ବୋଧନ କରି କବିତା ରଚନାର ଧାରା ଦେଖା ଦେଇଥିଲା । ସେଥିରେ ପୁତ୍ର ବିଧୁରା ଜନନୀ ବା ବିରହିଣୀ ନାରୀର କରୁଣ କ୍ରନ୍ଦନଧ୍ୱନି ଅନୁରଣିତ ହେଉଥିଲା । ମାତ୍ର ମଧୁସୂଦନଙ୍କ ଉଦ୍‌ବୋଧନ କବିତାଗୁଡ଼ିକ ଏହି ପରମ୍ପରାରୁ ଜାତ ନୁହେଁ । ପାଶ୍ଚାତ୍ୟ ଓଡ୍‌ସାହିତ୍ୟର କବିତା ତାଙ୍କର ଆଦର୍ଶ । ଓଡ୍ ବା ଉଦ୍‌ବୋଧନ ରୂପରେ କଳ୍ପିତ ଏହି ଛନ୍ଦମୟ ବା କ୍ୱଚିତ୍ ଛନ୍ଦହୀନ ଗୀତି କବିତାରେ ସାଧାରଣତଃ ଗମ୍ଭୀର ବିଷୟ, ଉଦାତ୍ତଭାବ, ଅନୁଭୂତି ଓ ଶୈଳୀ ଆତ୍ମପ୍ରକାଶ କରିଥାଏ । ୭ ଅନ୍ୟଭାବରେ କହିଲେ—'ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଘେନି ରଚିତ ଆବେଗମୟ ଓ ଭାବପୂର୍ଣ୍ଣଗୀତି କବିତା, ଯେଉଁଥିରେ କି ଉଚ୍ଚ ବିଷୟର ଅବତାରଣା କରାଯାଇଥାଏ ତାହାହିଁ ଓଡ୍ ।' ୮ ଏହା ଅତି କ୍ଷୁଦ୍ର ବା ଦୀର୍ଘ ନୁହେଁ । ଏହାର ଗଦ୍ୟ ବା ପଦ୍ୟ ରଚନାରେ କୌଣସି ଏକ

ନିର୍ଦ୍ଦିଷ୍ଟ ରୂପ ଦେଖାଯାଏ ନାହିଁ । ତେବେ ଏହା ସଙ୍ଗୀତ ମୂର୍ଚ୍ଛନାରୁ ବଞ୍ଚିତ ନୁହେ । ବିଷୟ ନୁହେ, ଭାବ ବର୍ଣ୍ଣନା ଏହାର ଉପାଦାନ । ଏହାର ଗଭୀର ଭାବ, ଗମ୍ଭୀର କାବ୍ୟିକ ଭାଷା ସାଧାରଣ ଓ ବ୍ୟକ୍ତିଗତ ଅନୁଭୂତି ପ୍ରକାଶ ପାଇଁ ଏକାନ୍ତ ସମର୍ଥ । ୯

ଏହି ଦୃଷ୍ଟିରେ ଦେଖିଲେ, ଛନ୍ଦମାଳାର ପୃଥିବୀ ପ୍ରତି, ଜନ୍ମଭୂମି, ନଦୀପ୍ରତି, ଶୋଭା, ଧ୍ୱନି ; କବିତାବଳୀର ନିଶୀଥଚିନ୍ତା, ଭାରତୀ ବନ୍ଦନା, ଶ୍ମଶାନ, ଆକାଶ ପ୍ରତି, ଜୀବନଚିନ୍ତା ଠାରୁ କୁସୁମାଞ୍ଜଳିର ଆଶା, ନବ ବସନ୍ତ ଭାବନା, ଏ ସୃଷ୍ଟି ଅମୃତମୟ, ନବଯୁଗର ଅଭିଷେକ, ଋଷିପ୍ରାଣେ ଦେବାବତରଣ, ହିମାଚଳେ ଉଦୟ ଉତ୍ସବ ପର୍ଯ୍ୟନ୍ତ ସମସ୍ତ କବିତାକୁ ଏକଶ୍ରେଣୀର କରି ଯାଇପାରେ । ଏଗୁଡ଼ିକ ସବୁ ଭାବଉଦ୍‌ବୋଧକ କବିତା । ଉଚ୍ଚଚିନ୍ତା, ଗଭୀରଭାବ ଓ ଅନୁରୂପ ଗମ୍ଭୀର ଶୈଳୀ, ଭାଷା ଏହି କବିତାଗୁଡ଼ିକରେ ସର୍ବତ୍ର ଦେଖିବାକୁ ମିଳେ । ଭାବସମ୍ପୃକ୍ତି ଯଦି ଉଦ୍‌ବୋଧନ କବିତାର ଆଦର୍ଶ ହୁଏ, ତେବେ ଏଗୁଡ଼ିକ ଆମ ସାହିତ୍ୟରେ ଏହି ଶ୍ରେଣୀର ଶ୍ରେଷ୍ଠ କବିତା ।

କବିଙ୍କ ଆଧ୍ୟାତ୍ମିକ ଜୀବନରୁ ଏହି କବିତାବଳୀର ଉଚ୍ଚଭାବ ଆସିଅଛି । ପ୍ରତ୍ୟେକ ବସ୍ତୁର ଅନ୍ତରାଳରେ ପରିଦୃଶ୍ୟମାନ ଜଗତର ଅନ୍ତସ୍ଥଳରେ ଏକ ବୃହତ୍ତର ଓ ମହତ୍ତର ଶକ୍ତିର ଧାରଣା କବି ସର୍ବଦା କରି ଅଛନ୍ତି । ତେଣୁ ବାହାର ଦୃଷ୍ଟିରେ ଯାହା ଅକିଞ୍ଚିତକର, କବିଙ୍କ ଅନ୍ତର୍ଦୃଷ୍ଟିରେ ତାହା ମହାନ୍ ଓ ସୁନ୍ଦର ରୂପରେ ପ୍ରତିଭାତ ହୋଇଅଛି । ଏହି ଅନୁଭୂତିର ସ୍ୱରୂପ ବିଶ୍ଳେଷଣ କରି ରବୀନ୍ଦ୍ରନାଥ ଯଥାର୍ଥରେ କହିଛନ୍ତି—'ଗୋଲାପ ଫୁଲଟିଏ ବାକୁଷି ନିକଟରେ ସୁନ୍ଦର ନୁହେ, ମନୁଷ୍ୟ ନିକଟରେ ସୁନ୍ଦର । ଯେଉଁ ଲୋକ ପାଖୁଡ଼ା ବା ବୃନ୍ତରେ ନୁହେ, ଏହାର ଏକ ସମଗ୍ର ରୂପର ଆନ୍ତରିକ ସାର୍ଥକତା ଲାଭ କରିଅଛି, ତାହାରିଠାରେ ଗୋଲାପ ସୁନ୍ଦର ।' ୧୦ ଏହି ଭାବରେ ମଧୁସୂଦନଙ୍କ ଧ୍ୟାନଦୃଷ୍ଟି 'ପୃଥିବୀ ପ୍ରତି' କବିତାରେ ସାମାନ୍ୟ ଦୁବ ଭିତରେ ବି ପୃଥିବୀର କୋମଳ କୋଳର ଅନୁଭବ କରିଅଛି ।

'ସ୍ନେହେ ରୋମାଞ୍ଚିତ ଦୁର୍ବାଦଳମୟ
ତୋ ଶ୍ୟାମଳ ଅଙ୍କସ୍ଥଳ
ସେ କୋମଳ କୋଳ ଦେଖିଲେ ନୟନେ
ହୃଦ ହୁଏ ସୁଶୀତଳ ।' ୧୧

କେତେବେଳେ କବି କଣ୍ଠ ପ୍ରକୃତିର ଅନନ୍ତ ସୌନ୍ଦର୍ଯ୍ୟରେ ଅବଗାହନ କରିଛନ୍ତି, କେତେବେଳେ ଅଖଣ୍ଡ ବିଶ୍ୱଜୀବନ ଓ ଅନନ୍ତ ଯୌବନ ସ୍ରୋତରେ ନିଜକୁ ଭସାଇ ଦେଇଛନ୍ତି, କେତେବେଳେ ଅବା ବ୍ରହ୍ମୋପଲବ୍ଧିରେ ଆତ୍ମବିଲୀନ ହୋଇଛନ୍ତି । ଧରଣୀର ଅସରନ୍ତି ସମ୍ପଦ ଓ ସୌନ୍ଦର୍ଯ୍ୟ, ଆକାଶର ବିପୁଳତା, ନଦୀର ଅନନ୍ତ ପ୍ରବାହ—ସର୍ବତ୍ର କବିଙ୍କ ଆତ୍ମା ଆଦର୍ଶର ସନ୍ଧାନ କରିଅଛି । ଯେଉଁ ଆଦର୍ଶ ଓ ସତ୍ୟୋପଲବ୍ଧି ପାଇଁ ତାଙ୍କର ପ୍ରାଣ ସଦା

ଉନ୍ମୁଖ ଥିଲ, ତାହାର ବିକାଶ ସେ ନବଯୁଗର ଅଭ୍ୟୁଦୟରେ, ନବ ଆଶାର ଆଲୋକରେ ଦେଖିଛନ୍ତି । ସମାଜର ଅନ୍ୟାୟ ଅତ୍ୟାଚାର, ମନୁଷ୍ୟ ହୃଦୟର ଦୁର୍ବଳତା, ମୋହ ଭ୍ରାନ୍ତି ଓ ଅନ୍ଧବିଶ୍ୱାସ କବଳରୁ ନିଜେ ମୁକ୍ତ ହେବାକୁ, ସମସ୍ତଙ୍କ ଲାଗି ମୁକ୍ତିର ପଥ ସହଜ କରିବାକୁ ତାଙ୍କର ପ୍ରାଣ ସଦା କାନ୍ଦୁଅଛି । ଆଶା ଓ ନୈରାଶ୍ୟର ନିରନ୍ତର ଦୋଳନ ଭିତରେ 'ଆଶା' କବିତାଟି କଳ୍ପିତ । ଦୁର୍ବାର ଆତ୍ମଶକ୍ତି ଓ ଲକ୍ଷ୍ୟ ପ୍ରତି ଅଖଣ୍ଡ ଅନୁରାଗ ଯେଉଁ ଆପଣାର ପଥ ଆପେ ଗଢ଼ିନେବାର ଅନ୍ତରଙ୍ଗ ଅନୁଭୂତି 'ନଦୀ ପ୍ରତି' କବିତାରେ ପ୍ରକାଶିତ । ନଦୀ ଏକ ବାଚକ ଉପଲକ୍ଷ ମାତ୍ର । କବି ଯେପରିକି ନିଜ ହୃଦୟ ସହିତ ଆଳାପ କରିଛନ୍ତି—

"ହୃଦୟ ଅନୁରାଗେ ଧାଇଁଲୁ କେତେ ଆଗେ
ଆପଣା ପଥ ଆପେ ଗଢ଼ି
ବିଘ୍ନ ବ୍ୟାଘାତ ରାଶି ଗଣ୍ଡେ ଯାଆନ୍ତେ ଭାସି
ଆନନ୍ଦ ତୋର ଗଲା ବଢ଼ି ।

ଆନନ୍ଦେ ବିମଳ ତରଳ
ତୋ ମୂର୍ତ୍ତି ଦିଶିଲା ଉଜ୍ଜଳ ।
କଳ କଳ ନାଦରେ ତୋ କଣ୍ଠୁ ହର୍ଷଭରେ
ଛୁଟିଲା ଗୀତ ଅନର୍ଗଳ ।" ୧୨

ସ୍ଥାନ ଓ କାଳର ଅସୀମ ବ୍ୟାପ୍ତି ଅନନ୍ତ ପ୍ରବାହ ଭିତରେ କବିଙ୍କ କଳ୍ପନା କିପରି ନିର୍ଲିପ୍ତ ଭାବରେ ବିଚରଣ କରିଅଛି 'ଆକାଶ ପ୍ରତି' କବିତାଟି ତାହାର ସୁନ୍ଦର ନିଦର୍ଶନ । ଆଧୁନିକ ବିଜ୍ଞାନର ଜ୍ଞାନାଲୋକ ଓ ଦର୍ଶନର ଭାବାଦର୍ଶ ଏହି କବିତାର ପ୍ରାଣ । ଅଳ୍ପଧୀ ମନୁଷ୍ୟ କେବଳ ଉପସ୍ଥିତ ଘଟଣାରେ ଜଡ଼ିତ ହୋଇଯାଏ । ମାତ୍ର ଯାହାର ହୃଦୟ ଆକାଶ ଭଳି ଉଦାର, ମହାନ୍ ଓ ସତ୍ୟଜ୍ଞାନ ଆଲୋକିତ, ରାଜ୍ୟ ସାମ୍ରାଜ୍ୟର ପତନ ଉତ୍ଥାନ, ଜନ୍ମମୃତ୍ୟୁ, ଋତୁଚକ୍ରର ଆବର୍ତ୍ତନ, ଏପରିକି ନଭୋମଣ୍ଡଳରେ ଗ୍ରହ ଉପଗ୍ରହର ସୃଷ୍ଟି ଓ ବିଲୟ ପର୍ଯ୍ୟନ୍ତ ସମସ୍ତ ଘଟଣାର ମୂଲ୍ୟ ତା ପାଖେ କିଛି ନୁହେ । ଅନୁରୂପ ଭାବ ଟେନିସନ୍‌ଙ୍କ 'ଭାଷ୍ଟନେସ୍' କବିତାରେ ପ୍ରକାଶ ପାଇଛି । 'ଗୋଟି ଗୋଟି ହୋଇ ଅଜସ୍ର ମୁହଁ ଆମର ଏହି ଅନ୍ଧକାର ଧରଣୀରେ ହଜିଯାଏ, ସଙ୍ଗେ ସଙ୍ଗେ ଅଜସ୍ର ଘର ଗୋଟି ଗୋଟି ହୋଇ ଭାଙ୍ଗିଯାଏ । ହୁଏତ ଅଗଣିତ ଗ୍ରହ ଅସଂଖ୍ୟ ସୂର୍ଯ୍ୟ ଚତୁର୍ଦ୍ଦିଗରେ ଘୂରି ବୁଲିବେ, କେତେ କାଳ ଧୂଳିରେ ମିଶିଯିବେ । ବସନ୍ତ ଗ୍ରୀଷ୍ମ, ଶରତ ଆଉ ଶୀତ, ପୁଣି ପୃଥିବୀର ଏହିସବୁ ପୁରାତନ ପରିକ୍ରମଣ, ନୂଆ ପୁରୁଣା ସବୁ ସାମ୍ରାଜ୍ୟର ବିକାଶ ଓ ବିଲୟ – ତରଙ୍ଗର ପରିବର୍ତ୍ତନ - କଣ ବା ଏହି ସମସ୍ତର ମୂଲ୍ୟ ?' ୧୩

କବିଙ୍କ ଚେତନା ଅନନ୍ତ ଆଦର୍ଶ ମୁଖରେ ଗତିକଲା ବେଳେ ପଥ ମଧ୍ୟରେ ବିଚିତ୍ର ଦୃଶ୍ୟ, ଧ୍ୱନି, କୁସୁମର ସୁରଭି, ନିଶୀଥର ନିର୍ଜନତା, ଗ୍ରାମର ସରଳ କୃଷକଙ୍କ ପବିତ୍ର ଜୀବନ, ଶିଶୁର ସହଜ ସୁନ୍ଦର ହାସ୍ୟବୋଳା ମୁଖ, ତରୁଣର ଦର୍ପ, ପ୍ରୌଢ଼ର ପରିପକ୍ୱଜ୍ଞାନ, ଧର୍ମର

ଅହଂକାର, ସବଳର ଅନ୍ୟାୟ, ଦୁର୍ବଳର ବେଦନା ଯାହାର ଅସ୍ତିତ୍ୱ ଅସ୍ୱୀକାର କରିନାହିଁ । ସର୍ବଦା ସବୁ ଅବସ୍ଥାରେ ଅନାସକ୍ତ ରହି ଶେଷ ଆଶ୍ରୟ ଖୋଜିଛି ଭୂମାରେ ବା ଅନନ୍ତରେ । ଏହି ଭୂମାର ଉପଲବ୍ଧି, ଏହି ଅନନ୍ତ ପରମେଶ୍ୱରଙ୍କ ସହିତ ପ୍ରାଣ ବିନିମୟ ଓ ତାଙ୍କଠାରେ ଆତ୍ମସମର୍ପଣର ଅନୁଭୂତି ସବୁଠାରୁ ନିବିଡ଼ ଓ ସୁନ୍ଦରଭାବରେ ଆତ୍ମପ୍ରକାଶ କରିଅଛି 'ଋଷିପ୍ରାଣେ ଦେବାବତରଣ' ଓ 'ହିମାଚଳେ ଉଦୟ ଉତ୍ସବ' ଏହି ଦୁଇ ଶ୍ରେଷ୍ଠ କବିତାରେ । ସରସ୍ୱତୀ କୂଳରେ ଊଷା ବର୍ଣ୍ଣନାରେ ପ୍ରକୃତିର ଶାଶ୍ୱତ ସୌନ୍ଦର୍ଯ୍ୟ ; ଧ୍ୟାନଗମ୍ଭୀର, ଅନନ୍ତ ତାରୁଣ୍ୟମୟ ଋଷି ମୂର୍ତ୍ତିରେ ଶ୍ରେଷ୍ଠ ମନୁଷ୍ୟର ରୂପ ; ଜୀବାତ୍ମାରେ ପରମାତ୍ମା ଭୂମା ଆବିର୍ଭାବରେ ଅଖଣ୍ଡ ଆଦର୍ଶର ଅଭିବ୍ୟକ୍ତିର ଚିତ୍ର ଋଷିପ୍ରାଣେ ଦେବତାବତରଣ କବିତାରେ ରୂପାୟିତ ହୋଇଅଛି । ଏହି କଳ୍ପନାରେ ପୃଥିବୀର କଳୁଷ ନାହିଁ, ଏ ଚିତ୍ରରେ ମିଥ୍ୟାର ମଳିନତା ନାହିଁ । ଏହା ଦିବ୍ୟ, ସ୍ୱର୍ଗୀୟ । କବିଙ୍କ ନିଜ ଭାଷାରେ—

'ନୁହେ ସେ ଧରାର ଦୃଶ୍ୟ ଧରାର ଶବଦ
ସେ ଭାବ ନୁହଇ କ୍ଷୁଦ୍ର ଧରାର ସମ୍ପଦ ।' ୧୪

ଆଦର୍ଶର ଯେଉଁ ମହାନୁଭବତାରେ ମନୁଷ୍ୟ ଆତ୍ମପର ଭେଦ ଭୁଲିଯାଏ ; ନିଜ ପ୍ରାଣରେ ବିଶ୍ୱମାନବର ବେଦନା ଓ ଆନନ୍ଦ ଅନୁଭବ କରେ, ନିଜ ହୃଦୟରେ ବିଶ୍ୱ ପ୍ରକୃତିର ସ୍ପର୍ଶ ଉପଲବ୍ଧି କରେ ସେହି ଆଦର୍ଶର ଚିତ୍ର ଓ ଅନୁଭୂତିର ପ୍ରକାଶ 'ହିମାଚଳେ ଉଦୟ ଉତ୍ସବ' କବିତାରେ ଘଟିଅଛି । କବିଙ୍କ ଅନ୍ତରର ଅନ୍ତରତମ ପ୍ରଦେଶର ସ୍ପଷ୍ଟ ଅଭିବ୍ୟକ୍ତି ଏହି କବିତାରେ ନିମ୍ନ ପଂକ୍ତିରେ ଘଟିଅଛି ।

'ଏ ନିଖିଳ ବିଶ୍ୱ ଆଜି ନିଜସ୍ୱ ମୋହର
ଏ ବିଚିତ୍ର ଏ ସୁକାନ୍ତ ଧରଣୀ ଅମ୍ବର ।' ୧୫

ମଧୁସୂଦନଙ୍କ ଏହି ସମସ୍ତ ଉଚ୍ଚଭାବ ଉଦ୍ଦୀପକ କବିତାଗୁଡ଼ିକରେ ଉଚ୍ଚ ଆଦର୍ଶର ଅଭିବ୍ୟକ୍ତି ସଙ୍ଗେ ସଙ୍ଗେ ଉଦ୍ଦେଶ୍ୟର ଅପଲାପ କୌଣସିଠାରେ ଘଟିଥିବାର ଦେଖାଯାଏ ନାହିଁ । ଆଚରଣରେ ନ ଫୁଟାଇ, କେବଳ ବାକ୍ୟରେ ଯାହା ପ୍ରକାଶିତ ହୁଏ, ସେଥିରେ ଉଦ୍ଦେଶ୍ୟର ଅପଲାପ ଘଟେ । ଏ କ୍ଷେତ୍ରରେ କବିଙ୍କ ହୃଦୟର କଥା ପ୍ରକାଶ ପାଏ ନାହିଁ । ମାତ୍ର ଏହି କବିତାବଳୀରେ ଋଷିପ୍ରାଣ କବି ମଧୁସୂଦନଙ୍କ ବ୍ୟକ୍ତିତ୍ୱ କର୍ମ ଓ ଚିନ୍ତାର ସମଗ୍ର ରୂପ ଅଭିବ୍ୟକ୍ତ ହୋଇଛି । ଊନବିଂଶ ଶତକର ରୋମାଣ୍ଟିକ ଭାବଧାରା କବିଙ୍କ ଦରଦୀ ହୃଦୟର ନିବିଡ଼ ଅନୁଭୂତି ଓ ଆଦର୍ଶର ବଳିଷ୍ଠ ଅଭିବ୍ୟକ୍ତି ଯେନି ଯେଉଁ ଗୀତି କବିତା-ମାନ ବିଭିନ୍ନ ଦେଶରେ ରଚିତ ହୋଇଅଛି, ସେଥି ମଧ୍ୟରେ କବିଙ୍କ ଶ୍ରେଷ୍ଠ କୃତିଗୁଡ଼ିକ ନିଶ୍ଚିତ ଆସନ ଲଭିବ ଅଧିକାରୀ । ଯଥାର୍ଥରେ କୁହାଯାଇଛି, 'ଗୀତି କବିତାରେ ଯାହା

ଶ୍ରେଷ୍ଠ ସାଧନ ତାହା ଅର୍ଜନ କରିବା ଉଦ୍‌ବୋଧନ କବିତାର ଗୌରବ ; ଯେଉଁଠି ସଙ୍ଗୀତ ଉଚ୍ଚଭାବ ପ୍ରକାଶ କରେ, ସେଇଠାରେ ଉଦ୍‌ବୋଧନ କବିତାର ସାର୍ଥକତା ।' ୧୭ ଉଚ୍ଚଭାବ ପ୍ରକାଶର ଶ୍ରେଷ୍ଠ ସାଧନ ରୂପେ ମଧୁସୂଦନ କବିତାଗୁଡ଼ିକ ସଫଳ ସୃଷ୍ଟି ।

**ବସନ୍ତ-ଗାଥା ଓ ଚତୁର୍ଦ୍ଦଶପଦୀ କବିତା**

୧୯୦୧ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ବସନ୍ତ-ଗାଥା ଓଡ଼ିଆ କାବ୍ୟ ଜଗତକୁ କବିଙ୍କର ଏକ ନୂତନ ଦାନ । ରାଧାନାଥଙ୍କ ଚିଲିକା, ମହାଯାତ୍ରା ଅଥବା ଦରବାର ରୂପ ରସ ଓ ଭାବ ଦିଗରୁ ଯେପରି ଆମ କାବ୍ୟ ଜଗତରେ ଅଭିନବ, ଆକୃତି, ଶୈଳୀ ଓ ରଚନା ଶୃଙ୍ଖଳ ଦିଗରୁ ବସନ୍ତ-ଗାଥା ସେଇପରି ଅଭିନବ ସୃଷ୍ଟି । (ଯୁଗ ପରିବେଶର ନାନା ଘାତପ୍ରତିଘାତରେ ପ୍ରାଚୀନ କବିତା ତୁଳନାରେ ଆଧୁନିକ କବିତା ଖଣ୍ଡିତ ଓ କ୍ଷୁଦ୍ରାକୃତି । ଏହି ଖଣ୍ଡିତ ଆକୃତି ଭିତରେ କିପରି ଅଖଣ୍ଡଭାବ ଓ ଅସୀମ କଳ୍ପନାର ସମାବେଶ କରିଯାଇପାରେ ଆମ କବିତା ରାଜ୍ୟରେ ମଧୁସୂଦନ ତାହାର ସଫଳ ପରୀକ୍ଷା କରିଛନ୍ତି ।)

ଫରାସୀ କବି ବୋଆଲେ ମନେ କରୁଥିଲେ, 'ଗୋଟିଏ ନିର୍ଦ୍ଦୋଷ ସନେଟର ମୂଲ୍ୟ ଏକ ଦୀର୍ଘ କବିତା ସହିତ ସମାନ ।' ୧୭ ଅବଶ୍ୟ ଏପରି ମନ୍ତବ୍ୟ ମଧୁସୂଦନ କୌଣସିଠାରେ ଲିପିବଦ୍ଧ କରି ନାହାନ୍ତି । ମାତ୍ର ତାଙ୍କର ସମସ୍ତ କବିତାବଳୀ ତୁଳନାରେ କଳା ଓ କଳ୍ପନା ଦିଗରୁ ବସନ୍ତ-ଗାଥାର ଚତୁର୍ଦ୍ଦଶପଦୀଗୁଡ଼ିକର ସ୍ଥାନ ଚିନ୍ତା କଲେ, ସେ ଏହି ମତର ସମର୍ଥକ ବୋଲି ଅନୁମିତ ହୁଏ । ତାଙ୍କର ଶିଶୁ କବିତା ଓ ଶୋକ କବିତା ସବୁ ପ୍ରୟୋଜନ ବା ମୁହୂର୍ତ୍ତିର ତାଡ଼ନାରେ ରଚିତ । ଉଦ୍‌ବୋଧନ କବିତାଗୁଡ଼ିକରେ ଉଦାର ଭାବ ଓ ଉଚ୍ଚ ଆଦର୍ଶର ଅଭିବ୍ୟକ୍ତି ପାଇଁ ଯେପରି ପ୍ରୟାସ ହୋଇଅଛି, ଶିଳ୍ପ ସୌନ୍ଦର୍ଯ୍ୟ ପ୍ରତି ସେପରି ଦୃଷ୍ଟି ଯାଇ ନାହିଁ । କିନ୍ତୁ ବସନ୍ତ-ଗାଥାର ଚତୁର୍ଦ୍ଦଶପଦୀରେ କବିଙ୍କ ଶିଳ୍ପୀ ହୃଦୟର ପ୍ରକାଶ ଯେପରି ଉଜ୍ଜ୍ୱଳ, ସାଧନାର ସ୍ୱାକ୍ଷର ସେଇପରି ସ୍ପଷ୍ଟ ।

ଆପାତତଃ ଦୃଷ୍ଟିରେ ଦେଖିଲେ, ବସନ୍ତ-ଗାଥା ନାମ କବିତାବଳୀର ବିଷୟ ଓ ଭାବ ଦୃଷ୍ଟିରୁ ଅବାନ୍ତର ମନେ ହୁଏ । "ଚତୁର୍ଦ୍ଦଶପଦୀ କବିତାଗୁଡ଼ିକର ଅଧିକାଂଶ ବସନ୍ତକାଳରେ ରଚିତ ବୋଲି ତାହା 'ବସନ୍ତ-ଗାଥା' ନାମରେ ଆଖ୍ୟାତ ହେଲା" କବିଙ୍କର ଏହି ସ୍ୱୀକାରୋକ୍ତି ଯଥାର୍ଥ ମନେହୁଏ ନାହିଁ । ଏଠାରେ ଗାଥା ଶବ୍ଦର ପ୍ରଚଳିତ ଅର୍ଥ ଖଣ୍ଡିତ ହୋଇଛି । ଇଂରେଜୀରେ ଯେଉଁ କଥା-କବିତାକୁ ବାଲଡ୍ ବୋଲି କୁହାଯାଏ, ତାହାହିଁ ଯଥାର୍ଥରେ ଗାଥା । ବୌଦ୍ଧ ଜାତକରେ ପ୍ରାୟ ଏହିପରି ଅର୍ଥରେ ଗାଥା ଶବ୍ଦ ବ୍ୟବହୃତ ହୋଇଅଛି । ଗାଥା-କବିତାର ପ୍ରକୃତି ନିରୂପଣ କରି ଡାଃ କୁଞ୍ଜବିହାରୀ ଦାଶ ଯଥାର୍ଥରେ କହିଛନ୍ତି—"ପୁରାଣ, ଇତିହାସ ବା ଜନଶ୍ରୁତିମୂଳକ ରୋମାଞ୍ଚକର କାହାଣୀ ଗାଥା ଗୀତିକାର ଅବଲମ୍ବନ ।" ୧୮ ଗାଥା କବିତାର ଲକ୍ଷଣ ସହିତ ବସନ୍ତ-ଗାଥାର କୌଣସି ସମ୍ପର୍କ ନାହିଁ ।

ପୁଣି ଅନ୍ୟ ଦିଗରୁ ଦେଖିଲେ, ବସନ୍ତ-ଗାଥାର କବିତାର ଭାବ ସହିତ ବସନ୍ତ ଋତୁର କୌଣସି ସମ୍ପର୍କ ନାହିଁ । କେବଳ ଶ୍ରୀପଞ୍ଚମୀ କବିତା ଏ ଦୃଷ୍ଟିରୁ ସାର୍ଥକ । ଅନ୍ୟ କବିତାରେ କାଳଗତ ବା ଋତୁ ପ୍ରକୃତିର ଲକ୍ଷଣ ଆଦୌ ଘଟିନାହିଁ ।

ମୌଳିକ ସର୍ଜନା ସାହିତ୍ୟରେ ଏପରି ନାମକରଣର ସାର୍ଥକତା ଖୋଜିବା କେତେକ ପରିମାଣରେ ଅବାନ୍ତର । କାରଣ ନାମକରଣ ଯେତେ ସାର୍ଥକ ବା ଅର୍ଥବହ ହେଲେ ବି କେବଳ ନାମରୁ କବିତାର ଭାବ ଓ ରୂପ କଳନା କରିବା ଅସମ୍ଭବ । ସୃଷ୍ଟି ଏକ ସଂପୂର୍ଣ୍ଣ ବସ୍ତୁ । ସ୍ରଷ୍ଟାର ହୃଦୟ ସହିତ ଏହାର ସଂପର୍କ । ଜନନୀ ଯେପରି ସ୍ନେହ ଉଚ୍ଛ୍ୱାସରେ ଅହେତୁକ ଭାବରେ ବହୁ ଅଳୀକ ଅସଂଗତ ନାମରେ ସନ୍ତାନକୁ ଚିହ୍ନିତ କରିଥାନ୍ତି, ସେହିପରି ସ୍ରଷ୍ଟା ଭାବାବେଗରେ ଚାଳିତ ହୋଇ ନିଜ ସୃଷ୍ଟିର ନାମକରଣ କରିଥାନ୍ତି । ରଚନାର ଆକୃତି, ଗୁଣ ଓ ଧର୍ମ ସହିତ ନାମର ସଙ୍ଗତି ଧରା ପଡ଼ିବା ନ ପଡ଼ିବାଟା ଆକସ୍ମିକ । ଏଥିରେ ସ୍ରଷ୍ଟାଙ୍କ ଦୋଷ ଦେଖିବା ଅସମୀଚୀନ ।

କବିଙ୍କ ଭାବ ଓ ହୃଦୟର ଇଙ୍ଗିତ ଏହି ନାମକରଣରେ ମନୋଜ୍ଞ ପ୍ରତୀକରେ ପ୍ରକାଶ ପାଇଅଛି । ବସନ୍ତ ଏଠାରେ ଋତୁ ବିଶେଷ ନୁହେଁ । ଏହା ଅନନ୍ତ ଯୌବନ ଓ ଅସୀମ ଜୀବନର ପ୍ରତୀକ । 'ଜୀବନର ମଧୁମାସ ନବୀନ ଯୌବନ'ର ଜୟଗାଥା କବି ଗାନ କରିଛନ୍ତି । ଗାଥା ଗୀତରେ ଚାରଣ ଅମିତବିକ୍ରମ ବୀର ପୁରୁଷଙ୍କ ଯଶୋଗୀତ ଗାନ କରନ୍ତି । ଏଥିରେ କବି ଚିରଆନନ୍ଦମୟ, ସର୍ବସ୍ରଷ୍ଟା, ସର୍ବଶକ୍ତି ମୂଳାଧାର ପରମ ପୁରୁଷଙ୍କ ଯଶୋଗୀତ ଗାନ କରିଛନ୍ତି । ବସନ୍ତ ସହିତ ଆନନ୍ଦର ଭାବ ଓତଃପ୍ରୋତ ଭାବରେ ଜଡ଼ିତ । ଏହି ସମସ୍ତ ଭାବସଙ୍ଗତି ଦୃଷ୍ଟିରୁ ବସନ୍ତ-ଗାଥା ନାମକରଣ ସାର୍ଥକ ହୋଇଅଛି ।

## ସନେଟ୍‌ର ଧାରା

ସନେଟ୍ ଯେପରି ପ୍ରାଚୀନ ପରମ୍ପରା ଉପରେ ପ୍ରତିଷ୍ଠିତ, ସେହିପରି ଆଧୁନିକ ଯୁଗର ଉପଯୋଗୀ । ଆଧୁନିକ ସମାଜ ଓ ଜୀବନର ଆଦର୍ଶ ଯେଉଁ କବିମାନେ କାବ୍ୟର କାହାଣୀ, ଚରିତ୍ର ଓ ବର୍ଣ୍ଣନାରେ ନ ଫୁଟାଇ କ୍ଷୁଦ୍ର ଗୀତି କବିତାରେ ଅଭିବ୍ୟକ୍ତ ଆବେଗ ଓ ଅନୁଭୂତି ଭିତରେ ପ୍ରକାଶ କରିବାକୁ ଚାହାନ୍ତି, ସେମାନଙ୍କ ଲାଗି ସନେଟ୍ ଉପଯୁକ୍ତ ମାଧ୍ୟମ । ଆଧୁନିକ ଜୀବନ ଖଣ୍ଡିତ, କର୍ମ ଚଞ୍ଚଳ ଓ ଅସ୍ଥିର ; ବହୁ ଆଦର୍ଶର ଘାତ ପ୍ରତିଘାତରେ ବିକ୍ଷୋଭିତ । ଗୋଟିଏ ମୁହୂର୍ତ୍ତରେ ଏକ ଗଣ୍ଡୂଷରେ କାବ୍ୟରସ-ପାନ ଯେପରି ପାଠକ ଅବସରହୀନ ଜୀବନରେ କାମନା କରେ, ସେହିପରି ହୃଦୟର

ଗୋଟିଏ ମୁହୂର୍ତ୍ତର ଆଲୋଡ଼ନ ଓ ଆବେଗକୁ କବିତାରେ ରୂପ ଦେବା ପାଇଁ ଆଧୁନିକ କବି ଗ୍ରହଣ କରନ୍ତି । ଏହା ହିଁ ସନେଟର ଧର୍ମ । ଇଂରେଜ କବି ଡ. ଜେ. ରସେଟି ଯଥାର୍ଥରେ କହିଛନ୍ତି, 'ଚତୁର୍ଦ୍ଦଶପଦୀ ମୁହୂର୍ତ୍ତର ସ୍ମରଣସ୍ତମ୍ଭ ।' ୧୯

ସାଧାରଣ ଦୃଷ୍ଟିରେ ଦେଖିଲେ, ସନେଟ୍ ଗୋଟିଏ ନିର୍ଦ୍ଦିଷ୍ଟ ଛନ୍ଦ ଢାଞ୍ଚାରେ ଓ ଯତି ନିୟମରେ ଗ୍ରଥିତ ପ୍ରଣାଳୀବଦ୍ଧ ରଚନା । ଏହା ସତ୍ୟ । ମାତ୍ର ଏହା ସନେଟ୍‌ର ଯଥାର୍ଥ ପରିଚୟ ନୁହେଁ । ସନେଟ୍ କବିଙ୍କ ଅନୁଭୂତି ପ୍ରକାଶର ଏକ ମାଧ୍ୟମ । ଏହାର ସଫଳତା କେବଳ ଏକ ନିର୍ଦ୍ଦିଷ୍ଟ ରଚନା ଢାଞ୍ଚାର ଶୁଦ୍ଧତା ଉପରେ ନିର୍ଭର କରେନାହିଁ । ନିଜ ଅନୁଭୂତି ପ୍ରକାଶର ମାଧ୍ୟମରୂପେ ଏହାକୁ କବି ଯେଉଁ ପରିମାଣରେ ବ୍ୟବହାର କରିବାକୁ ସମର୍ଥ ହୋଇଥାନ୍ତି, ତାହାର ଉପରେ ନିର୍ଭର କରେ । ତ କୁଇ ଆମେ ପ୍ରଶଂସା କରିଥାଉଁ । ୨୦

ସନେଟ୍‌ର ଆଦ୍ୟ ପ୍ରବର୍ତ୍ତକ ଓ ପ୍ରତିଷ୍ଠାତା ଚତୁର୍ଦ୍ଦଶ ଶତକର ଇଟାଲୀୟ କବି ପେଟ୍ରାର୍କ (୧୩୦୪ରୁ ୧୩୭୪ ଖ୍ରୀଷ୍ଟାବ୍ଦ) । ସେ ପ୍ରଥମେ ନାଟ୍ୟ ସଙ୍ଗୀତରୁ ଚତୁର୍ଦ୍ଦଶପଦୀକୁ ସ୍ୱତନ୍ତ୍ର ରୂପ ଦେଲେ । ନିଜ ପ୍ରଣୟିନୀ ଲରାଙ୍କ ବିରହ ବେଦନାରେ ବିକ୍ଷୁବ୍ଧ ତାଙ୍କର କବି ପ୍ରାଣ ଏଥିରେ ଆତ୍ମପ୍ରକାଶ କରିଥିଲା । ଆଶଙ୍କା ଓ ଆଶା, ଆନନ୍ଦ ଓ ବିଷାଦ ଏହି ଦ୍ୱୈତଭାବର ଅଭିବ୍ୟକ୍ତି ଲାଗି ସେ ଅଷ୍ଟକ ଷଷ୍ଟକ ଭେଦରେ ଚତୁର୍ଦ୍ଦଶପଦୀର କଳ୍ପନା କରିଥିଲେ । କେବଳ ଯତିପାତ ଦିଗରୁ ନୁହେଁ, ଭାବବିନ୍ୟାସ ଦିଗରୁ ଶୁଦ୍ଧଢାଞ୍ଚାର ଚତୁର୍ଦ୍ଦଶପଦୀରେ ଦୁଇଟି ବିଭାଗ ଦେଖିବାକୁ ମିଳେ । ଜଣେ ବଙ୍ଗୀୟ ଲେଖକ ସନେଟ୍‌ର ଏହି ଦ୍ୱୈତ ଭୂମିକାକୁ 'ଆସକ୍ତି-ମୁକ୍ତିଲୀଳା' ବୋଲି ବର୍ଣ୍ଣନା କରିଛନ୍ତି । ୨୧

ଇଂରେଜ ସମାଲୋଚକ ଆନଉ୍ ହାମାର ଏହି ପ୍ରକୃତି ବିଶ୍ଳେଷଣ କରି ଲେଖିଛନ୍ତି, 'ସନେଟ୍‌ର ବିଷୟବସ୍ତୁରେ ପ୍ରାୟ ଦୁଇ ସ୍ୱତନ୍ତ୍ର ଉପାଦାନ ଦେଖାଯାଏ । ଏହା ଅନୁଭୂତି ଓ ପ୍ରୟୋଗ ଯେପରି, ସାଦୃଶ୍ୟହୀନ ବସ୍ତୁ ଦ୍ୱୟ ମଧ୍ୟରେ ସାଧାରଣ ଭୂମିକା ଆବିଷ୍କାର, ତୁଳନା ଓ ବିସଦୃଶ ବର୍ଣ୍ଣନା ଭିତ୍ତିରେ, କିମ୍ବା ଅତୀତ ଓ ବର୍ତ୍ତମାନକୁ ଏକ ସୂତ୍ରରେ ଗ୍ରଥିତ କରିବାରେ, ଅଥବା କାବ୍ୟିକ ପୂର୍ବଦୃଷ୍ଟି ଓ କବିମାନସର ଅକସ୍ମାତ୍ ଗତି ପରିବର୍ତ୍ତନରେ ପ୍ରକାଶ ପାଇପାରେ । ଅଷ୍ଟକରେ ବିଷୟର ଅବତାରଣା ଓ ଶେଷ ଛଅ ପାଦରେ ଏହାର ପରିଣତି ଦେଖାଇ ଦିଆଯାଇଥାଏ ।' ୨୨

ଛନ୍ଦଢାଞ୍ଚାରେ ଅଷ୍ଟକ ଷଷ୍ଟକ ବିଭାଗ ଅନେକ କବି ଯେପରି ମାନି ନାହାନ୍ତି, ବିଷୟ ପରିବେଷଣରେ ଏହି ଦ୍ୱୈତ ଭୂମିକା ସେଇପରି ଗ୍ରହଣ କରି ନାହାନ୍ତି । ସେକ୍ସପିଏର, ରୋମାଣ୍ଟିକ କବି ଶେଲି ଓ ଫରାସୀ କବି ବୋଦ୍‌ଲେର ନିଜ ଅନୁଭୂତି ପ୍ରକାଶର ଉପଯୋଗୀ

କରିବା ପାଇଁ ସନେଟ୍‌ରେ ନାନା ପରିବର୍ତ୍ତନ ଆଣିଛନ୍ତି । ଶୁଦ୍ଧଶ୍ରେଣୀର ଇଟାଲୀୟ ସନେଟ୍ ତୁଳନାରେ ଏହାକୁ ମିଶ୍ରଶ୍ରେଣୀ କୁହାଯାଇଥାଏ । ଶୁଦ୍ଧଶ୍ରେଣୀର ଚତୁର୍ଦ୍ଦଶପଦୀରେ ଭାବବସ୍ତୁ କବିତାର ସବୁ ଦେହରେ ସଞ୍ଚାରିତ ହୋଇଥାଏ । ମାତ୍ର ସେକ୍ସପିଏର ଏହାର ଶେଷ ଯୁଗ୍ମପଦରେ ସମସ୍ତ କବିତାର ନିର୍ଯ୍ୟାସ ଘନୀଭୂତରୂପେ ପ୍ରକାଶ କରିଥାନ୍ତି । ଏପରି ଯୁଗ୍ମପଦ ବିନ୍ୟାସ ଫଳରେ ଶିଳ୍ପ ସୌନ୍ଦର୍ଯ୍ୟ ହାନୀ ହୋଇଥାଏ ବୋଲି କେତେକ ସମାଲୋଚକ ସମାଲୋଚନା କରିଥାନ୍ତି । ୨୩

ସେକ୍ସପିଏରଙ୍କ ସନେଟ୍‌ରେ ତିନୋଟି ଚତୁଃପଦୀ ଓ ଗୋଟିଏ ଯୁଗ୍ମପଦ ଦେଖିବାକୁ ମିଳେ । ପ୍ରତ୍ୟେକ ଚତୁପଦୀରେ ସ୍ୱତନ୍ତ୍ର ଯତିପାତ ହୋଇଥାଏ । ଶେଲୀ ମଧ୍ୟ ଯତିପାତରେ କୌଣସି ନିର୍ଦ୍ଦିଷ୍ଟ ନିୟମ ଗ୍ରହଣ କରି ନାହାନ୍ତି । ବୋଦ୍‌ଲେର ସାଧାରଣତଃ ଦୁଇଟି ଚତୁଃପଦୀ ଓ ଦୁଇଟି ତ୍ରିପଦୀ ବ୍ୟବହାର କରିଥାନ୍ତି ।

ଆଧୁନିକ ଭାରତୀୟ କବିମାନଙ୍କ ମଧ୍ୟରେ ବଙ୍ଗ କବି ମାଇକେଲ ମଧୁସୂଦନ ପ୍ରଥମେ ୧୮୬୦ ଖ୍ରୀଷ୍ଟାବ୍ଦରେ ବଙ୍ଗଭାଷାରେ ସନେଟ୍ ରଚନା କରିଥିଲେ । ଭକ୍ତକବିଙ୍କ ବସନ୍ତ-ଗାଥା ପ୍ରକାଶର ପ୍ରାୟ ୪୦ ବର୍ଷ ପୂର୍ବରୁ ତାଙ୍କର ଚତୁର୍ଦ୍ଦଶପଦୀ କବିତାବଳୀ ୧୮୬୬ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଇଟାଲୀୟ ଭାଷାରେ ଅଭିଜ୍ଞ ଥିବାରୁ ଇଟାଲୀୟ ସନେଟ ସହିତ ସେ ସୁପରିଚିତ ଥିଲେ । ୧୮୬୫ରେ ମାତୃଭୂମିର ପ୍ରିୟ କୋଳରୁ ବହୁ ଦୂରରେ ଫ୍ରାନ୍‌ସର ଭର୍ସେଲିସ ନଗରୀର ପ୍ରବାସ ଜୀବନରେ ପେଟ୍ରାର୍କଙ୍କ ସନେଟ ସବୁ ଧ୍ୟାନର ସହିତ ଅଧ୍ୟୟନ କରି ସେହି ଶ୍ରେଣୀରେ ବଙ୍ଗ ଭାଷାରେ ସନେଟ୍ ରଚନା କରିଥିଲେ । କଳା ଓ ଶିଳ୍ପ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଇଂରେଜୀର ମିଶ୍ରଶ୍ରେଣୀ ସନେଟ୍‌କୁ ସେ ନିକୃଷ୍ଟ ମନେ କରୁଥିଲେ । ତେଣୁ ଇଟାଲୀୟ ସନେଟ୍ ତାଙ୍କର ଆଦର୍ଶ ଥିଲା ।

ବସନ୍ତ-ଗାଥାର କବି ବଙ୍ଗ ସାହିତ୍ୟ ସହିତ ସୁପରିଚିତ ଥିଲେ । ସେ ହୁଏତ ମାଇକେଲଙ୍କ ଚତୁର୍ଦ୍ଦଶପଦୀ କବିତାବଳୀ ପାଠ କରିଥିବେ । ମାତ୍ର ସେ ତାହାର ରଚନା ଶ୍ରେଣୀ ଅନୁସରଣ କରି ନାହାନ୍ତି । ଶୁଦ୍ଧ ଓ ମିଶ୍ର ଶ୍ରେଣୀର ଇଟାଲୀୟ ଓ ଇଂରେଜୀ ସନେଟ୍‌ର ଶିଳ୍ପ ଓ ଭାବଗତ ସୂକ୍ଷ୍ମ ପାର୍ଥକ୍ୟ ପ୍ରତି ଧ୍ୟାନ ଦେଇ ନାହାନ୍ତି । ଚତୁର୍ଦ୍ଦଶପଦୀ ତାଙ୍କଠାରେ କେବଳ ଚତୁର୍ଦ୍ଦଶପଦରେ ସମାପ୍ତବ୍ୟ କବିତା । ସେ ଅଷ୍ଟକ ଓ ଷଷ୍ଠକ ବିଭାଜନ ଶ୍ରେଣୀ କ୍ୱଚିତ୍ ଗ୍ରହଣ କରିଛନ୍ତି । ତିନିଗୋଟି ଚଉପଦୀ ଓ ଗୋଟିଏ ଯୁଗ୍ମପଦ ଘେନି ତାଙ୍କର ଅଧିକାଂଶ ସନେଟ୍ ଗଠିତ । କେତେବେଳେ ଚଉଦ ଅକ୍ଷରୀ ପୟାର ଛନ୍ଦ, କେତେବେଳେ ଅବା ଏକାନ୍ତର

ମିତାକ୍ଷର ସେ ବ୍ୟବହାର କରିଅଛନ୍ତି । ଶୁଦ୍ଧ ରଚନା ରୀତି ମଧୁସୂଦନଙ୍କ ସନେଟ୍‌ର ବିଶେଷତ୍ୱ ନୁହେ । ଗମ୍ଭୀର ଭାବ ପ୍ରକାଶର ମାଧ୍ୟମ ରୂପେ ତାଙ୍କ ରଚିତ ଚତୁର୍ଦ୍ଦଶପଦୀଗୁଡ଼ିକ ସାର୍ଥକ ହୋଇଅଛି ।

କେଉଁ ଦୂର ଅତୀତରେ ଚିର ଉଜ୍ଜ୍ୱଳ ଇଟାଲୀର ପୁଷ୍ପିତ ଉଦ୍ୟାନରେ ପ୍ରେମିକା କାନରେ ଧୀର ମଧୁର ସ୍ୱରରେ ଅନୁରଣିତ ପ୍ରେମିକର ଗାନର ନାମ ଥିଲା ସନେଟ୍ । ସୋନୋ (Souno) ଅର୍ଥ ଧ୍ୱନି, ସୋନେଟୋ (Sonetto) ଶବ୍ଦର ଅର୍ଥ କ୍ଷୁଦ୍ର ଅସ୍ଫୁଟ ଧ୍ୱନି । ମାତ୍ର ମଧୁର ଧ୍ୱନି ନୁହେ, ଗମ୍ଭୀର ଭାବହିଁ ଆଧୁନିକ ଚତୁର୍ଦ୍ଦଶପଦୀର ପ୍ରଧାନ ଉପାଦାନ । ଇଂରେଜୀ ଗୀତି କବିତା ଯେଉଁ ଆଲୋଚନା ଗ୍ରନ୍ଥରେ ଓସ୍କାର୍ ୱାଲ୍‌ଟନ୍ କାବ୍ୟୀଭୂତ ତତ୍ତ୍ୱକଥା ପାଇଁ ସନେଟ୍ ଅଧିକ ଉପଯୁକ୍ତ ବୋଲି ମନେ କରିଛନ୍ତି । ଯଥାର୍ଥରେ ତତ୍ତ୍ୱ ପରିବେଷଣରେ ମଧୁସୂଦନଙ୍କ ଚତୁର୍ଦ୍ଦଶପଦୀଗୁଡ଼ିକ ସାର୍ଥକ ହୋଇଅଛି ।

## ମଧୁସୂଦନଙ୍କ ଚତୁର୍ଦ୍ଦଶପଦୀର ବିଷୟବସ୍ତୁ

ବସନ୍ତ-ଗାଥାର ସନେଟ୍‌ଗୁଡ଼ିକ ସହିତ ଉତ୍କଳ-ଗାଥାର 'ଉତ୍କଳ ଜନନୀପ୍ରତି', 'ନବବର୍ଷ' 'ସଂସାର ମର୍ମ' ପ୍ରଭୃତି ସନେଟ୍‌ଗୁଡ଼ିକୁ ଏକତ୍ର ବିଚାର କରି ବିଷୟ ଦିଗରୁ ନିମ୍ନ କ୍ରମରେ ଆଲୋଚନା କରି ଯାଇପାରେ । ଯଥା – ଆତ୍ମ ପରିଚୟ, ତତ୍ତ୍ୱଚିନ୍ତା ଓ ଦର୍ଶନ ଦୃଷ୍ଟି, କବି ପ୍ରଶସ୍ତି, ବ୍ୟକ୍ତିପୂଜା ଓ ଦେଶପ୍ରେମ, ପ୍ରକୃତି ଚିତ୍ର ।

ବ୍ରହ୍ମବାଦୀ ଋଷିପ୍ରାଣ ମଧୁସୂଦନଙ୍କ ପରିଚୟ ତାଙ୍କ କବିତାରେ ସର୍ବତ୍ର ବିଦ୍ୟମାନ । ମାତ୍ର ତାଙ୍କ ମଧ୍ୟରେ ଥିବା ରକ୍ତମାଂସ ଦେହଧାରୀ ମନୁଷ୍ୟର ପରିଚୟ ବସନ୍ତ-ଗାଥାର ଅଳ୍ପ କେତୋଟି କବିତାରୁ କେବଳ ମିଳିଥାଏ । 'କୌଣସି ପରଲୋକବାସିନୀ ପ୍ରତି,' 'ଯୌବନ ସ୍ୱପ୍ନ,' 'କୌଣସି ମାନନୀୟ ବନ୍ଧୁଙ୍କ ପ୍ରତି', 'ପରମ ପ୍ରମାଣ' ଆଦି କବିତାରୁ ପ୍ରଣୟୀ, ବନ୍ଧୁ ଓ ଭକ୍ତଭାବରେ କବିଙ୍କୁ ଯେପରି ଦେଖିବାକୁ ମିଳେ, ତାହା ଅତୁଳନୀୟ ।

ମନୁଷ୍ୟ ଜୀବନର କର୍ତ୍ତବ୍ୟ ଓ ଆଦର୍ଶ ଯେଉଁ କବି ନିଜର ସମସ୍ତ ରଚନାରେ ଉପଦେଶ ଦେଇଛନ୍ତି । ଏପରି ଉପଦେଶ ଚତୁର୍ଦ୍ଦଶପଦୀଗୁଡ଼ିକରେ ପୂର୍ଣ୍ଣ ହୋଇ ରହିଅଛି । ମର୍ତ୍ତ୍ୟରେ ମନୁଷ୍ୟର ଜୀବନ କ୍ଷଣସ୍ଥାୟୀ । ମୃତ୍ୟୁର ପରପାରରେ ଅମୃତ ଜୀବନ ରାଜ୍ୟ ବିଦ୍ୟମାନ । ସେହି ରାଜ୍ୟରେ ଉପଯୁକ୍ତ ସ୍ଥାନ ଲାଭ ପାଇଁ ଶୁଦ୍ଧ ନୀତିମୟ ଜୀବନ ଯାପନ ଲୋଡ଼ା, ମାନବ ସମାଜର ମଙ୍ଗଳରେ ବ୍ରତୀହେବା ପ୍ରୟୋଜନ । ଏଥିଲାଗି ଅତୀତକୁ ଯେଉଁ ବୃଥା ଭାଳି ହେବା ଉଚିତ ନୁହେ । ଭବିଷ୍ୟତ ଗଠନଦିଗରେ ଅତୀତ ଅନୁଭୂତି ଯେଉଁ ନିଜକୁ ପ୍ରସ୍ତୁତ କରିବା ଉଚିତ । ଅତୀତ, ହୃଦୟସଙ୍ଗୀତ, ନବବର୍ଷ ଆଦି ବହୁ କବିତାରେ ଏହି ଭାବ ପ୍ରକଟିତ ହୋଇଅଛି ।

ସନେଟ ମାଧ୍ୟମରେ ସାହିତ୍ୟ ଆଲୋଚନା ଏକ ପ୍ରତିଷ୍ଠିତ ପରମ୍ପରା । ଅନେକ ଇଂରେଜ କବି ଏହା କରିଛନ୍ତି । ବହୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ କବିଙ୍କ ପ୍ରତିଭାର ପ୍ରଶସ୍ତିବାଣୀ ମାଇକେଲ୍ ନିଜ ଚତୁର୍ଦ୍ଦଶପଦୀ କବିତାବଳୀରେ ରଚନା କରିଛନ୍ତି । ମଧୁସୂଦନଙ୍କ ଏହି ଶ୍ରେଣୀର କବିତାଗୁଡ଼ିକ ଉଚ୍ଚକୋଟୀର । ସେ କେବଳ ସ୍ତୁତିବାଚନ ନ କରି, କବିମାନଙ୍କ କାବ୍ୟର ଗୁଣ ଓ ଧର୍ମ ସୂଚନାରେ ବିଶ୍ଳେଷଣ କରିଛନ୍ତି । କାଳିଦାସ, ଭବଭୂତିଙ୍କଠାରୁ ରାଧାନାଥ ଓ ଫକୀରମୋହନଙ୍କ ଉପରେ ରଚିତ କବିତାରେ ଏହି କବିମାନଙ୍କ ପ୍ରତିଭା ଓ ସାଧନାର ଉଜ୍ଜ୍ୱଳ ସ୍ୱାକ୍ଷର ରହିଅଛି ।

କବିଙ୍କ ବ୍ୟକ୍ତିପୂଜା ସ୍ୱାର୍ଥଜଡ଼ିତ ନୁହେ । ଆଦର୍ଶ କର୍ମୀ, ସାଧକ ଓ ଦେଶପ୍ରେମୀଙ୍କ ଜୀବନୀ ଓ କର୍ମର ମହତ୍ତ୍ୱ ଜାତୀୟଜୀବନରେ ପ୍ରତିଫଳିତ କରାଇବା ଅଭିପ୍ରାୟରେ କର୍ମୀ ଗୌରୀଶଙ୍କର, ଦେଶାତ୍ମ ପ୍ୟାରୀମୋହନ, ଆଦର୍ଶ ଶାସକ ମହାରାଜା ସୁଚଳଦେବଙ୍କ ବ୍ୟକ୍ତିତ୍ୱର ଚିତ୍ର ଅଙ୍କନ କରିଛନ୍ତି । ଏହା କବିଙ୍କ ଦେଶପ୍ରେମର ପ୍ରତୀକ ।

ଶିଶୁ କବିତା ଓ ଉଦ୍‌ବୋଧନ କବିତାରେ, ପ୍ରକୃତି ଚିତ୍ରଣରେ ଯେଉଁ ଧାରା ପ୍ରକାଶ ପାଇଛି, ଚତୁର୍ଦ୍ଦଶପଦୀରେ ସେଇଧାରା ଦେଖିବାକୁ ମିଳେ । ପ୍ରକୃତିର କୌଣସି ସ୍ୱତନ୍ତ୍ର ସତ୍ତା କବି ଅନୁଭବ କରିନାହାନ୍ତି । କବିଙ୍କ ନେତ୍ରରେ ପ୍ରକୃତି ସର୍ବଦା ଶାନ୍ତ ଓ ସୁନ୍ଦର ଶାନ୍ତ ପରିବେଶରୁ ଅସୀମ ଓ ଅନନ୍ତ ପରମେଶ୍ୱରଙ୍କ ଆଡ଼କୁ ଧେନି ଯିବାର ଏହା ଏକ ସାଧନ ।

ଭାବ ସମୁନ୍ନତି ଓ ସମ୍ବନ୍ଧ ଭାଷା ବିନ୍ୟାସ ଦିଗରୁ ଯୌବନ ସ୍ୱପ୍ନ, ହୃଦୟ ସଙ୍ଗୀତ,ଅତୀତ ଓ ବିଚ୍ଛେଦ—ଏହି ସନେଟଗୁଡ଼ିକ ଏକାନ୍ତ ରୂପେ ସାର୍ଥକ ହୋଇଛି । କବିଙ୍କ ହୃଦୟର ଯେଉଁ ଭାବ ଜୀବନଚିନ୍ତା, ଆଶା, ତୃପ୍ତିପ୍ରାଣେ ଦେବାବତରଣ ଆଦି ଧାର୍ଯ୍ୟ ଉଦ୍‌ବୋଧନ କବିତାରେ ପ୍ରକାଶିତ ହୋଇଅଛି, ତାହା ଭାବର ଗମ୍ଭୀରଦ୍ୟୋତନାରେ, ଅନୁଭୂତିର ଘନୀଭୂତ ରସରେ, ସ୍ୱର ର ବ୍ୟଞ୍ଜନା ଓ ଶବ୍ଦ ଚିତ୍ରର ଉଜ୍ଜ୍ୱଳ ବର୍ଣ୍ଣ ବିଭାରେ, ସଙ୍ଗୀତର ପ୍ରାଣପୂର୍ଣ୍ଣ ମୂର୍ଚ୍ଛନାରେ ଏହି କ୍ଷୁଦ୍ର ଚତୁର୍ଦ୍ଦଶପଦୀ କବିତାବଳୀରେ ପ୍ରକାଶିତ ହୋଇଅଛି । ମାନବପ୍ରେମୀ ଦାର୍ଶନିକ, ଉଦାର ଭାବୁକ, ତୃପ୍ତିପ୍ରାଣ, ଦିବ୍ୟଦ୍ରଷ୍ଟା କବି ମଧୁସୂଦନଙ୍କ ହୃଦୟର ଅନ୍ତରଙ୍ଗ ଚିତ୍ର ବସନ୍ତ-ଗାଥାରେ ରୂପାୟିତ ହୋଇଅଛି । ଏହାର ତୁଳନା ତାଙ୍କର ସମସ୍ତ ରଚନା ମଧ୍ୟରେ ବିରଳ । କବି ଏହି କବିତାବଳୀର ପ୍ରତି ପଂକ୍ତିରେ ନିଜକୁ ଆବିଷ୍କାର କରିଛନ୍ତି । ସ୍ୱଦେଶର ଗୌରବମୟ ଅତୀତକୁ ସ୍ମରଣ କରି ଗର୍ବ ଅନୁଭବ କରିଛନ୍ତି, ବର୍ତ୍ତମାନର ଘୁଣ୍ ସମାଜ ଓ ସ୍ୱାର୍ଥ କଳୁଷିତ ନରନାରୀଙ୍କ ରୂପ ଅବଲୋକନ କରି ଅଶ୍ରୁ ଝରାଇଛନ୍ତି; ଭବିଷ୍ୟତର କନକ କଳ୍ପନାରୁ କ୍ଷାନ୍ତ ହୋଇନାହାନ୍ତି । କବିଙ୍କ ଆତ୍ମଗ୍ଲାନି ଓ ବିଷାଦର ଛାୟା,ଆଶାବାଦ ଓ ଆଧ୍ୟାତ୍ମିକ ପୁଣ୍ୟଦୃଷ୍ଟିର ଆଲୋକ ପ୍ରତ୍ୟେକ କବିତାକୁ ମନୋଜ୍ଞ କରିଅଛି ।

## ଶୋକ କବିତା

ମଧୁସୂଦନଙ୍କ ପ୍ରତିଭାର ଏକ ବିଶିଷ୍ଟ ଦିଗ ଶୋକକବିତାଗୁଡ଼ିକରେ ପ୍ରକାଶିତ ହୋଇଅଛି । ଶୋକର ଶ୍ଳୋକରେ ଜୀବନର ଆଦର୍ଶ ପ୍ରତିବିମ୍ବିତ ଦେଖିବା ଏକ ଶ୍ରେଷ୍ଠ ଭାରତୀୟ ପରମ୍ପରା । ଏହିଭାବରେ ମୃତ୍ୟୁରେ ଅମୃତର ସନ୍ଧାନ ସାରଳା, ବଳରାମ ଆଦି କବିମାନେ କରିଛନ୍ତି । ମାତ୍ର ଏଥିରେ କବିମାନଙ୍କ ବ୍ୟକ୍ତିଗତ ଶୋକାନୁଭୂତି ପ୍ରକାଶପାଇନାହିଁ । ମଧୁସୂଦନଙ୍କ ଶୋକ ଶ୍ଳୋକଗାନ ଭାରତୀୟ ଆଦର୍ଶବାଦ ଓ ଦର୍ଶନ ଦୃଷ୍ଟିରେ ପୁଷ୍ଟ ହୋଇଥିଲେହେଁ ପରମ୍ପରାର ସୃଷ୍ଟି ନୁହେ । ଆଙ୍ଗିକ ଓ ଭାବ ଦିଗରୁ ଏହା ପାଶ୍ଚାତ୍ୟ ଆହରଣର ଫଳ । ବ୍ୟକ୍ତିଗତ ଶୋକାନୁଭୂତିରୁ ସାର୍ବଜନୀନ ଭାବ ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ଦୃଷ୍ଟିର ଭୂୟୋବିକାଶ କିପରି କବିତାରେ ଘଟିପାରେ ତାହାର ନିଦର୍ଶନ ଭିକ୍ଟୋରିୟା ଓ ରୋମାଣ୍ଟିକ ଯୁଗର କବିମାନେ ଦେଖାଇଛନ୍ତି । ଟେନିସନ୍‌ଙ୍କ ଇନ୍‌ମେମୋରିୟାମ କବିତାଟିକୁ ଦୃଷ୍ଟାନ୍ତ ରୂପେ ନିଆ ଯାଇପାରେ । ମଧୁସୂଦନଙ୍କ ଶୋକ କବିତାଗୁଡ଼ିକ ଏହି ଶ୍ରେଣୀର ।

ମହାରାଣୀ ଭିକ୍ଟୋରିୟା, ମହାରାଜା ରାମଚନ୍ଦ୍ର ଭଞ୍ଜ, ରାଜା ସୁଢ଼ଳ ଦେବଙ୍କଠାରୁ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମୃତ୍ୟୁରେ ମଧୁସୂଦନଙ୍କ ଯେଉଁ ଶୋକଗୀତି ରଚନା କରିଛନ୍ତି, ସେଥିରେ ତାଙ୍କର ଶ୍ରେଷ୍ଠଚିନ୍ତା,ଗଭୀର ଅନୁଭୂତି ପ୍ରତିଫଳିତ ହୋଇଅଛି । ଏହି ଶୋକାନୁଭବ କବିଙ୍କୁ ପ୍ରାଣର ସକଳ ଅବସ୍ଥା, ଭାବନାର ସକଳ ସ୍ତରକୁ ନେଇ ଯାଇଅଛି । ଜୀବନ ଓ ମୃତ୍ୟୁର ଊର୍ଦ୍ଧ୍ୱରେ ସେ ଅମୃତ ତତ୍ତ୍ୱ ଓ ଶାଶ୍ୱତ ଜୀବନର ପରିଚୟ ଲଭ କରିଛନ୍ତି । ଏହା ମନୁଷ୍ୟର ହାସ କ୍ରନ୍ଦନ ପୂରିତ ଦୈନନ୍ଦିନ ଜୀବନରୁ ତାଙ୍କୁ ଲୋକାନ୍ତର ଓ କାଳାନ୍ତରକୁ ନେଇ ଯାଇଅଛି । କବି ଏହି ସତ୍ୟରେ ଉପନୀତ ହୋଇଛନ୍ତି ।

> "ମୃତ୍ୟୁ-ମୃତ୍ତିକାରେ ଜୀବନଶସ୍ୟ
>
> ବଢ଼ିଇ ବିଚିତ୍ର ଭାବେ,
>
> ଲୋକ ଲୋକାନ୍ତରେ କାଳ କାଳାନ୍ତରେ
>
> ଆବର୍ତ୍ତିବେ ଚିରେ ଭବେ ।" ୨୪

ଏହି ଶୋକ କବିତାଗୁଡ଼ିକ ଯେପରି ଶାଶ୍ୱତ ଓ ସାର୍ବଜନୀନ ଅନୁଭବରେ ପୁଷ୍ଟ ସେହିପରି ସ୍ୱଦେଶୀୟ ଭାବଧାରାରେ ପରିପୂର୍ଣ୍ଣ । ଊନବିଂଶ ଶତକର ଆଦର୍ଶବାଦ, ସମାଜ ଭାବନା, ବିଜ୍ଞାନର ପ୍ରଗତିଶୀଳ ଦୃଷ୍ଟିକୋଣ,ଭାରତୀୟ ପୁନର୍ଜାଗରଣ ଓ ନବମାନବିକ ଧର୍ମର ଅଭ୍ୟୁଦୟ ପ୍ରସଙ୍ଗଠାରୁ ଉତ୍କଳୀୟ ଜୀବନ, ସମାଜ ଓ ସାହିତ୍ୟର ଚିତ୍ର ପର୍ଯ୍ୟନ୍ତ ଏଥିରେ ପ୍ରକାଶିତ ହୋଇଅଛି । ମହାଦେବୀ ଭିକ୍ଟୋରିୟା କବିତାରେ କବି କେବଳ ବ୍ୟକ୍ତି ବିଶେଷର ଗୁଣ ବର୍ଣ୍ଣନା କରିନାହାନ୍ତି, ଯୁଗର ଆଦର୍ଶ, ସାଧନା ଓ ସିଦ୍ଧିର ଆଭିମୁଖ୍ୟ ବିଶ୍ଳେଷଣ କରିଛନ୍ତି ।

ଗଣତନ୍ତ୍ର, ଧର୍ମନିରପେକ୍ଷ ଶାସନ, ନବମାନବିକ ଆଦର୍ଶବାଦ ଓ ନାରୀଜାଗରଣ, ସାମାଜିକ ପ୍ରଗତି, ଶିଳ୍ପବିପ୍ଳବ ଓ ବିଜ୍ଞାନର ଜୟଗାନ କବି ଅକୁଣ୍ଠ ଚିତ୍ତରେ କରିଛନ୍ତି । ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ମୃତ୍ୟୁରେ ରଚିତ ଶୋକକବିତାଟିରେ ବ୍ରାହ୍ମଧର୍ମର ଉଜ୍ଜ୍ୱଳ ଆଦର୍ଶ ଓ ଏହି ଆଦର୍ଶ ପ୍ରତିଷ୍ଠାରେ ମହର୍ଷିଙ୍କ ଅସୀମ ସାଧନାର ସମସ୍ତ ଦିଗ ସୁନ୍ଦର ବର୍ଣ୍ଣିତ ହୋଇଅଛି । ଉତ୍କଳରେ ନବଯୁଗ ଆନୟନରେ ସୁଚଳଦେବ ଓ ମହାରାଜା ରାମଚନ୍ଦ୍ର ଭଞ୍ଜଙ୍କ କର୍ମ, ଆଦର୍ଶ ଜୀବନ ନୀତି ଏମାନଙ୍କ ବିୟୋଗରେ ରଚିତ କବିତାରେ କବି ସୂଚନା କରିଛନ୍ତି । (ସବୁଠି ଶୋକଭାବନାରୁ ଆମର ଚିତ୍ତକୁ କବି ଉଦାତ୍ତ ଆନନ୍ଦ, ଉଜ୍ଜ୍ୱଳ ଆଶାବାଦ ଦିଗରେ ନେଇ ଯାଇଛନ୍ତି । ଶୋକର ମଳିନ ଓ ରୁଦ୍ଧ ପରିବେଶରେ ଆଶା ଓ ଆଲୋକର ଶାନ୍ତି ଓ ସ୍ୱସ୍ତି ବାଣୀ କବି ପ୍ରାଣର ଏହି ନିତ୍ୟ କାମନାରେ ପ୍ରକାଶ କରିଛନ୍ତି—)

"ସେହି ଶାନ୍ତି-ମହାମନ୍ତ୍ର, ସେହି ସ୍ୱସ୍ତି-ଗାନ
ସନ୍ତପ୍ତ ଏ ସଂସାର ଆଳୟେ
ସ୍ଫୁରୁ ନିତ୍ୟ, କରୁ ନିତ୍ୟ ଅଭୟ ପ୍ରଦାନ
ମନୁଷ୍ୟର ହତାଶ ହୃଦୟେ ।" ୨୫

କଳା ଦିଗରୁ ଯଥାର୍ଥ ଶୋକକବିତାର ସାର୍ଥକତା ସାର୍ବଜନୀନ ଭାବ ଓ ଉଚ୍ଚ ଦର୍ଶନରେ କେବଳ ପ୍ରକାଶ ପାଏ ନାହିଁ । ବ୍ୟକ୍ତିଗତ ଅନୁଭବର ନିବିଡ଼ତା ଉପରେ ଏହା ନିର୍ଭର କରେ । ଏହି ଅନୁଭବ ଯେତେ ଗଭୀର, ଅନ୍ତରଙ୍ଗ ଓ ସ୍ୱଚ୍ଛ ହୁଏ, ଶୋକବାଚନ ସେହି ପରିମାଣରେ ସତ୍ୟ ଓ ସାର୍ଥକ ମନେ ହୁଏ । ବ୍ୟଥିତ ହୃଦୟର ବିନମ୍ର ସ୍ୱରରେ ଶୋକାର୍ତ୍ତ ପ୍ରାଣର ସ୍ମୃତିପୂର୍ଣ୍ଣ ଉଚ୍ଛ୍ୱାସ ଓ ଆବେଗ ଭିତରେ ମୃତବ୍ୟକ୍ତିଙ୍କ ମହିମାମୟ ଆତ୍ମାର ପରିଚୟହିଁ ଶୋକ କବିତାର ପ୍ରଧାନ ଉପାଦାନ । ଏହିଭାବରେ ରାଧାନାଥଙ୍କ ବିୟୋଗରେ ରଚିତ କବିତାଟି ଶ୍ରେଷ୍ଠ ସ୍ଥାନର ଅଧିକାରୀ । (କବିଙ୍କର ଗୁରୁ ସଖା, ସାହିତ୍ୟ ସାଧନାର ପଥ ପ୍ରଦର୍ଶକ ଏକାନ୍ତ ଆପଣାର ବ୍ୟକ୍ତିଙ୍କୁ ରାଧାନାଥଙ୍କ ଭିତରେ ଦେଖୁଁ । ସହସ୍ର ସ୍ମୃତିର ଅଶ୍ରୁ-ମିଶା 'ଆତୁରତା' ନେଇ ଏଠାରେ ମହାପ୍ରାଣ କବି ମଧୁସୂଦନଙ୍କ ହୃଦୟର ଗଭୀର ଅନୁଭୂତି ଯେପରି କରୁଣ ରସରେ ଆପ୍ଳୁତ ହୋଇ ପ୍ରକାଶ ପାଇଅଛି, ତାହାର ତୁଳନା ଦୁର୍ଲଭ ।)

### ମଧୁସୂଦନଙ୍କ ବୈଶିଷ୍ଟ୍ୟ

ମଧୁସୂଦନଙ୍କ କବିତାର ସାର୍ଥକତା ବିଚାର ପ୍ରସଙ୍ଗରେ କବିତାରେ ଆଦର୍ଶ ଓ ନୀତିଶିକ୍ଷା ପ୍ରଚାରର ସ୍ଥାନ ଅଛି କି ନାହିଁ ଭାବିବାର କଥା । ଇଲିଅଟ୍‌ଙ୍କ ମତରେ 'କବିତା', ଦର୍ଶନ, ଥିଓଲଜି ବା ଧର୍ମ ସ୍ଥାନରେ ବସିବା ଉଚିତ ନୁହେ । ଏସବୁର ସ୍ଥାନ ସ୍ୱତନ୍ତ୍ର । ମାତ୍ର

କବିତା ବୁଦ୍ଧିପ୍ରସୂତ ନ ହୋଇ ଆବେଗ ଓ ଇଚ୍ଛାର ସହଚର ହୋଇଥିବାରୁ ବୌଦ୍ଧିକ ବିଗ୍ରହରେ ଏହାର ସଜ୍ଞା ନିରୂପଣ କଠିନ ।' ୧୬ ଏଇ ଭାବରେ କବିତା କେଉଁ ଉପାଦାନରେ ଗଠିତ ହେବା ଆବଶ୍ୟକ ତାହାର ବିଚାର ଅବାନ୍ତର । ମାତ୍ର ସବୁ ଯୁଗରେ କବି ଓ ସମାଲୋଚକଗଣ କବିତାରେ ନୀତିଶିକ୍ଷା ପ୍ରଚାରକୁ ଉଚ୍ଚସ୍ଥାନ ଦେଇଛନ୍ତି । ପ୍ରାଚୀନ ଭାରତୀୟ କବିତାର ଆଦର୍ଶ ଅନୁସାରେ, 'ଲୋକଙ୍କ ଜୀବନଯାତ୍ରା କବି ବଚନର ଆୟତ୍ତ । ଏହି ଜୀବନଯାତ୍ରାର ମୂଳ ହେଉଛି ଶ୍ରେୟଜ୍ଞାନ ।' ୧୭ ତେଣୁ କବିତା ଯେ ଶ୍ରେୟଜ୍ଞାନ ପ୍ରଚାର କରିବ—ଏଥିରେ ସନ୍ଦେହ ନାହିଁ । କୋଲେରିଜଙ୍କ ମତ, 'ଗମ୍ଭୀର ଦର୍ଶନବୋଧ ନ ଥାଇ କେହି କେବେ ବଡ଼ କବି ହୋଇ ନାହିଁ ।' ଇମରସନଙ୍କ ମତରେ 'ବଡ଼ କବିଙ୍କୁ ତାଙ୍କ ଉଚ୍ଚ ମନର ତଉଲରେ ବିଚାର କରାଯାଏ ।'

ଏକଥା ସତ, କବି ଓ ଗୁରୁ ଏକ ଶ୍ରେଣୀର ନୁହନ୍ତି । ଗୁରୁ ସମାଜର ପଥ ପ୍ରଦର୍ଶକ ହୋଇ ପାରନ୍ତି । ମାତ୍ର କବିଙ୍କ ଭଳି ସେ ଆନନ୍ଦ, ଉନ୍ମାଦନା ବା ସୌନ୍ଦର୍ଯ୍ୟ ସୃଷ୍ଟି କରି ପାରନ୍ତି ନାହିଁ । ଅନେକ ସମୟରେ କବିତାର ଲକ୍ଷ୍ୟ ତତ୍ତ୍ୱ ପ୍ରଚାର ହେଲେବି, ଏହା ରୂପଚିତ୍ର ଅଙ୍କନ, ବର୍ଣ୍ଣନା ଶୈଳୀ ଅଥବା ଚରିତ୍ର ଚିତ୍ରଣ ଦିଗରେ ଶିଥିଳତା ପ୍ରକାଶ କରି ନ ଥାଏ । ଏ କ୍ଷେତ୍ରରେ କବିତା ନିଜ ଧର୍ମରୁ ବିଚ୍ୟୁତ ବୋଲି କହିବା ସମୀଚୀନ ନୁହେଁ । ପୁଣି ଅନେକ ସ୍ଥଳରେ ବ୍ୟକ୍ତି ଜୀବନର ଅନୁଭୂତି ଯେଉଁ ରଚିତ କବିତା ଧ୍ୟାନ କଳ୍ପିତ ବା ମେଡ଼ିଟେଟିଭ କବିତା ରୂପରେ ଆତ୍ମପ୍ରକାଶ କରେ । କବିଙ୍କ ମନନ ଓ ଦର୍ଶନ, ଆଧ୍ୟାତ୍ମିକ ଜୀବନର ଧ୍ୟାନ ଓ ଅନୁଭୂତି ଏହାକୁ ପୁଷ୍ଟ କରେ । ଏଥିରେ କବିଙ୍କ ଚିନ୍ତା ଓ ଆଦର୍ଶ ପ୍ରଧାନ ସ୍ଥାନ ନେଲେ ବି ଏହି କବିତାର ସାର୍ଥକତା ଯଥାର୍ଥ କବିତ୍ୱ ଶକ୍ତି ଉପରେ ନିର୍ଭର କରେ । ଭାବାବେଗ ଓ ସୌନ୍ଦର୍ଯ୍ୟାନୁଭୂତିର ପ୍ରକାଶ, ଭାଷାଶିଳ୍ପ ଓ ଅଳଙ୍କରଣଶୈଳୀ ଯେଉଁ ଏହି କବିତାର ମୂଲ୍ୟ ବିଚାର କରାଯାଇ ପାରେ । ଅରୂପକୁ ରୂପଦାନ କରିବାର ଏହାହିଁ ଶ୍ରେଷ୍ଠକଳା । କବି ମଧୁସୂଦନ ଏଥିରେ ନିପୁଣ ଥିଲେ । 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ତାଙ୍କର 'ଆଧ୍ୟାତ୍ମତତ୍ତ୍ୱଚିନ୍ତା' ପ୍ରବନ୍ଧମାଳା ୧୮ ଓ ଗ୍ରନ୍ଥାବଳୀରେ ପ୍ରକାଶିତ ବହୁ କବିତାର ଭାବବସ୍ତୁ ଏକା ହେଲେହେଁ, କବିତା ଅଧିକ ଉପଭୋଗ୍ୟ ଓ ଅଧିକ ପ୍ରଭାବଶାଳୀ ।

ମଧୁସୂଦନ ଶୁଦ୍ଧଭାବଲୋକର କବି । ମୌଳିକ ରଚନା, ଅନୁବାଦ ଓ ଭାବଆହରଣ ପର୍ଯ୍ୟନ୍ତ ସବୁଠାରେ ସେ ଏହି ରୂପରେ ଆତ୍ମପ୍ରକାଶ କରିଛନ୍ତି । ଆକାଶପ୍ରତି, ନଦୀ ପ୍ରତି ଆଦି କବିତାର ଭାବ ଆହରଣରେ, ନିର୍ଜନଦ୍ୱୀପରେ ନିର୍ବାସିତର ବିଳାପ ଭଳି କବିତାର ଅନୁବାଦରେ ବି କବି ନିଜ ଆଦର୍ଶରୁ ବିଚଳିତ ହୋଇନାହାନ୍ତି । ଟେନିସନ୍ ବା କାଉପରଙ୍କ ସହିତ ଯେଉଁଠି ସିଏ ନିଜଭାବର ସାମ୍ୟ ଦେଖିଛନ୍ତି, ତାହାହିଁ ନିଜ ଭାଷାରେ ଫୁଟାଇଛନ୍ତି । ପ୍ରକୃତିରେ ଅସୀମ ସନାତନ ତତ୍ତ୍ୱର ସନ୍ଧାନ ବା ମନୁଷ୍ୟ ଜୀବନରେ ଧର୍ମ ଓ

ଶୁଦ୍ଧ ସାମାଜିକତାର ମୂଲ୍ୟ ନିରୂପଣ ଯେପରିକି ମଧୁସୂଦନ କେବଳ ଆହରଣ ଆଗ୍ରହରେ ବା ଅନୁବାଦ ପ୍ରୟାସରେ କରିନାହାନ୍ତି । ଏଥିରେ ତାଙ୍କ ହୃଦୟର ଅନ୍ତରଙ୍ଗ ଭାବ ପ୍ରକାଶ ପାଇଛି । ସେଥିଲାଗି ଏଗୁଡ଼ିକ କବିଙ୍କ ମୌଳିକ ରଚନାଭଳି ପ୍ରାକୃତିକ ଓ ସୁନ୍ଦର ହୋଇଛି ।

କବିଙ୍କ ଆତ୍ମା ଏକ ସ୍ଥିର ଆଦର୍ଶରେ ବିଲୀନ ହୋଇଥିଲା । ସୁଖରେ ଦୁଃଖରେ ପ୍ରଣୟିନୀଙ୍କ ସହିତ ପ୍ରାଣ ବିନିମୟରେ, ବନ୍ଧୁ ସହିତ ଆଳାପରେ, ମହାପୁରୁଷଙ୍କ ବିଚ୍ଛେଦରେ ସର୍ବତ୍ର ସବୁ ଅବସ୍ଥାରେ ସେ ଈଶ୍ୱରସତ୍ତା ଅନୁଭବ କରୁଥିଲେ । ଏହା ତାଙ୍କୁ ଅଖଣ୍ଡ ଶାନ୍ତିର ଅଧିକାରୀ କରିଥିଲା । ମାତ୍ର ଏହି ସନ୍ତୋଷ ଓ ଶାନ୍ତି କବିଙ୍କୁ ଗ୍ରାମ୍ୟସୁଖରେ ବିମୂଢ଼ କରି ରଖୁ ନ ଥିଲା । ସମାଜର କଳୁଷିତ ପରିବେଶ, ମନୁଷ୍ୟର କଳଙ୍କିତ ଜୀବନର ଅନ୍ଧକାର ଭିତରେ ସେ ସୌନ୍ଦର୍ଯ୍ୟ, ଶିଳ୍ପ ଓ ପବିତ୍ରତାର ଆଲୋକ ପରିସ୍ଫୁଟ କରିବାଲାଗି ଆତ୍ମାରେ ଅଭିଳାଷର ଚିରଦୀପ୍ତ ଅଗ୍ନି ଜାଳି ରଖିଥିଲେ । ପଦେ ପଦେ ବାଧା, ପ୍ରତିବନ୍ଧକ, ପାପ ଓ ବିଚ୍ୟୁତିର ଶଙ୍କା ତାଙ୍କ ଚେତନାକୁ ଚିର ଜାଗ୍ରତ, ଆତ୍ମାକୁ ଚିର ବିକ୍ଷୁବ୍ଧ କରି ରଖିଥିଲା । ଏଥିଲାଗି ଆନନ୍ଦ ଓ ବିଷାଦ, ଆଶା ଆଶଙ୍କାର ଦ୍ୱୈତ ଭୂମିରେ ସେ ସଦା ବିଚରଣ କରୁଥିଲେ ।

କଳ୍ପନାର ଉନ୍ମୁକ୍ତ କ୍ରୀଡ଼ା ପାଇଁ ମଧୁସୂଦନଙ୍କ କବିତାରେ ପ୍ରୟାସ ହୋଇନାହିଁ । ଆଦର୍ଶର ପୃଷ୍ଠଭୂମିରେ ସ୍ଥାପିତହୋଇ ଧର୍ମ ଓ ଆଧ୍ୟାତ୍ମିକ ଭାବନା ଆବେଶରେ ଶୁଦ୍ଧଶୀଳ ଓ ମାର୍ଜିତ ରୁଚି କବି ନିଜର ସମସ୍ତ ରଚନାରେ ପ୍ରଚାର କରିଛନ୍ତି । ଏହି ମହତ୍ତ୍ୱଭାବର ପ୍ରକାଶଲାଗି କବି ଅନୁରୂପ ପବିତ୍ର, ସ୍ୱଚ୍ଛ ଓ ଗମ୍ଭୀର ଭାଷା ସୃଷ୍ଟି କରିଛନ୍ତି । ଏହା ପ୍ରଣାଳୀ-ବଦ୍ଧ । ଏଥିରେ ଶବ୍ଦ ଶିଳ୍ପର ଗୁରୁତ୍ୱ ନାହିଁ, ଭାବାକ୍ରାନ୍ତ ଅଳଙ୍କାରର ମଣ୍ଡନ ନାହିଁ, ବ୍ୟଞ୍ଜନାର ଆଧିପତ୍ୟ ରହିଅଛି । କେବଳ ଭାବର ଉଚ୍ଛ୍ୱାସରେ ଭାସିଯାଇ ସେ ଭାଷାର ଶୃଙ୍ଖଳା ଲଙ୍ଘନ କରିନାହାନ୍ତି, କବିତାର ଆକୃତି ଅଥବା ଭାବ ସଙ୍ଗତି କ୍ଷୁଣ୍ଣ କରିନାହାନ୍ତି । ପବିତ୍ର ଭାବ, ମାର୍ଜିତ ରୁଚି, ସଂସ୍କୃତ ଭାଷା ଓ କଳା ପରିପାଟୀର ସମନ୍ୱୟରେ ତାଙ୍କର କାବ୍ୟ ଜଗତ ଗଠିତ ହୋଇଅଛି ।

## ନବମ ଅଧ୍ୟାୟ

# ଗୌଣକବି

> ବଡ଼ ବଡ଼ କବିଙ୍କ କବିତା ତୁଳନାରେ ଗୌଣକବିଙ୍କ କବିତାର ଅଧ୍ୟୟନ ସହଜ ବା ଅନାବଶ୍ୟକ ଏହି ମତ ସହିତ, ଗୌଣ କବିତା ଯେବେ ଆମ ମନରେ ଦେଖା ଦେଉଥିବା ଯେକୌଣସି ତାଚ୍ଛଲ୍ୟ ମନୋଭାବ ଦୂର କରିବାକୁ ମୁଁ ଏକାନ୍ତ ଉଚିତ ମନେକରେଁ । ୧
>
> ଟି. ଏସ୍. ଇଲିୟଟ୍

କାବ୍ୟ ଏକ ସାଧନା । ଏଥିଲାଗି ଆଜୀବନ ଆଗ୍ରହ ଓ ଅତୁଳ ନିଷ୍ଠା ଆବଶ୍ୟକ । ମାତ୍ର ଅନେକ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ନିକଟରେ ଏହି ନିଷ୍ଠା ଓ ଆଗ୍ରହ ଦେଖାଯାଏ ନାହିଁ । ତାରୁଣ୍ୟର ଉଚ୍ଛ୍ୱାସରେ ଅଥବା ନିଜ ଜୀବନରେ ଲାଭ କରିଥିବା ଅନୁଭୂତିର ତାଡ଼ନାରେ ଏମାନେ କବିତା ରଚନା ଆରମ୍ଭ କରିଥାନ୍ତି । ମାତ୍ର ଅଭ୍ୟାସ ଓ ନିଷ୍ଠା ଅଭାବରୁ ଏମାନଙ୍କଠାରେ ଏହାର ବିକାଶ ଦେଖାଯାଏ ନାହିଁ । କାବ୍ୟ ଇତିହାସରେ ଏମାନେ ଗୌଣକବି ରୂପେ ପରିଚିତ ହୋଇଥାନ୍ତି ।

ସାହିତ୍ୟରେ ନୂତନ ଯୁଗ ପ୍ରଥମେ ଏକ ପରୀକ୍ଷା ସ୍ତରରେ ଆତ୍ମପ୍ରକାଶ କରେ । ପ୍ରାଚୀନ ଓ ଗତାନୁଗତିକ ଧାରାରେ ଅଭ୍ୟସ୍ତ କେତେକ କବି ନୂତନ ପରୀକ୍ଷାରେ ବିଫଳ ହୋଇ ଗୌଣ ସ୍ଥାନ ଅଧିକାର କରନ୍ତି । ପୁଣି କେତେକ ଲେଖକ ଗଦ୍ୟ, ପଦ୍ୟ, ଉପନ୍ୟାସ ଗଳ୍ପ, କାବ୍ୟ ଓ କବିତା ଆଦି ସାହିତ୍ୟର ନାନାବିଭାଗରେ ହାତଦେଇ ବହୁ ବିଳମ୍ବରେ ନିଜର ଯଥାର୍ଥ ଶକ୍ତି ଆବିଷ୍କାର କରନ୍ତି । ଏକ ଏକ ଦିଗରେ ପ୍ରାଥମିକ ରଚନା ଏମାନଙ୍କୁ ସେହି କ୍ଷେତ୍ରରେ ଗୌଣ ସ୍ଥାନ ପ୍ରଦାନ କରେ ।

ଯେଉଁଭାବରେ ଆତ୍ମପ୍ରକାଶ କରିଥାନ୍ତୁ ନା କାହିଁକି, ଗୌଣ କବିମାନଙ୍କ ସ୍ଥାନ କାବ୍ୟ ଇତିହାସରେ ନିର୍ଦ୍ଦିଷ୍ଟ । ସାମାଜିକ ଓ ଜାତୀୟ ଇତିହାସରେ ଦେଖୁଁ, ଜଣେ ଜଣେ

ମହାନ୍ ବ୍ୟକ୍ତି ବା ନେତାଙ୍କ କାର୍ଯ୍ୟ ବହୁ ସାଧାରଣ କର୍ମୀ ସୁଗମ କରି ଦେଇଥାନ୍ତି । ଏମାନଙ୍କ ଖଣ୍ଡିତ କର୍ମଧାରା ଏକତ୍ରିତ ହୋଇ ମହାପୁରୁଷଙ୍କ କର୍ମ ପ୍ରବାହରେ ବିପୁଳ ରୂପରେ ଆତ୍ମପ୍ରକାଶ କରେ । ସାହିତ୍ୟ, ବିଶେଷରୂପେ କାବ୍ୟ ଅବଶ୍ୟ ମନୋମୟ ସୃଷ୍ଟି । କବି ବା ଭାବୁକ ବ୍ୟକ୍ତିଙ୍କ ଏକକ ସାଧନାରେ ଏହା ବିକଶିତ ହୁଏ । ତଥାପି ଏ ଦିଗରେ ବହୁ ନୂତନ ପରୀକ୍ଷାରେ ନ୍ୟୂନତର ପ୍ରତିଭା ଶ୍ରେଷ୍ଠ କବିମାନଙ୍କୁ ପଥ ପ୍ରଦର୍ଶନ କରିଥାନ୍ତି । ତୁଳନାରେ ଦେଖିବାପାଇଁ ଏଠାରେ ଇଂରେଜୀ ରୋମାଣ୍ଟିକ ଯୁଗ କବିତା କଥା ଉଲ୍ଲେଖ କରାଯାଇପାରେ । କୋଲେରିଜ୍‌ଙ୍କଠାରୁ କୀଟ୍‌ସ୍‌ଙ୍କ ପର୍ଯ୍ୟନ୍ତ ପ୍ରଧାନ କବିଙ୍କ ମଧ୍ୟରେ ଏହିଯୁଗରେ ଗୌଣକବି ରୋଜାରସ୍, ମୁର୍, କନ୍‌କ୍ଲେୟାର ଆଦି କାବ୍ୟ ଇତିହାସରେ ଗୌରବମୟ ସ୍ଥାନ ଲାଭ କରିଅଛନ୍ତି ଏମାନଙ୍କ ରଚନା ସାମାନ୍ୟ । ସେଥିରେ ରୋମାଣ୍ଟିକ କବିତାର ଧର୍ମ କ୍ୱଚିତ୍ ପ୍ରତିଫଳିତ ହୋଇଛି । ମାତ୍ର ଏହି ପରିବର୍ତ୍ତନ ଯୁଗରେ ପୁରାତନ ଓ ନୂତନ ମଧ୍ୟରେ ଏମାନେ ଯୋଗସୂତ୍ରରୂପେ କାର୍ଯ୍ୟକରି ନବଯୁଗର ସମ୍ଭାବନାକୁ ଉଜ୍ଜ୍ୱଳ କରିଦେଇଛନ୍ତି । ୨

ନାନାପ୍ରକାର କାବ୍ୟ ସଂକଳନ ପ୍ରକାଶର ପରମ୍ପରା ଯେଉଁଠି ଦେଖାଯାଏ, ସେଠାରେ ଗୌଣକବିମାନେ ବହୁ ପାଠକଙ୍କ ସମ୍ମୁଖରେ ଆତ୍ମପ୍ରକାଶର ସୁଯୋଗ ଲାଭକରନ୍ତି । ହୁଏତ ଖୁବ୍ ଅଳ୍ପ ଗୌଣକବିଙ୍କ ପୂର୍ଣ୍ଣ ପରିଚୟ ପାଠକ ରଖନ୍ତି । ମାତ୍ର ଏମାନଙ୍କ ପ୍ରତିଭାର ବିଶେଷ ଦିଗ ସବୁବେଳେ ଆମକୁ ଆକୃଷ୍ଟ କରେ । କେଉଁ କବିଙ୍କର ବ୍ୟକ୍ତିତ୍ୱ, କାହା ରଚନାର ବିଷୟବସ୍ତୁ ଅଥବା ଶୈଳୀର ଗୋଟିଏ ଗୋଟିଏ ବିଶେଷ ଦିଗ ଏହି ଆକର୍ଷଣର କାରଣ ହୋଇଥାଏ ।

ଓଡ଼ିଆ କାବ୍ୟଧାରାର ଆଦ୍ୟ ଅଭ୍ୟୁଦୟ ଯୁଗରେ ରାଧାନାଥ, ଫକୀରମୋହନ ମଧୁସୂଦନଙ୍କ ପ୍ରତିଭା ଓ ସାଧନାର ଆଲୋକରେ ଅନେକ କ୍ଷୁଦ୍ରତର ପ୍ରତିଭା ଲୁଚିଯାଇଛନ୍ତି । ବିଭିନ୍ନ ପ୍ରକାର କବି । ସଙ୍କଳନ ପରମ୍ପରା ଅଭାବରୁ ସାଧାରଣ କାବ୍ୟାମୋଦୀଙ୍କ ନିକଟରେ ଏମାନଙ୍କ କବିତାର ମାଧୁରୀ ପହଞ୍ଚି ପାରିନାହିଁ । ଆଧୁନିକ କାବ୍ୟଧାରାର କ୍ରମବିକାଶ ଇତିହାସ ଏପର୍ଯ୍ୟନ୍ତ ରଚିତ ହୋଇନାହିଁ । ତେଣୁ କୌଣସି କାବ୍ୟ ସମାଲୋଚକ ଏମାନଙ୍କ କବିତାର ମୂଲ୍ୟ ଅଙ୍କନ ପ୍ରୟାସ କରିନାହାନ୍ତି । ଏମାନଙ୍କ ରଚନାବଳୀ ପତ୍ର ପତ୍ରିକା ପୃଷ୍ଠାରେ, ଅଥବା କୀଟଦଷ୍ଟ କ୍ଷୁଦ୍ର କ୍ଷୁଦ୍ର ପୁସ୍ତିକାରେ ବିକ୍ଷିପ୍ତଭାବରେ ପଡ଼ି ରହିଅଛି । ଏଠାରେ ଏହି କାବ୍ୟ ଜଗତର ସୂଚନା ଦେବାର ପ୍ରୟାସ କରାଯାଉଅଛି ।

**ଗୋବିନ୍ଦ ରଥ—୧୮୪୮-୧୯୧୮**

ଦରିଦ୍ର ପ୍ରାଚୀନ ସଂସ୍କାରଗ୍ରସ୍ତ ଗୋଟିଏ ବ୍ରାହ୍ମଣ ପରିବାରରେ କଟକ ଜିଲ୍ଲାର ପଦ୍ମନାଭପୁର ଶାସନରେ ଏହାଙ୍କର ଜନ୍ମ । ମାତ୍ର ପ୍ରାଚୀନ ରକ୍ଷଣଶୀଳତାର ବନ୍ଧନ

ନମାନ୍ତ ଏ ନବ୍ୟ ପ୍ରଗତି ଓ ସମାଜ ସଂସ୍କାର ପଥର ଜଣେ ସାହସୀ ପଥିକ ଥିଲେ । କଟକ ନର୍ମାଲ ସ୍କୁଲରେ ସାମାନ୍ୟ ଇଂରେଜୀ ଶିକ୍ଷା ଗ୍ରହଣ କରି ସରକାରୀ ଅଫିସରେ କିରାଣୀ ଓ କେତୋଟି ବିଦ୍ୟାଳୟର ଶିକ୍ଷକ ଭାବରେ କର୍ମଜୀବନ ଅତିବାହିତ କରିଥିଲେ । ସ୍ୱାଧୀନ ଚିନ୍ତା, ସ୍ୱଦେଶପ୍ରେମ ଓ ସଂସ୍କାର ଭାବନାରେ ଜ୍ୱଳନ୍ତ ହୋଇ ସେ ସାମ୍ବାଦିକ, ପୁସ୍ତକ ପ୍ରକାଶକ ଓ କବି ଭାବରେ ପୂର୍ଣ୍ଣରୂପେ ଆତ୍ମନିୟୋଗ କରିଥିଲେ । ୩

ଏହାଙ୍କ କାବ୍ୟ ଜଗତ ବିଚିତ୍ର ଓ ବିପୁଳ । ୪ କଳା ବା ରଚନା ପାଠର ଦିଗରୁ ଏହାର ମୂଲ୍ୟ ନିରୂପଣ କରିବାକୁ ଚେଷ୍ଟାକଲେ ହତାଶ ହେବାକୁ ପଡ଼େ । ମାତ୍ର ଏହା ଯେପରିକି ସମକାଳୀନ ସମାଜର ଜୀବନ୍ତ ଚଳଚ୍ଚିତ୍ର । ସମ୍ପାଦପତ୍ରର ବିଷୟ ପରିବେଷଣ ପରି ରଥଙ୍କ କବିତା ପାଠକଙ୍କ ନିକଟକୁ ସମକାଳୀନ ଘଟଣାବଳୀର ଚିତ୍ତାକର୍ଷି ସମ୍ବାଦ ସରଳ ଓ ଏକାନ୍ତ ସୁବୋଧ ଭାଷାରେ ନେଇଆସେ । ବିଷୟ କଳ୍ପନାରେ ଓ କବିତାର ରୂପ ରଚନାରେ ମଧୁସୂଦନ ଓ ଫକୀରମୋହନଙ୍କ ଛାୟା ନାନାସ୍ଥାନରେ ଏହାଙ୍କ କବିତାରେ ଜାଲନା କରିଯାଇପାରେ । 'ଆଶା' ବା ଦ୍ୱୀପ ନିର୍ବାସିତ ବ୍ୟକ୍ତିର ଖେଦ' କବିତା ଦୁଇଟିର ପରିକଳ୍ପନାରେ ମଧୁସୂଦନ କବିଙ୍କୁ ପ୍ରଭାବିତ କରିଥିବା ସମ୍ଭବ । ମାତ୍ର ଏଥିରେ ମଧୁସୂଦନଙ୍କ ଦର୍ଶନ ଓ ସୂକ୍ଷ୍ମଦୃଷ୍ଟିର ଛାୟା ନାହିଁ । ଆଶା କିପରି ସବୁ ଅବସ୍ଥାରେ ସକଳ ଶ୍ରେଣୀର ହୃଦୟରେ ସାହସ ଆଣିଦିଏ, ତାହାର ବିସ୍ତୃତ ବର୍ଣ୍ଣନା 'ଆଶା' କବିତାରେ ରହିଅଛି । କିନ୍ତୁ, ଏଥିରେ ଭାବର ଗଭୀରତା, ଅନୁଭବର ସ୍ପନ୍ଦନ ବା ଛନ୍ଦର ପ୍ରବାହ ନାହିଁ । ରଥଙ୍କ କବି ହୃଦୟରେ ପ୍ରେମ, କରୁଣା ଓ ଶୋକଜନିତ ମୁହୂର୍ତ୍ତର ଚିତ୍ର ଅଙ୍କନଲାଗି ସ୍ୱାଭାବିକ ଆଗ୍ରହ ପ୍ରକାଶ ପାଇଅଛି । ମାତ୍ର ଅନୁଭବର ନିବିଡ଼ତା ଓ ପ୍ରକାଶ ଶକ୍ତି ଅଭାବରୁ ଯାହାର ପ୍ରେମିକ ମୁଖରେ କ୍ରନ୍ଦନ ଭଳି ଏହା ଲଘୁ ଓ ଚପଳ ବୋଧହୁଏ । ବିରହୀ ବନ୍ଦୀ ନିଜ ପ୍ରିୟତମା ପତ୍ନୀର ଶୋକ ବର୍ଣ୍ଣନା କରିଛି—

> "ଆହା ମୋ ପ୍ରେୟସୀ ବାଳା ଲୋଟି ଭୂମି ତଳେ
> ମୋ ବିରହେ ଦେଇଥିବ କରକୁ କପୋଳେ
> ନୟନରୁ ଲୋତକ ଧାର ବହୁଥିବ ବାରମ୍ବାର
> ଡାକୁଥିବ ପ୍ରାଣନାଥ ଦୁଃଖ ଅସମ୍ଭାଳେ ।" ୫

ଦେଶପ୍ରେମ ରଥଙ୍କ କବିତାର ଏକ ପ୍ରଧାନ ଉପାଦାନ । ସ୍ୱଦେଶର ଭାଷା, ସାହିତ୍ୟ, ଇତିହାସ ଓ ପ୍ରକୃତି ସମସ୍ତ କବିଙ୍କ ଦୃଷ୍ଟିରେ ପ୍ରିୟ ଓ ଶ୍ରେୟ । ଦେଶ ଉନ୍ନତିଲାଗି କବିଙ୍କର ସମସ୍ତ କଳ୍ପନା ଓ ଚିନ୍ତା ଅଭିପ୍ରେତ । ସେ କେତେବେଳେ ଏଥିଲାଗି ଶାସକଙ୍କଠାରେ ଗୁହାରୀ କରିଛନ୍ତି, କେତେବେଳେ ଅବା ଦେଶବାସୀଙ୍କୁ ନବ ଉଦ୍ୟମରେ ମାତି ଉଠିବାକୁ ଉଦ୍‌ବୋଧନ ଦେଇଛନ୍ତି । ଜାତୀୟ ଜୀବନର ଗଠନ ଲାଗି ଅନ୍ୟାୟ ଅନୀତି ବିରୋଧରେ

ଦୃଢ ସ୍ୱର ଉଠାଇଛନ୍ତି । ବିଜାତୀୟ ସଂସ୍କୃତିର ଅନୁକରଣ, ଶୁଦ୍ଧ ଆଚରଣ ପ୍ରତି ବିତୃଷ୍ଣା ଫଳରେ ଜାତୀୟ ଜୀବନ ଯେପରି ବିକଳାଙ୍ଗ ଓ କଳୁଷିତ ହୋଇଯାଉଥିଲା, ତାହାର ଗତିରୋଧ କରିବା ଲାଗି କବି ବିଦ୍ରୂପ ବାଣୀ ରଚନା କରିଛନ୍ତି । ସାମାନ୍ୟ ଅବସ୍ଥାରେ ଥାଇ ମଧ୍ୟ କବିଙ୍କ ପ୍ରାଣରେ ସିଂହର ସାହସ ସଦା ବିରାଜିତ କରୁଥିଲା । ତାଙ୍କର ସମାଲୋଚନା ଦୃଷ୍ଟିରୁ ସେକାଳର ସର୍ବଶକ୍ତିମାନ ଗୋରା କର୍ମଚାରୀ ମଧ୍ୟ ରକ୍ଷା ପାଇ ନ ଥିଲେ । ଏମାନଙ୍କ ଅନାଚାର, ଅହଂକାର ଓ ଚରିତ୍ରର ଚିତ୍ର ନିର୍ଭୀକ ଭାବରେ 'ଫ୍ୟାଚର ସାହେବ' କବିତାରେ ପ୍ରକାଶ କରିଛନ୍ତି ।

"ମୁରଲି ମୁଣ୍ଡରେ ସ୍ଲୋକ ଛାଡ଼ିବି
ପିଚବାଡ ଖଣ୍ଡେ କାଖେ ଯାକିବି ।
ରାଇଟ୍ ହେଣ୍ଡକୁ ପକେଟେ ପୂରାଇ
ହୁଇଷ୍ଟଲ୍ ସୁଧା ଶପ୍‌କୁ ଯିବି ।
ଶପ୍‌କୁ ରିଟର୍ଣ୍ଣ କରିବାବେଳେ
ଅଲ୍ ଦ ପିପଲ୍ ଦେଖିବେ ଡୋଳେ
ଚିତ୍ତ ତଳ ଦେବ ଅବତାର ମୂର୍ତ୍ତି
ଯାଉଛନ୍ତି ଆହା ଆନନ୍ଦ ଭୋଳେ ।

×

କାମ୍ବ୍ରିଜ କଲେଜେ କିଛି ପଢିବି
ଗ୍ରିନ୍‌ସରେ ସିଭିଲସ୍ନାନ ହେବି,
କେବଳ ଭାରତ ଅଲ ମାଇ ହୋପ୍
ଏଠାରେ ହାକିମି ଆସି କରିବି ।"୬

ରଥଙ୍କ ବ୍ୟକ୍ତିତ୍ୱ ଓ ମହତ୍ତ୍ୱ ତାଙ୍କର ସମକାଳୀନ ଓ ପରବର୍ତ୍ତୀ ଲେଖକମାନେ ସ୍ୱୀକାର କରିବାରେ କୁଣ୍ଠା ପ୍ରକାଶ କରିନାହାନ୍ତି । ସେବକ ପ୍ୟାରୀମୋହନ ଓ ସମ୍ପାଦକ କର୍ମଯୋଗୀ ଗୌରୀଶଙ୍କରଙ୍କ କର୍ମଧାରାର ପରିଧିରେ କବି ବିଚରଣ କରିଥିଲେ । ସାହିତ୍ୟ ସେବା ଓ ସମାଜ ସଂସ୍କାର ଉଦ୍ଦେଶ୍ୟରେ ଗ୍ରନ୍ଥ ରଚନା ଓ ପ୍ରକାଶକୁ କବି ଜୀବନର ଏକମାତ୍ର ପଣରୂପେ ଗ୍ରହଣ କରିଥିଲେ । ଏଥିଲାଗି ତାଙ୍କୁ ସ୍ୱାଗତ କରି ଫକୀରମୋହନ 'ଉତ୍କଳ ଭ୍ରମଣଂ'ରେ ଲେଖିଛନ୍ତି –

"ଭଲ ରଥେ କରିଛନ୍ତି ବାମୁଣ ପଣିଆ
ପୁସ୍ତକ ଛପାଇ ଦେଇ ଅଣେ ଦଅଣିଆ ।
ଅଛା ହେଲା, ଭଲ ହେଲା, ସେଟ ଚଳୁଥାଉ
ଖଣ୍ଡକାତେ ପୋଥି ମଧ୍ୟ ଛପା ହୋଇଯାଉ ।" ୭

## ରାଜା ସାର ବାସୁଦେବ ସୁଡଲ ଦେବ – ୧୮୫୦-୧୯୦୩

ସୁଡ଼ଲ କେବଳ କବି ନୁହନ୍ତି, ସେ ଊନବିଂଶ ଶତକ ଓଡ଼ିଶାରେ ଜଣେ ପ୍ରଧାନ ପୁରୁଷ। ତାଙ୍କ ବ୍ୟକ୍ତିତ୍ୱ ଓ ବାଣୀସାଧନାର ଆଭିମୁଖ୍ୟ ବିଶ୍ଳେଷଣ କଲେ ଯଥାର୍ଥରେ ଧାରଣା ହୁଏ—"ସୁଡ଼ଲ ଦେବ କାବ୍ୟର କବି ନୁହନ୍ତି, କର୍ମର କବି। ଜୀବନହିଁ ତାଙ୍କର ଖଣ୍ଡିଏ ମହାକାବ୍ୟ। ତାଙ୍କ ଜୀବନକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ- ବହିର୍ଲୋକ, ଅନ୍ତର୍ଲୋକ। ଗୋଟିଏ ତାଙ୍କ କର୍ମରେ ଓ ଅନ୍ୟଟି ତାଙ୍କର କାବ୍ୟରେ ପ୍ରକାଶିତ। କାବ୍ୟ ଓ କର୍ମରେ କୁଆପି ବିରୋଧ ସୃଷ୍ଟି ହୋଇନାହିଁ। କର୍ମ ସାଧନରେ ସେ କାବ୍ୟର ଭାବ, ରସ ଓ ଅଳଙ୍କାର ଉପଭୋଗ କରିଛନ୍ତି। ସେ ଜ୍ଞାନପାଇଁ ଜ୍ଞାନ ଅର୍ଜନ କରି ନାହାନ୍ତି। ଜ୍ଞାନର ସାର୍ଥକତା କର୍ମରେ ଦେଖାଇ ଅଛନ୍ତି। ସେ କବି ଓ କର୍ମୀ।"[୮]

ସାହିତ୍ୟ ପ୍ରୀତି ଓ ସାହିତ୍ୟ ଚର୍ଚ୍ଚା ସୁଡ଼ଲ ଦେବଙ୍କ ବୃହତ୍ତର ଜୀବନ ବୃତ୍ତର ଏକ କ୍ଷୁଦ୍ର ଅଂଶ ଥିଲେ ବି ଏକ ଉଜ୍ଜ୍ୱଳ ଅଂଶ ଥିଲା। ତାଙ୍କର ଶିକ୍ଷା ଓ ଜୀବନ ପ୍ରାଚ୍ୟରୀତିରେ ଗଠିତ ଥିଲା। ସେ ପ୍ରାଚୀନ ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ପଣ୍ଡିତ ଥିଲେ। ମାତ୍ର ଇଂରାଜୀ ଅନଭିଜ୍ଞ ଥିଲେ। ଆଧୁନିକ ଜ୍ଞାନବିଜ୍ଞାନ ଆଲୋକରୁ ଦୂରରେ ଥାଇ ମଧ୍ୟ ସେ ଆଧୁନିକ ଆଦର୍ଶରେ ଦୀକ୍ଷିତ ଥିଲେ। ତାଙ୍କ କାର୍ଯ୍ୟ ଓ ଚରିତ୍ରର ଗତି କଳନାକରି ରାଧାନାଥ କହିଛନ୍ତି—'ସେପରି ବିଧାତା ଦେଶୀୟ ଶରୀରରେ ଇଉରୋପୀୟ ମସ୍ତକ ସଂଯୋଗ କରିଅଛନ୍ତି।'[୯] ତାଙ୍କଠାରେ ପ୍ରକୃତରେ ପ୍ରାଚୀନ ରକ୍ଷଣଶୀଳତା ଓ ନବ ପ୍ରଗତିର ସୁନ୍ଦର ସାମଞ୍ଜସ୍ୟ ଘଟିଥିଲା। ସୁଡ଼ଲଦେବଙ୍କ ବ୍ୟକ୍ତିତ୍ୱର ଏହି ଦିଗଟି କାବ୍ୟରେ ପ୍ରତିଫଳିତ ହୋଇଅଛି।

ପରିମାପ ଦିଗରୁ ସୁଡ଼ଲଦେବଙ୍କ କାବ୍ୟ ଜଗତ ଅତି କ୍ଷୁଦ୍ର। ମାତ୍ର ଗମ୍ଭୀରତା ଓ ଭାବବସ୍ତୁ ଦିଗରୁ ଦେଖିଲେ,ଊନବିଂଶ ଶତକର କାବ୍ୟଧାରାରେ ଏହାର ସ୍ଥାନ ମହନୀୟ। ଆଧୁନିକ କାବ୍ୟର ମୁଖ୍ୟ ପ୍ରବୃତ୍ତି ଦେଶପ୍ରୀତି, ମାନବପ୍ରେମ ଓ ପ୍ରକୃତିପ୍ରାଣତା ସୁଡଲଙ୍କ କାବ୍ୟରେ ପୂର୍ଣ୍ଣ ଅଭିବ୍ୟକ୍ତି ଲଭିଅଛି। ଭାବରେ କବି ଯେପରି ଆଧୁନିକ, ଭାଷା ଓ ମଣ୍ଡନ କଳାରେ ସେହିପରି ପ୍ରାଚୀନ। ପୁରାତନ କବିତାର ରସିକତା, ଅଳଙ୍କାର ଦୁର୍ବହତା, ଅଭିଧାନିକ ଶବ୍ଦର ଗୁରୁଭାର ଓ କ୍ଲିଷ୍ଟତା—କୌଣସି ଦିଗ ଏଥିରୁ ବାଦ ଯାଇନାହିଁ। ଏହି ଦୁଇ ବିରୋଧମାନ କାବ୍ୟରୁଚି ଓ ରୀତିର ଏକତ୍ର ପରିବେଷଣ ଯେତେ ଅରୁଚିକର ମନେହେଲେ ବି ଆଧୁନିକ କାବ୍ୟଧାରାର କ୍ରମବିକାଶ ଇତିହାସରେ ବିଶେଷ ମହତ୍ତ୍ୱ ପୂର୍ଣ୍ଣ।

ବୀରବାଳା ଏକ ଅସଂପୂର୍ଣ୍ଣ ଐତିହାସିକ କାବ୍ୟ । ବୀରପୂଜା ଓ ନାରୀର ମହତ୍ତ୍ୱଗାନ ଏହି କାବ୍ୟର ଆଦର୍ଶ । କବି ଭୂମିକାରେ ସ୍ୱକୀୟ ଛନ୍ଦରେ ଏହା ବ୍ୟକ୍ତ କରିଛନ୍ତି । 'ଭାରତ ରମଣୀମାନଙ୍କର ଦୁର୍ଲଭ ପୁରୁଷୋଚିତ ଗୌରବର ଅପମୃତ୍ୟୁହାରିଣୀ, ରଣତାଣ୍ଡବିନୀ ଲକ୍ଷ୍ମୀବାୟୀ ଯେତେବେଳେ ଭାରତୀୟ ଐତିହାସିକ ବାଗ୍-ବୈଭବର ଭୂଷଣତ୍ୱ ସ୍ୱରୂପା ହୋଇଅଛି, ସେତେବେଳେ ତାହାଁରେ କବିମାନେ ଜନକାଜିତ ଭୂମି ଶିର ଆପଣାର ସ୍ୱତ୍ୱ ସ୍ଥାପନ କରିବାପାଇଁ ସ୍ୱକୀୟ ସରସ୍ୱତୀ ବୈଚିତ୍ର୍ୟର ଚରିତାର୍ଥତା ସମ୍ପାଦନ କରିବାକୁ କୁଣ୍ଠିତ ହେବେ କି ? ଏପରି ସ୍ଥଳେ ଆମ୍ଭର ଏତାଦୃଶୀ ସହୃଦୟାହ୍ଲାଦିନୀ ପ୍ରବୃତ୍ତି ଜନସମାଜରେ ବାତୁଳତାରୋପଣୀ ହେବନାହିଁ । ଆମ୍ଭର କୌଣସି ଉଦ୍ଦେଶ୍ୟ ନୁହେ, କେବଳ ଲକ୍ଷ୍ମୀବାୟୀ ଯାହା ହିନ୍ଦୁକୁଳ ଲଲାମ ସରଃ ସରୋଜନୀରେ କ୍ରୀଡ଼ିତ ସହସ୍ରାରର ଅପୂର୍ବ ଛଟା ଦେଖାଉଅଛି ତାହାହିଁ ପାଠକମାନଙ୍କୁ ଜଣାଇବାର ବାସନା ମାତ୍ର ।' ୧୦

ପରାଧୀନତାର ଅନ୍ଧକାର ଯୁଗରେ ଏହି କାବ୍ୟ ଲେଖା ଯାଇଥିଲା । ଅତୀତର ସ୍ତବ ଓ ଭାରତୀୟ ବୀରତ୍ୱର ଜୟଗାନ କରିବା ସଙ୍ଗେ ସଙ୍ଗେ କବି ସତ୍ୟର ଧ୍ୟାନରୁ ବିଚଳିତ ହୋଇନାହାନ୍ତି । ବିଦ୍ରୋହର କଠିନ ପଥରେ ସ୍ୱଦେଶର ସ୍ୱାଧୀନତା ଅର୍ଜନ ଲାଗି ଆବଶ୍ୟକୀୟ ନିଷ୍ଠା, ସଂହତି, ଶକ୍ତି ଓ ସୁବୋଦ୍ଧୃଷ୍ଟି ସାମନ୍ତ ନେତୃତ୍ୱରେ କିପରି ପ୍ରକାଶ ପାଇ ନ ଥିଲା, ତାହା ଅକୁଣ୍ଠ ଚିତ୍ତରେ କବି ଅଭିବ୍ୟକ୍ତ କରିଛନ୍ତି । ମହାରାଣୀ ଭିକ୍ଟୋରିଆଙ୍କ ବାଣୀରେ ଯେଉଁ ଛଳନା ଥିଲା ତାହା ଏମାନେ ନ ବୁଝି ପରାଧୀନତାକୁ ବରଣ କରି ଆଣିଥିଲେ । କବିଙ୍କ ଭାଷାରେ—

'ଭାରତ ପ୍ରବାରେ ନିଜ ମୁକୁଟ ରତ୍ନରେ
ନରନାଥ କଲେ ମହାରାଣୀଙ୍କି ଯତ୍ନରେ ।
ଅବନତ ଶିରେ ସେବାଞ୍ଜଳି ଦେଇ କରେ
ସୁମିତ ଭାଗ୍ୟ ପର୍ଯ୍ୟଙ୍କେ ବସିଲେ ସତ୍ତ୍ୱରେ ।' ୧୧

ଲକ୍ଷ୍ମୀବାୟୀ, ଗଙ୍ଗାବାୟୀ, ସେନାପତି କାଲେଖାଁ ଓ ତାନ୍ତିଆ ଆଦିଙ୍କ ଚରିତ୍ରରେ ସାହସ, ବୀରତ୍ୱ ଓ ସ୍ୱଦେଶ ଗୌରବ ରକ୍ଷାଲାଗି ଆତ୍ମୋତ୍ସର୍ଗ ଭାବନା ବିଶଦଭାବରେ ପ୍ରକଟିତ ହୋଇଅଛି । ଇଂରେଜ ସେନାପତି ହିଉରୋଜ୍‌ଙ୍କୁ ଏମାନଙ୍କ ତୁଳନାରେ ଅତି ସାଧାରଣ କରି କବି ଚିତ୍ରଣ କରିଛନ୍ତି । ପ୍ରଥମ ଦୁଇ ସର୍ଗରେ ଝାନସୀ ସେନାର ଗୌରବମୟ ପ୍ରତିରୋଧ କାହାଣୀ ବର୍ଣ୍ଣିତ ହୋଇଅଛି । ତୃତୀୟ ସର୍ଗରେ ଝାନସୀର ପରାଜୟ ଓ ସମର କ୍ଷେତ୍ରରେ ରାଣୀଙ୍କର ଆତ୍ମବଳିଦାନର ଚିତ୍ର ପ୍ରଦାନ କରିବା ଇଚ୍ଛା କବି ପୂର୍ଣ୍ଣ କରିପାରି ନାହାନ୍ତି । ନିଜର ପ୍ରିୟ ନାୟିକାଙ୍କର ପତନ ଓ ପରାଜୟ ଚିତ୍ର

ଅଙ୍କନ କରିବା ଯେପରି କି କବିଙ୍କ ମାନସିକ ଭାବାବେଗର ପ୍ରତିକୂଳ ହେବାରୁ ସେ ଏହି କଳ୍ପନାକୁ କାର୍ଯ୍ୟରେ ପରିଣତ କରିପାରି ନାହାନ୍ତି । ଭାଷା, ବର୍ଣ୍ଣନା, କଳ୍ପନାର କ୍ରୀଡ଼ା ବା କାହାଣୀର ଚମତ୍କାରିତା ଦିଗରୁ ବୀରବାମା ସ୍ମରଣୀୟ ନୁହେଁ । ଆମ ସାହିତ୍ୟରେ ଯଥାର୍ଥରେ ବୀର ରସ ପୁଷ୍ଟ କାବ୍ୟର ବିରଳତା ଦୃଷ୍ଟିରୁ ଏହାର ସ୍ଥାନ ସୁନିର୍ଦ୍ଦିଷ୍ଟ ।

ରାଧାନାଥଙ୍କ ଚିଲିକା ରଚନା ପରେ, ଖୁବ୍ ସମ୍ଭବତଃ 'ମହାନଦୀ ନାମ ରହିଲା ମୁପଟେ' କବିଙ୍କ ଏହି କ୍ଷୋଭବାଣୀରୁ ପ୍ରେରଣା ଲଭି କରି ସୁଚଳଦେବ 'ଚିତ୍ରୋତ୍ପଳା' କାବ୍ୟ ରଚନାରେ ପ୍ରୟାସୀ ହୋଇଛନ୍ତି । ମହାନଦୀର ଦୁଇକୂଳର ଦୃଶ୍ୟ, ଜନପଦ, ଏଥି ସହିତ ଜଡ଼ିତ କିମ୍ବଦନ୍ତୀ ଏହି କାବ୍ୟରେ ବିଶଦରୂପେ ଚିତ୍ରିତ ହୋଇଅଛି । ନଦୀ ଦେହରେ କବି ନାରୀର ସୌନ୍ଦର୍ଯ୍ୟ ଓ ସରସତା ଆରୋପ କରିଛନ୍ତି । ମହାନଦୀ କେବଳ ଶ୍ରୀ, ନୃତ୍ୟ ନିପୁଣା ଓ ଚିତ୍ରିତ କଳେବର ନୁହେଁ; ଉଦାର ହୃଦୟର ଅଧିକାରିଣୀ । ପ୍ରକୃତିଠାରେ ମାନବୀୟ ଚରିତ୍ର ଚିତ୍ର କବିଙ୍କ ଅନୁଭବରେ ବ୍ୟାପ୍ତ ହୋଇଅଛି ।

> 'ଉଦାର ହୃଦୟା ଚିତ୍ରୋତ୍ପଳା ନିଜ ସପତ୍ନୀମାନଙ୍କୁ ଧରି
> ସ୍ୱପତି ଜଳଧି ପାଶକୁ ଯାଉଛି ଦ୍ୱେଷଭାବ ପରିହରି ।
> ମହିତ ଲୋକର ଏହିପରି ସିନା ମହତ ଅଟେ ବେଭାର
> କ୍ଷୁଦ୍ର ହୋଇ କିଛି କ୍ଷମତା ପାଇଲେ ହିଂସା ବଢ଼େ ଭାରି ଭାରି ।' ୧୨

ସମଗ୍ର ଭାବରେ ଦେଖିଲେ, 'ପ୍ରକୃତିର ଭୀମ ବା ବିଭତ୍ସ ରୂପ କିମ୍ବା ଶାନ୍ତ ମଧୁର ଛବିର ଅବିକଳ ପ୍ରତିକୃତି ଅଙ୍କନରେ କବିଙ୍କର ପଟୁତା ପରିସ୍ଫୁଟ । କିନ୍ତୁ ଛବିର ଦକ୍ଷତା ଶିଳ୍ପୀର ଯେଉଁ କୃତିତ୍ୱ ଦେଖାଏ, କବିତାର ରସଘନ ମାଧୁରୀ, ନିତ୍ୟ ନବ ରମଣୀୟତା କବିର ଯେଉଁ ମହିମା ପ୍ରକଟନ କରେ, ତାହା ଚିତ୍ରୋତ୍ପଳାରେ ଦୁର୍ଲ୍ଲଭ । ଏଥିରେ ବଚୋକ୍ତି ଘୃଣୁଷି ଅଛି, ବଚୋକ୍ତି କାବ୍ୟର ଜୀବନ ନୁହେଁ, ଅଳଙ୍କାରର ଘନଘଟା ଅଛି, କିନ୍ତୁ ଅଳଙ୍କାର ଅଙ୍ଗର ଶ୍ରୀବୃଦ୍ଧି କରେ, ଆତ୍ମାର ନୁହେଁ । ଏହାର ପ୍ରଧାନ ଦୋଷ କ୍ଳିଷ୍ଟତା ।.. ମହାନଦୀର ଖଣ୍ଡିତ ବର୍ଣ୍ଣନା ମନୋଜ୍ଞ, କିନ୍ତୁ ଚିତ୍ରୋତ୍ପଳାର ସାମଗ୍ରିକ ରସାଳ, ଜୀବନ୍ତ ମୂର୍ତ୍ତି ଏଥିରେ ନାହିଁ ।' ୧୩

କାବ୍ୟ ତୁଳନାରେ କବିଙ୍କ ବ୍ୟକ୍ତିତ୍ୱ ମହତ୍ତର ଥିଲା । ଏହି ବ୍ୟକ୍ତିତ୍ୱର ଆଦର୍ଶ ଓ ମାର୍ଜିତ ରୁଚି କାବ୍ୟରେ ସ୍ପନ୍ଦନ ପ୍ରତିଫଳିତ ହୋଇଛି । ବାସୁଦେବଙ୍କର ଉଦାର ବ୍ୟକ୍ତିତ୍ୱ ଓ ବାଣୀ ଆରାଧନା ସ୍ମରଣ କଲେ ଭକ୍ତକବି ମଧୁସୂଦନଙ୍କ ଉକ୍ତି ଏକାନ୍ତ ସତ୍ୟ ମନେହୁଏ ।

> 'ଧନ୍ୟ ରାଜକବି ବାସୁଦେବ ଦେବ-ମନା,
> ସୁରସଙ୍କ, ଧନ୍ୟ ତବ ଅମୃତ ରସନା ।' ୧୪

## ମଣିଚରଣ ମହାପାତ୍ର—୧୮୫୭—୧୯୨୦

ଏକ ଅଭିଜାତ ଜମିଦାର ପରିବାରରେ ଜନ୍ମହୋଇ ଆଧୁନିକ ଶିକ୍ଷା ଓ ସଂସ୍କାର ପ୍ରଭାବରେ ଆସି ଶିକ୍ଷା ବିଭାଗରେ ଏକ ସାଧାରଣ କର୍ମ ଗ୍ରହଣର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ମଣିଚରଣ ଦେଖାଇ ଯାଇଛନ୍ତି । ତାଙ୍କର ପିତା ଦୁର୍ଲଭାନନ୍ଦ ବିଦ୍ୟାନୁରାଗୀ ଥିଲେ । ତିନିଜଣ ବ୍ରାହ୍ମଣ ପଣ୍ଡିତ ରଖାଇ ନିଜ ଭାଗବତ ଗାଦିରେ ସଂସ୍କୃତ ଓ ଓଡ଼ିଆ ପୋଥିର ଏକ ବଡ଼ ଗ୍ରନ୍ଥାଗାର କରିଥିଲେ ।

ଖୁବ୍ ସମ୍ଭବ ପ୍ରାଚୀନ ସଂସ୍କାର ପ୍ରଭାବରୁ ମଣିଚରଣ ଯଥା ସମୟରେ ଆଧୁନିକ ଶିକ୍ଷା ଲାଭର ସୁଯୋଗ ପାଇ ନ ଥିଲେ । ସେ ବାଇଶିବର୍ଷ ବୟସରେ ବାଲେଶ୍ୱର ଜିଲ୍ଲା ସ୍କୁଲରୁ ପ୍ରବେଶିକା ଓ ଏହାର ଦୁଇବର୍ଷପରେ ୧୮୮୧ ଖ୍ରୀଷ୍ଟାବ୍ଦରେ ରେଭେନ୍ସା କଲେଜରୁ ଏଫ୍. ଏ. ପରୀକ୍ଷାରେ ପାଶ କରିଥିଲେ । ବାଲେଶ୍ୱର ଜିଲ୍ଲାସ୍କୁଲରେ କିଛି ଦିନ ଶିକ୍ଷକତା କରି ସ୍କୁଲ ସବ୍ଇନ୍ସପେକ୍ଟର ଓ ଗଡ଼ଜାତ ବିଭାଗର ସ୍କୁଲ ପରିଦର୍ଶକ କର୍ମଚାରୀ ଭାବରେ ସାଧିଦିନ କାମ କରିଥିଲେ । ସେ ରାଧାନାଥଙ୍କ ଅଧସ୍ତନ ଥିଲେ ଓ କାବ୍ୟଚର୍ଚ୍ଚା ସୂତ୍ରରେ ତାଙ୍କ ସହିତ ନିବିଡ଼ ବନ୍ଧୁତ୍ୱରେ ଆବଦ୍ଧ ହୋଇଥିଲେ ।

ପ୍ରଥମେ ମଣିଚରଣ କେତେକ ଇଂରେଜୀ କବିତାର ଅନୁବାଦ ଓ ଜାତୀୟ ଭାବାପନ୍ନ କ୍ଷୁଦ୍ର କବିତା ପତ୍ର ପତ୍ରିକାରେ ପ୍ରକାଶ କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ଦୁଇଗୋଟି ଦୀର୍ଘ କାବ୍ୟ ରଚନା କରି ଯାଇଛନ୍ତି । ପ୍ରଥମଟି 'ବ୍ରଜବଂଧୁ ବିରହ' ଓ ଦ୍ୱିତୀୟଟି 'ସୁରଲକ୍ଷ୍ମୀ' । । ପ୍ରଥମଟି ପ୍ରାଚୀନ ଛନ୍ଦ ଷାଢରେ ରଚିତ ବିଶୁଦ୍ଧ ଭକ୍ତିମୂଳକ କାବ୍ୟ । ଦ୍ୱିତୀୟଟି ଅମିତ୍ରାକ୍ଷର ଛନ୍ଦରେ ରଚିତ ପୌରାଣିକ କଥାବସ୍ତୁ ଆଧାରିତ ଦେଶପ୍ରେମ ମୂଳକ ମହାକାବ୍ୟ । ('ସୁରଲକ୍ଷ୍ମୀ'କାବ୍ୟରୁ କୁଳମଣି ଦାଶଙ୍କ ଲିଖିତ 'ପରିଚୟ' ଅଂଶ ଦ୍ରଷ୍ଟବ୍ୟ)

ଆଧୁନିକ କାବ୍ୟର ଏହି ଆଦ୍ୟ ବିକାଶ ଯୁଗରେ କବିମାନେ ବହୁ ନୂତନ ଆଙ୍ଗିକ ଓ ବିଷୟ ଘେନି କାବ୍ୟ ରଚନାର ଉଦ୍ୟମ କରିଥିଲେ । ବହୁ ପରୀକ୍ଷାରେ ସଫଳ ହୋଇଥିଲେ । ମାତ୍ର ପରମ୍ପରା କ୍ରମେ ସେମାନେ ପ୍ରାଚୀନ କାବ୍ୟର ଦୁଇଟି ବିଶେଷ ଉପାଦାନ ଗ୍ରହଣ କରିଥିଲେ । ତାହା ହେଉଛି ଛନ୍ଦଷାଢ, ସଙ୍ଗୀତ ମାଧୁରୀ ଓ ଧର୍ମଚେତନା । କେବଳ ତଥା କଥିତ ଅଶ୍ଳୀଳତା ନାମରେ ସେମାନେ ପ୍ରାଚୀନ କବିଙ୍କ ସୌନ୍ଦର୍ଯ୍ୟ ଚେତନା, ନାରୀରୂପ ବର୍ଣ୍ଣନା ଓ ପ୍ରକୃତ ଚିତ୍ର ପ୍ରଦର୍ଶନର ଚିରାଚରିତ ଷାଢ ପରିହାର କରିଥିଲେ । ଗଦ୍ୟର ପ୍ରଭାବରେ ଭାଷାଷାଢର ମଧ୍ୟ କେତେକ ବିଶିଷ୍ଟ ପରିବର୍ତ୍ତନ ଦେଖା ଦେଇଥିଲା । ଏହି ସବୁ ଦିଗ 'ବ୍ରଜବନ୍ଧୁ ବିରହ' କାବ୍ୟରେ ବିଶେଷ ରୂପେ ପ୍ରତିଫଳିତ ହୋଇଛି ।

ତାହା ନୋହିଲେ, ଏଥିରେ ସେଇ ବିରହିଣୀ ଗୋପାଙ୍ଗନା, ବିରହିଣୀ ରାଧାଙ୍କ ଚିତ୍ର, ବୈଚିତ୍ର୍ୟହୀନ ପୁରାତନ ଦୃଶ୍ୟ । କାବ୍ୟର ଅଷ୍ଟମ ଛନ୍ଦରେ ବିରହିଣୀ ରାଧାଙ୍କ ବର୍ଣ୍ଣନା ଦେବାକୁ ଯାଇ କବି ଲେଖିଛନ୍ତି :—

'ବସୁଧାଲିଙ୍ଗନେ କନକାଭ କାନ୍ତି ହୋଇଛୁ ଧୂଳି ଧୂସରିତ<br>ପଡ଼ି ଅସମ୍ଭାଳେ ଲୋଟେ ତଳେ ଗୃହ୍ଲୁ ଚିକୁର ପାଶ ବିଗଳିତ,<br>କିବା ମର୍କତ ମଣି ଲୋଟଇ ଧରଣୀରେ,<br>କିଅବା ଶୈବାଳ ଶତଦଳ ସହ ଭାସଇ ସରସୀ ପାଣିରେ ।'

ଆଧୁନିକ ଯୁଗରେ ରଚିତ ଏହି କାବ୍ୟଟି ପୁରାତନ କାବ୍ୟର ମର୍ମବାଣୀ ବହନ କରି ଯେ ସାର୍ଥକତା ଅର୍ଜନ କରିଛି ତାହା ସ୍ୱୀକାର କରି ପଣ୍ଡିତ କୃଷ୍ଣମଣି ଦାଶ ଲେଖିଛନ୍ତି— "ରସକଲ୍ଲୋଳ ଓ ମଥୁରାମଙ୍ଗଳ ସଙ୍ଗେ ତୁଳନା କରି ଆମ୍ଭେମାନେ ଦେଖିଅଛୁଁ, ବ୍ରଜବନ୍ଧୁ ବିରହ ସେ ଦୁଇ କାବ୍ୟ ଅପେକ୍ଷା କୌଣସି ଅଂଶରେ ହୀନତର ନୁହେଁ । ପରନ୍ତୁ ଭାଷାର ବିଶୁଦ୍ଧି, ଭାବର ସରଳତା, ସମୀଚୀନ ଉଦାହରଣ ଦ୍ୱାରା ବିଶଦୀକରଣ ଓ ଆଧୁନିକ ମାର୍ଜିତ ରୁଚିର ଚିତ୍ର ସଂଯୋଗରେ 'ବ୍ରଜବନ୍ଧୁ ବିରହ' ଉତ୍କଳ ସାହିତ୍ୟ କ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସ୍ଥାନର ଅଧିକାରୀ ।"

୧୯୦୫ ମସୀହାରେ ସୁରଲକ୍ଷ୍ମୀ କାବ୍ୟଟି ରଚିତ ହୋଇଥିଲେ ହେଁ କବିଙ୍କ ଜୀବନ-କାଳରେ ପ୍ରକାଶିତ ହୋଇ ନ ଥିଲା । କବିଙ୍କ ପୁତ୍ର ଶ୍ରୀ ଚନ୍ଦ୍ରଧର ମହାପାତ୍ରଙ୍କ ଉଦ୍ୟୋଗରେ ସବୁଜ ସାହିତ୍ୟ ସମିତି ଦ୍ୱାରା ୧୯୩୪ରେ ଏହା ପ୍ରକାଶିତ । ଏହି କାବ୍ୟଟିର ପାଣ୍ଡୁଲିପି ରାଧାନାଥ ଦେଖିଥିଲେ ଓ କବିଙ୍କ ରଚନା ଶକ୍ତିର ପ୍ରଶଂସା କରି ଏହାକୁ ପ୍ରକାଶ ଲାଗି ଉତ୍ସାହିତ କରିଥିଲେ ।

ମହାକାବ୍ୟ ଲାଗି ଅମିତ୍ରାକ୍ଷର ଛନ୍ଦ ନିର୍ବାଚନ, ନାୟକରୂପେ ଦେବୋପମ ବୀର ଚରିତ୍ରର ଅବତାରଣା, ଦେଶପ୍ରେମ ଓ ଦେଶ ଉଦ୍ଧାର ଲାଗି ଆତ୍ମବଳୀରେ ଆଗ୍ରହ ଓ ଆଦର୍ଶ-ବୋଧ ଏହି ସମସ୍ତ ଦିଗରେ ରାଧାନାଥଙ୍କ ମହାଯାତ୍ରା ସୁରଲକ୍ଷ୍ମୀର କବିଙ୍କ ପଥ ପ୍ରଦର୍ଶକ ହୋଇପାରେ । ହୁଏତ ଉଭୟ କାବ୍ୟର ମର୍ମବାଣୀ ଏକ ପରାଧୀନ ଜାତି ପ୍ରାଣରେ ପୌରୁଷ ସଞ୍ଚାର । ମାତ୍ର ଉଭୟର ପରିକଳ୍ପନା, ବିଷୟ ବର୍ଣ୍ଣନା, ପ୍ରକାଶଶୈଳୀ ଓ କାବ୍ୟିକ ପ୍ରଭାବ ସମ୍ପୂର୍ଣ୍ଣ ଭିନ୍ନ । ମହାଯାତ୍ରାର ବିଷୟ ଆରମ୍ଭ ପୁରାଣରେ, ବିକାଶ ଇତିହାସରେ, ପରିଣତି ଓ ସାର୍ଥକତା ଐତିହାସିକ ସତ୍ୟ ଆଧାରିତ ଲୋକ ଚରିତ୍ର ଚିତ୍ରଣରେ । ମାତ୍ର ସୁରଲକ୍ଷ୍ମୀ ଗୋଟାକଯାକ ପୁରାଣ, ପୁରାଣର ଦେବଦେବୀ, ପୁରାଣର ସ୍ୱର୍ଗ, ମର୍ତ୍ତ୍ୟ ପାତାଳର ଚିତ୍ର । ଆଧୁନିକ ଯୁଗର ଜଣେ କବିଙ୍କ ରଚନା ବୋଲି ସାକ୍ଷ୍ୟ ଦେବାକୁ ଏଥିରେ ପ୍ରଚୁର ବୌଦ୍ଧିକ

ଚେତନା ଅଛି । ପାତାଳ ତଳରେ ଲକ୍ଷ୍ମୀ ସ୍ରୋତରେ ଲୌହ ଗନ୍ଧକର ଯୁଦ୍ଧ, ପାର୍ଥିବ ପଦାର୍ଥରେ ମାଧ୍ୟାକର୍ଷଣ ପ୍ରଭାବ, ସମାଜ ଶୃଙ୍ଖଳା ଆଲୋକିତ ବଙ୍କ ଶାସନ ଗଠନରେ ଉନ୍ନତ ଜନଶିକ୍ଷାର ଭୂମିକା କଳନା ପର୍ଯ୍ୟନ୍ତ ସଟଣ ଏଥିରେ ଦେଖାଯାଇପାରେ । ଦେବ ଦାନବ ଯୁଦ୍ଧ, ସମ୍ଭୂତାନର ଆଶୁ ବିଜୟ ଓ ଅନ୍ତିମ ପରାଜୟ, ସତ୍ୟର ପ୍ରତିଷ୍ଠା ଲାଗି ଦୁଃଖ ବରଣ ଓ ଆତ୍ମବଳି ଦାନ, ମୃତ୍ୟୁରେ ଅମରତ୍ୱ ଲାଭ ଏହି ସବୁ ଆଦର୍ଶର ପ୍ରଚୃର ପନ୍ଥାରେ ଗୀତିବାକ୍ୟ ରଚନାର ବହୁଳ ପ୍ରୟାସ କାବ୍ୟର ସୌନ୍ଦର୍ଯ୍ୟ ଓ ଶକ୍ତି ବହୁ ପରିମାଣରେ ଖଣ୍ଡିତ କରିଛି । ତଥାପି ପଦ୍ମ ପୁରାଣର ଜଳନ୍ଧର ବଧ ଭଳି ଗୋଟିଏ ସାଧାରଣ ଉପାଖ୍ୟାନକୁ ଆଧୁନିକ ଯୁଗୋପଯୋଗୀ କରି ପରିବେଷଣ କରିବାରେ କବିଙ୍କ ସର୍ଜନା ଶକ୍ତିର ନାନା ଦୃଷ୍ଟାନ୍ତ ଖୋଜିଲେ ମିଳିବ । ବିଶେଷତଃ ପ୍ରକୃତି ଚିତ୍ରଣ—ସମକାଳୀନ ରୁଚି, ସୌନ୍ଦର୍ଯ୍ୟବୋଧ, ସମୀଚୀନତା ଓ ସ୍ୱାଭାବିକତା ଏଥିରେ ଉପଭୋଗ୍ୟ । ତୃତୀୟ ସର୍ଗରେ ହିମାଳୟରେ ଦେବତାଙ୍କ ସାନ୍ଧ୍ୟ ମନ୍ତ୍ରଣା ସଭାର ପୃଷ୍ଠପଟରେ କବି ଅଙ୍କନ କରିଛନ୍ତି ସନ୍ଧ୍ୟାର ଏକ ଅତି ପରିଚିତ ଚିତ୍ରଣ ଚିତ୍ର ।

> ଅସ୍ତ ହେଲା ଦିନମଣି, ତିମିର ପଟଳ
> ଆଚ୍ଛାଦିଲା ଧରାମୁଖ । ତାରକା ଗୋଟିଏ
> ଭାତିଲା ଗଗନେ ଯଥା ଉଜ୍ଜ୍ୱଳ ହୀରକ
> ସନ୍ଧ୍ୟା ନୀଳ କୁନ୍ତଳରେ । ଦୂର ଚକ୍ରବାଳେ
> ଲୋହିତ ଆଲୋକ ରେଖା ଶୋଭିଲା ଯେସନେ
> ସୁରଙ୍ଗ ସିନ୍ଦୁର ରେଖା ସୀମନ୍ତେ ସନ୍ଧ୍ୟାର ।

### ରାମଶଙ୍କର ରାୟ—୧୮୫୭-୧୯୩୧

ରାମଶଙ୍କର କେବଳ ପ୍ରଥମ ନାଟକ ଲେଖକ ନୁହନ୍ତି, ସେ ମଧ୍ୟ ପ୍ରଥମ କାବ୍ୟ ଲେଖକ । ରାଧାନାଥଙ୍କ ପ୍ରଥମ କଥାକାବ୍ୟ 'କେଦାର ଗୌରୀ' ପ୍ରକାଶ ପାଇବାର ସାତବର୍ଷ ପୂର୍ବରୁ ତାଙ୍କର 'ପ୍ରେମତରୀ' ଉତ୍କଳ ମଧୁପ ପତ୍ରିକାରେ ୧୮୭୮ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଯେପରି କାବ୍ୟର କଳ୍ପନାରେ ସେଇପରି ନୂତନ ଛନ୍ଦ ପ୍ରୟୋଗରେ ରାମଶଙ୍କର ଅଗ୍ରଣୀ । ସେ ପ୍ରଥମେ ନିଜର ନାଟକାବଳୀରେ ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗ କରିଥିଲେ ।

ରାମଶଙ୍କର କାବ୍ୟଶୈଳୀରେ ଯେପରି ନୂତନତାର ପ୍ରବର୍ତ୍ତକ ଥିଲେ, କାବ୍ୟ ବିଷୟରେ ସେଇପରି ବୈଚିତ୍ର୍ୟ ଆନୟନରେ ପ୍ରୟାସୀ ଥିଲେ । କାବ୍ୟ କାହାଣୀରେ ଏକ ରୋମାଣ୍ଟିକ ପରିବେଶ ରଚନାରେ ତାଙ୍କର ଆଗ୍ରହ ପ୍ରେମତରୀ କାବ୍ୟରୁ ଦେଖିବାକୁ ମିଳେ । ଏକ କାଳ୍ପନିକ ପ୍ରେମ କାହାଣୀ ଏହାର ଉପଜୀବ୍ୟ । କାହାଣୀ ପରିବେଷଣ ନାଟକୀୟ । କଥାବସ୍ତୁ ସରଳ, ରୋମାଞ୍ଚକର, ମାତ୍ର ଅସ୍ୱାଭାବିକ । ପ୍ରେମିକା ଲବଙ୍ଗଲତା ବା ପ୍ରେମଲତିକା କିଶୋର ବୟସରୁ ନାୟକ ନବୀନର ରୂପରେ ମୁଗ୍ଧ ହୋଇଥିଲା । ବ୍ୟବସାୟ ଉଦ୍ଦେଶ୍ୟରେ

ନାୟକ ଜଳଯାନରେ ଯାତ୍ରା କରୁଥିବା ସମ୍ବାଦ ପାଇ ସେ ସେହି ଯାନରେ ଯାତ୍ରିଣୀ ହେଲା । ଏହି ଯାତ୍ରା କାଳରେ ଉଭୟେ ପରସ୍ପରକୁ ନିକଟରେ ପାଇ ଦୃଢ଼ ପ୍ରଣୟରେ ଆବଦ୍ଧ ହେଲେ । ମାତ୍ର ଏକ ଦୁର୍ଘଟଣାରେ ଜାହାଜ ଜଳମଗ୍ନ ହେବାରୁ ସେମାନେ ବିପର୍ଯ୍ୟୟର ସମ୍ମୁଖୀନ ହେଲେ । ଗୋଟିଏ ନିର୍ଜନ ଅରଣ୍ୟ ବେଷ୍ଟିତ ଦ୍ୱୀପରେ ସେମାନେ ବିଭିନ୍ନ ସମୟରେ ପହଞ୍ଚି ଆତ୍ମରକ୍ଷା କଲେ । ନାୟିକାକୁ ଜଣେ ଚନ୍ଦ୍ରଗୁମ୍ଫା ବିପଦରୁ ଉଦ୍ଧାର କରି ନିଜର ସୁରମ୍ୟ ସୌଧରେ ରଖାଇ ପ୍ରଣୟ ନିବେଦନ କଲେ । କିନ୍ତୁ, ନବୀନ ଅନୁରାଗିଣୀର ହୃଦୟ ଏଥିରେ ଟଳିଲା ନାହିଁ । ମାସକ ମଧ୍ୟରେ କୌଣସି ପୁରୁଷ ଲବଙ୍ଗଲତାର ପ୍ରଣୟରେ ଆକୃଷ୍ଟ ହେଲେ ମୃତ୍ୟୁ ବରଣ କରିବ ବୋଲି ଆର୍ଷବାଣୀ ଉଚ୍ଚାରଣ କରି ସେ ଅନ୍ତର୍ଦ୍ଧାନ ହୋଇଗଲେ । ସେହି ଦ୍ୱୀପର ନିର୍ଜନ ଅରଣ୍ୟରେ ଖୋଜି ଖୋଜି ନବୀନ ପ୍ରେମଲତିକାକୁ ଏକାକିନୀ ବନ୍ଦିନୀ ଅବସ୍ଥାରେ ଆବିଷ୍କାର କଲାବେଳେ ସିଦ୍ଧବାଣୀ ଲାଗି ଭୟରେ ସେମାନଙ୍କ ମିଳନ ଘଟିବା ସମ୍ଭବ ହେଲା ନାହିଁ । ନବୀନ ଏଥିଲାଗି ନାୟିକାକୁ ଦୋଷ ଦେଇ ମନୋଦୁଃଖରେ ଫେରିଗଲା । ଶେଷରେ ପୁରୁଷ-ସନ୍ନ୍ୟାସୀ ବେଶରେ ପ୍ରେମଲତିକା ତାକୁ ଗୋଦାବରୀ କୂଳରେ ଖୋଜି ପାଇଲା । ସେଠାରେ ସେମାନଙ୍କ ମିଳନ ଘଟିଲା । ଭାଗ୍ୟକୁ ଦୋଷ ଦେଇ ଉଭୟେ ଉଭୟଙ୍କ ଦୋଷ ନ ଘେନି ପ୍ରେମତତ୍ତ୍ୱ ମେଲିଦେଲେ ।

ପ୍ରେମତତ୍ତ୍ୱରେ ସକାଳ, ସନ୍ଧ୍ୟା, ସମୁଦ୍ର, ଅରଣ୍ୟର ଦୀର୍ଘ ବର୍ଣ୍ଣନା ଅଛି । ପ୍ରେମ, ବିରହ ଓ ମିଳନରେ ମନୁଷ୍ୟ ଜୀବନର ଚିତ୍ର ଅଙ୍କନର ପ୍ରୟାସ ଏଥିରେ ହୋଇଅଛି । ମାତ୍ର କବିଙ୍କ ଅନୁଭବ, ପ୍ରକାଶ ଶିଳ୍ପ ଓ କଳ୍ପନା ଅଭାବରୁ ଏଥିରେ ନିର୍ଦ୍ଦିଷ୍ଟ ଦେଶ ବା କାଳର ବ୍ୟଞ୍ଜନା ବା ମନୁଷ୍ୟ ହୃଦୟର ଜୀବନ୍ତ ଚିତ୍ର ଫୁଟି ନାହିଁ । ଅତିମାନୁଷିକ ଭାବ ଓ ଅପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା ଭିତରେ କବି ଏକ କାଳ୍ପନିକ ରହସ୍ୟମୟ ଜଗତକୁ ଘେନି ଯିବା ଲାଗି ଅବଶ୍ୟ କେତେକ ପରିମାଣରେ ସମର୍ଥ ହୋଇଛନ୍ତି । କିନ୍ତୁ, କି ଆଦର୍ଶ ଚିତ୍ରଣ, କି ସୌନ୍ଦର୍ଯ୍ୟ ସୃଷ୍ଟି କୌଣସି ଦିଗରେ କବି କାବ୍ୟଟିକୁ ଅବିସ୍ମରଣୀୟ କରିପାରି ନାହାନ୍ତି । ରାମଶଙ୍କରଙ୍କ କାବ୍ୟକୃତିକୁ ଥରେ ଧ୍ୟାନର ସହିତ ପଢ଼ିଗଲା କ୍ଷଣି ମନେହୁଏ, ଏହା ଯେପରିକି ଏକ ଚପଳ ମନ ଓ ଦୁର୍ବଳ ଲେଖନୀର ସୃଷ୍ଟି ।

## ସାଧୁଚରଣ ରାୟ – ୧୮୭୦-୧୮୯୭

ସାଧନା, ତ୍ୟାଗ ଓ ଆତ୍ମୋନ୍ନତି ଭାବନା ସାଧୁଚରଣଙ୍କୁ ସାଧାରଣ ଅବସ୍ଥାରୁ ଉଚ୍ଚ ସୋପାନର ଅଧିକାରୀ କରିଥିଲା । ଯାଜପୁର ସବ୍‌ଡିଭିଜନର କଣ୍ଟାପୁର ଗାଁର ଗୋଟିଏ ମଧ୍ୟବିତ୍ତ ଖଣ୍ଡାୟତ ପରିବାରରେ ରକ୍ଷଣଶୀଳ ସମାଜରେ ତାଙ୍କର ଜନ୍ମ । ମାତ୍ର ମାତୃହୀନ ଶୈଶବ ଓ କୈଶୋର ସେ ପିତାଙ୍କ କର୍ମସ୍ଥଳ କଟକରେ କଟାଇଥିଲେ । ତାଙ୍କର

ତରୁଣ ହୃଦୟରେ ଆବେଗ ଓ ଉତ୍ସାହର ଦୀପ୍ତ ଅଗ୍ନି ଜଳୁଥିଲା । ବିଦ୍ୟାଳୟର ଛାତ୍ର ଥିବା ସମୟରେ ସେ ସତରବର୍ଷ ବୟସରେ ବ୍ରାହ୍ମ ଧର୍ମ ଗ୍ରହଣ କରି ନିଷ୍ଠାର ସହିତ ଏହାର ଆଦର୍ଶ ପାଳନ କରିଥିଲେ । ଉତ୍କଳ ବ୍ରାହ୍ମ ସମାଜର ଆଚାର୍ଯ୍ୟ ମଧୁସୂଦନ ରାଓ ଥିଲେ ତାଙ୍କର ଦୀକ୍ଷାଗୁରୁ । ତାଙ୍କର ସମସାମୟିକ ଓ ସମଧର୍ମୀ ବିଶ୍ୱନାଥ କରଙ୍କ ଉକ୍ତିରେ କହିଲେ, "ଏହି ଅଳ୍ପ ବୟସରେ ସାମାଜିକ ବନ୍ଧନ ଛିନ୍ନ କରି, ଦେଶ ପ୍ରଚଳିତ କୁସଂସ୍କାର ଓ ଉପଧର୍ମ ପରିତ୍ୟାଗ କରି ନବ ଧର୍ମ ଗ୍ରହଣ କରିବା ଜୀବନ୍ତ ବିଶ୍ୱାସ, ଅସୀମ ସାହସିକତା ଓ ସ୍ୱାଧୀନତାର ପରିଚାୟକ, ଏଥିରେ ସନ୍ଦେହ ନାହିଁ ।" ୧୫ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାମାନ୍ୟ କଲେଜ ଶିକ୍ଷା ଗ୍ରହଣ କରି ସେ କଟକର ବିଭିନ୍ନ ଉଚ୍ଚ ବିଦ୍ୟାଳୟରେ ଶିକ୍ଷକ ଭାବରେ ଜୀବନ ଅତିବାହିତ କରିଥିଲେ । ମାତ୍ର ତାଙ୍କ ଜୀବନର ସମସ୍ତ ସାଧନା ସାହିତ୍ୟ ବିକାଶ ଓ ଧର୍ମ ପ୍ରଚାର ଦିଗରେ ପରିଚାଳିତ ହୋଇଥିଲା । ବ୍ରାହ୍ମ ଧର୍ମର ଆଦର୍ଶ ପ୍ରଚାର ଲାଗି ସେ 'ନବ ସମ୍ବାଦ' ଓ 'ଆଶା' ନାମରେ ଦୁଇଟି ପତ୍ରିକା ବିଭିନ୍ନ ସମୟରେ ସମ୍ପାଦନା କରିଥିଲେ । ସେ ସେକାଳର ପ୍ରଧାନ ପତ୍ରିକା ଉତ୍କଳ ସାହିତ୍ୟର ଜଣେ ପୃଷ୍ଠପୋଷକ ଓ ପ୍ରଧାନ ଲେଖକ ଥିଲେ । ସମ୍ପାଦକ ବିଶ୍ୱନାଥ କର ଯେପରିକି ତାଙ୍କ ଭିତରେ ନିଜ ଚିନ୍ତା ଓ କର୍ମଧାରାର ଜଣେ ଅନ୍ତରଙ୍ଗ ଓ ବିଶ୍ୱସ୍ତ ସାଥୀ ଖୋଜି ପାଇଥିଲେ ।

'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ପ୍ରବନ୍ଧ ଓ କବିତାବଳୀରୁ କବିଙ୍କ ଚିନ୍ତାଧାରାର ପ୍ରଚୁର ପରିଚୟ ମିଳେ । ନାରୀ ଓ ପୁରୁଷର ସମାନ ଅଧିକାର, ଜାତିଭେଦ ଓ ସାମ୍ପ୍ରଦାୟିକ ଧର୍ମଭେଦର ଅବସାନ, ସମାଜରେ ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ବିଜୟ ପ୍ରତିଷ୍ଠା ଲାଗି ନିଜର ବ୍ୟାକୁଳତା ସେ ସ୍ପଷ୍ଟ ଭାଷାରେ ପ୍ରକାଶ କରିଛନ୍ତି । ଇଉରୋପୀୟ ସ୍ୱାଧୀନତା ସଂଗ୍ରାମର ଇତିହାସ ଓ ମାନବିକତାର ଆଦର୍ଶ ତାଙ୍କୁ ବିଶେଷ ପ୍ରଭାବିତ କରିଥିଲା । ସେ ଗୋଟିଏ ଲେଖାରେ ମାନବ ସମାଜର ଅନନ୍ତ ଅଶାନ୍ତିର କାରଣ ବିଶ୍ଳେଷଣ କରି ଲେଖିଥିଲେ, 'ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ପ୍ରାଣରେ ସ୍ୱାଧୀନତା ପ୍ରତି ଯେତେବେଳେ ଆଘାତ ପ୍ରଦତ୍ତ ହେଉଛି, ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତାର ନିଶାଣ ପ୍ରୋଥିତ ହେଉଅଛି, ପ୍ରତି ମୁହୂର୍ତ୍ତରେ ଫରାସୀ ରାଷ୍ଟ୍ର ବିପ୍ଳବ ସଙ୍ଘଟିତ ହେଉଅଛି ।' ୧୬

ସାଧୁଚରଣ ପ୍ରଧାନତଃ ଭାବନାତ୍ମକ ଗୀତି କବିତାର କବି । ତାଙ୍କର କବିତା ମାଳା ପତ୍ରିକାର ବିକ୍ଷିପ୍ତ ପୃଷ୍ଠାରେ ଓ କେତେଗୁଡ଼ିଏ କ୍ଷୁଦ୍ର ସଂକଳନରେ ଗ୍ରଥିତ ହୋଇ ରହିଅଛି । 'ଭାବ କୁସୁମ' ଓ 'ଭାବନା'—ଏହି ଦୁଇଟି କ୍ଷୁଦ୍ର ପୁସ୍ତିକା କବି ଜୀବନ କାଳରେ ପ୍ରକାଶ କରିଥିଲେ । ଦେହାବସାନ ପରେ ତାଙ୍କର ସ୍ତ୍ରୀ ସୁଲେଖିକା ଶ୍ରୀମତୀ ରେବାରାୟ କେତେ-ଗୁଡ଼ିଏ ଅପ୍ରକାଶିତ କବିତା 'ସାଧନା' ନାମରେ ପ୍ରକାଶ କରିଥିଲେ । କବିଙ୍କର ସମସ୍ତ

କବିତା ଧର୍ମଭାବପୂର୍ଣ୍ଣ ଓ ନୀତିଗର୍ଭକ । କବିଙ୍କ ପ୍ରଥମ କବିତା ସଂଗ୍ରହ ଭାବନା ପୁସ୍ତିକାର ସମାଲୋଚନା କରିବାକୁ ଯାଇ ଉତ୍କଳ ସାହିତ୍ୟର ସମ୍ପାଦକ ଯଥାର୍ଥରେ କହିଥିଲେ, 'ଭାବନା ଦ୍ୱାରା ସେ ଯଥାର୍ଥରେ କବି ନାମର ଯୋଗ୍ୟ ହୋଇଛନ୍ତି । ସାଧୁବାବୁଙ୍କ କବିତାରେ ସୌନ୍ଦର୍ଯ୍ୟ, ଉଚ୍ଚଭାବ ଓ କଳ୍ପନାର ବିକାଶ ଲକ୍ଷିତ ହୁଏ ।' ୧୭ ସାଧନା ପୁସ୍ତିକାର ଅନୁକୂଳ ସମାଲୋଚନା ପ୍ରକାଶ କରି ଉତ୍କଳ ସାହିତ୍ୟରେ ବିଶ୍ୱନାଥ ଲେଖିଛନ୍ତି, 'ପୁସ୍ତକର ପ୍ରତି ପୃଷ୍ଠାରେ ଉଜ୍ଜ୍ୱଳ ବିଶ୍ୱାସ, ଜୀବନ୍ତ ଧର୍ମାନୁରାଗ, ପ୍ରବଳ ବୈରାଗ୍ୟ ଓ ଉଚ୍ଚାଙ୍ଗ କବିତାର ଆସ୍ୱାଦ ପାଇ କାବ୍ୟାମୋଦୀ ଭକ୍ତ ପାଠକ ପରିତୃପ୍ତ ଓ ଉପକୃତ ହେବେ ।' ୧୮

ଆଦର୍ଶ ଓ ରୁଚିରେ ସାଧୁଚରଣ ଭକ୍ତକବି ମଧୁସୂଦନଙ୍କ ଅନୁବର୍ତ୍ତୀ । ଶୁଦ୍ଧ, ପବିତ୍ର ଭାବ ଓ ମାର୍ଜିତ ଭାଷାରେ ତାଙ୍କର ରଚନା ରୂପାୟିତ । ସେ ସମାଜର ଅନ୍ୟାୟ, ଅନୀତି, ଦୁଃଖ ଓ ଅଧୋଗତିରେ ଗଭୀର ବ୍ୟଥା ଅନୁଭବ କରିଛନ୍ତି । ମାତ୍ର ଆଧ୍ୟାତ୍ମିକ ଆଦର୍ଶ ଓ ସୁବୋଧ ଦୃଷ୍ଟି ବଳରେ ନିଜ ଅନ୍ତରରେ ଆଶାର ଉଜ୍ଜ୍ୱଳ ଆଲୋକ ସବୁବେଳେ ଜଳାଇ ରଖିଛନ୍ତି । କବିଙ୍କ ଭାଷାରେ—

"ହେଉ ପଛେ ମୋର ବିଫଳ ଯତନ,
ନ ହୋଇବି କେବେ ସ୍ଥିତିର ସାଧନ ।
ଯାଉ ପଛେ ଧନ ଅନିତ୍ୟ ସାଧନେ,
ଯାଉ ବଳବୀର୍ଯ୍ୟ କର୍ମ-ଘୋରରଣେ,
ଗାଇବି ଅନ୍ତରେ ଆଶାର ସଙ୍ଗୀତ
ଅନ୍ଧକାରେ ଜ୍ୟୋତି ହୋଇବ ଉଦିତ ।"

କବି ଶିଶୁ ମନୋରଞ୍ଜନ ଉଦ୍ଦେଶ୍ୟରେ କେତେଗୁଡ଼ିଏ ପୌରାଣିକ ଓ ନୀତି-ଶିକ୍ଷା ମୂଳକ ଗଳ୍ପ କବିତାକାରରେ ରଚନା କରିଛନ୍ତି । ପୌରାଣିକ କବିତା ଓ କୌତୁକ କାହାଣୀ ନାମରେ ଏହିଗୁଡ଼ିକ ପ୍ରକାଶିତ ହୋଇଅଛି । ଏହି ରଚନାର ଭାଷା. ସରଳ ଓ ଶିଶୁ ବୋଧ ହୋଇଛି ।

## ଅନ୍ୟାନ୍ୟ ଗୌଣକବି

ସାଧାରଣରେ ଏକପ୍ରକାର ଅପରିଚିତ, ମାତ୍ର ବିଶିଷ୍ଟ କବି ପ୍ରତିଭାର ଅଧିକାରୀ 'କାବ୍ୟକୁସୁମ'ର କବି ଚତୁର୍ଭୁଜ ପଟ୍ଟନାୟକ, 'ସୁଲୋଚନା' ପ୍ରଣେତ୍ରୀ କାବ୍ୟ ପ୍ରଣେତା ଡାକ୍ତର ରାମକୃଷ୍ଣ ସାହୁ. 'ମତା' ବର୍ଣ୍ଣନାତ୍ମକ ଖଣ୍ଡ କାବ୍ୟର ରଚୟିତା ଦାମୋଦର ମିଶ୍ର ପଦ୍ୟାଳଙ୍କାର ଓ ଗୋପାଳ ବଲ୍ଲଭ ଦାସ ଆଦିଙ୍କ କାବ୍ୟ ସୃଷ୍ଟିର ବୈଶିଷ୍ଟ୍ୟ ବିଶେଷ ଅନୁଧ୍ୟାନ ଯୋଗ୍ୟ ।

କାବ୍ୟ କୁସୁମ*ର କବି ଚତୁର୍ଭୁଜ ପଟ୍ଟନାୟକ ଚିନ୍ତା ଓ ଚରିତରେ ଏକାନ୍ତ ଆଧୁନିକ । ସେ ବିଶ୍ୱବିଦ୍ୟାଳୟର ଉପାଧିଧାରୀ, ସମକାଳୀନ ସମସ୍ୟାବଳୀର ଚିତ୍ର ନିଜର ଇତିହାସ ଚେତନା ଓ ଆଲୋକିତ କଳ୍ପନା ଯୋଗେ ଅଙ୍କନ କରିଛନ୍ତି । 'ଉତ୍କଳର ସୁଖୋଦୟ' ନାମକ କବିତାରେ ସେ ଇଂରେଜ ଶାସନ କିପରି ଶିକ୍ଷା, ଶାସନ ଓ ସ୍ୱାସ୍ଥ୍ୟର ଦିଗରୁ ଏ ଦେଶକୁ ନୂତନ ଆଲୋକ ଆନୟନ କରିଥିଲା, ତାହା ବର୍ଣ୍ଣନା କରିଛନ୍ତି । ନିକଟ ଇତିହାସ ତୁଳନାରେ ସେ ଇଂରେଜ ଶାସନକୁ ଦେଶର ଯଥାର୍ଥ ମଙ୍ଗଳ ବିଧାୟକ ମନେ କରିଛନ୍ତି । ତାଙ୍କ ଭାଷାରେ

"ହିନ୍ଦୁ ରାଜା ପରେ ମୁସଲମାନ
ଭାରତ ଶାସିଲେ ବିନା ପ୍ରୀତିରେ
ରାଜରାଜେଶ୍ୱରୀ ଚନ୍ଦ୍ରେ ଯାନ
ଭାରତ ଭାସିଲା ଆନନ୍ଦ ନୀରେ ।"

ସାମାଜିକ ଦୁଃଖ ଦୁର୍ଦ୍ଦଶାର କରୁଣ ଚିତ୍ର ଅଙ୍କନରେ କବି ବିଶେଷ ଶକ୍ତି ଦର୍ଶନ କରିଛନ୍ତି । ସ୍ୱଦେଶୀୟ ଜନ ସାଧାରଣଙ୍କ ଦାରିଦ୍ର୍ୟ, ଆର୍ଥିକ ଜୀବନର ଭଗ୍ନଦଶା, ଦୁର୍ଭିକ୍ଷ ଓ ମହାମାରୀର କରାଳ ରୂପ 'ଦୁର୍ଭିକ୍ଷ' ଖଣ୍ଡକାବ୍ୟରେ ବର୍ଣ୍ଣିତ ହୋଇଅଛି । ଏହି କାବ୍ୟଟି ଦୁଇଟି ସର୍ଗରେ ବିଭକ୍ତ । ସମଗ୍ର ବର୍ଣ୍ଣନାକୁ ଏକ କାହାଣୀର ଅନ୍ତର୍ଗତ କରି ଜୀବନ୍ତ କରିବା ଉଦ୍ଦେଶ୍ୟରେ ପ୍ରଥମ ସର୍ଗରେ ଦୁର୍ଭିକ୍ଷକୁ ଏକ ରାକ୍ଷସ ରୂପେ କଳ୍ପନା କରାଯାଇ ତାହାର ଜନ୍ମର ପୌରାଣିକ ବ୍ୟାଖ୍ୟା ପ୍ରଦତ୍ତ ହୋଇଛି । ଦ୍ୱିତୀୟ ସର୍ଗର ବର୍ଣ୍ଣନା ବାସ୍ତବ ଓ ସତ୍ୟାଶ୍ରୟୀ । ଅନ୍ନ ଅଭାବରେ ମନୁଷ୍ୟ ଚରିତରେ ପଶୁଭାବ କିପରି ରାଜୁତି କରେ, ପରିବାରର ସ୍ନେହ ବନ୍ଧନ କିପରି ଭାଙ୍ଗିଯାଏ ; ମାତା ସନ୍ତାନ ବାତ୍ସଲ୍ୟ, ପ୍ରଣୟୀ ପ୍ରଣୟିନୀର ପ୍ରେମାଦର କିପରି ଭୁଲିଯାଏ, ତାହା ବିଶଦ ଭାବରେ କବି ବର୍ଣ୍ଣନା କରିଛନ୍ତି ।

କାବ୍ୟ କୁସୁମର ରଚୟିତା ଜଣେ ପ୍ରଧାନତଃ ଗୀତି କବି ଥିଲେ । ନିଜ ଜୀବନର ଏକାନ୍ତ ଅନୁଭବ ଏକାଧିକ କବିତାରେ ପ୍ରକାଶ କରିଛନ୍ତି । ତାଙ୍କ ହୃଦୟରେ ବିଷାଦ ଓ ଅବସାଦର ଏକ ପ୍ରଚ୍ଛନ୍ନ ଫଲଗୁ ସଦା ପ୍ରବାହିତ ହେଉଥିଲା । ପ୍ରାଣର ଅତୁଳ ଆକାଂକ୍ଷା ପୂରଣର ପରିବେଶ ସେ ନିଜ ଜୀବନରେ ବା ସମାଜରେ ଯେପରି କିନ ପାଇ ଆର୍ତ୍ତନାଦ କରୁଥିଲେ—ଏହି ବାଣୀ ତାଙ୍କର ଅନୁଭବସିଦ୍ଧ କବିତାବଳୀରେ ଦେଖିବାକୁ ମିଳେ । ଆଦର୍ଶରେ ସେ ଥିଲେ ମୁକ୍ତ ସ୍ୱାଧୀନତାର ପୂଜାରୀ । ମାତ୍ର ଜୀବନରେ ସେ ଥିଲେ ପରାଧୀନ କର୍ମଚାରୀ । ସେ ନିଜ ବିଷୟରେ ଯେପରିକି ସ୍ପଷ୍ଟ ଉକ୍ତିରେ କହିଛନ୍ତି—

"ଗୃହବାସରେ ନାହିଁ ମୋହର ମନ
ଚକ୍ରାରେ ଅସ୍ଥିର ପ୍ରାଣ ପବନ

* ୧୮୮୭ ଖ୍ରୀଷ୍ଟାବ୍ଦରେ ଉତ୍କଳ ପ୍ରିଣ୍ଟିଂ ପ୍ରେସ, ବାଲେଶ୍ୱରରୁ ପ୍ରକାଶିତ

* * * *

ଚିନ୍ତା ପରେ ଚିନ୍ତା ଦୁଃଖ ଅପାର
ଫିଟିଲି କି ପୂର୍ବ ପାପର ଦ୍ୱାର ।"

ବୃହତ୍ତର ଦୃଷ୍ଟିରେ ଭାରତୀୟ ଜାତୀୟତା ଓ ସର୍ବମୟ ମାନବିକତାର ଉପାସନା କରିଥିଲେହେଁ କବିଙ୍କ ଦେଶପ୍ରେମ ଉତ୍କଳକୁ କେନ୍ଦ୍ର କରି ପ୍ରକାଶିତ ହୋଇଅଛି । ଉତ୍କଳର ସେବାରେ ଆତ୍ମ ସମର୍ପଣ ଭାବନା ତାଙ୍କୁ ଉଦ୍‌ବୁଦ୍ଧ କରିଛି । କବିଙ୍କ ଉକ୍ତିରେ—

"ଉତ୍କଳ ଦେଶରେ ହୋଇଛୁ ଜାତ
ଉତ୍କଳୀୟ ନାମେ ସଦା ଆଖ୍ୟାତ ।
ଯାବତ ଶୋଣିତ ଦେହେ ରହିବ
ଯାବତ ନିଶ୍ୱାସ ପ୍ରାଣ ରଖିବ
ତାବତ ଉତ୍କଳ ଉପକାରାର୍ଥେ
ତ୍ୟଜିବି ବନ୍ଧନ ସକଳ ସ୍ୱାର୍ଥ ।"

'ସୁଦଶା ପାଣ୍ଡି' ଓ 'ସାବିତ୍ରୀ ପ୍ରତାପ' ନାମରେ କିଂବଦନ୍ତୀ ଓ ପୁରାଣ କାହାଣୀ ଘେନି କବି ଦୁଇଟି କବିତା ରଚନା କରିଛନ୍ତି । ଶିବ ଓ ଉମାଙ୍କ କଳହ ପ୍ରସଙ୍ଗରେ ପ୍ରଥମ କବିତାରେ ହାସ୍ୟରସ ସୃଷ୍ଟିର ଉଦ୍ୟମରେ କବି କେତେକ ପରିମାଣରେ ସଫଳ ହୋଇଛନ୍ତି । ଦ୍ୱିତୀୟ କବିତାଟିରେ ପତି ବିରହିଣୀ ଏକାକିନୀ ସାବିତ୍ରୀଙ୍କ ରୋଦନ ପ୍ରସଙ୍ଗରେ କରୁଣ ରସର ସୃଷ୍ଟି ହୋଇଅଛି । କବିଙ୍କ ଭାଷା ସର୍ବତ୍ର ସରଳ, ଅନାଡମ୍ବର ଓ ଅନଳଂକୃତ । କଳ୍ପନାର କ୍ରୀଡ଼ା ବା ଅଳଂକାରର ମଣ୍ଡନ ଅଭାବରେ ସ୍ଥାନେ ସ୍ଥାନେ ତାଙ୍କର କବିତା ଗଦ୍ୟ ଭଳି ନୀରସ ହୋଇଛି ।

ଡାକ୍ତର ରାମକୃଷ୍ଣ ସାହୁ*ଙ୍କ 'ସୁଲୋଚନା' ଏକ ପ୍ରଣୟ ଘଟିତ କାବ୍ୟ । ଏହାର କାହାଣୀ ସୁପରିକଳ୍ପିତ । ବିଷୟବସ୍ତୁ ସମସାମୟିକ ସମାଜରୁ ଗୃହୀତ ହେଲି ଭଳି ମନେହୁଏ । ଏଥିରେ ସ୍ୱାଭାବିକତା ଅଛି । ସାମାଜିକ ବାସ୍ତବ ଉପାଖ୍ୟାନ ଘେନି ଏପରି କାବ୍ୟ ରଚନାର ଉଦ୍ୟମ ସେ ସମୟରେ ଦୃଷ୍ଟିରେ ଦେଖିଲେ ନୂଆ ଜଣାପଡ଼େ ।

---

* ଓଡ଼ିଶା ମେଡ଼ିକାଲ ହଲ ଚିକିତ୍ସା ପ୍ରତିଷ୍ଠାନର ପ୍ରତିଷ୍ଠାତା ରାମକୃଷ୍ଣ ସାହୁ ବାଲେଶ୍ୱର ବାସୀ ଓ କବି ରାଧାନାଥଙ୍କ ଅନ୍ତରଙ୍ଗ ବନ୍ଧୁ ଥିଲେ । ସ୍ୱାସ୍ଥ୍ୟ ଓ ଚିକିତ୍ସା ସମ୍ବନ୍ଧରେ ସେ ଅନେକ ବହି ଲେଖିଥିଲେ । କଟକ ଭିକ୍ଟୋରିୟା ପ୍ରେସ୍‌ରୁ ୧୮୮୯ ଖ୍ରୀଷ୍ଟାବ୍ଦରେ ତାଙ୍କର ସୁଲୋଚନା କାବ୍ୟ ପ୍ରକାଶ ପାଇଥିଲା । ଏହି କାବ୍ୟ ସେ କବି ରାଧାନାଥଙ୍କୁ ଉତ୍ସର୍ଗ କରି ଲେଖିଛନ୍ତି – 'କବିବର ! ଅକୃତ୍ରିମ ସ୍ନେହ ଏ ସଂସାରରେ ଦୁର୍ଲଭ ; ସୁତରାଂ ଆପଣଙ୍କଠାରୁ ଯାହା ପାଇଅଛି ତାହାର ବିସ୍ମୃତି ନାହିଁ, ପରିଶୋଧ ନାହିଁ ।'

କାବ୍ୟର ନାୟିକା ସୁଲୋଚନା ଗାଁର ଜମିଦାର ଗୋବିନ୍ଦ ବାବୁଙ୍କ ଅଳ୍ପଅଳ ଝିଅ । ନାୟକ ମାୟାଧର ଲେଖା ଯୋଖାରେ ତାହାର ମାମୁଁ ପୁଅ ଭାଇ । ଦୁହେଁ ସାଙ୍ଗରେ ଏକା ଗୃହଶାଳାରେ ପାଠ ପଢ଼ୁଥିଲେ । ସୁଲୋଚନାକୁ ପଢ଼ା ଆସୁ ନଥିଲେ, ମାୟାଧର ସାହାଯ୍ୟ କରୁଥିଲେ । ଘଟଣା ପରିବେଶରେ ସେମାନଙ୍କ ପରିଚୟ ଗଭୀର ପ୍ରଣୟରେ ପରିଣତ ହୋଇଥିଲା ।

ଥରେ ବଣଭୋଜି ପାଇଁ ପିଲାମାନେ ବଣକୁ କାଠଭାଙ୍ଗି ଯାଇଥିଲେ । କୌଣସି ଦୁଷ୍ଟ ପିଲା ହଠାତ୍ ଗଧିଆ ଭୟ ପ୍ରଚାର କରିବାରୁ ସମସ୍ତେ ପଳାଇ ଆସିଲେ । ନିସ୍ତା ସୁଲୋଚନା ପଳାଇ ଆସୁ ଆସୁ କଣ୍ଟାରେ ଛନ୍ଦି ହୋଇଗଲା । ସାହସୀ ମାୟାଧର ତାକୁ କଣ୍ଟାରୁ ଛଡ଼େଇ ଦେଲା ; ମନରେ ତାର ସାହସ ଭରିଦେଇ, ତା'କୁ ସାଙ୍ଗରେ ଆଣିଲା । ଆଉଥରେ ଶ୍ରୀପଞ୍ଚମୀରେ ମାୟାଧର ପୂଜା ଶ୍ରୀଫଳ ପାଣିରୁ ଖୋଜି ପାଇଲା ନାହିଁ । ସୁଲୋଚନା ତାକୁ ପୂଜା ଶ୍ରୀଫଳ ଦେଇଥିଲା । ମାୟାଧର ତା ବଦଳରେ ପୋଖରୀରୁ ପଦ୍ମ ଫୁଲ ସୁଲୋଚନାକୁ ତୋଳିଦେଲା । ଦିନେ କାର୍ତ୍ତିକ ପୂର୍ଣ୍ଣିମା ସକାଳେ ବିରୂପା ନଦୀରେ କଦଳୀ ପଟୁଆ 'ସୁଲ୍ଲପ' ଭସାଇବାକୁ ଯାଇ ସୁଲୋଚନା ବୁଡ଼ିଗଲା ବେଳେ ମାୟାଧର ନିଜ ଜୀବନକୁ ଭୟ ନକରି ତାକୁ ଉଦ୍ଧାର କରିଥିଲା । ଶୈଶବ ଓ କୈଶୋରର ଏହି ସାନ୍ନିଧ ଦୁହିଁଙ୍କ ମନରେ ପରସ୍ପର ପ୍ରତି ଆକର୍ଷଣ ସୃଷ୍ଟି କରିଥିଲା । ମନେ ମନେ ସୁଲୋଚନା ମାୟାଧରକୁ ନିଜର ପତି ରୂପରେ ବରଣ କରିଥିଲା । ମାତ୍ର ମନ ଯାହା ଚାହେଁ ଭାଗ୍ୟ ତାହା ଦିଏନାହିଁ । ଗୋଟିଏ ଦୁର୍ଘଟଣାରେ ବିରୂପା ନଦୀରେ ମାୟାଧରର ସଳିଳ ସମାଧି ଘଟିଲା । ବିଭା ବୟସ ହେବାରୁ ପିତାମାତା ସୁଲୋଚନା ଲାଗି ବର ଖୋଜି ଲାଗିଲେ । ଏଥିରେ ଅଧିକ ମର୍ମାହତ ହୋଇ ମାୟାଧର ଗତପ୍ରାଣ ସୁଲୋଚନା ବିରୂପା ନଦୀରେ ଦିଅଁ ଓଲ୍ହାଇବାକୁ ଯାଇ ପରଲୋକରେ ନିଜ ପ୍ରିୟଙ୍କୁ ପାଇବା ଆଶାରେ ଆତ୍ମ ବିସର୍ଜନ କଲା ।

କାବ୍ୟଟି ସହଜ ଭାଷାରେ ବଙ୍ଗଳାଶ୍ରୀ ରାଗରେ ରଚିତ । ପଲ୍ଲୀ ଜୀବନର ଜୀବନ୍ତ ଚିତ୍ରରେ ଏହା ମନୋଜ୍ଞ ହୋଇଛି । ବିରୂପାରେ କୁମାର ପୂର୍ଣ୍ଣିମା ରାତିର ଦୃଶ୍ୟ, ସନ୍ଧ୍ୟା ଦୃଶ୍ୟ ବର୍ଣ୍ଣନାରେ କବି ସୁନ୍ଦର କଳା ନୈପୁଣ୍ୟର ପରିଚୟ ଦେଇଛନ୍ତି । ଉପମା ପ୍ରୟୋଗରେ କବିଙ୍କ ସ୍ୱାତନ୍ତ୍ର୍ୟ ନମ୍ର କଳ୍ପନାରୁ ଅନୁମାନ କରିହେବ ପାରେ ।

"ନୀଳ ମେଘ କୋଳେ ଧଳା ବକପଂକ୍ତି
କି ଭଙ୍ଗିରେ ଉଡ଼ି ଉଡ଼ି
ନୀଳ ପାରିବାରେ ଧଳା ମାଛ ରଙ୍କା
ମାଛ ଧରେ ଅବା ବୁଡ଼ି ।"

ନାରୀ ରୂପ ବର୍ଣ୍ଣନାରେ କବି ଶଙ୍କର ପରିଚୟ ଦେଇଛନ୍ତି । ପଲ୍ଲୀର ଉତ୍ସବ ଦିନରେ ନାରୀମାନଙ୍କ ଆନନ୍ଦ ଓ କୌତୁକ, ପ୍ରିୟ ବିରହରେ ନାୟିକାର କରୁଣ ମୂର୍ତ୍ତିର ଚିତ୍ର ସ୍ୱାଭାବିକ ଓ ପ୍ରାଣପୂର୍ଣ୍ଣ ହୋଇଅଛି ।

ଜୀବନରେ ପ୍ରଣୟର ଆଦର୍ଶ ପ୍ରତିଷ୍ଠା କରିବା ଯେପରିକି କବିଙ୍କର ଉଦ୍ଦେଶ୍ୟ । ବିରହିଣୀ ନାୟିକା ମୁଖରେ କବି ଯେଉଁ ପ୍ରେମର ଆଦର୍ଶ ବର୍ଣ୍ଣନା କରିଛନ୍ତି ତାହା ଶୁଦ୍ଧ, ପବିତ୍ର । ବିଶ୍ୱାସ ଓ ନିଷ୍ଠା ଏହାର ଧର୍ମ । ମନୁଷ୍ୟ ହୃଦୟରେ କେବଳ ଏହି ପ୍ରେମର ବସତି । ସମାଜର ବନ୍ଧା ନିୟମ ଏହାର ଗତିରୋଧ କରିପାରେ ନାହିଁ । ବିବାହରେ ନାରୀର ସ୍ୱତନ୍ତ୍ର ଅଧିକାର, ଏଠାରେ କବି ସ୍ୱୀକାର କରିଛନ୍ତି । ପ୍ରୀତିର ସ୍ୱରୂପ ଓ ମହତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ କବି କହିଛନ୍ତି—

'ଯାହା ମନ ସହି ଯହିଁରେ ରସେଲେ ତା ବିନୁ ନ ଦିଶେ ଆନ,
ପ୍ରୀତି ତାକୁ ନେଇ ନିତି କରୁଥାଇ ଆକାଶେ ପୁର ନିର୍ମାଣ ।
ପ୍ରୀତି ଯେ ଅଟଇ ପରମ ଦ୍ରବ୍ୟ ଲୋ ସଂସାର ଭିତରେ ସାର,
ପ୍ରୀତି ନଥିଲେ ଏ ସଂସାର ମଧ୍ୟରେ ସବୁ ଯାତ୍ରା ନାରଖାର ।
ପ୍ରେମର ବଳ ଯେ ଅଟଇ ପ୍ରବଳ ସ୍ତ୍ରିୟ ଏ ପ୍ରେମରେ ବଳୀ
ପ୍ରେମ ବଳ ବିନା ପ୍ରେମିକେ ଜାଣନ୍ତି ଆଉକେ ପାରିବ କଳି ।'

ସାମାଜିକ କାବ୍ୟ ସୁଲୋଚନା ବ୍ୟତୀତ କବି 'ଲକ୍ଷ୍ମୀ' ନାମରେ ଏକ ପୌରାଣିକ କାବ୍ୟ ରଚନା କରିଛନ୍ତି । ଏହାର ପ୍ରଥମ ସର୍ଗଟି ବାଣପଦାରୁ ପ୍ରକାଶିତ 'ଉତ୍କଳ ପ୍ରଭା' ପ୍ରଥମ ଭାଗ ଦ୍ୱାଦଶ ସଂଖ୍ୟାରେ ( ୧୮୯୧ ଖ୍ରୀ: ଅ ) ସ୍ଥାନ ପାଇଛି । ସତ୍ୟବାଦୀର ସାକ୍ଷୀ-ଗୋପାଳ ଓ ବ୍ରାହ୍ମଣ କନ୍ୟା ଲକ୍ଷ୍ମୀର ପ୍ରଣୟ ଘେନି ପ୍ରଚଳିତ କିଂବଦନ୍ତୀଟି ଏହି କାବ୍ୟର ଅବଲମ୍ବନ । ଏଥିରେ କବି ନୀଳାଚଳ ତୀର୍ଥର ଉଦାର ଆଦର୍ଶ ଓ ସତ୍ୟବାଦୀର ପ୍ରାକୃତିକ ସୌନ୍ଦର୍ଯ୍ୟ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ପତ୍ରିକାରେ କେତେକ କ୍ଷୁଦ୍ର କବିତା ମଧ୍ୟ କବି ପ୍ରକାଶ କରିଛନ୍ତି । ପ୍ରେମ ଓ ବିରହ ବର୍ଣ୍ଣନା ପ୍ରତି କବିଙ୍କ ଆଗ୍ରହ "ବିଷାଦିନୀ ନାରୀର ଉଚ୍ଛ୍ୱାସ" ଭଳି କବିତାରେ ଦେଖିବାକୁ ମିଳେ ।

ସୁଲୋଚନାର କବି ସାମୟିକ ସୌଖୀନ ସାହିତ୍ୟ ଚର୍ଚ୍ଚା କରିଥିବାରୁ ହୁଏତ ସାହିତ୍ୟ ଜଗତରେ ସ୍ୱନାମ ଧନ୍ୟ ହୋଇପାରି ନାହାନ୍ତି । ମାତ୍ର, ତାଙ୍କଠାରେ ଯେ ଯଥାର୍ଥ କବିତ୍ୱ ଓ ଉଚ୍ଚ କବିତାର ରୁଚି ଥିଲା ସୁଲୋଚନା କାବ୍ୟରୁ ଏହାର ଯଥେଷ୍ଟ ପରିଚୟ ମିଳେ ।

ଦାମୋଦର ମିଶ୍ର* ପଦ୍ୟାଳଙ୍କାରଙ୍କ 'ମାଲା' କାବ୍ୟ ଏକ ତରୁଣ ମନ ଓ ନିପୁଣ ହସ୍ତର ସୃଷ୍ଟି । ଏଥି ପୂର୍ବରୁ ପ୍ରକାଶିତ ଏହାଙ୍କର ପଦ୍ମାବତୀ କାବ୍ୟ ପାଠ କରି ଜଣେ ସମାଲୋଚକ ଏଥିରେ ରାଧାନାଥଙ୍କ ଛାୟା ଦେଖିବାରେ, କବିବର ଏହି ତରୁଣ ପ୍ରତିଭାର ମହତ୍ତ୍ୱ ବର୍ଣ୍ଣନା କରି ଗୋଟିଏ ପତ୍ରରେ ଯାହା ଲେଖିଥିଲେ ତାହା ଏଠାରେ ପ୍ରଣିଧାନ-ଯୋଗ୍ୟ । 'ପଦ୍ମାବତୀ' ଦାମୋଦର ମିଶ୍ରଙ୍କ ରଚିତ । ଦାମୋଦର ମୋ ରଚିତ ପୁସ୍ତକାଦି ସର୍ବଦା ଅନୁଶୀଳନ କରି ସେଥିର ଅନୁକରଣରେ ଲେଖିଥିବାରୁ ଆପଣଙ୍କର ଭ୍ରମ ହୋଇଅଛି । ବାସ୍ତବରେ ଦାମୋଦର ବାବୁଙ୍କ ଶକ୍ତି ଅତି ପ୍ରଶଂସନୀୟ । ତାହାଙ୍କର ବୟଃକ୍ରମ ଅତି ଅଳ୍ପ । ଏତେ ଅଳ୍ପ ବୟସରେ ଏପରି ରଚନା ଶକ୍ତି ସଚରାଚର ଦେଖାଯାଏ ନାହିଁ ।' ରାଧାନାଥଙ୍କ ପ୍ରଶଂସା ବାଣୀରୁ 'ମାଳା' କାବ୍ୟ ମଧ୍ୟ ବଂଚିତ ହୋଇନାହିଁ । ଆଦିରସ ନଥାଇ ବି ଏହି ଦୀର୍ଘ କବିତାଟି କିପରି ଉପଭୋଗ୍ୟ ହୋଇଅଛି, ତାହା ସେ ବିଶ୍ଳେଷଣ କରି ଏକ ଅଭିଲେଖରେ ଲେଖିଛନ୍ତି—'ମାଳାର ପାଣ୍ଡୁଲେଖ୍ୟ ଆଦ୍ୟୋପାନ୍ତ ମୁଁ ପଢ଼ିଅଛି । ଈଶ୍ୱରଙ୍କ କୃପାରୁ ଆପଣଙ୍କର ପ୍ରତ୍ୟେକ ରଚନାରେ ଅତ୍ୟଧିକ ସୌନ୍ଦର୍ଯ୍ୟ ଅଛି, ମାତ୍ର ମାଳା ଯୋଗଜନ୍ମା ରଚନା ମଧ୍ୟରେ ସ୍ଥାନ ପାଇବାର ଯୋଗ୍ୟ ।"

"ଆପଣ ନିଶ୍ଚୟ ଜାଣିବେ ମୁଁ ମାଳାର ଉତ୍କର୍ଷ ସମ୍ବନ୍ଧେ ଅତ୍ୟୁକ୍ତି କରୁନାହିଁ । ମାଳା କାବ୍ୟରେ ପଦ୍ମ, ସୁଧାକର, ପ୍ରଣୟୀର ଉଲ୍ଲାସ କିମ୍ବା ବିରହୀର ହାହାକାର ନାହିଁ ସତ୍ୟ, କିନ୍ତୁ ପ୍ରକୃତିର ସୁନ୍ଦର ଚିତ୍ର ଯଥାଯଥ ଚିତ୍ରିତ ହୋଇଅଛି । ମୁଁ ନିଜେ ତାହା ଲେଖିଥିଲେ ଆପଣାକୁ ଭାଗ୍ୟବାନ ମଣିଥାନ୍ତି ।

"ଆଦିରସ ନ ଥାଇ ସୁଦ୍ଧା ମାଳାର ରଚନା କେଡ଼େ ମଧୁର ହୋଇଅଛି । ଆଦିରସରେ ଲେଖକମାନଙ୍କର ଅଧିକ ପ୍ରୟାସୀ ହେବାର ନୁହେଁ । ଆଦିରସରେ ବିଶେଷତଃ ମୋଠାରୁ ଆଦିରସରେ ଭଞ୍ଜଙ୍କୁ କେହି ଅତିକ୍ରମ କରି ପାରିବେ ନାହିଁ ।

"ବାଗ୍‌ଦେବୀ ବାସ୍ତବିକ ଆପଣଙ୍କ ପ୍ରତି ପ୍ରସନ୍ନା । ଆପଣ ଯେଉଁ ପ୍ରଶସ୍ତ ମାର୍ଗ ଧରିଅଛନ୍ତି କେବଳ ଅତି ବର୍ଣ୍ଣନ ଦୋଷ ପରିହାର କରିପାରିଲେ ଉତ୍କଳ କବିମାନଙ୍କ ମଧ୍ୟରେ ଅଗ୍ରଣୀ ହୋଇ ପାରିବେ ।"

---

* ଡବଲ କ୍ରାଉନ ପଚାଶ ପୃଷ୍ଠା ବିଶିଷ୍ଟ ମାଳା ପୁସ୍ତକ ୧୮୯୫ ଖ୍ରୀଷ୍ଟାବ୍ଦରେ କଟକ ପ୍ରିଣ୍ଟିଂ ପ୍ରେସରୁ ପ୍ରକାଶିତ । ପୁସ୍ତକଟି ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କୁ ଉତ୍ସୃଷ୍ଟ । ଉତ୍ସର୍ଗ ପତ୍ରରେ ଲେଖାଅଛି, 'ପୂଜ୍ୟପାଦ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନ ଜ୍ୟେଷ୍ଠାଗ୍ରଜ ମହୋଦୟ ଶ୍ରୀଚରଣ କମଳେଷୁ । ଦେବୀଦୁର୍ଗ, ୧-୧-୯୫ ।' ମୁଖବନ୍ଧରେ କବି ନିଜ ଜନନୀଙ୍କ ଆଦେଶରେ କାବ୍ୟଟି ରଚନା କରି କବିବର ରାଧାନାଥଙ୍କ ଆନୁକୂଲ୍ୟରେ ରଚିତ ହେବାର ବର୍ଷକ ପରେ ପ୍ରକାଶ କରିଥିବା କଥା ଲେଖିଛନ୍ତି ।

ସ୍ୱାଧୀନାଥଙ୍କ ଏହି ମନ୍ତବ୍ୟ ମାତା କବିତାର ପ୍ରକୃତି ଓ ସ୍ୱରୂପର ପ୍ରଚୁର ପରିଚୟ ଦେଉଅଛି । ଏଥିରେ କୌଣସି କାହାଣୀ ବା କିମ୍ବଦନ୍ତୀର ଅବତାରଣା ହୋଇନାହିଁ । ସାର୍ବଜନୀନ ଶାଶ୍ୱତ ଜନନୀ ମୂର୍ତ୍ତିର ରୂପ ଏଠାରେ କବି ସରଳ ଓ ଅନଳଂକୃତ ଭାଷାରେ ଅଙ୍କନ କରିଛନ୍ତି । ଜନ୍ମଠାରୁ ଶୈଶବ ଓ କୈଶୋରର ସକଳ ସ୍ତର ଦେଇ ଜୀବନରେ ପ୍ରତିଷ୍ଠିତ ହେବା ପର୍ଯ୍ୟନ୍ତ ସନ୍ତାନକୁ କେନ୍ଦ୍ରକରି ମାତାର ଚିନ୍ତା ଓ ଭାବନା ଯେଉଁ ସକଳ ଦିଗରେ ଗତି କରେ ତାହାର ବିଶଦ ଚିତ୍ର କବି ଏଥିରେ ପ୍ରକାଶ କରିଛନ୍ତି । ମର୍ତ୍ତ୍ୟରେ ଜନନୀ ମୂର୍ତ୍ତି ହିଁ ଦୟା ଓ ସହିଷ୍ଣୁତାର ଅବତାର । ଜୀବନର ଋଣ ନାରୀ ସାଧନାରେ ନୁହେଁ, ବେଦନାରେ ପରିଶୋଧ କରେ । ଏହି ଉକ୍ତିର ସତ୍ୟତା ସନ୍ତାନ ଲାଗି ଜନନୀ ଯେଉଁ କଷ୍ଟ ସହେ ତାହା ଲକ୍ଷ୍ୟ କଲେ ସହଜରେ ଧାରଣା କରିଯାଇ ପାରେ । ସନ୍ତାନ ଲାଗି ମାତାର ସମସ୍ତ ଧ୍ୟାନ, ଦେବ ଆରାଧନା, ବ୍ରତ ଓ ଉପବାସ । ସନ୍ତାନ ଲାଗି ନାରୀ ସ୍ୱାମୀ କାମନା କରେ, ବଧୂ ସନ୍ତାନ ମୁଖ ଦେଖିବା ଲାଗି ପ୍ରଣୟ ସୁଖ ଭୁଲି, ଉପବାସ, ଔଷଧ, କେତେ ଆଚାର ନିଷ୍ଠା ପାଳନ କରେ । ଜନନୀ ନିଜ ପୁତ୍ରର ସୁଖରେ ଜୀବନର ସାର ସୁଖ ଅନୁଭବ କରେ । ଏଥିଲାଗି କୌଣସି କଷ୍ଟ ବରଣ କରିବାକୁ ସେ ପଛାଏ ନାହିଁ । ଶିଶୁର ପବିତ୍ର ମୁଖ, ଆନନ୍ଦ ମୂର୍ତ୍ତି, ଅଥୟ ଖେଳ, ଦରବୋଲି କଥା ଅଳୀକ ପ୍ରଶ୍ନ ହସ ଓ କାନ୍ଦ ଜନନୀ ଯେପରି ଉପଭୋଗ କରନ୍ତି ତାହା ଅତୁଳନୀୟ । ପଲ୍ଲୀମାତାର ଧର୍ମର ଓ ବିଶ୍ୱାସର ଚିତ୍ର ଏହି କବିତା ପଂକ୍ତିରେ ଜୀବନ୍ତ ହୋଇଅଛି । ସେ ନାନା ଭୂତପ୍ରେତରେ ବିଶ୍ୱାସ କରନ୍ତି । ଏଇ ମନ୍ଦଗ୍ରହ କବଳରୁ ଶିଶୁକୁ ରକ୍ଷା କରିବା ପାଇଁ ସହଜ ବିଶ୍ୱାସରେ ଚାଳିତ ହୋଇ କେତେବେଳେ ହାତରେ ମନ୍ତ୍ର-ତେଉଁରିଆ ବାନ୍ଧି ଦିଅନ୍ତି, କପୋଳରେ କଳାବିନ୍ଦୁ ଲଗେଇ ଦିଅନ୍ତି, କଣ୍ଠରେ ଘୋଡ଼ାବାଳ, କଟିରେ ଘୋଳିଗୁନ୍ଦୁଆ ମାଳି ପିନ୍ଧେଇ ଦିଅନ୍ତି । ନିଜ ଆଦର୍ଶର ପ୍ରତିମୂର୍ତ୍ତି ରୂପେ ମାଆ ପୁଅକୁ ଦେଖିଥାନ୍ତି । ପୁତ୍ରଠାରେ ବଡ଼ଲୋକର ସମସ୍ତ ଲକ୍ଷଣ କଳ୍ପନା କରି ସେ ଆନନ୍ଦରେ ଅଧୀର ହୁଅନ୍ତି ।

ମାତା କେବଳ ସନ୍ତାନର ଧାତ୍ରୀ ନୁହନ୍ତି, ପ୍ରଥମ ଶିକ୍ଷୟିତ୍ରୀ । ପ୍ରକୃତି ପ୍ରଭାବ ପରି ମାନବର ବ୍ୟକ୍ତିତ୍ୱ ବିକାଶରେ ଜନନୀର ପ୍ରଭାବ ଅପ୍ରତିହତ । ଭାଷା ଶିକ୍ଷାରେ, ଚରିତ୍ର ଗଠନରେ ତାଙ୍କର ଦାନ ଅବିସ୍ମରଣୀୟ । ମାତୃ ସ୍ନେହ କେବଳ ମନୁଷ୍ୟ ସମାଜରେ ନୁହେଁ, ସମସ୍ତ ପ୍ରାଣୀ ଜଗତରେ ଦେଖାଯାଏ । ଏହାହିଁ ଜୀବନ ବିକାଶର ପ୍ରଥମ ସୋପାନ । ଏହାର ଭିତ୍ତି ଯେଉଁ ସମାଜରେ ଯେତେ ଦୃଢ଼ ସେ ସମାଜ ସେତେ ବିକଶିତ । ଏଥିଲାଗି ମାତୃ ଜାତିର ଶିକ୍ଷା, ସମ୍ମାନ ଓ ମର୍ଯ୍ୟାଦା ବୃଦ୍ଧି ଲାଗି ଅକୁଣ୍ଠ ଚିତ୍ତରେ ଉଦ୍ୟମ କରିବାକୁ କବି ଉଦ୍‌ବୋଧନ ଦେଇଛନ୍ତି ।

ଏହି ସହଜ ଓ ସାଧାରଣ ବିଷୟର ବର୍ଣ୍ଣନାରେ କବିଙ୍କ ପ୍ରାଣର କୋମଳତା, ହୃଦୟର ଅନୁଭବ, କଳ୍ପନାର ସଜୀବତା, ଭାଷାର ମାଧୁର୍ଯ୍ୟ ପୂର୍ଣ୍ଣ ରୂପେ ଅଭିବ୍ୟକ୍ତ ହୋଇଅଛି । ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣରେ କବିଙ୍କ ଆଗ୍ରହ ସ୍ପଷ୍ଟ ଦେଖିବାକୁ ମିଳେ । ପଲ୍ଲୀ ଜୀବନର ଆଶା ଓ ଆକାଂକ୍ଷା ମାତୃ ଜାତିର ହୃଦୟରେ ଯେପରି ପ୍ରତିବିମ୍ବିତ ଦେଖୁ, ମାତା କବିତାର ପ୍ରତି ପଂକ୍ତିରେ ତାହାର ପରିପୂର୍ଣ୍ଣ ପ୍ରକାଶ ଘଟୁଛି । ଆଶା ଓ ଆନନ୍ଦର ଚିତ୍ର ଅଙ୍କନରେ କବି ଯେପରି ନିପୁଣ, କରୁଣ ରସର ଅବତାରଣାରେ ସେଇପରି ସଫଳ ହୋଇଛନ୍ତି । ପୁତ୍ରହରା ଜନନୀ ପ୍ରାଣର ବେଦନା କବିଙ୍କ ଲେଖନୀରେ ଏକାନ୍ତ ମର୍ମସ୍ପର୍ଶୀ ।

'ଖୁଆଦଣ୍ଡେ ଦଧି ମନ୍ଥନ ପ୍ରାୟେ ମାତା ହୃଦୟ
ଦୁଃସହ କଷଣେ ନିରତେ ହୋଇଥାଏ ଅଥୟ ।
ଆହାରେ ! ଅକାଳେ ତନୟ ଯେବେ ତେଜେ ଜୀବନ
ଆଶା-ପାଟଡୋର ମାତାର ଛିଣ୍ଡିଯାଏ ବନ୍ଧନ ।'

ଦାମୋଦର ମିଶ୍ର ପଦ୍ୟାଳଙ୍କାରଙ୍କର 'ଉତ୍କଳ ପ୍ରଭା' ଦ୍ୱିତୀୟ ଭାଗ ତୃତୀୟ ସଂଖ୍ୟାରେ 'କମଳ ସୁନ୍ଦରୀ' ନାମରେ ଗୋଟିଏ ଦୀର୍ଘ ବିଷୟ-ବର୍ଣ୍ଣନାତ୍ମକ କବିତା ପ୍ରକାଶ ପାଇଛି । ଏଥିରେ 'ମାତା' କବିତା ଭଳି ବର୍ଣ୍ଣନା ବାହୁଲ୍ୟ ସଙ୍ଗେ ସଙ୍ଗେ କବିଙ୍କ ସୌନ୍ଦର୍ଯ୍ୟବୋଧ, ମାର୍ଜିତ ରୁଚିର ମଧ୍ୟ ପରିଚୟ ମିଳେ । ସୂର୍ଯ୍ୟ ଓ ପଦ୍ମର ପ୍ରଣୟ ଚିତ୍ର ଅଙ୍କନ କରିବାକୁ ଯାଇ କବି ପ୍ରଭାତ ପ୍ରକୃତି, ପଦ୍ମର ପୌରାଣିକ ମହତ୍ତ୍ୱ, ଷଟ ଭ୍ରମରର ପ୍ରେମ ଓ ପଦ୍ମର ଶୁଚିତା ଆଦିର ବିଶଦ ବର୍ଣ୍ଣନା ଦେଇଛନ୍ତି । ସତୀତ୍ୱ ଓ ପାତିବ୍ରତ୍ୟ ଘେନି ବହୁଳ ନୀତି ଉପଦେଶ ରଚନାର ପ୍ରୟାସ ହୋଇଛି । ପ୍ରଣୟରେ ଶୁଦ୍ଧ ଭାବର ବିକାଶ ଓ ସୌନ୍ଦର୍ଯ୍ୟ ଚିତ୍ରଣରେ ସ୍ୱଭାବ ସୁନ୍ଦର ପ୍ରାକୃତିକ ରୂପରେ ରୁଚି ପ୍ରତି କବିଙ୍କ ଆଗ୍ରହ ବିଶେଷ ଲକ୍ଷଣୀୟ ।

ଭାଷା, ଭାବ, କଳ୍ପନାର କୃତ୍ରିମ ବନ୍ଧନରୁ ମୁକ୍ତ ଅନୁଭବ ଓ ସାଧାରଣ ଜୀବନ ଚିତ୍ରରେ ସମୃଦ୍ଧ ଆଧୁନିକ କାବ୍ୟକୁ ସ୍ୱଚ୍ଛନ୍ଦ ଗତି ଓ ସ୍ୱାଭାବିକ ରୂପ ଦେବାର ଯେଉଁ ପ୍ରୟାସ ଏ ଯୁଗରେ ହୋଇଥିଲା, ସେଥିରେ ମାତାର କବି ସିଦ୍ଧିଲାଭ କରିଛନ୍ତି । କବିତାର ପ୍ରକୃତ ଗ୍ରାହକ ଏହି ଅଜ୍ଞାତ କବିଙ୍କୁ ନିଜର ଶ୍ରଦ୍ଧା ନିବେଦନରେ କେବେ କୁଣ୍ଠିତ ହେବ ନାହିଁ, ଯଦି ଥରେ ସେ ତାଙ୍କ କାବ୍ୟ ଜଗତରେ ପ୍ରବେଶର ସୁଯୋଗ ପାଏ ।

ଗୋପାଳ ବଲ୍ଲଭ ଦାସ ଔପନ୍ୟାସିକ, ସମାଲୋଚକ ଓ କବି । ତାଙ୍କର ଉପନ୍ୟାସ ଭୀମଭୂୟାଁ ସହିତ ଅନେକେ ପରିଚିତ । ମାତ୍ର ତାଙ୍କର ସମାଲୋଚନା ଓ କାବ୍ୟ କବିତା ସାମୟିକ ପତ୍ରରେ ବିକ୍ଷିପ୍ତ । ତାଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱର ପରିଚୟ ଲାଗି ମୃତ୍ୟୁଞ୍ଜୟ ରଥଙ୍କ ନିମ୍ନ ଉକ୍ତି ପ୍ରଣିଧାନ ଯୋଗ୍ୟ । 'ଗୋପାଳ ବାବୁ ଯେପରି ବିଦ୍ୱାନ ସେହିପରି

ସୁଲେଖକ ମଧ୍ୟ ଥିଲେ । ମଧୁବାବୁଙ୍କ ଯୋଗ୍ୟ ସହୋଦର ଏ ଗୋପାଳବାବୁ ଓଡ଼ିଶା କଲେଜର ପ୍ରଥମ ଏମ୍, ଏ, ଉପାଧିଧାରୀ ହୋଇ ଡେପୁଟି ମାଜିଷ୍ଟ୍ରେଟ୍ ପଦରେ ନିଯୁକ୍ତ ହୋଇଥିଲେ । ଓଡ଼ିଆ ଡେପୁଟିଙ୍କ ମଧ୍ୟରେ ଗୋପାଳ ବାବୁହିଁ ଧୀର ଭାବରେ ସାହିତ୍ୟ ଚର୍ଚ୍ଚା କରିଥିଲେ । ଓଡ଼ିଆ ଭାଷାର ପ୍ରାଚୀନ ସାହିତ୍ୟ ଅନୁଶୀଳନ କରି ସେ ଯେପରି ପାଣ୍ଡିତ୍ୟ ଅର୍ଜନ କରିଥିଲେ, ତାହା ଯେଉଁମାନେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ସମାଲୋଚନାବଳୀ ପାଠ କରିଅଛନ୍ତି, ସେମାନେ ଉତ୍ତମ ଜାଣିଥିବେ । ଇନ୍ଦ୍ରଧନୁରେ ପ୍ରକାଶିତ ଅଧିକାଂଶ ପ୍ରବନ୍ଧ ପ୍ରାୟ ତାଙ୍କରି ଲେଖନୀ ନିଃସୃତ । କବିବର ରାଧାନାଥଙ୍କ ରଚିତ ପ୍ରାୟ ସମସ୍ତ କାବ୍ୟର ଦୀର୍ଘ ସମାଲୋଚନା ଉକ୍ତ ପତ୍ରିକାରେ ସେ କ୍ରମଶଃ ପ୍ରକାଶ କରିଥିଲେ । ଏତଦ୍‌ବ୍ୟତୀତ 'କୋଣାର୍କେ ଉଷା', ଏବଂ 'ତାରକ ସଂହାର' ନାମକ ମିତ୍ର ଓ ଅମିତ୍ର ଛନ୍ଦର ଦୁଇଟି କାବ୍ୟ ସେଥିରେ କ୍ରମଶଃ ପ୍ରକାଶିତ ହୋଇଥିଲା । ତାଙ୍କର ଶ୍ୱଶୁର ରାୟ ବାହାଦୁର ନନ୍ଦକିଶୋର ଦାସଙ୍କ ଜୀବନ ଚରିତ ଏହି ପତ୍ରିକାରେ ସେ ଅଂଶତଃ ପ୍ରକାଶ କରିଥିଲେ ।'୨୦

*କବିତାମଞ୍ଜରୀ ନାମକ କ୍ଷୁଦ୍ର କବିତା ସଙ୍କଳନରୁ ଏହାଙ୍କ କବିତ୍ୱ ଓ ଦୃଷ୍ଟି କୋଣର ପ୍ରଚୁର ପରିଚୟ ମିଳେ । ତାହାଙ୍କର ମନ ଉଚ୍ଚ ସଂସ୍କୃତିରେ ଗଢ଼ା ହୋଇଥିଲା । ପାଶ୍ଚାତ୍ୟ ଜାତୀୟତାବାଦର ଆଦର୍ଶରେ ସେ ସ୍ୱଦେଶୀୟ ଇତିହାସ, ଶିଳ୍ପ ଓ ସଂସ୍କୃତିକୁ ବିଚାର କରୁଥିଲେ । କଳାଦିଗରୁ ବିଚାର କଲେ, ତାଙ୍କର କବିତା ଆପଣା ଯୁଗର ଖୁବ ଅନୁକୂଳ ଥିଲା । ଆମ ପ୍ରାଚୀନ କବିତାର ସେ ମୁଗ୍ଧ ପାଠକ ଥିଲେ । ପ୍ରାଚୀନ ଅଳଙ୍କାର ସହିତ ଆଧୁନିକ ପାଶ୍ଚାତ୍ୟ ଭାବ ଓ ପରିମିତ ପ୍ରକାଶ ଶୃଙ୍ଖଳା ପ୍ରତି ତାଙ୍କର ବିଶେଷ ଧ୍ୟାନ ଥିଲା । ସେ ଚତୁର୍ଦ୍ଦଶ ପଦୀ, ଓଡ୍, ଅମିତ୍ରାକ୍ଷର ଛନ୍ଦ ଆଦି ସକଳ ଦିଗରେ ପରୀକ୍ଷା କରିଛନ୍ତି । ପ୍ରକୃତିର କ୍ଷୁଦ୍ର ଓ ଅଜ୍ଞାତ ବସ୍ତୁ ଭିତରେ ସୌନ୍ଦର୍ଯ୍ୟ ଉଦ୍‌ଘାଟନର ପ୍ରୟାସ କରିଛନ୍ତି । ମଧୁଲୋଭୀ ମଧୁକର, ବଣମଲ୍ଲୀ, ଅନାମା କୁସୁମ କଢ଼ି, ସୂର୍ଯ୍ୟାସ୍ତ ଆଦି କବିତାଗୁଡ଼ିକ ଏହାର ଦୃଷ୍ଟାନ୍ତ । ପଲ୍ଲୀ ଜୀବନ ପ୍ରତି ଏକ ସ୍ୱାଭାବିକ ଓ ସହଜ ଆକର୍ଷଣ କବିଙ୍କଠାରେ ଦେଖିବାକୁ ମିଳେ । 'କାର୍ତ୍ତିକସ୍ନାନ' କବିତାରେ ନାରୀ ଦେହ ସୌନ୍ଦର୍ଯ୍ୟ ଭିତରେ କବି ଯେପରିକି ପ୍ରକୃତି ଜଗତର ସମସ୍ତ ସୌନ୍ଦର୍ଯ୍ୟ ଓ ରସ ଉପଭୋଗ କରିଛନ୍ତି । ସହଜ ଭାଷା ଓ ସରଳ ବର୍ଣ୍ଣନା ଭିତରେ କବିଙ୍କ କଳ୍ପନା ଉପମା ପ୍ରୟୋଗ ଓ ରୂପ ସୃଷ୍ଟି ପାଇଁ ପ୍ରାଚୀନ କବିଙ୍କ ରଚିତ କଳ୍ପ ଲୋକରେ ବିଚରଣ କରିଅଛି ।

* କବିତା ମଞ୍ଜରୀ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ୧୮୯୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ସେଥିରେ ନିମ୍ନ କବିତାଗୁଡ଼ିକ ସ୍ଥାନ ପାଇଅଛି ଉପେନ୍ଦ୍ର ଭଞ୍ଜ, ମଧୁକର, ବଣମଲ୍ଲୀ, ଗୋଲାପ, କାର୍ତ୍ତିକସ୍ନାନ, ଅନାମା, ସୁମନ କଢ଼ି, ଭିକ୍ଟୋରିୟା, ସୂର୍ଯ୍ୟାସ୍ତ, ଦୁଃଖ, ରାୟ ନନ୍ଦ କିଶୋର ଦାସ ବାହାଦୁର, ଜୀବନ ସଂଗ୍ରାମ, କୋଣାର୍କେ ଉଷା ।

ନିଜ ଦେଶର ଜନସାଧାରଣଙ୍କ ରୁଚି ଓ ଆଶା ଆକାଂକ୍ଷା ପ୍ରତି ଗଭୀର ଦରଦ ଘେନି କବି 'କୋଣାର୍କେ ଉଷା' କବିତାଟି ରଚନା କରିଛନ୍ତି । କୋଣାର୍କ ଜାତିର ମୂର୍ତ୍ତିମାନ ଇତିହାସ । ଏହା ଜାତୀୟ ସମୃଦ୍ଧି ଓ ଗୌରବର ଶ୍ରେଷ୍ଠ ନିଦର୍ଶନ । କବିଙ୍କ ଉକ୍ତିରେ କହିଲେ—

'ନ ଉଚ୍ଚାର ବାଣୀ କହୁଛୁ କାହାଣୀ
ଉତ୍କଳର ପୁରାତନ ।

ଯେଉଁ ଯୁଗରେ କୋଣାର୍କ ନିର୍ମିତ ହୋଇଥିଲା, ସେ ଯୁଗରେ ଦେଶ ଆଦର୍ଶର ଉଚ୍ଚ ସୋପାନରେ ଉପନୀତ ହୋଇଥିଲା । ଅଖଣ୍ଡ ଏକତା ଜାତି ପ୍ରାଣରେ ବିରାଜିତ ଥିଲା । ଏହି ଅତୀତର ଉଜ୍ଜ୍ୱଳ କଳ୍ପନାରୁ କବି ଆପଣା ଯୁଗର ଅନ୍ଧକାର ପ୍ରତି ଦୃଷ୍ଟିପାତ କରିଛନ୍ତି । ସର୍ବତ୍ର ଉଦାସୀନତା, ଶକ୍ତିହୀନତା ଓ ପରାଧୀନତାର ଭାବ ଲକ୍ଷ୍ୟକରି ସେ ବିଚଳିତ ହୋଇଛନ୍ତି । ଦେଶ ବିଦେଶର ଜାତୀୟ ଜାଗରଣର ଦୃଷ୍ଟାନ୍ତ ଦେଇ ଏହି ଉଦ୍ଦେଶ୍ୟରେ କବି ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇଛନ୍ତି ।

'ଦେଖିଲେଣି ମଥା ଶୁଣି ପୂର୍ବକଥା ଯାଇଁ ନିଦ୍ରା ପରିହରି
ପ୍ରାଚୀନ ଗୌରବ ଇଟାଲି ସୁନ୍ଦର ଗ୍ରୀସ୍ କଲେବର ଧରି ।
ଜାତୀୟ ଜୀବନ ଅମୃତ ସେବନ କରି ତେଜୋମୟ ତନୁ
ହେବେ କି ସୁନ୍ଦର ମହାମନର୍ଦ୍ଧର ଯେସନ ଅଚଳ ସୁନୁ ?
ଧରାରେ ଜିଣିବ ଦୁର୍ଲଭ ବିଭବ ବେଗରେ ବଳାଇ ମତି
ଜାତୀୟ ଏକତା ଜାତୀୟ ମମତା ବୁଝିବେ କି ସଦାଗତି ।'

କବି ଉତ୍କଳୀୟ ସଂସ୍କୃତିର ଉପାସକ । ପ୍ରାଚୀନ ଯୁଗର ପ୍ରତିଭାଶାଳୀ କବି ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ନିଜର ଶ୍ରଦ୍ଧା ଗୋଟିଏ ଚତୁର୍ଦ୍ଦଶପଦୀରେ ଯେପରି ପ୍ରକାଶ କରିଛନ୍ତି, ସେଥିରୁ ତାଙ୍କର ରୁଚି ଓ ଆଦର୍ଶ ଦୃଷ୍ଟିକୋଣର ପରିଚୟ ମିଳେ । ସେ ଭଞ୍ଜଙ୍କ କବିତାର ଜୀବନ ଚରିତ ବା ଅଳଙ୍କାର କଥା ନ କହି କେବଳ ସଙ୍ଗୀତ ମୂର୍ଚ୍ଛନା ପ୍ରତି ଧ୍ୟାନ ଦେଇଛନ୍ତି । କବିଙ୍କ ପଂକ୍ତି ସ୍ମରଣୀୟ—

"ପୂର୍ଣ୍ଣ ଶଶଧର କମ୍ବା ମଳୟ ପବନ
ପରି ସୁଧା ଜଣା ତବ ସଙ୍ଗୀତ ଲହରୀ
ତରଙ୍ଗେ ତରଙ୍ଗେ ଦଗବଦଗ ପ୍ରସରି
ପ୍ରାସାଦେ କୁଟୀରେ କରେ ଚିତ୍ତ ବିନୋଦନ ।
ଦେଖେ ଯେବେ ପଥେ ଯାଏ ମଳିନ ବସନ
ପିନ୍ଧି ଧାନହୀନ ତବ ମଧୁର ସଙ୍ଗୀତ

ଗାଇ ସଙ୍ଗ ଦୁଃଖ ଭୁଲି ପ୍ରଫୁଲ୍ଲ ବଦନ
ତବ ଗୁଣ ଭବ ହୃଏ ଚକିତ ବସ୍ମିତ ।”

ଊନବିଂଶ ଶତକର ପତ୍ର ପତ୍ରିକା, ବିଶେଷତଃ ‘ଉତ୍କଳ ସାହିତ୍ୟ’ ପ୍ରତି ଦୃଷ୍ଟିପାତ କଲେ, ବହୁ ସଂଖ୍ୟକ ତରୁଣ କବି ନବ ଉଦ୍ୟମରେ କବିତା ରଚନା କରିଥିବାର ଦେଖିବାକୁ ମିଳେ । ଏମାନଙ୍କ ଭିତରୁ ଅଧିକାଂଶ ଉଚ୍ଚ ବିଦ୍ୟାଳୟ ବା ମହାବିଦ୍ୟାଳୟର ଛାତ୍ର ଥିଲେ । ଆହୁରି କେତେକ ପ୍ରାଚୀନ ପନ୍ଥୀ ସଂସ୍କୃତ ପଣ୍ଡିତ ମଧ୍ୟ ଥିଲେ । ପ୍ରାଚୀନ ପନ୍ଥୀଗଣ ଧର୍ମନୀତି ଓ ଆଧ୍ୟାତ୍ମିକ ଆଦର୍ଶ ବ୍ୟାଖ୍ୟା କରି ଜଣାଣ ଭଜନ ଅଥବା ଚଉପଦୀ ଧରଣର ସଙ୍ଗୀତ ରଚନା କରୁଥିଲେ । ନବୀନ ଲେଖକଙ୍କ ଲେଖାରେ ଯୁଗର ପ୍ରମୁଖ କବିଙ୍କ ଅନୁକରଣ ପ୍ରଧାନତଃ ଦେଖାଯାଏ । ଏମାନଙ୍କ ଭିତରୁ ମୌଳିକତା ପ୍ରତି ଧ୍ୟାନ ଦେବା ସଙ୍ଗେ ସଙ୍ଗେ ସାଧନାରେ ଯେଉଁମାନେ ନିଷ୍ଠା ରଖି ପାରିଛନ୍ତି, ସେମାନଙ୍କୁ ବିଂଶ ଶତକର ପ୍ରଥମ ପାଦରେ ପୂର୍ଣ୍ଣ ବିକଶିତ ରୂପେ ଦେଖିବାକୁ ମିଳେ । ତେଣୁ ଏଠାରେ ସେମାନଙ୍କ ପ୍ରସଙ୍ଗ ଉତ୍ଥାପନ କରିବା ଅନାବଶ୍ୟକ । ମାତ୍ର ଯେଉଁମାନଙ୍କ ପ୍ରତିଭା ଅକାଳରେ ମଉଳି ଯାଇଛି ବା ବିକାଶର ପଥ ଖୋଜି ପାଇ ନାହିଁ ସେହିପରି କେତେଜଣ କବିଙ୍କ ନାମ ଏଠାରେ ସ୍ମରଣ କରାଯାଇପାରେ । ଲାଲ ନୃସିଂହ, ନୀଳମଣି ମିଶ୍ର, ରମାନାଥ ଦାସ, ରାଜନାରାୟଣ ଦାସ, ଗୋବିନ୍ଦଚନ୍ଦ୍ର ମହାପାତ୍ର, ଦୈତାରି କର, ନୀଳମଣି ଗୁହ ଦେ, ଲକ୍ଷ୍ମଣ ପଟ୍ଟନାୟକ, ରେବତୀନାଥ ମହାନ୍ତି, ବୈଦ୍ୟନାଥ ଦାସ, ରାଧାଚରଣ ଦାସ, ପଦ୍ମଚରଣ ନାୟକ, କାମପାଳ ମିଶ୍ର, ଚନ୍ଦ୍ରମୋହନ ମହାରଣା ଆଦି ଏମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । ଶ୍ରୀଯୁକ୍ତ କାମପାଳ ମିଶ୍ର ଓ ଚନ୍ଦ୍ରମୋହନ ମହାରଣା କାବ୍ୟ ସମାଲୋଚକ ଓ ପ୍ରବନ୍ଧକାର ରୂପେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ପରବର୍ତ୍ତୀ କାଳରେ କାମପାଳ ମିଶ୍ରଙ୍କ ରଚିତ ସୀତା ବିବାହ ବସନ୍ତ ଲତିକା ଆଦି ନାଟକ ଓ ଶ୍ରୀ ମହାରଣାଙ୍କର ବ୍ୟାକରଣ ଓ ପାଠ୍ୟ ପୁସ୍ତକ ସୁନାମ ଅର୍ଜ୍ଜନ କରିଥିଲା । କବି ଭାବରେ କୌଣସି ବିକାଶ ଏମାନଙ୍କଠାରେ ଦେଖା ଦେଇ ନାହିଁ କହିଲେ ଚଳେ ।

**ନାରୀ-କବି**

ଊନବିଂଶ ଶତକରେ ନାରୀ ଜାଗରଣ ଓ ନାରୀ ଶିକ୍ଷାର ସୂତ୍ରପାତ ହୋଇଥିଲା । ମାତ୍ର ଆଧୁନିକ ସାହିତ୍ୟ କ୍ଷେତ୍ରରେ କୌଣସି ବିଶିଷ୍ଟ ନାରୀ ପ୍ରତିଭାର ଅଭ୍ୟୁଦୟ କ୍ୱଚିତ୍ ଦେଖିବାକୁ ମିଳେ । କାବ୍ୟ କବିତା ରଚନାରେ କୌଣସି ନାରୀକବି ସୁପ୍ରତିଷ୍ଠାନ ଅଧିକାର କରି ନ ଥିଲେ ବି, ଗୌଣକବିଙ୍କ ଭିତରେ କେତେଜଣ ବିଶିଷ୍ଟ ନାରୀକବି ଆତ୍ମପ୍ରକାଶ କରିଥିବାର ଦେଖିବାକୁ ମିଳେ । ପାରିଜାତମାଳା କବିତା ପୁସ୍ତକର ରଚୟିତ୍ରୀ ସୁଲକ୍ଷଣା ଦେବୀ ଓ ନାରୀ ଜାଗରଣ ଉଦ୍ଦେଶ୍ୟରେ ପରିକଳ୍ପିତ ଆଶା ପତ୍ରିକାର ସମ୍ପାଦିକା ଶ୍ରୀମତୀ ରେବା ରାୟଙ୍କ ନାମ ଏଠାରେ ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

ଦେବୀ ସୁଲକ୍ଷଣା ଡେଙ୍କାନାଳରେ ଏକ ସମ୍ଭ୍ରାନ୍ତ କରଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଶିକ୍ଷା ପ୍ରାଚୀନ ଘରେ ହୋଇଥିଲା । ସେ ପବିତ୍ର ଗାର୍ହସ୍ଥ୍ୟ ଜୀବନ ଯାପନ କରୁଥିଲେ । ଏହାର ପ୍ରଭାବ ତାଙ୍କ କବିତାରେ ଦେଖିବାକୁ ମିଳେ । ଏହାଙ୍କ କବିତାର ପ୍ରଶଂସା କରି ଭକ୍ତକବି ମଧୁସୂଦନ ଲେଖିଥିଲେ, "ପାରିଜାତମାଳାର * କବିତାଗୁଡ଼ିକ ଶୁଦ୍ଧ ଭାବରେ ପରିପୂର୍ଣ୍ଣ, ନିର୍ମଳ ଧର୍ମାନୁରାଗ ଦ୍ୱାରା ଅନୁପ୍ରାଣିତ, ସରଳ ବିଶ୍ୱାସ ଓ କୋମଳ ପ୍ରୀତିର ସ୍ୱର୍ଗୀୟ ସୌରଭରେ ପ୍ଲାବିତ ।" ୨୧ ସୁଲକ୍ଷଣାଙ୍କର ଧାର୍ମିକତାର ସାଧୁବାଦ କରି ଫକୀରମୋହନ ଉତ୍କଳ ଭ୍ରମଣରେ ଲେଖିଛନ୍ତି

"ଢେଙ୍କାନାଳେ ଥିଲି ପ୍ରାୟ ଅଢ଼ାଇ ବରଷ,
ତେତେବେଳେ ମୋତେ ଜଣା ଥିଲି ନାହିଁ ପରି ।
ଜଣାଥିଲେ ଆପଣଙ୍କ ଏଡ଼େ ଧାର୍ମିକତା
ପାଶେ ବସି ଶୁଣିଥାନ୍ତି ଦୁଇଗୁର କଥା ।" ୨୨

ପରିଣତ ବୟସରେ ୧୮୮୧ ଖ୍ରୀଷ୍ଟାବ୍ଦରେ ଏହାଙ୍କର ପରଲୋକ ହୋଇଥିଲା । ମୃତ୍ୟୁ-କାଳିନ ଶୋକ ବାଚନରେ ଏହାଙ୍କର ପାରିଜାତମାଳା କାବ୍ୟ ପ୍ରସଙ୍ଗ ଉତ୍କଳ ସାହିତ୍ୟର ସମ୍ପାଦକୀୟରେ ବର୍ଣ୍ଣିତ ହୋଇଅଛୁ । ବିଶ୍ୱନାଥଙ୍କ ଉକ୍ତିରେ କହିଲେ, "ସୁଲକ୍ଷଣା ଦେବୀ ଗୃହଶାଳାର ସାମାନ୍ୟ ଶିକ୍ଷା ପ୍ରାପ୍ତା, ଅଳ୍ପପୁର ନିବନ୍ଧା, ସ୍ୱାଭାବିକ କବି ପ୍ରତିଭାର ଅଧିକାରିଣୀ । ...ପଦାର୍ଥ ସମାଲୋଚନା ଚକ୍ଷୁରେ ଦେଖିଲେ, ପାରିଜାତମାଳା ଯେପରି ଗୁଣର ଆକର ସେହିପରି ଦୋଷର ଖଣି । କିନ୍ତୁ ସୁଲକ୍ଷଣା ଦେବୀଙ୍କ ଶିକ୍ଷା ଓ ଅବସ୍ଥା ବିବେଚନାରେ ସେଗୁଡ଼ିକ ଧର୍ତ୍ତବ୍ୟ ନୁହେ ।" ୨୩

ଶ୍ରୀମତୀ ରେବାରାୟ ଭକ୍ତକବି ମଧୁସୂଦନଙ୍କ ଝିଆରୀ, କବି ଓ ଲେଖକ ସାଧୁଚରଣ ରାୟଙ୍କ ପତ୍ନୀ । ତାଙ୍କର 'ଅଞ୍ଜଳି' କବିତା ପୁସ୍ତକ ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇ-ଥିଲା । ଏହି ପୁସ୍ତକରେ ସ୍ଥାନ ପାଇଥିବା ସମସ୍ତ କବିତା ସେ ୧୩ରୁ ୨୦ ବର୍ଷ ଭିତରେ ରଚନା କରିଥିବା କଥା ଉଲ୍ଲିଖିତ ହୋଇଛି । ଏହି ପୁସ୍ତିକାର ସମାଲୋଚନା କରିବାକୁ ଯାଇ ଉତ୍କଳ ସାହିତ୍ୟ ପତ୍ରିକାରେ ସମ୍ପାଦକ ଲେଖିକାଙ୍କ ସାଧନା, ନିଷ୍ଠା, ଉଚ୍ଚ ଆଦର୍ଶ ଓ ସ୍ୱାଭାବିକ କବିତ୍ୱ ଶକ୍ତିର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଫରିହାରେ ସ୍ଥାନ ପାଇଥିବା କବିତାବଳୀରେ ସ୍ଥାନେ ସ୍ଥାନେ ବଙ୍ଗୀୟ କବିମାନଙ୍କର ଛାୟା ପଡ଼ିଥିବାର ଦର୍ଶାଇଛନ୍ତି । ୨୪ ନିଜ ସ୍ୱାମୀଙ୍କ ଭଳି ଶ୍ରୀମତୀ ରାୟ ବ୍ରାହ୍ମ ଧର୍ମର ଆଦର୍ଶରେ ବିଶେଷ ପ୍ରଭାବିତ ଥିଲେ । ବ୍ରାହ୍ମଧର୍ମର ଏକେଶ୍ୱରବାଦ ଓ ସମାଜ ସଂସ୍କାର ଭାବନା ବହୁ କବିତାରେ ପ୍ରକାଶିତ ହୋଇଛି । ନିଜ ସ୍ୱାମୀଙ୍କ ଅକାଳ ବିୟୋଗରେ ରଚିତ କେତୋଟି କବିତାରେ କରୁଣରସ ଓ ପ୍ରେମର ଆଦର୍ଶ ଚିତ୍ର ସହଜରେ ହୃଦୟକୁ ସ୍ପର୍ଶକରେ ।

* ପାରିଜାତ ମାଳାରେ ମଧୁସୂଦନଙ୍କ ମନ୍ତବ୍ୟ ଓ ନାଗ୍ରି କବିଙ୍କ ପୁତ୍ର ଦାମୋଦର ପଟ୍ଟନାୟକଙ୍କ ଲିଖିତ କବି ଜୀବନୀ ପ୍ରଦତ୍ତ ହୋଇଛି । ଏଥିରେ ନିମ୍ନ କବିତାଗୁଡ଼ିକ ସ୍ଥାନ ପାଇଛି ବଡ଼ ଦେଉଳ ରଚନା, ଛତ୍ରର ବର୍ଣ୍ଣନା, ଦୀନବନ୍ଧୁ କୋଇଲି, ଜଣାଣମାଳ ।

## ସଂସ୍କୃତର ପ୍ରଭାବ

### ଅନୁବାଦ ସାହିତ୍ୟ

ବିଶ୍ୱ ସାହିତ୍ୟର ପରିକଳ୍ପନାକୁ ସଫଳ କରିବା ପାଇଁ ଭାଷା ଏକ ପ୍ରଧାନ ପ୍ରତିବନ୍ଧକ । ବିଭିନ୍ନ କାଳରେ ଓ ବିଭିନ୍ନ ଦେଶରେ ପ୍ରତିଭାବାନ୍ ବ୍ୟକ୍ତିଙ୍କଦ୍ୱାରା ସର୍ଜନା ସାହିତ୍ୟର ଶ୍ରେଷ୍ଠ କୃତିର ସୃଷ୍ଟି ଘଟିଥାଏ । ଏହି ଗ୍ରନ୍ଥଗୁଡ଼ିକ ସହିତ ପରିଚିତ ହେବାପାଇଁ ବହୁ ଭାଷାରେ ଜ୍ଞାନ ଆବଶ୍ୟକ । ମାତ୍ର ଏହା ସହଜ ନୁହେଁ । ସାଧାରଣ ସାହିତ୍ୟ ପ୍ରେମୀ ପାଠକଙ୍କ କଥା ଦୂରେ ଥାଉ, ଗବେଷକ ପଣ୍ଡିତମାନଙ୍କ ପକ୍ଷରେ ମଧ୍ୟ ଏହା କଠିନ । ପୃଥିବୀର ସବୁ ଭାଷା ଓ ସାହିତ୍ୟରେ ରଚିତ ଶ୍ରେଷ୍ଠ ରଚନାବଳୀକୁ ଏକ ବିଶ୍ୱ ସାହିତ୍ୟରୂପେ ଗ୍ରହଣୀୟ କରିବା ଲାଗି ଅନୁବାଦ ପ୍ରଧାନ ମାଧ୍ୟମ ।

ଅନୁବାଦ କେବଳ ବିଶ୍ୱସାହିତ୍ୟ ଧାରଣାକୁ ପୁଷ୍ଟ କରିନାହିଁ ; ସବୁ ଦେଶର ଜାତୀୟ ସଂସ୍କୃତି ବିକାଶରେ ସାହାଯ୍ୟ କରିଅଛି । ଅନୁବାଦ ଭିତରେ ପୃଥିବୀର ସର୍ବୋତ୍କୃଷ୍ଟ ଚିନ୍ତା ଓ ସାହିତ୍ୟକୁ ଯେଉଁ ଜାତି ଯେତିକି ଆପଣାର କରି ପାରିଛି, ସେ ଜାତିର ସମୃଦ୍ଧି ସେତିକି ସହଜ ହୋଇଅଛି ।

ଅନୁବାଦ ଏକ କଠିନ କଳା । ଏହାର ସଫଳତା ଓ ସାର୍ଥକତା ବିଷୟରେ ଅନେକ ସନ୍ଦିହାନ । ସର୍ଜନା ସାହିତ୍ୟ, ବିଶେଷତଃ କବିତାରେ ଆକୃତି ଓ କବିଙ୍କ ଅଭିପ୍ରାୟ ପ୍ରଧାନ ବସ୍ତୁ । ଅନୁବାଦରେ କବିତାର ଆକୃତି, ବା ଭାଷା ଓ ସ୍ୱରଶିଳ୍ପରେ କଳ୍ପିତ ବହିଃସୌନ୍ଦର୍ଯ୍ୟ ଓ କବିଙ୍କର ହୃଦୟର ଆଶା ଆକାଂକ୍ଷା ବା ଭାବ ସୌନ୍ଦର୍ଯ୍ୟ ମଧ୍ୟରେ ଥିବା ଐକ୍ୟ ଖଣ୍ଡିତ ହୁଏ । ଫଳରେ ତାହାର ମୌଳିକ ପ୍ରାଣଶକ୍ତି କ୍ଷୁଣ୍ଣ ହୁଏ ।

କବିତାର ଧ୍ୱନି ସୌନ୍ଦର୍ଯ୍ୟ ଓ ସଙ୍ଗୀତ କୌଣସି ଅନୁବାଦରେ ଫୁଟିବା ଅସମ୍ଭବ । ଏକଥା ସତ୍ୟ । ଅନୁବାଦରେ କେବଳ ଅର୍ଥ ସଙ୍ଗତି ରକ୍ଷା କରାଯାଇ ପାରେ । ଏଥିଲାଗି ଗୀତି କବିତା ଅପେକ୍ଷା, ଘଟଣା ବର୍ଣ୍ଣନାତ୍ମକ କାବ୍ୟ ଓ ନାଟକକୁ ଅନୁବାଦରେ ସହଜରେ

ଫୁଟାଇ ହୁଏ । ଗୀତି କବିତାର ସରଳ ଅର୍ଥ ବ୍ୟକ୍ତୀତ ଏଥି ସହିତ ନିବିଡ଼ ଭାବରେ ସଂଶ୍ଳିଷ୍ଟ କବିଙ୍କ ଅନୁଭୂତି ପ୍ରକାଶ କରି ହୁଏ ନାହିଁ । ମାତ୍ର ଯେଉଁ କବିତାର ଭାବ ଗମ୍ଭୀର, ଆବେଦନ ସାର୍ବଜନୀନ,—ତାହାର ଜ୍ୟୋତି ଅନୁବାଦରେ ମଧ୍ୟ ଅମଳିନ ରହେ । ଏଥିଲାଗି ପ୍ରାଚୀନ ଧର୍ମ କବିତା, ଗୀତାର ଶ୍ଳୋକ ଓ ବାଇବେଲର ସ୍ତୋତ୍ର ସଙ୍ଗୀତମାନ ଭିନ୍ନଭିନ୍ନ ଭାଷାରେ ଅନୂଦିତ ହୋଇ ମୌଳିକ ଗ୍ରନ୍ଥ ଭଳି ଆଦର ଲାଭ କରିଅଛି ।

ବ୍ୟାପକ ଦୃଷ୍ଟିରେ ଦେଖିଲେ, ଅନୁବାଦ ଓ ଆହରଣ ମାନବ ମନର ଏକ ସ୍ୱାଭାବିକ ଗୁଣ । ଏକା ଦେଶର ଏକ ଭାଷାଭାଷୀ ଲେଖକ ଓ ପାଠକଙ୍କ ମଧ୍ୟରେ ଏଇ ଭାବରେ ଦେଖିଲେ, ପ୍ରତି ନିୟତ ଅନୁବାଦ ଆବଶ୍ୟକ ହୋଇଥାଏ । ଲେଖକ ଠିକ୍ ଯେଉଁ ଭାବରେ ରଚନା କରନ୍ତି, ପାଠକ ତାହାକୁ ଠିକ୍ ସେହି ଭାବରେ ଗ୍ରହଣ କରନ୍ତି ନାହିଁ । ସେ ନିଜର ରୁଚି, ମାନସିକ ଶକ୍ତି ଓ ପରିବେଶର ପ୍ରଭାବ ଅନୁସାରେ ସେଥିର ମର୍ମ ଗ୍ରହଣ କରନ୍ତି । ଲିଖିତ ସାହିତ୍ୟ ମାଧ୍ୟମରେ ଏକ ବ୍ୟକ୍ତି ସହିତ ଅନ୍ୟ ବ୍ୟକ୍ତିର, ଏକ ଯୁଗ ସହିତ ଅନ୍ୟ ଯୁଗର, ଏକ ଦେଶ ସହିତ ଅନ୍ୟ ଦେଶର, ଏକ ଭାଷା ସହିତ ଅନ୍ୟ ଏକ ଭାଷାର ଭାବ ବିନିମୟ ସମ୍ଭବ ହେଉଅଛି । ଏହା ବିଶ୍ୱ ସାହିତ୍ୟର ମୂଳଦୁଆ ପକେଇଅଛି, ବିଶ୍ୱମାନସର ସୃଷ୍ଟି କରିଅଛି, ବିଶ୍ୱଭାବନାର କଳ୍ପନା ସାର୍ଥକ କରିଅଛି ।

ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ ଯୁଗେ ଯୁଗେ ପ୍ରତିଭାଶାଳୀ ଲେଖକମାନେ ଅନୁବାଦ, ଅନୁସରଣ ଓ ଆହରଣ ପ୍ରତି ଆକୃଷ୍ଟ ହୋଇଥାନ୍ତି । ପ୍ରାଚୀନ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସାହିତ୍ୟରେ ଏହାର ବହୁ ଦୃଷ୍ଟାନ୍ତ ରହିଅଛି । ଅନୁବାଦ ଭିତରେ ପ୍ରାଚୀନ ଗ୍ରୀକ୍ କବି-ମାନଙ୍କର ଭାବଧାରା ରୋମାନ୍‌ମାନଙ୍କ ଭିତରେ ଓ ରୋମାନ୍ ଭାବଧାରା ଆଧୁନିକ ଇଉରୋପୀୟ ଜାତିମାନଙ୍କ ଭିତରେ ପ୍ରସାରିତ ହୋଇ ଆଧୁନିକ ଇଉରୋପୀୟ ସାହିତ୍ୟ, ସଭ୍ୟତା ଓ ସଂସ୍କୃତିର ବିକାଶ ସାଧିତ ହୋଇଅଛି । ଏହି ଭାବରେ ଦେଖିଲେ ଆମ ଦେଶରେ ପ୍ରାଚୀନ ବୈଦିକ ଓ ପ୍ରାକୃତିକ କବିଙ୍କ ଭାବଧାରା ସଂସ୍କୃତ ପୁରାଣ ଓ କାବ୍ୟର କବିଙ୍କ ଭିତରେ ଓ ପୁରାଣ କବିଙ୍କ ଭାବଧାରା ଆଧୁନିକ ଭାରତୀୟ ଭାଷାର କବିମାନଙ୍କ ରଚନାରେ ପ୍ରତିଫଳିତ ହୋଇ ଆଜି ପର୍ଯ୍ୟନ୍ତ ଆମର ମାନସିକ ଦିଗବଳୟକୁ ଆଲୋକିତ କରୁଅଛି ।

ଦେଶ ଓ କାଳର ରୁଚି ଅନୁଯାୟୀ ସଂଶୋଧନ ଓ ପରିବର୍ତ୍ତନ ଦ୍ୱାରା ମୂଳ ଗ୍ରନ୍ଥକୁ ଯୁଗୋପଯୋଗୀ କରି ଅନୁବାଦରେ ପ୍ରକାଶ କରାଯାଇ ପାରେ । ଫଳରେ ମୂଳଗ୍ରନ୍ଥ ଅପେକ୍ଷା ଅନୁବାଦ ଏକ ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀରେ ଅଧିକ ଆଦର ଓ ଜନପ୍ରିୟତା ଲାଭ କରେ । ଇଉରୋପରେ ଏଥିଲାଗି ହୋମାର ଓ ଦାନ୍ତେଙ୍କ କବିତା ପ୍ରତି ଭାଷାରେ ପ୍ରତିଯୁଗରେ ସ୍ୱତନ୍ତ୍ର ଅନୁବାଦରେ ପ୍ରକାଶ ପାଇଅଛି । ଆମ ଦେଶରେ ରାମାୟଣ ଓ ମହାଭାରତର ସବୁ ଭାଷାରେ ଅନୁବାଦ କରା ହୋଇଅଛି । ଓଡ଼ିଆ ସାହିତ୍ୟର ଦୃଷ୍ଟାନ୍ତରେ ଦେଖିଲେ,

ସଂସ୍କୃତ ମହାଭାରତ ଓ ରାମାୟଣ ପଞ୍ଚଦଶ ଷୋଡ଼ଶ ଶତକର ସାରଳା, ବଳରାମଙ୍କ କୃତିରେ ଓ ଊନବିଂଶ ଶତକକୁ ଆଧୁନିକ ଲେଖକଙ୍କ ଲେଖନୀରେ ନିତ୍ୟ ନୂତନ ଭାବରେ ପ୍ରକାଶ ପାଇ ଅଧିକ ଜନପ୍ରିୟ ହୋଇଅଛି ।

ଗୋଟିଏ ପ୍ରତିଭାର ଭାବ ଯେତେବେଳେ ଅନ୍ୟ ପ୍ରତିଭାରେ ପ୍ରତିବିମ୍ବିତ ହୋଇ ଆତ୍ମପ୍ରକାଶ କରେ, ତାହା ରୂପ, ରୁଚି ଓ ଆଦର୍ଶରେ ଭିନ୍ନ ରଙ୍ଗ ଗ୍ରହଣ କରିଥିବାର ଦେଖାଯାଏ । ଏହି ଭାବରେ ଅନୁବାଦ ଓ ଆହରଣରେ ଅନେକ ପ୍ରକାର ବୈଚିତ୍ର୍ୟ ଦେଖିବାକୁ ମିଳେ । ସାଧାରଣତଃ ଅନୁବାଦ କହିଲେ, ମୂଳ ରଚନାର ଶିଳ୍ପଗତ ଆକୃତି, ଭାଷା ପ୍ରୟୋଗ ଭଙ୍ଗୀ ଓ ଅର୍ଥଗତ ଭାଷାନ୍ତର ବୁଝାଏ । ଏଇ ଭାବରେ ରାଧାନାଥଙ୍କ 'ମେଘଦୂତ', 'ତୁଳସୀ ସ୍ତବକ' ମଧୁସୂଦନଙ୍କ 'ଉତ୍ତର ରାମଚରିତ', ଅଯୋଧ୍ୟା 'ପ୍ରତ୍ୟାବର୍ତ୍ତନ', 'ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ' ପ୍ରଭୃତି ପୂର୍ଣ୍ଣ ଅନୁବାଦ । ମାତ୍ର ଯେଉଁଠାରେ କବିମାନେ ପୂର୍ବବର୍ତ୍ତୀ କବିମାନଙ୍କର ସଦୁକ୍ତି, ଉପମା ଓ ବର୍ଣ୍ଣନାକ୍ରମ ନିଜର ରଚନା ଭିତରେ ଗ୍ରହଣ କରିଥାନ୍ତି—ତାହାକୁ ଭାବଚ୍ଛାୟା ବା ଭାବ ଆହରଣ କୁହାଯାଇ ପାରେ । ଏଇ ପ୍ରକାର ଭାବଚ୍ଛାୟା ରାଧାନାଥଙ୍କ କାବ୍ୟାବଳୀରେ ସର୍ବତ୍ର ବିଛେଇ ହୋଇପଡ଼ିଅଛି । ଏହା କବିବରଙ୍କ ଜ୍ଞାନକୃତ ବା ବହୁପଠନର ପ୍ରଭାବଜନିତ ହୋଇପାରେ । ଏଇ ଭାବରେ ରାଧାନାଥଙ୍କ ଉପରେ ଭବଭୂତି ଓ କାଳିଦାସଙ୍କ ପ୍ରଭାବ ସ୍ୱତନ୍ତ୍ର ଅଧ୍ୟୟନର ବସ୍ତୁ ।

## ରାଧାନାଥଙ୍କ ଆହରଣରେ ଭବଭୂତି ଓ କାଳିଦାସ

ଭବଭୂତି ଓ କାଳିଦାସ ସଂସ୍କୃତ କାବ୍ୟଜଗତର ସିଂହାସନରେ ଅସପତ୍ନ ସମ୍ରାଟ । ରାଧାନାଥ ପ୍ରକୃତି ଚିତ୍ରଣରେ, ଉପମା ପ୍ରୟୋଗରେ, ଭାଷା ବିନ୍ୟାସରେ, ସଦୁକ୍ତି ରଚନାରେ ଓ ସାର୍ବଜନୀନ ସତ୍ୟର ଅବତାରଣାରେ ଏହି ଦୁଇ କବିଙ୍କ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି ।

ଚିଲିକାରେ ଦଣ୍ଡକାରଣ୍ୟ ଓ ଗୋଦାବରୀ ବର୍ଣ୍ଣନା ପ୍ରସଙ୍ଗରେ ରାଧାନାଥ ନାନା ଭାବରେ ଭବଭୂତିଙ୍କଠାରେ ଋଣୀ । ଭବଭୂତିଙ୍କ ଶ୍ଳୋକର ଭାବ, ବର୍ଣ୍ଣନା ଓ ପଦ ବିନ୍ୟାସ ପର୍ଯ୍ୟନ୍ତ ଗ୍ରହଣ କରିଅଛନ୍ତି ।

ଦୃଷ୍ଟାନ୍ତ—

ଏତେ ତେ କୁହରେଷୁ ଗଦ୍‌ଗଦନଦଦ୍‌ଗୋଦାବରୀବାରୟୋ
ମେଘାଲଙ୍କୃତ ମୌଳିନୀଳଶିଖରାଃ କ୍ଷୌଣୀଭୃତୋ ଦକ୍ଷିଣାଃ ।

ଉତ୍ତର ରାମ ଚରିତ-୨ୟ ଅଙ୍କ-୩୦

ଉପରୋକ୍ତ ଶ୍ଳୋକର ଛାୟା ଚିଲିକାର ନିମ୍ନ ବର୍ଣ୍ଣନା ସହିତ ତୁଳନୀୟ —

ଭୀଷଣ କନ୍ଦର ମଧ୍ୟେ ବସି ତହିଁ

ଗଦ୍‌ଗଦ ଶବଦେ ଗୋଦାବରୀ ଯହିଁ
କୁହରେ ପଡ଼ୁଛି ଭୁଗୁ ଦେଦେ ଝଣ,

ଚିଲିକା—ରା· ଗ୍ର·—ପୃ ୧୫୦

ଶୂଦ୍ରତପୀ ଶମ୍ବୁକ ଦଣ୍ଡକାରଣ୍ୟର ଦୃଶ୍ୟ ଦେଖାଇବା ବେଳେ ଖର, ତ୍ରିଶିର ଓ ଦୂଷଣ ଆଦି ଅସୁରଙ୍କ ବଧ କଥା ମନେ ପକେଇ ଦେବାରେ ରାମଚନ୍ଦ୍ର ଖର ରାକ୍ଷସ ବାସସ୍ଥଳୀ ଜନସ୍ଥାନ ଦେଖିବାକୁ ଇଚ୍ଛା ପ୍ରକାଶ କରି କହିଥିଲେ—

ପଶ୍ୟାମି ଚ ଜନସ୍ଥାନଂ ଭୂତପୂର୍ବ ଖରାଲୟମ୍ ।

ଉ ରା· ଚରିତ-୨ୟ ଅଙ୍କ-୧୭

ଚିଲିକାରେ ଏହି ପୌରାଣିକ ଘଟଣା ବିବୃତି କରିବାର ବିଶେଷ ପ୍ରୟୋଜନ ନଥିଲେ ମଧ୍ୟ ଦଣ୍ଡକାରଣ୍ୟ ବର୍ଣ୍ଣନା ପ୍ରସଙ୍ଗରେ

"ଦୂଷଣ-ତ୍ରିଶିର-ଖର-ଅଧ୍ୟାସିତ
ଜନସ୍ଥାନ ତାରି ଥିଲି ସନ୍ନିହିତ" ବୋଲି ଲେଖିଛନ୍ତି ।

ଚିଲିକା-ରା· ଗ୍ର—ପୃ ୧୫୦

ଉତ୍ତରରାମଚରିତରେ ଦଣ୍ଡକାରଣ୍ୟ ବର୍ଣ୍ଣନା ପ୍ରସଙ୍ଗରେ ରାମଚନ୍ଦ୍ରଙ୍କ ମୁଖରେ ତୀର୍ଥ ଓ ଋଷିମାନଙ୍କର ଆଶ୍ରମର ଚିତ୍ର ଦେଖାଇବା ସ୍ୱାଭାବିକ ହୋଇଅଛି । ଏହା ରାମାୟଣ ଯୁଗର ସ୍ମୃତି ଉଦ୍‌ବୋଧନ କରେ । ମାତ୍ର ଆଧୁନିକ ଯୁଗରେ ଜଣେ ଦର୍ଶକ ଯଦି ଦାକ୍ଷିଣାତ୍ୟର ବନଭୂମିର ଶୋଭା ଦେଖିବାକୁ ଯାଏ, ସେ ଅରଣ୍ୟର ନିର୍ଜନତା, ପର୍ବତ ଓ ଗୁହାର ସୌନ୍ଦର୍ଯ୍ୟ ଉପଭୋଗ କରିପାରେ । ମାତ୍ର ସେଠାରେ ସେ କେଉଁ ଋଷି ଆଶ୍ରମ ଦେଖିବାକୁ ପାଇବ ? ଏହି ଭାବ ଅସଙ୍ଗତି ପ୍ରତି କୌଣସି ଦୃଷ୍ଟିପାତ ନ କରି ଯେତେଦୂର ଅନୁମାନ ହୁଏ କେବଳ ବର୍ଣ୍ଣନାର ମୋହରେ ଭବଭୂତିଙ୍କୁ ରାଧାନାଥ ଅନୁକରଣ କରିଛନ୍ତି ।

ଭବଭୂତି— ଏତେ ତୀର୍ଥାଶ୍ରମଗିରିସରିଦ୍‌ଗର୍ତ୍ତକାନ୍ତାରମିଶ୍ରାଃ
ସଂଦୃଶ୍ୟନ୍ତେ ପରିଚିତଭୁବୋ ଦଣ୍ଡକାରଣ୍ୟଭାଗାଃ ।

ଉ· ରା· ଚରିତ ୨ୟ ଅ:--୧୪

ରାଧାନାଥ— ଭ୍ରମିଲି ଦକ୍ଷିଣାପଥେ ଉପତ୍ୟକା
ଝିଲ୍ଲି-ଝଂକାରିତ ଅଟବୀ ଦଣ୍ଡକା,
ତୀର୍ଥାଶ୍ରମ, ଗିରି, ତଟିନୀ, କନ୍ଦରା—
ମହାରଣ୍ୟମାଳେ ଚିତ୍ର କଳେବରା,

ଚିଲିକା-ରା.ଗ୍ର.—ପୃ୧୫୦

ସଖୀ ବାସନ୍ତୀ ରାମଙ୍କ ମନରେ ପଞ୍ଚବଟୀ ସହିତ ଜଡ଼ିତ ସୀତାଙ୍କ ସ୍ମୃତିର ଉଦ୍‌ବୋଧନ ଲାଗି ସୀତା ଯେଉଁ ମୟୂର ପାଳନ କରିଥିଲେ, ଯେଉଁ ମୃଗକୁ ତୃଣାଙ୍କୁର ଦେଉଥିଲେ, ଯେଉଁ ହସ୍ତୀକୁ କମଳ ମୃଣାଳ ଦେଇ ବଢ଼େଇଥିଲେ, ସେମାନଙ୍କୁ ଦେଖାଇ ଦେଇଛନ୍ତି । ଚିଲିକାର ଦଣ୍ଡକାରଣ୍ୟ ବର୍ଣ୍ଣନାରେ ଓ ମହାଯାତ୍ରାର ଦକ୍ଷିଣାପଥ ବର୍ଣ୍ଣନାରେ ରାଧାନାଥ ସୀତାଙ୍କ ପାଳିତ ମୟୂର ଓ ବୃଦ୍ଧ କୃଷ୍ଣସାରର ବର୍ଣ୍ଣନା କରିଅଛନ୍ତି ।

ଭବଭୂତି—କରକମଳବିତୀର୍ଣ୍ଣୈରମ୍ବୁନୀବାରଶଷ୍ପୈ—
ସ୍ତରୁଶକୁନିକୁରଙ୍ଗାନ୍ ମୈଥିଲୀ ଯାନପୁଷ୍ୟତ୍ ।

ଉ. ରା. ଚ. ୩ୟ ଅ: ୨୫

ରାଧାନାଥ— ଯହିଁ ମେଘାଲୋକେ ପ୍ରଫୁଲ୍ଲ ଅନ୍ତର
ମୈଥିଲୀ-ପାଳିତ କେକୀ-ବଂଶଧର
ନାଚେ ନୃତ୍ୟକାଙ୍କ୍ଷୀ ନୀଳକଣ୍ଠ-କେକା
ଅଦ୍ୟାପି ସୂଚଇ ରାମାଶ୍ରମ ରେଖା ;

ଚିଲିକା-ରା· ଗ୍ର-ପୃ ୯୫୦

ଦୟାବତୀ ମୈଥିଲୀର ଶ୍ରୀହସ୍ତ ପାଳିତ
ଅଦ୍ୟାପି ଏ ବନେଛନ୍ତି ବୃଦ୍ଧ କୃଷ୍ଣସାର ।

ମହାଯାତ୍ରା-ରା· ଗ୍ର—୯୮୯

ଭବଭୂତିଙ୍କ ଜନସ୍ଥାନ ବର୍ଣ୍ଣନାରେ ଥିବା—

"ସ୍ୱେଚ୍ଛା ସୁପ୍ତଗମ୍ଭୀରଘୋଷଭୁଜଗଶ୍ୱାସପ୍ରଦୀପ୍ତାଗ୍ନୟଃ ।" ପଦଟି

(ଉ· ରା· ଚ· ୨ୟ ଅ: ୧୬)

ରାଜସ୍ଥାନର ରୁକ୍ଷ ପର୍ବତ ଶ୍ରେଣୀ ବର୍ଣ୍ଣନାରେ ରାଧାନାଥ ନିମ୍ନ ପ୍ରକାରରେ ବ୍ୟବହାର କରିଅଛନ୍ତି—"ଦରୀଶାୟି-ଭୁଜଙ୍ଗ-ଶ୍ୱାସେ ବିଷମୟ ।" (ଚିଲିକା-ରା. ଗ୍ର-୯୫୦)

ଉତ୍ତର ରାମଚରିତରେ ଦ୍ୱିପ୍ରହର ବର୍ଣ୍ଣନାରେ ସଖୀ ବାସନ୍ତୀ ହସ୍ତୀମାନେ କପୋଳ ଓ ଗଣ୍ଡର କଣ୍ଡୁ ନିବାରଣ ପାଇଁ ଦ୍ରୁମରାଜିରେ ଘଷି ହେବାରେ ସେଥିରୁ ପୁଷ୍ପସବୁ ଗୋଦାବରୀ ସ୍ରୋତରେ ଝଡ଼ି ପଡ଼ିବା କଥା କହିଛନ୍ତି । ମହାନଦୀର ସାତକୋଶିଆ ଗଣ୍ଡ ବର୍ଣ୍ଣନାରେ ରାଧାନାଥ ଏହିକଥା କହିଛନ୍ତି । ମାତ୍ର ଦ୍ୱିପ୍ରହର ତାପଜନିତ ହସ୍ତୀଙ୍କର ଗଣ୍ଡ ଓ କପୋଳ କଣ୍ଡୁ ହେବା କଥାର ସୂଚନା ରାଧାନାଥଙ୍କ ବର୍ଣ୍ଣନାରେ ନାହିଁ । ଏଠାରେ ମଧ୍ୟ ରାଧାନାଥ ଭବଭୂତିଙ୍କର ଅନେକ ଶବ୍ଦ ଯୋଜନାକୁ ଅକ୍ଷୁଣ୍ଣ ରଖିଅଛନ୍ତି ।

ଭବଭୂତି—କଣ୍ଡୂଲଦ୍ୱିପଗଣ୍ଡପିଣ୍ଡକଷଣୋତ୍କମ୍ପେନ ସମ୍ପାତିଭି-
ର୍ଘର୍ମସ୍ରଂସିତବନ୍ଧନୈଃ ସ୍ୱକୁସୁମୈରର୍ଚ୍ଚନ୍ତି ଗୋଦାବରୀମ୍ ।

ଉ· ରା· ଚ. ୨ୟ ଅ:—୯

ରାଧାନାଥ — ବନଗଜ ବ୍ରଜ—

କଣ୍ଡୂଳ-କପୋଳ-ପିଣ୍ଡ-ଘର୍ଷଣେ କମ୍ପିତ
ଦ୍ରୁମାବଳୀ ଦେହୁ ଯହିଁ ଝରଇ ପ୍ରବାହେ
ସୁରଭି ଅରଣ୍ୟପୁଷ୍ପ ପୁଞ୍ଜ ପୁଞ୍ଜ ହୋଇ,
ବନ ଦେବୀଙ୍କର କି ସେ ଅର୍ଘ୍ୟ-ଲଜାଞ୍ଜଳି ?

ମହାଯାତ୍ରା-ରା· ଗ୍ର-ପୃ୯୭୭

ଭବଭୂତିଙ୍କ ଭଳି କାଳିଦାସଙ୍କ ଛାୟା ମଧ୍ୟ ରାଧାନାଥଙ୍କ ପ୍ରକୃତି ବର୍ଣ୍ଣନାରେ ପଡ଼ିଅଛି । ରଘୁବଂଶରେ ସମୁଦ୍ର ବର୍ଣ୍ଣନାର ପ୍ରଭାବ ଚିଲିକାରେ ଦେଖିବାକୁ ମିଳେ । ସମୁଦ୍ରରେ ବୁଡ଼ି ରହି ଉପରକୁ ଶିର ଟେକିଥିବା ପର୍ବତ ସମ୍ବନ୍ଧରେ କାଳିଦାସ ଯେଉଁ ପୁରାଣ ଆଖ୍ୟାନର ଅବତାରଣା କରିଅଛନ୍ତି, ରାଧାନାଥ ମଧ୍ୟ ତାହାହିଁ କରିଛନ୍ତି ।

କାଳିଦାସ—ପକ୍ଷଚ୍ଛିଦା ଗୋତ୍ରଭିଦାତ୍ତଗନ୍ଧାଃ ଶରଣ୍ୟମେନଂ ଶତଶୋମହୀଧ୍ରାଃ
ନୃପା ଇବୋପପ୍ଲବିନଃ ପରେଭ୍ୟୋ ଧର୍ମୋତ୍ତରଂ ମଧ୍ୟମମାଶ୍ରୟନ୍ତେ ।

ରଘୁବଂଶ ୧୩ଶ—୭

ରାଧାନାଥ – ପକ୍ଷଚ୍ଛେଦ-ଶଙ୍କା-ଭୟେ କି ଶଇଳେ
ଲୁଚି ରହିଥିଲେ ତୋହର ସଲିଳେ ?

ରା. ଗ୍ର.—ପୃ୧୪୯

ସମୁଦ୍ର ବର୍ଣ୍ଣନାରେ ଦିଗ୍‌ବଳୟର ଦୃଶ୍ୟ—

କାଳିଦାସ—ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ ତମାଲତାଳୀବନରାଜିନୀଳା ।
ଆଭାତି ବେଳା ଲବଣାମ୍ବୁରାଶେର୍ଧାରାନିବଦ୍ଧେବ କଳଙ୍କରେଖା ।

ରଘୁବଂଶଂ-୧୩ଶ-୧୫

ରାଧାନାଥ— ଯହିଁ ଚକ୍ରବାଳେ ଅସ୍ପଷ୍ଟ ପ୍ରଭ
ନୀଳାଣ୍ଡବ ଦେହେ ଲଗ୍ନ ନୀଳ ନଭ ;

ଚିଲିକା ରା. ଗ୍ର.—ପୃ୧୫୧

କାଳିଦାସଙ୍କ ରଘୁବଂଶର ପମ୍ପାସର ବର୍ଣ୍ଣନା ସହିତ ରାଧାନାଥଙ୍କ କେଦାର ଗୌରୀର ବନ୍ଧୁ ସରୋବର ବର୍ଣ୍ଣନା ତୁଳନୀୟ । ଆକାଶରେ ପୁଷ୍ପକ ବିମାନରେ ଉଡ଼ୁଥିବା ବେଳେ ଘନ ବନ ଆଚ୍ଛାଦିତ ପମ୍ପାସରର ଜଳରାଶି ରାମଚନ୍ଦ୍ରଙ୍କୁ ବିନ୍ଦୁ ବିନ୍ଦୁ ମେଘଦ୍ୱାରା ଆଚ୍ଛନ୍ନ ଇନ୍ଦୁବିମ୍ବ ଭଳି ଦେଖାଯାଇଛି । ଅବଶ୍ୟ ରାଧାନାଥଙ୍କ ବର୍ଣ୍ଣନାରେ କେତେକ ବୈଶିଷ୍ଟ୍ୟ

ରହିଅଛି । ଜଳଭାଗ, ସୌଧ ଓ ବନ ଗୋଟିକ ପରେ ଗୋଟିଏ ସ୍ତରର ତୁଳନା ଚନ୍ଦ୍ର, ଚନ୍ଦ୍ର ଗୃହପାଖର ଧଳା ମେଘମାଳା ଓ ନଭଦେଶ ମଧ୍ୟରେ ରାଧାନାଥ ଖୋଜିଛନ୍ତି ।

କାଳିଦାସ —ଏତନ୍ନୃନେମୀନନ ଶାତକର୍ଣ୍ଣେଃ ପଞ୍ଚାପ୍‌ସରୋ ନାମ ବହାରବାର
ଆଭାତି ପର୍ଯ୍ୟନ୍ତବନଂ ବିଦୂରାତ୍‌ମେଘାନ୍ତରାଲକ୍ଷ୍ୟମିବେନ୍ଦୁବିମ୍ବମ୍ ।
ରଘୁବଂଶଂ-୧୩ଶ ସର୍ଗ-ଶ୍ଳୋକ-୩୮

ରାଧାନାଥ —ବନ୍ଦୁ ସରୋବର ଗୃହପାଶେ ସୌଧ ସୌଧ ଅନ୍ତେ ଘୋରବନ
ଇନ୍ଦୁ ଗୃହଦଗେ ଧଳା ମେଘମାଳା ନୀଳ ଗଗନେ ଯେସନ ।
କେଦାର ଗୌରୀ-ରା· ଗ୍ର. ପୃ: ୪୧

ଶରତ ଋତୁରେ ଅଗସ୍ତି ଉଦୟ ହେଲେ ଆବିଳ ଜଳ ନିର୍ମଳ ହୋଇଯାଏ । ଏହା ଏକ ପ୍ରାଚୀନ କବି ପ୍ରସିଦ୍ଧି । ରାମ ସୀତାଙ୍କୁ ଅଗସ୍ତି ଋଷିଙ୍କ କଥା କହିଲା ବେଳେ କାଳିଦାସ ଏହାକୁ ବ୍ୟବହାର କରିଛନ୍ତି । ରାଧାନାଥ ଚିଲିକାର ଶରତ ବର୍ଣ୍ଣନାରେ ଏହା ଦେଇଛନ୍ତି ।

କାଳିଦାସ "ତସ୍ୟାବିଲାମ୍ଭଃପରିଶୁଦ୍ଧି ହେତୋଃ" (ରଘୁବଂଶ· ୧୩ଶ-୩୬) ଲେଖିଲାଭଳି ରାଧାନାଥ "କଳୁଷିତ ବାରି କଳୁଷ ହାରକ" (ଚିଲିକା-ରା.ଗ୍ର.ପୃ.୧୫୬) ଲେଖିଛନ୍ତି ।

ଋଷି ଆଶ୍ରମରୁ 'ହୋତାଗ୍ନି ଧୂମ' ଉଠୁଥିବା କଥା କାଳିଦାସଙ୍କ ଭଳି ମହାଯାତ୍ରାରେ ରାଧାନାଥ ବର୍ଣ୍ଣନା କରିଛନ୍ତି । କାଳିଦାସଙ୍କ ଶବ୍ଦହିଁ ଏଠାରେ କବି ଗ୍ରହଣ କରିଛନ୍ତି ।

ହୋତାଗ୍ନି ଧୂମାଗ୍ରମନିନ୍ଦ୍ୟକୀର୍ତ୍ତେଃ (ରଘୁବଂଶ,-୧୩ଶ-୩୭)

"ଉଠୁଛି ହୋତାଗ୍ନି-ଧୂମ ତପସ୍ୱି-ଆଶ୍ରମେ" (ମହାଯାତ୍ରା-ରା.ଗ୍ର. ପୃ୧୮୦)

ବଟବୃକ୍ଷର ମରକତ ମଣି ବର୍ଣ୍ଣର ପତ୍ର ଓ ପଦ୍ମରାଗ ଭଳି ଫଳର ବର୍ଣ୍ଣନା କାଳିଦାସଙ୍କ ଛାୟାରେ ରାଧାନାଥ କରିଛନ୍ତି । ଏଠାରେ ମଧ୍ୟ କାଳିଦାସଙ୍କ ଶବ୍ଦଯୋଜନାର କ୍ରମ ରାଧାନାଥ ଗ୍ରହଣ କରିଛନ୍ତି ।

କାଳିଦାସ— ତ୍ୱୟା ପୁରସ୍ତାଦୁପଯାଚିତୋ ଯଃ
ସୋଽୟଂ ବଟଃ ଶ୍ୟାମ ଇତି ପ୍ରତୀତଃ
ରାଶିର୍ମଣୀନାମିବ ଗାରୁଡାନାଂ
ସପଦ୍ମରାଗଃ ଫଳିତୋ ବିଭାତି ।
(ରଘୁବଂଶ-୧୩ଶ-୫୩)

ରାଧାନାଥ— ବିନ୍ଧ୍ୟଦ୍ରୁମ ଯାର ଯୋଗ୍ୟ ପୂର୍ବବନ୍ତ
ଭୂସ୍ବର୍ଣ୍ଣୀ ଓଡ଼ଳ କ୍ରମେ ପରିଣତ,
ମରକତ-ପର୍ଣ୍ଣେ, ପଦ୍ମରାଗଫଳେ
ଯା ବିରଚିତ ଗ୍ରାମ ସୀମାନ୍ତ ଉପଳେ,

(ଚିଲିକା-ରା. ଗ୍ର. ପୃ: ୧୫୨)

କାଳିଦାସଙ୍କ ଗଙ୍ଗାଯୁକ୍ତ ଯମୁନାକୁ ଅବନୀର ବେଣୀ ରୂପେ ଯେପରି ଦେଖିଛନ୍ତି, ମଥୁରାର ଜଗତୀ ଉପରୁ ରାଧାନାଥଙ୍କ ମହାଯାତ୍ରାର ବର୍ଣ୍ଣନାରେ ଯାଦବୀ ଯୁବତୀଗଣ ଯମୁନାକୁ ସେହି ରୂପରେ ଦେଖିଛନ୍ତି । ଏଠାରେ କାଳିଦାସଙ୍କର 'ଚକ୍ରବାକଜଘନ', ହେମଭକ୍ତିମତୀ' ଆଦି ଶବ୍ଦ ରାଧାନାଥ ଗ୍ରହଣ କରିଛନ୍ତି ।

ତସ୍ୟ ସୌଧଗତଃ ପଶ୍ୟନ୍ ଯମୁନାଂ ଚକ୍ରବାକଜଘନାମ୍
ହେମଭକ୍ତିମତୀଂ ଭୂମେଃ ପ୍ରବେଣୀମିବ ପିପ୍ରିୟେ ।

(ରଘୁବଂଶଂ ୧୫ଶ-୩୦)

ରାଧାନାଥ—

ମଥୁରା କଳ୍ପଷହର ଜଗତୀରୁ ଯହିଁ
ଦେଖୁଥିଲେ କୁତୂହଳେ ଯାଦବୀ ଯୁବତୀ,
ଘନ-ନୀଳଦ୍ୟୁତି ଚକ୍ରବାକଜଘନ ଯମୁନା,
ହେମଭକ୍ତିମତୀ କି ସେ ଅବନୀର ବେଣୀ ।

(ମହାଯାତ୍ରା ରା.ଗ୍ର. ପୃ: ୧୭୩-୭୪)

ମେଘଦୂତରେ ବିଶାଳ ନଗର ବର୍ଣ୍ଣନାର ପ୍ରଭାବ ନନ୍ଦିକେଶ୍ୱରୀର ଖେମିଣ୍ଡି ବର୍ଣ୍ଣନାରେ ପଡ଼ିଛି ।

କାଳିଦାସ—ସ୍ୱଳ୍ପୀଭୂତେ ସୁଚରିତଫଳେ ସ୍ୱର୍ଗିଣାଂ ଗାଂ ଗତାନାମ୍
ଶେଷୈଃ ପୁଣ୍ୟୈର୍ହୃତମିବ ଦିବଃ କାନ୍ତିମତ୍ ଖଣ୍ଡମେକମ୍ ।

(ମେଘଦୂତ: ପୂ: ମେଘ-ଶ୍ଳୋ ୩୦)

ରାଧାନାଥ— ସ୍ୱର୍ଗ ଖଣ୍ଡେ ପଡ଼ିଥିଲା ପ୍ରାୟେ ଛିଡ଼ି,
ଶୈଳେ, ସ୍ରୋତେ, ସରେ, ସୁରମ୍ୟ ଖେମିଣ୍ଡି,

(ନନ୍ଦିକେଶ୍ୱରୀ ରା. ଗ୍ର. ପୃ: ୭୧)

ଉର୍ବଶୀରେ ବସନ୍ତଋତୁର ଆଗମନ କାଳିନ ପ୍ରକୃତି ବର୍ଣ୍ଣନାରେ କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳାର କମ୍ପ ଶୋକର ଛାୟା ପଡ଼ିଅଛି ।

କାଳିଦାସ— ଭ୍ରମର ଇବ ବିଭାତେ କୁନ୍ଦମନ୍ତସ୍ତୁଷାରଂ
ନ ଖଲୁ ସପଦି ଭୋକ୍ତୁଂ ନୈବ ଶକ୍ନୋମି ମୋକ୍ତୁମ୍ ।
(ଅଭିଜ୍ଞାନ ଶକୁନ୍ତଳଂ ୫ମ ୧୯ ଶ୍ଳୋକ)

ରାଧାନାଥ ହେମ ଯୋଗ୍ୟ ଅଳ— ସଂଯୋଗ ବନ୍ଧନେ
ସୁନ୍ଦରୀ-ରଦନ-ଛବି
କୁନ୍ଦ ସୁନ୍ଦରୀଙ୍କ କଟାକ୍ଷ ଲକ୍ଷ୍ମୀର
ମାଳା ପାରି ନାହିଁ ଲଭି ।
( ରା. ଗ୍ର. ପୃ ୨୭୭ )

ଦୁଃଖରେ, ଶୋକରେ, ଆନନ୍ଦ ଉତ୍ସାହ ଆଦି ବିଭିନ୍ନ ଅବସ୍ଥାରେ ମନୁଷ୍ୟ ହୃଦୟର ଭାବ, ମୁଖ, ଶରୀର ଓ ରୂପ ଆଦି ବର୍ଣ୍ଣନା କରିବାରେ ଭବଭୂତିଙ୍କ ଲେଖନୀ ଅତି ନିପୁଣ । ରାଧାନାଥ ତାହାଙ୍କୁ ନାନା ସ୍ଥାନରେ ଅନୁକରଣ କରିଅଛନ୍ତି ।

ଉତ୍ତରରାମଚରିତରେ ପତ୍ନୀ ବିରହିତ ରାମଙ୍କ ଶୋକ ଯେପରି ଭବଭୂତି ବର୍ଣ୍ଣନା କରିଛନ୍ତି, ସେଇପରି ପ୍ରାଣପ୍ରିୟା କନ୍ୟାଙ୍କ ନିରୁଦ୍ଦେଶ ସମ୍ବାଦରେ ଶୋକାକୁଳିତା ପାର୍ବତୀଙ୍କର ଚିତ୍ର ରାଧାନାଥ ପ୍ରଦାନ କରିଅଛନ୍ତି—

ଭବଭୂତି— ଅନିର୍ଭିନ୍ନୋ ଗଭୀରତ୍ୱାଦନ୍ତର୍ଗୂଢ଼ଘନବ୍ୟଥଃ
ପୁଟପାକପ୍ରତୀକାଶୋ ରାମସ୍ୟ କରୁଣୋରସଃ ।
(ଉ. ରା. ଚ. ୩ୟ— ୧ଶ୍ଳୋକ)

ରାଧାନାଥ— ପୁଟ-ପାକ ପ୍ରାୟେ ଧୂପଟେ ଧୂପଟେ ଜଳୁଅଛୁ ମର୍ମସ୍ଥଳ,
ଧୈର୍ଯ୍ୟଶୀଳା ଧୈର୍ଯ୍ୟେ ଆବରି ସେ ଭାବ ବାହ୍ୟେ ଦିଶନ୍ତ ଶୀତଳ ।
(ରା.ଗ୍ର. ପୃ୧୧୭)

ପତି ଓ ପୁତ୍ର ବିରହିଣୀ ଜାନକୀଙ୍କ ରୂପ ବର୍ଣ୍ଣନା କରିବାକୁ ଯାଇ ଭବଭୂତି କହିଛନ୍ତି—

"କରୁଣସ୍ୟ ମୂର୍ତ୍ତିରିବ ବା ଶରୀରିଣୀ
ବିରହ ବ୍ୟଥେବ ବନମେତି ଜାନକୀ ।"
(ଉ. ରା. ଚ. ୩ୟ—୪ଶ୍ଳୋକ)

ପିତୃ ଶୋକରେ ବଧୂରା ଅନ୍ନପୂର୍ଣ୍ଣାର ରୂପ ରାଧାନାଥ ବର୍ଣ୍ଣନା କରିଛନ୍ତି—
ନୀଳ-ପକ୍ଷ୍ମମାଳେ ଅଶ୍ରୁବିନ୍ଦୁ ଝଳେ ସ୍ୱଚ୍ଛ ମୁକ୍ତାଫଳ ଜିଣି,
ଦିବ୍ୟୁଁ ଅବତୀର୍ଣ୍ଣ ଭବତଳେ, ଆହା, କରୁଣା କି ଶରୀରିଣୀ ?
(ରା.ଗ୍ର. ପୃ—୧୩୮)

ସୀତାଙ୍କର ମୃତ୍ୟୁ ଆଶଙ୍କା କରି ରାମଚନ୍ଦ୍ରଙ୍କୁ କାନ୍ଦିବାର ଦେଖି ଛାୟା ରୂପିଣୀ ସୀତା ଶୋକାକୁଳିତା ହେବାରେ ତମସା ସାନ୍ତ୍ୱନା ଦେଇ କହୁଅଛି

ପୂରୋତ୍ପୀଡ଼େ ତଡ଼ାଗସ୍ୟ ପରୀବାହଃ ପ୍ରତିକ୍ରିୟା
ଶୋକ କ୍ଷୋଭେ ଚ ହୃଦୟଂ ପ୍ରଲାପୈରେବ ଧାର୍ଯ୍ୟତେ ।

(ଉ. ରା. ଚ. ୩ୟ – ୨୯)

ପାର୍ବତୀ ପିତୃ ଶୋକରେ ମୁହ୍ୟମାନା ଅନ୍ନପୂର୍ଣ୍ଣାଙ୍କୁ ନିଜ ଦୁଃଖ କାହାଣୀ ଅଧିକ ପ୍ରକାଶ ନ କରିବାକୁ କହିବାରେ, ଅନ୍ନପୂର୍ଣ୍ଣା ପ୍ରକାଶରେ ଦୁଃଖ ଉପଶମ ହୁଏ ବୋଲି କହିଛି । ଭବଭୂତିଙ୍କ ବର୍ଣ୍ଣନାର ତଡ଼ାଗ ସ୍ଥାନରେ ରାଧାନାଥ ନଦୀକୁ ଗ୍ରହଣ କରିଛନ୍ତି ।

ଦେଖ ଗୋ ପ୍ରାବୃଟେ ତଟିନୀ ଯେସନ
ନପାରେ ବାରି ସମ୍ଭାଳି,
ଅସମ୍ଭାଳେ ହୁଦୁଁ ପୁର ପ୍ରବାହକୁ
ବେନି କୂଳେ ଦଏ ଢାଳି,
ଦୁଃଖୀ ସେହିପରି, ହୃଦେ ଯେବେ ତା'ର
ବଳିପଡ଼େ ହୃଦ ବ୍ୟଥା
ସମ-ଦୁଃଖୀ ଜନେ ହୃଦୟ ଫିଟାଇ
କହେ ନିଜ ଦୁଃଖ କଥା ।

(ରା. ଗ. ପୃ-୧୪୧)

କବି ଭବଭୂତିଙ୍କ ବିଷୟରେ ସୂତ୍ରଧର ମୁଖରେ ଏହା କୁହା ହୋଇଛି—

ଯଂ ବ୍ରହ୍ମାଣମିୟଂ ଦେବୀ ବାଗ୍‌ବଶ୍ୟେବାନୁବର୍ତ୍ତିତେ ।

(ଉ. ରା. ଚ. ୧ମ-୨ ଶ୍ଳୋକ)

ଚିଲିକାରେ ଚମ୍ପୂ କବି ବଳଦେବଙ୍କ ବିଷୟରେ ରାଧାନାଥ କହିଛନ୍ତି—

ଧନ୍ୟ ସେହି ଯାର ଆଜ୍ଞା ଶିରେ ଧରି
ଏ ଲୀଳା ରଚନ୍ତି ଦେବୀ ବାଗୀଶ୍ୱରୀ ।

(ରା. ଗ. ପୃ ୧୫୯)

ଲବର ବୀରତ୍ୱ ଓ ସାହସପୂର୍ଣ୍ଣ ମୂର୍ତ୍ତିକୁ ଦେଖି ଭବଭୂତି ରାମଚନ୍ଦ୍ରଙ୍କୁ କହିଛନ୍ତି—

ତ୍ରାତୁଂ ଲୋକାନିବ ପରିଣତଃ କାୟବାନସ୍ତ୍ରବେଦଃ
କ୍ଷାତ୍ରୋ ଧର୍ମଃ ଶ୍ରିତ ଇବ ତନୁଂ ବ୍ରହ୍ମକୋଷସ୍ୟ ଗୁପ୍ତ୍ୟୈ ।

(ଉ.ରା.ଚ. ୬ଷ୍ଠ-୯ ଶ୍ଳୋକ)

ଚିଲିକାରେ ପୁରୁଷୋତ୍ତମଦେବଙ୍କ ରୂପବର୍ଣ୍ଣନାରେ ରାଧାନାଥ—

ମୂର୍ତ୍ତି ପରିଗ୍ରହି ଉଦେ କି ସାହସ
କିବା କ୍ଷତ୍ର-ଧର୍ମ କିବା ବୀରରସ ? (ରା.ଗ.ପୃ:୧୭୬)

ପୁଣି - "ପ୍ରସନ୍ନ ସିଂହସ୍ତି ମିତଞ୍ଚ ବାକ୍ଷେତ" (ଭ.ବ୍ର.ଚ ୭ମ ୨୫ଶ୍ଳୋ) ସହିତ ରାଧାନାଥଙ୍କର "ଯୁବା ଦେବାକୃତି, ସିଂହ-ସିଂହାନନ" (ଚିଲ୍କା—ରା.ଗ. ୯୫୭) ପଂକ୍ତିକୁ ତୁଳନୀୟ ।

ନାରୀ ରୂପ ବର୍ଣ୍ଣନାରେ କାଳିଦାସ ଓ ରାଧାନାଥଙ୍କ ମଧ୍ୟରେ ଗଭୀର ସାମ୍ୟ ରହିଅଛି । ରାଧାନାଥ ନିଶ୍ଚିତଭାବେ ପ୍ରଭାବିତ ହୋଇ ଅଛନ୍ତି । ଇନ୍ଦୁମତୀ ସ୍ୱୟମ୍ବର ଦେଖିବା ଲାଗି ବାତାୟନ ପାଶରେ ରୁଣ୍ଡ ହୋଇଥିବା ବିଦର୍ଭ ମହିଳାଙ୍କର ଦୃଶ୍ୟ ଯେପରି କାଳିଦାସ ରଘୁବଂଶରେ ବର୍ଣ୍ଣନା କରିଛନ୍ତି, ଉଷାରେ ରାଧାନାଥ ଅନୁରୂପ ବର୍ଣ୍ଣନା ଦେଇଛନ୍ତି ।

କାଳିଦାସ ବିଲୋଲ ନେତ୍ର ଭ୍ରମରୈର୍ଗବାକ୍ଷାଃ ସହସ୍ର-ପତ୍ରାଭରଣା ଇବାସନ୍ ।
(ରଘୁବଂଶ ୭ମ—୧୧ଶ୍ଳୋ)

ରାଧାନାଥ – ବାତାୟନ ହେଲା ଲଳନା ନୟନେ କୁବଳୟିତ ।
(ରା. ଗ୍ର. ପୃ: ୫୯)

ଶକୁନ୍ତଳାଙ୍କୁ ଋଷି ଆଶ୍ରମରେ ଗଛରେ ପାଣି ଢାଳୁଥିବା ଅବସ୍ଥାରେ ଦେଖି ଦୁଷ୍ମନ୍ତ କହିଛନ୍ତି—

ଇଦଂ କିଲାବ୍ୟାଜ-ମନୋହରଂ ବପୁସ୍ତପଃ କ୍ଷମଂ ସାଧୟିତୁଂ ଯ ଇଚ୍ଛତି
ଧ୍ରୁବଂ ସ ନୀଲୋତ୍ପଳ-ପତ୍ର-ଧାରୟା ଶମୀଲତାଂ ଛେତ୍ତୁମୃଷିର୍ବ୍ୟବସ୍ୟତି ।
(ଅ. ଶ. ୧ମ ଅଙ୍କ—୧୭ ଶ୍ଳୋ:)

ଅରଣ୍ୟ ଭ୍ରମଣକାରିଣୀ ବିମଳାର ରୂପ ଦେଖି ଉତ୍କଳର ରାଜ ଅନ୍ତଃପୁରର ରୂପସୀମାନେ ଭାବିଛନ୍ତି—

ଏ ବାଳାକୁ ବନ-ବାସ ସହାଇଲେ ବିଧି ଆହାକି ବିଗ୍ଧରେ ?
ଶମୀ ଛେଦିବାକୁ ଲୋଡ଼ିଲେ କି ନା ସେ ନୀଳୋତ୍ପଳ-ଦଳ-ଧାରେ ।
(ରା. ଗ. ପୃ ୨୩୪)

ପୂର୍ବେ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଯେ, ମହାଯାତ୍ରାରେ ରାଧାନାଥଙ୍କ ସମର ବର୍ଣ୍ଣନା କାଳିଦାସ ଓ ଗତାନୁଗତିକ । ଏହି ଯୁଦ୍ଧ ବର୍ଣ୍ଣନାରେ ଇନ୍ଦୁମତୀ ସ୍ୱୟଂବର ପରେ ଅଜଙ୍କର ରାଜାମାନଙ୍କ ସହିତ ଯୁଦ୍ଧ ବର୍ଣ୍ଣନା ଅବଶ୍ୟ ସ୍ମରଣୀୟ । ନିମ୍ନ ଦୃଷ୍ଟାନ୍ତଗୁଡ଼ିକରୁ ଏହା ସ୍ପଷ୍ଟ ହୁଏ ।

କାଳିଦାସ—ପତ୍ତିଃ ପଦାତିଂ ରଥିନଂ ରଥେଶସ୍ତୁରଙ୍ଗସାଦୀ ତୁରଗାଧିରୂଢ଼ମ୍
ଯନ୍ତା ଗଜସ୍ୟାଭ୍ୟପତଦ୍‌ଗଜସ୍ଥଂ ତୁଲ୍ୟ ପ୍ରତିଦ୍ୱନ୍ଦ୍ୱ ବଭୂବ ଯୁଦ୍ଧଂ ।
(ରଘୁବଂଶ ୭ମ—୩୭ଶ୍ଳୋ)

ରାଧାନାଥ—ରଥୀ ସହ ରଥୀ ; ପଦାତି ପଦାତି ସହ, ସାଦୀ ସହ ସାଦୀ
ନିଷାଦୀ ନିଷାଦୀ ସହ ମିଶିଲେ ଆହବେ ।
(ମହାଯାତ୍ରା— ରା. ଗ୍ର. ପୃ: ୨୧୨)

କାଳିଦାସ—ଉତ୍ଥାପିତଃ ସ୍ୟନ୍ଦନ ରେଣୁରଶ୍ୱୈଃ ସାନ୍ଦ୍ରୀକୃତଃ ସ୍ୟନ୍ଦନବଂଶ ଚକ୍ରୈଃ
ବିସ୍ତାରିତଃ କୁଞ୍ଜରକର୍ଣ୍ଣତାଳୈର୍ନେତ୍ରକ୍ରମେଣୋପରୁରୋଧ ସୂର୍ଯ୍ୟମ୍ ।
(ରଘୁବଂଶ ୭ମ –୩୯ ଶ୍ଳୋ)

ରାଧାନାଥ—ଧୂଳିରାଶି ଅଶ୍ୱଖୁରେ ଉଠି;
ରଥଚକ୍ରେ ସାନ୍ଦ୍ର ହୋଇ, କରୀ କର୍ଣ୍ଣତାଳେ
ପ୍ରସରି, ଭାସ୍କର ବିମ୍ବ ରୋଧିଲା ଆକାଶେ,
ରଣ ଉତ୍ସବର ଯୋଗ୍ୟ ଚନ୍ଦ୍ରାତପ ରୂପେ ।
(ମହାଯାତ୍ରା—ରା. ଗ୍ର. ପୃ: ୨୯୨)

କାଳିଦାସ– ତନୁତ୍ରାଜା ବର୍ମଭୃତା ବିକୋଶୈ ର୍ବୃହତ୍ସୁ ଦନ୍ତେଷ୍ୱସିଭିଃ ପତଦ୍ଭିଃ
ଉଦ୍ୟନ୍ତମଗ୍ନିଂ ଶମୟାମ୍ବଭୂବୁର୍ଗଜା ବିବଗ୍ନାଃ କରଶୀକରେଣ ।
(ରଘୁବଂଶ ୭ମ—୪୮ ଶ୍ଳୋ)

ରାଧାନାଥ— ବିଘୂର୍ଣ୍ଣ ପରଶୁ
ପଡ଼ିଲା ଝନ୍‌ଝନେ ଠାଣେ ରିପୁବାରବାଣେ
ପ୍ରମତ୍ତ ମାତଙ୍ଗ ଦନ୍ତୁ ତୀବ୍ର ଅସ୍ତ୍ରାଘାତେ
ଅନଳ ସ୍ଫୁଲିଙ୍ଗ ଝଡ଼ି ଲିଭିଲା ତକ୍ଷଣେ
ଉଚ୍ଛ୍ୱାସେ ଉତ୍ଥିତ କର ଶୀକର ଆସାରେ ।
( ମହାଯାତ୍ରା– ରା. ଗ୍ର. ପୃ: ୨୯୨ )

**ରାଧାନାଥ ଓ ଶ୍ରୀହର୍ଷଙ୍କ ବର୍ଣ୍ଣନାରେ ସାମ୍ୟ**

ମହାଯାତ୍ରାର ଚତୁର୍ଥ ସର୍ଗରେ କଳି ଆଗମନ ପ୍ରସଙ୍ଗରେ ଶ୍ରୀହର୍ଷ ଓ ରାଧାନାଥଙ୍କ ବର୍ଣ୍ଣନାରେ ଗଭୀର ସାମ୍ୟ ଲକ୍ଷ୍ୟକରି ଶ୍ରୀ ଜଗଦାନନ୍ଦ ମହାନ୍ତି ଯଥାର୍ଥରେ କହିଛନ୍ତି—'ଏହି ବିଷୟରେ ନୈଷଧକାର ଶ୍ରୀହର୍ଷ ତାଙ୍କର ଗୁରୁ ।' ' (ରା, ଜୀବନୀ ପୃ:୭୫୭) । ରାଧାନାଥ ପୌରାଣିକ ଦେବ କଳ୍ପନା ସ୍ଥାନରେ ଧର୍ମ, ସତ୍ୟ, ସାହସ, ନ୍ୟାୟ ଆଦିର ପୌରୁଷବନ୍ତ ଚିତ୍ର ପ୍ରଦାନ କରି ନିଜର ମୌଳିକ କଳ୍ପନାର ପରିଚୟ ଦେଇଛନ୍ତି । କଳି ଓ ତାହାର ଅନୁଚର ବର୍ଗଙ୍କ ଚିତ୍ରରେ ଶ୍ରୀହର୍ଷଙ୍କର ଛାୟାମାତ୍ର ଗ୍ରହଣ କରିଛନ୍ତି । ମାତ୍ର ବଙ୍ଗ କବି ମାଇକେଲ ମଧୁସୂଦନ ଓ ପାଶ୍ଚାତ୍ୟ କବି ମିଲଟନଙ୍କ ଭାବ ଆହରଣ କରି ଏହାକୁ ପୁଷ୍ଟ ଓ ପୁଷ୍କଳ କରିଛନ୍ତି । ସମସ୍ତ ଆହରଣ ଓ ଅବଲମ୍ବନ ଭିତରେ ରାଧାନାଥଙ୍କ ସ୍ୱାତନ୍ତ୍ର୍ୟ ଏପରି ପ୍ରସ୍ଫୁଟିତ ହୋଇଛି ଯେ, ଏଥିରେ କୌଣସି ଏକ ନିର୍ଦ୍ଦିଷ୍ଟ କବିଙ୍କର ଏକକ ପ୍ରଭାବ କଳନା କରିବା କଠିନ । ତଥାପି ନିମ୍ନରେ କେତୋଟି ଦୃଷ୍ଟାନ୍ତରୁ ଶ୍ରୀହର୍ଷଙ୍କଠାରେ ରାଧାନାଥ କିପରି ଋଣୀ ତାହା କଳନା କରାଯାଇ ପାରେ ।

କାମ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀହର୍ଷ—

ସୁକୃତେ ବଃ କଥଂ ଶ୍ରଦ୍ଧା ସୁରତେ ଚ କଥଂ ନ ସା
ତତ୍ କର୍ମପୁରୁଷ କୁର୍ଯ୍ୟାଦ୍ ଯେନାନ୍ତେ ସୁଖମେଧତେ ।

(ନୈଷଧ—୧୭ । ୪୭)

ରାଧାନାଥ— ଏ ପ୍ରତ୍ୟକ୍ଷ ସ୍ୱର୍ଗ ଛାଡ଼ି କେଉଁ ଭ୍ରମେ ପଡ଼ି,
ହେ ଯତି, ନିରତେ ତୁମ୍ଭେ ରତ ଘୋର ତପେ
ଅପ୍ରତ୍ୟକ୍ଷ ଅନିଶ୍ଚିତ ସ୍ୱର୍ଗ ଭୋଗ ଆଶେ ?
କି ଭୋଗ ସେ ସ୍ୱର୍ଗେ ଅଛି ଏ ଭୋଗକୁ ବଳି ?

(ମହାଯାତ୍ରା-ରା. ଗ୍ର-ପୃ ୧୮୪)

କ୍ରୋଧ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀହର୍ଷ—

ବୈରାଗ୍ୟଂ ଯଃ କରୋତ୍ୟୁଚ୍ଚୈଃରଞ୍ଜନଂ ଜନୟନ୍ନପି
ସ୍ମୃତେ ସର୍ବେନ୍ଦ୍ରିୟାଚ୍ଛାଦ ପ୍ରଜ୍ୱଳନ୍ନପି ଯସ୍ତମଃ ।

(ନୈଷଧ-୧୭।୨୨)

ରାଧାନାଥ – ମହା ଭୟଙ୍କର ଶତ୍ରୁ ! ରକ୍ତିମା ଜନ୍ମାଇ
ଉପୁଯାଏ ବିରକ୍ତିକ, ବହ୍ନିଶିଖା ଜାଳି
ଉପୁଯାଏ ତମଃ, ଜ୍ଞାନ-ବିବେକ-ବିଲୋପୀ ;

(ମହାଯାତ୍ରା ରା. ଗ୍ର-ପୃ:୧୮୫)

ଲୋଭ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀହର୍ଷ –

ହସ୍ତୌ ବିସ୍ତାରୟନ୍ନିଭ୍ୟେ ବିଭ୍ୟଦର୍ଦ୍ଧ ପଥସ୍ଥବାକ୍ ।
ସ୍ମୃଚୟନ୍ କାକୁମାକୁତୈର୍ଲୋଭସ୍ତତ୍ର ବ୍ୟଲୋକି ତୈଃ । ୨୪
ଦୈନ୍ୟସ୍ତୈନ୍ୟମୟ୍ୟା ନିତ୍ୟମତ୍ୟାହ୍ୱାରାମୟ୍ୟାବନଃ
ଭୂଜ୍ଞାନ-ଜନ-ସାକୂତ-ପଶ୍ୟାଯସ୍ୟାନୁଜୀବନଃ ।। ୨୫
ଧନଦାନାମ୍ନୁତ୍ପେକ୍ଷ୍ୟୋର୍ଯଃ ପାତ୍ରପାଣୀବଲଗ୍ରହଃ
ସ୍ୱାନ୍ ଦାସାନିବ ହା ନିଃସ୍ୱାନ୍ ବନ୍ଦୀଣୀତେଽର୍ଥବସ୍ତୁଯଃ । ୨୭

× × × × ×

ଯଃ ସର୍ବେନ୍ଦ୍ରିୟସନ୍ନାପି ଜିହ୍ୱାଂ ବହୁବଲମ୍ନତେ
ଲସ୍ୟାମାଗ୍ରସ୍ତଂକଂ ଯାଚଞ୍ଚା-ପଞ୍ଚବେ ବଟବେଽର୍ଜିତୁମ୍ ।।' ୨୮

(ନୈଷଧ ଚରିତମ୍ ୧୭ଶ ସର୍ଗଃ)

ରାଧାନାଥ—
...'ଲୋଭ' ସଦା ପ୍ରସାରିଛି ପାଣି
ଭିକ୍ଷାଲାଗି, କାକୁ ବାଣୀ ନିରତେ ବଦନେ,

ସକଳ ଇନ୍ଦ୍ରିୟେ ସେହୁ କଲେହେଁ ବସତି,
ଶ୍ରଦ୍ଧା ସମଧିକ ତା'ର ରସନା ନିବାସେ ;
ଗୋଡ଼ାନ୍ତ ସଙ୍ଗତେ ଯାତଞ୍ଚାପଟୁ ବନ୍ଦୁଦଳ
ଅତ୍ୟାହାରେ ରୋଗୀ, ପୁଣି ରୋଗେ ଅତ୍ୟାହାର
ରସନାରୁ ଅହର୍ନିଶ ସ୍ରବୁଅଛି ଲାଳ.
ଗୋଡ଼ାନ୍ତ ଏ ଦଳ ସଙ୍ଗେ ଧନଲୋଭୀ ମୂଢ଼େ
ଧନ ଯାଙ୍କ ପିତାମାତା, ଅଭୀଷ୍ଟ ଦେବତା,
ଅକାତରେ କନ୍ୟା କିବା ବନିତା, ଭଗିନୀ
ଦେବାକୁ ଧନିକେ ତୁଚ୍ଛ ଧନ-ବିନିମୟେ !
× × × ×
ବଢ଼ାଇ ନିରତେ
ଧନ ବୃଦ୍ଧି ସଙ୍ଗେ ଯାଙ୍କ ଧନରେ ଲାଳସା,
ମହାରଙ୍କ, ମିଷ୍ଟବାକ୍ୟ ଦାନେ ମହାଦାତା ! (ମ.ଯା.ରା.ଗ୍ର-୯୮୫)

ମୋହ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀହର୍ଷ—

ପଥ୍ୟାଂ ତଥ୍ୟାମଗୃହ୍ଣନ୍ତମନ୍ଧଂ ବନ୍ଧୁପ୍ରବୋଧନାମ
ନ୍ନ୍ୟମାର୍ଲିଷ୍ୟ ନୋକ୍ଷନ୍ତଂ ମୋହମୈକ୍ଷନ୍ତ ହନ୍ତ ତେ । ୨୯
ଶ୍ୱଃ ସ୍ୱପ୍ରାଣ ପଯ୍ୟାଣେଽପି ନ ସ୍ମରନ୍ତି ଷମ୍
ମଗ୍ନାଃ କୁଟୁମ୍ବକମ୍ବାଳେ ବାଳଶା ଯଦୁପାସିନଃ । ୩୦
ପୁଂସାମଲବ୍‌ଧ-ନିର୍ବାଣ ଜ୍ଞାନ-ଦୀପ-ମୟୂଖନାମ୍
ଅନ୍ତର୍ମ୍ଲାପଯ୍ୟଦ ବ୍ୟକ୍ତଂ ଯଃ କଜ୍ଜଳବଦୁଜ୍ଜ୍ୱଳମ୍ । ୩୧
× × × ×
ଜାଗ୍ରତାମପି ନିଦ୍ରା ଯଃ ପଶ୍ୟତାମପି ଯୋଽନ୍ଧତା
ଶ୍ରୁତେ ସତ୍ୟପି ଜାଡ୍ୟଂ ଯଃ ପ୍ରକାଶୋଽପି ଚ ଯସ୍ତମଃ । ୩୩
( ନୈଷଧ— ୧୭ଶ ସର୍ଗ )

ରାଧାନାଥ—

ଶୂନ୍ୟକୁ ଆକଟେ ଧରି ନିବଡ଼ ଆଶ୍ଳେଷେ,
ଆସେ ମୋହ, ଶିଷ୍ୟବୃନ୍ଦ ଆସନ୍ତି ଗହଣେ,
କୁଟୁମ୍ବକମ୍ବାଳେ ମଗ୍ନ, କୁଣ୍ଠିତ ଯେ ସଦା
ଘଟାନ୍ତର କାଳେ ସୁଦ୍ଧା ଈଶ୍ୱର ସ୍ମରଣେ,
ଶାସ୍ତ୍ରଜ୍ଞାନ ସମ୍ବନ୍ଧେ ଜଡ଼, ଅନ୍ଧ ଚକ୍ଷୁ ଥାଇ,

କେଳେହେଁ ଜାଗ୍ରତ ଗାଢ଼ନିଦ୍ରା-ଅଭିଭୂତ,
ଦର୍ଶନ୍ତି ହୁଅନ୍ତି ଆହା, ମହା ଘୋର ତମେ
ପାପ ସଙ୍ଗେ, ମମତାର ଦୁର୍ଚ୍ଛେଦ୍ୟ ବନ୍ଧନେ !
(ମହାଯାତ୍ରା ରା. ଗ୍ର. ପୃ: ୯୮୫)

## ରାଧାନାଥ ମଧୁସୂଦନଙ୍କ ଅନୁବାଦରେ କାଳିଦାସ ଓ ଭବଭୂତି

କାଳିଦାସ ଓ ଭବଭୂତି ସଂସ୍କୃତ ସାହିତ୍ୟର ଶ୍ରେଷ୍ଠସ୍ରଷ୍ଟା । ମାତ୍ର ଏମାନଙ୍କ ଲକ୍ଷ୍ୟ ଓ ଆଦର୍ଶ ବହୁ ପରିମାଣରେ ଭିନ୍ନ । ଉଭୟଙ୍କ ମାନସଲୋକ ଓ ସୃଷ୍ଟିଧର୍ମ ଭିନ୍ନ ଦିଗରେ ଗତି କରିଅଛୁ । ଏମାନଙ୍କ ମାନସିକ ପ୍ରକୃତି ସହିତ ତୁଳନାରେ ଦେଖିଲେ ରାଧାନାଥ କାଳିଦାସଙ୍କର ଓ ମଧୁସୂଦନ ଭବଭୂତିଙ୍କର ନିକଟବର୍ତ୍ତୀ ବୋଲି ସହଜରେ ଧାରଣା ହୁଏ । କାଳିଦାସ ସୌନ୍ଦର୍ଯ୍ୟ ପ୍ରେମୀ. କଳ୍ପନା ବିଳାସୀ କବି । ଶାନ୍ତ ଓ ଅଶାନ୍ତର ଉର୍ଦ୍ଧ୍ୱରେ ସେ କାବ୍ୟ ବା ନାଟକର ସ୍ଥାନ ନିରୂପଣ କରିଥାନ୍ତି । ତାଙ୍କର ଚରିତ୍ରଗୁଡ଼ିକ ସ୍ୱଳ୍ପମାତ୍ର ତୂଳିକାରେ ଚିତ୍ରିତ । ତାଙ୍କର ଭାଷା କୋମଳ, ମଧୁର ଓ ଅତିମାତ୍ରାରେ ପ୍ରସାଦଗୁଣଯୁକ୍ତ । ଆନନ୍ଦ ଓ ଆବେଗ ତାଙ୍କର ପ୍ରଧାନ ଗୁଣ । ଶାନ୍ତ ଓ ମଧୁର ରସ ବର୍ଣ୍ଣନାରେ ତାଙ୍କର ଲେଖନୀ ବିଳାସ ଅନୁଭବ କରେ । ମାତ୍ର ଭବଭୂତି ଦାର୍ଶନିକ, ଚିନ୍ତାଶୀଳ କବି । କରୁଣ ରସ ଓ ଉଚ୍ଚ ନୈତିକ ଆଦର୍ଶ ତାଙ୍କ ରଚନାର ସାର ମର୍ମ । ତାଙ୍କର କଳ୍ପନା କ୍ଷୁଦ୍ର, ସୁନ୍ଦର, ଲଳିତ ଓ କୋମଳକୁ ଆଶ୍ରୟ ନକରି, ମହାନ୍ ରୁଦ୍ର ଓ ଉଚ୍ଚତର ଶକ୍ତିର ଆବେଗରେ ବିକଶିତ ହୁଏ । ଏପରିକି ମାନବୀୟ ପାର୍ଥିବ ପ୍ରେମ ବର୍ଣ୍ଣନାରେ ସେ କେବେହେଲେ ସହଜ ଇନ୍ଦ୍ରିୟସୁଖ ଓ କାମ ତୃଷ୍ଣାକୁ ସ୍ଥାନ ଦେଇ ନାହାନ୍ତି । ସବୁବେଳେ ସ୍ୱର୍ଗୀୟ. ଉଦାତ୍ତ ଓ ଉଚ୍ଚ ଆଦର୍ଶ ରାଜ୍ୟରେ ତାଙ୍କର ପ୍ରେମିକ ପ୍ରେମିକା ବିଚରଣ କରିଛନ୍ତି । ଭବଭୂତିଙ୍କ ଭାବ ଓ ଚିନ୍ତା ଯେପରି ଗମ୍ଭୀର, ଲେଖନ ଶୈଳୀ ତାଙ୍କର ସେହିପରି ଗମ୍ଭୀର । ପ୍ରସାଦ ଗୁଣର ଅଭାବ. ଦୁର୍ବୋଧତା, ଦୀର୍ଘ ସମାସ ଯୁକ୍ତ ପଦ. ପୁନରୁକ୍ତି, ନାଟକରେ ସ୍ଥାନ ଓ କାଳଗତ ଐକ୍ୟ ଆନୟନରେ ଅକ୍ଷମତା, ଗଳ୍ପର ଘଟଣା ବିନ୍ୟାସରେ ବୈଚିତ୍ର୍ୟର ଅଭାବ – କାଳିଦାସଙ୍କ ତୁଳନାରେ ଭାବୁକ ଓ ଆଦର୍ଶବାଦୀ ଭାବରେ ଯେତେ ଉଚ୍ଚରେ ହୁଅନ୍ତୁ ନା କାହିଁକି, ସ୍ରଷ୍ଟା ଭାବରେ ଭବଭୂତିଙ୍କ ସ୍ଥାନ ନିମ୍ନରେ ବୋଲି ପ୍ରମାଣିତ କରିଥାଏ ।

ନିଜ ନିଜ ମାନସିକ ପ୍ରବଣତା ଅନୁସାରେ ରାଧାନାଥ କାଳିଦାସଙ୍କୁ ଓ ମଧୁସୂଦନ ଭବଭୂତିଙ୍କୁ ଅନୁବାଦ ଲାଗି ଆଦର୍ଶ ରୂପେ ଗ୍ରହଣ କରିଥିବାର ମନେ ହୁଏ । ରାଧାନାଥ 'ମେଘଦୂତ' ଓ ମଧୁସୂଦନ 'ଉତ୍ତର ରାମ ଚରିତକୁ' ଅନୁବାଦ ଲାଗି ନିର୍ବାଚନ କରିବାରେ କବି ଦ୍ୱୟଙ୍କ ଭାବନା ଓ ଆଦର୍ଶର ଗତି ସହଜରେ କଳନା କରିହୁଏ । ଉପର ଆଲୋଚନାରୁ

ଦେଖିଅଛୁଁ, ରାଧାନାଥ ଭବଭୂତିଙ୍କର ବର୍ଣ୍ଣନାରେ ମୁଗ୍ଧ ହୋଇ ଚଲିକା ଓ ମହାଯାତ୍ରାରେ ନାନା ସ୍ଥାନରେ ତାଙ୍କୁ ଅନୁସରଣ, ଏପରିକି ଶ୍ଳୋକମାନ ଅନୁବାଦ କରି ଦେଇଛନ୍ତି । ସେହିପରି ମଧୁସୂଦନ ମଧ୍ୟ କାଳିଦାସଙ୍କ ରଘୁବଂଶର ତ୍ରୟୋଦଶ ସର୍ଗରୁ ରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପୂର୍ଣ୍ଣତଃ ଓ ଚତୁର୍ଦ୍ଦଶ ସର୍ଗରୁ 'ସୀତା ବନବାସ' ଆଂଶିକ ଭାବରେ ଅନୁବାଦ କରିଛନ୍ତି । ମାତ୍ର ଏହି ଅନୁସରଣ ଓ ଅନୁବାଦରେ କବି ଦ୍ୱୟଙ୍କ ଆଦର୍ଶ, ରଚନା ପଦ୍ଧତି ଓ ଶୈଳୀ ପ୍ରତିବିମ୍ବିତ ହୋଇଅଛି । ରାଧାନାଥଙ୍କ ଆହରଣରେ ଭବଭୂତିଙ୍କ ଶ୍ଳୋକମାନ ମଧୁରତର ହୋଇ ପ୍ରକାଶ ପାଇଅଛି । ଦୁର୍ବୋଧ ରୁକ୍ଷ ପଦାବଳୀ ରାଧାନାଥଙ୍କ ରସମୟୀ ଲେଖନୀର ମଧୁ ଲେପନରେ କୋମଳ ଓ ଲଳିତ ହୋଇଅଛି । ମାତ୍ର କାଳିଦାସଙ୍କ ପଦାବଳୀ ମଧୁସୂଦନଙ୍କ ନୀତିବାଦ ଓ ଆପାତ ଗମ୍ଭୀର ଶୈଳୀ ପ୍ରଭାବରେ ବହୁ ପରିମାଣରେ ନିଜର ଲାବଣ୍ୟ ହରାଇଛି ।

## ରାଧାନାଥଙ୍କ ମେଘଦୂତ

ଏହା ପ୍ରଥମେ ୧୮୭୨-୭୩ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରୁ ପ୍ରକାଶିତ 'ଉତ୍କଳ ଦର୍ପଣ' ପତ୍ରିକାରେ ମୁଦ୍ରିତ ହୋଇଥିଲା । ୧୮୭୪ ଖ୍ରୀ: ଅ: ରେ ରାଜା ବୈକୁଣ୍ଠନାଥ ଦେ ଏହାକୁ ନିଜ ବ୍ୟୟରେ ପୁସ୍ତକାକାରରେ ପ୍ରକାଶ କରିଥିଲେ । ତତ୍କାଳୀନ ଜିଲ୍ଲା ମାଜିଷ୍ଟ୍ରେଟ ଉତ୍କଳୀୟ ସଂସ୍କୃତି-ପ୍ରେମୀ ଇଂରେଜ ମନୀଷୀ ଜନ୍ ବିମ୍ସଙ୍କୁ ଏହି ପ୍ରଥମ ସଂସ୍କରଣ ଉତ୍ସର୍ଗ କରାଯାଇଥିଲା । ଦେଖିବାକୁ ଗଲେ, ଏହି ଅନୁବାଦ ରାଧାନାଥଙ୍କ ତରୁଣ ବୟସର ଏକ ପ୍ରାଥମିକ ରଚନା । ମାତ୍ର ପଣ୍ଡିତ ନୀଳକଣ୍ଠଙ୍କ ଉକ୍ତିରେ କହିଲେ ଏଥିରେ କବିଙ୍କ 'ପ୍ରୌଢ଼ ହସ୍ତର କୁଶଳତା ସର୍ବତ୍ର ବିଦ୍ୟମାନ ।' ରାଧାନାଥଙ୍କ ଅନୁବାଦ ବିଷୟରେ ବଙ୍ଗୀୟ କବି ଶ୍ରୀ ଅକ୍ଷିଲଚନ୍ଦ୍ର ପାଲିତ ଲେଖିଥିଲେ—"ଏହି ଅନୁବାଦ ପଢ଼ି କି ପରିମାଣରେ ମୁଗ୍ଧ ହୋଇଥିଲି, ତାହା ଭାଷାରେ ପ୍ରକାଶ କରିବା ମୋ ପକ୍ଷରେ ଅସାଧ୍ୟ । — — ବଙ୍ଗଳା ଓ ହିନ୍ଦୀ ଭାଷାରେ ମେଘଦୂତର ପ୍ରାୟ ୨୦ ଖଣ୍ଡ ଅନୁବାଦ ମୁଁ ଦେଖିଅଛି । କିନ୍ତୁ ତନ୍ମଧ୍ୟରେ ଖଣ୍ଡେ ସୁଦ୍ଧା ରାଧାନାଥଙ୍କ ଅନୁବାଦ ତୁଲ୍ୟ ମଧୁର ନୁହେଁ ।" ଏହି ଓଡ଼ିଆ ଅନୁବାଦକୁ ବଙ୍ଗାକ୍ଷରରେ ପ୍ରଚାର କରିବା ପାଇଁ ସେ କବିଙ୍କୁ ଅନୁମତି ମାଗିଥିଲେ । ମାତ୍ର ରାଧାନାଥ ଏହା ଠିକ୍ ମୂଳାନୁଯାୟୀ ନୁହେଁ, ସ୍ଥାନେ ସ୍ଥାନେ ଅତିରିକ୍ତ ଅନେକ କଥା ଅଛି ବୋଲି ସ୍ୱୀକାର କରି ଏଥିରୁ ତାଙ୍କୁ ନିବୃତ୍ତ କରାଇଥିଲେ । [୨] କବିଙ୍କ ଏହି ସ୍ୱୀକାରୋକ୍ତିକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ତାଙ୍କର ଅନୁବାଦରେ ବୈଶିଷ୍ଟ୍ୟ ଦେଖାଇବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ କହିଛନ୍ତି—"ସେ (ରାଧାନାଥ) ସ୍ଥାନେ ସ୍ଥାନେ ସଂସ୍କୃତର ପଦ ସଂକୋଚ ପରିହାର କରି ଭାବର ଅନୁବାଦରେ ଅତି ବିଚିତ୍ର ଓ କମନୀୟ ଭାବରେ କୃତକାର୍ଯ୍ୟ ହୋଇଅଛନ୍ତି । ସଂସ୍କୃତ ମେଘଦୂତ

ଅଳ୍ପାକ୍ଷରରେ ଅଧିକ ଭାବ ପ୍ରକାଶ କରୁଥିବାରୁ ମହତ୍ତ୍ୱ ଓ ଶିଳ୍ପପୂର୍ଣ୍ଣ, କିନ୍ତୁ ସରଳ ନୁହେ । ମାତ୍ର ତାହାର ଓଡ଼ିଆ ଅନୁବାଦରେ କବି ତାକୁ ଅଦ୍ଭୁତ ଓ ବିଚିତ୍ର ସରଳତାରେ ଆପ୍ଳୁତ କରି ରଖିଅଛନ୍ତି ।" ୩ ରାଧାନାଥଙ୍କ ଅନୁବାଦରେ କାଳିଦାସଙ୍କୁ ପୂର୍ଣ୍ଣ ରୂପେ ଦେଖିବାକୁ ନ ପାଇ କବି ରାଧାମୋହନ ଗଡ଼ନାୟକ ନିଜର ଅନୁବାଦ ପ୍ରକାଶ କରିଛନ୍ତି । ରାଧାନାଥଙ୍କ ସଫଳତା ଓ ତ୍ରୁଟିର ଦିଗ ଦେଖାଇବାକୁ ଯାଇ ସେ ଯଥାର୍ଥରେ କହିଛନ୍ତି—"କବି ରାଧାନାଥ ସ୍ୱୀୟ କାବ୍ୟ ସୃଷ୍ଟିରେ ଯେଉଁପରି ସିଦ୍ଧି ପାଇଛନ୍ତି, ମେଘଦୂତର ଅନୁବାଦରେ ମଧ୍ୟ କମ ସାଫଲ୍ୟ ଲାଭ କରିନାହାନ୍ତି । ମାତ୍ର ଅନୁବାଦରେ ମୂଳ କବିଙ୍କ ଭାବକୁ ସ୍ଥାନେ ସ୍ଥାନେ ଛାଡ଼ିଦେଇ ସ୍ୱାତନ୍ତ୍ର୍ୟ ଗ୍ରହଣ କରିଛନ୍ତି, କେଉଁଠି କେଉଁଠି ମଧ୍ୟ ମୂଳ ଭାବକୁ ଓଲଟା କରି ଲେଖିଛନ୍ତି, କେଉଁଠାରେ ବା ଅଯଥା ଦୀର୍ଘ କରି ଦେଇଛନ୍ତି । ବହୁତ ସ୍ଥାନରେ ଭ୍ରମ ପ୍ରମାଦ ରଖି ଯାଇଛନ୍ତି ।" ୪

ରାଧାନାଥଙ୍କ ସ୍ୱାତନ୍ତ୍ର୍ୟର ଦୃଷ୍ଟାନ୍ତ ମେଘଦୂତରେ ସର୍ବତ୍ର ବିଦ୍ୟମାନ । ଏପରି କି ଶ୍ଳୋକଗୁଡ଼ିକର ସଂସ୍ଥାନ କ୍ରମ ପର୍ଯ୍ୟନ୍ତ ସେ ସ୍ଥାନେ ସ୍ଥାନେ ବଦଳେଇ ଦେଇଛନ୍ତି । ମୂଳ ମେଘଦୂତର ଶେଷ ଶ୍ଳୋକରେ ଯକ୍ଷ ଆଶୀଷବାଣୀରେ ମେଘକୁ ବିଦାୟ ଦେବା ପୂର୍ବରୁ ବନ୍ଧୁ ବା ମହତ୍ତ୍ୱ ଜନ ରୂପେ ମେଘ ତାର ବାସନା ପୂର୍ଣ୍ଣ କରିବ ବୋଲି ବିଶ୍ୱାସ ସ୍ଥାପନ କରିଅଛି । ମାତ୍ର ରାଧାନାଥ ବିଦାୟ ପୂର୍ବରୁ ମେଘ, ଯକ୍ଷର ସନ୍ଦେଶ ପ୍ରଦାନ କରି କିପରି ଫେରି ଆସିବ, ତାହା ବର୍ଣ୍ଣନା କରିଛନ୍ତି । ମୂଳର ୧୧୮ ଶ୍ଳୋକଟି ପ୍ରଥମେ ଅନୁବାଦ କରି ୧୧୭ ସଂଖ୍ୟକ ଶ୍ଳୋକଟିକୁ ରାଧାନାଥ ପରେ ଅନୁବାଦ କରିଛନ୍ତି ।

ଭାବର ପ୍ରାଞ୍ଜଳତା ଓ ଭାଷାର ସ୍ପଷ୍ଟତା ଲାଗି ରାଧାନାଥ ମୂଳ ରଚନାର ଭାଷାକୁ ଅନୁବାଦ ନ କରି, ଭାବର ବ୍ୟାଖ୍ୟା କରିଛନ୍ତି । ଏଥିଲାଗି ସ୍ୱକଳ୍ପିତ ଉପମା ଓ ଦୃଷ୍ଟାନ୍ତ ପର୍ଯ୍ୟନ୍ତ ପ୍ରୟୋଗ କରିଛନ୍ତି । ଗୋଟିଏ ଉଦାହରଣରୁ ଏହା ସହଜରେ ଧାରଣା କରିହେବ । ଉତ୍ତର ମେଘ ଶେଷ ଶ୍ଳୋକ –

> ଏତତ୍ କୃତ୍ୱା ପ୍ରିୟମନୁଚିତ ପ୍ରାର୍ଥନାବର୍ତ୍ତିନୋ ମେ
> ସୌହାର୍ଦ୍ଦାଦ୍ୱା ବିଧୁର ଇତି ବା ମୟ୍ୟନୁକ୍ରୋଶବୁଦ୍ଧ୍ୟା
> ଇଷ୍ଟାନ୍ ଦେଶାନ୍ ଜଳଦ ବିଚର ପ୍ରାବୃଷା ସମ୍ଭୃତଶ୍ରୀ—
> ର୍ମାଭୂଦେବଂ କ୍ଷଣମପି ଚ ତେ ବିଦ୍ୟୁତା ବିପ୍ରଯୋଗଃ ।

ରାଧାନାଥଙ୍କ ଅନୁବାଦ —

> ଜାନ ଅଛଇ ମୁଁ ତୁମ୍ଭେ ମହତ, ଏଣୁ ଏ ମାଗୁଣି ନୋହେ ସଙ୍ଗତ,
> ମାତ୍ର ଅଛ ଘନ ! ଦୟା ଆକର, ଦୟା ନ ଜାଣଇ ଶ୍ରେଷ୍ଠ ଇତର ।

ତେଣୁ କହିଲି ଏସନ ହେ ।
ଦାରୁ ଦୁବଙ୍କର ସମ ହିତକର ଅଛ, ତେଣୁ ଏ ଯାଚନ ହେ !
କାତର ଜନର ହୋଇ ବାନ୍ଧବ, ଜଗତେ ପ୍ରକଟ ନିଜ ଗୌରବ
ଅଳକା ପ୍ରବେଶି ପ୍ରିୟା ସଦନେ ଦେଇ ମୋ ବାରତା ହରଷ ମନେ.
ଘନ ଯାଅ ଇଷ୍ଟ ଦେଶ ହେ ।
ତଡ଼ିତ ସଙ୍ଗତେ ବିହର ନିରତେ, ମୋ ପ୍ରାୟେ ନୋହୁ ବିଶ୍ଳେଷ ହେ ।

ଏଠାରେ ରାଧାନାଥ ମୂଳର 'ଅନୁଚିତ ପ୍ରାର୍ଥନା' କଥାଟି ବୁଝେଇବାକୁ ଯାଇ ମେଘ ମହତ୍ତ୍ୱ ଓ ଯକ୍ଷ ହୀନ ବୋଲି ଲେଖିଛନ୍ତି । ମେଘ ଦାରୁ ଓ ଦୁବର ସମହିତକର ଉକ୍ତି ଅଧିକ ମନରୁ ଖଞ୍ଜିଛନ୍ତି । "ଅଳକା...ମନେ" ପଂକ୍ତିଟି ମଧ୍ୟ ମୂଳ ଶ୍ଳୋକରେ ନାହିଁ । ମାତ୍ର ଏହି ସମସ୍ତ ବ୍ୟତିକ୍ରମ ଭିତରେ କାଳିଦାସଙ୍କ ମୂଳ ଭାବକୁ ସରସ ଅଭିବ୍ୟକ୍ତି ଦେବାରେ ଅସାମର୍ଥ୍ୟ ଦେଖାଇ ନାହାନ୍ତି, ଯଦିଓ ମୂଳର ସୌନ୍ଦର୍ଯ୍ୟ ଓ ବ୍ୟଞ୍ଜନା ଫୁଟାଇବା ତାଙ୍କ ପକ୍ଷରେ ସମ୍ଭବ ହୋଇ ନାହିଁ ।

## ଅଯୋଧ୍ୟା ପ୍ରତ୍ୟାଗମନ ଓ ସୀତା ବନବାସ

ମଧୁସୂଦନ ଅଯୋଧ୍ୟା ପ୍ରତ୍ୟାଗମନ ଅଂଶ ସମ୍ପୂର୍ଣ୍ଣରୂପେ ରଘୁବଂଶରୁ ଅନୁବାଦ କରି ଅଛନ୍ତି ଓ ସେଥିଲାଗି ଏହା ଅନୁବାଦ ବୋଲି ସ୍ୱୀକାର କରିଛନ୍ତି ; ମାତ୍ର ସୀତା ବନବାସରେ କାଳିଦାସଙ୍କ ବର୍ଣ୍ଣନା ମଧ୍ୟରେ ସ୍ଥାନେ ସ୍ଥାନେ ନିଜ କଳ୍ପନା ମିଶେଇ କବି ଏହି ପଦ୍ୟଟିକୁ ଏକ ସ୍ୱତନ୍ତ୍ର ରୂପ ଦେବାକୁ ଚେଷ୍ଟା କରିଛନ୍ତି । ଏଥିରେ "ଅଗ୍ରଜ ଆଜ୍ଞାବହ......ଶୀକର ଶୀତ ବାୟୁ ପେଷିଲେ ପାଶେ" ଅଂଶ କାଳିଦାସଙ୍କ ଛାୟାରେ ଲିଖିତ । "ଚରଣ ପଦ ତଳୁ ଦୟାସାଗର !..........ଦାସୀ ପାଇବ ସ୍ଥାନ ସେ ପଦ ପ୍ରାନ୍ତେ" ପର୍ଯ୍ୟନ୍ତ ପଂକ୍ତିରେ ସୀତାଙ୍କର କ୍ରନ୍ଦନ ଓ ସ୍ୱଗତୋକ୍ତି ମଧୁସୂଦନଙ୍କ କଳ୍ପନା ପ୍ରସୂତ । ପୁଣି ଏମନ୍ତ ଭାଷି ଶୋକେ ବିହ୍ୱଳ ଅତି' ଠାରୁ ଶେଷ ପର୍ଯ୍ୟନ୍ତ ସଂପୂର୍ଣ୍ଣ ଅନୁବାଦ ।

କାଳିଦାସଙ୍କ କାବ୍ୟରୁ ଏହି କବିତାଂଶର ନିର୍ବାଚନ ମଧୁସୂଦନଙ୍କ ଆଦର୍ଶର ଅନୁରୂପ ହୋଇଛି । ଏଥିରେ କୌଣସି ନାୟକ ନାୟିକାଙ୍କର ପ୍ରଣୟ ବର୍ଣ୍ଣନା, ବୀର, ବିଭତ୍ସ ରସର ଅବତାରଣା ନାହିଁ । ପ୍ରଥମ ଅଂଶ ଶାନ୍ତ ଓ ଦ୍ୱିତୀୟ ଅଂଶ କରୁଣ ରସ ପ୍ରଧାନ । ଅଯୋଧ୍ୟା ପ୍ରତ୍ୟାଗମନ ପ୍ରସଙ୍ଗରେ ପୁଷ୍ପକ ବିମାନର ଯାତ୍ରା, ପ୍ରକୃତି ବର୍ଣ୍ଣନା ଓ ରାମସୀତାଙ୍କର ବନବାସ କାଳୀନ ସଜଳ ସ୍ମୃତି ଅତି ନିପୁଣ ଭାବରେ କାଳିଦାସଙ୍କ ଲେଖନୀରେ ଚିତ୍ରିତ ହୋଇଅଛି । ମଧୁସୂଦନ 'ଋଷିପ୍ରାଣେ ଦେବାବତରଣ' ଅଥବା 'ହିମାଚଳ ଉଦୟ ଉତ୍ସବ' ଆଦି କବିତାରେ ଯେପରି ପ୍ରକୃତିର ପବିତ୍ର, ଶାନ୍ତ ଓ ହୃଦୟ

ସ୍ପର୍ଶୀ ଚିତ୍ର ଦେଇଅଛନ୍ତି—ଏଥିରେ ସେହିପରି ଚିତ୍ର ରହିଅଛି । ଦଣ୍ଡକାରଣ୍ୟର ଋଷି ଆଶ୍ରମର 'ବୈତାଗ୍ନି ଧୂମ' ଅଗସ୍ତ୍ୟ, ଶାତକର୍ଣ୍ଣି, ସୁତୀକ୍ଷ୍ଣ ଶରଭଙ୍ଗ ଆଦି ମହର୍ଷିଙ୍କ ତେଜପ୍ରଭା ଓ ଋଷିବାଳା, ଋଷି ପତ୍ନୀଙ୍କ ପାବନ ପ୍ରଭାବ ଯେପରିକି ଏହି କବିତାର ପ୍ରତି ପଂକ୍ତିରୁ ଫୁଟି ପଡ଼ୁଅଛି । ରବୀନ୍ଦ୍ରନାଥଙ୍କ ଉକ୍ତିରେ, "ଭାରତର ଆରଣ୍ୟକ ସଭ୍ୟତାର ଶ୍ରେଷ୍ଠ କବି କାଳିଦାସ" ଯେପରି କି ଏହି ଶ୍ଲୋକ ରାଜିରେ ମୂର୍ତ୍ତିମନ୍ତ ହୋଇ ରହି ଅଛନ୍ତି । ୫ ଆଧୁନିକ ଉତ୍କଳ ସାହିତ୍ୟର ଆର୍ଯ୍ୟପ୍ରାଣ ଋଷି ମଧୁସୂଦନଙ୍କ ଦିବ୍ୟ ହୃଦୟ ମୁକୁରରେ ଏହି ପବିତ୍ର ଶ୍ଲୋକ ରାଜି ଉଜ୍ଜ୍ୱଳ ବର୍ଣ୍ଣରେ ପ୍ରତିବିମ୍ବିତ ହେବା ସ୍ୱାଭାବିକ ।

ମାତ୍ର ଦୁଇଟି କାରଣରୁ ମଧୁସୂଦନ ଏହି ଅନୁବାଦରେ ସଫଳ ହୋଇ ନାହାନ୍ତି । ପ୍ରଥମତଃ ମଧୁସୂଦନଙ୍କ ଲେଖନୀ ସାଧନାରୁ ଶକ୍ତି ଅର୍ଜନ କରିଥିଲି । ରାଧାନାଥଙ୍କ ଭଳି ମୌଳିକ ପ୍ରତିଭାରେ ଏହା ସେପରି ରସାଣିତ ନ ଥିଲା । ରାଧାନାଥ ଯେଉଁ ସମୟରେ ମେଘଦୂତ ଅନୁବାଦ କରିଥିଲେ, ପ୍ରାୟ ସେହି ସମୟରେ ମଧୁସୂଦନ ରଘୁବଂଶର ଏହି ଅଂଶ ଅନୁବାଦ କରିଥିଲେ ଓ ଏହା 'ଉତ୍କଳ ଦର୍ପଣ'ରେ ପ୍ରକାଶିତ ହୋଇଥିଲା । ଯେଉଁ ମଧୁସୂଦନଙ୍କ ସତର୍କ ପ୍ରୟାସନଷ୍ଟ ଲେଖନୀ ନିଜର କଳ୍ପିତ ଶୈଳୀ ଓ ଲେଖନ ପଦ୍ଧତିରେ ସର୍ବଦା ଅଟଳ ରହିଅଛି, ତାହା ଏହି ଆଦ୍ୟ ରଚନାରେ ବହୁସ୍ଥାନରେ ସ୍ଖଳିତ ହୋଇଛି । ଯେଉଁ କୃତ୍ରିମ ଉପଧାମିଳନର ନିୟମ ମଧୁସୂଦନ ସର୍ବତ୍ର ମାନି ନେଇଛନ୍ତି, ତାହା ଏଠାରେ ରକ୍ଷିବାକୁ ସକ୍ଷମ ହୋଇ ନାହାନ୍ତି ।

ଅଶ୍ୱ ଅର୍ଥେ ମହୀତଳ ସଗରଙ୍କ ପୁଏ
ବିଦାରିଲେ, ତେଣୁ ଏହା ସାଗର ବୋଲାଏ ।
(ମ. ଗ.—ପୃ ୧୩୧)

ପୁଣି କ୍ରିୟାପଦ ପ୍ରୟୋଗରେ ମଧ୍ୟ ମେଳ ହୋଇଅଛି —
ଏ ଛବି ଦେଖି ମନକୁ ଏମନ୍ତ ଆସୁଛି
ସିନ୍ଧୁକୁ ମନ୍ଦରଗିରି କି ଅବା ମନ୍ଥୁଛି ।
(ମ. ଗ.—ପୃ ୧୩୩)

ଏହା ବାହ୍ୟ ରୂପ ରଚନାର କଥା । ପୁଣି ଯଥାର୍ଥରେ ସଂକ୍ଷିପ୍ତ ଓ ସନ୍ନିବଦ୍ଧ ଭାବରେ ଭାବ ପ୍ରକାଶ କରିବା ସାମର୍ଥ୍ୟ ମଧୁସୂଦନ ଆଦୌ ଦେଖାଇ ପାରି ନାହାନ୍ତି । ଅଳ୍ପରେ ବହୁଭାବ ପ୍ରକାଶ କରିବା ଯଥାର୍ଥରେ କବିତାର କଳା । କାଳିଦାସ ପୁଣି ଏ କଳାରେ ସବୁଠାରୁ ନିପୁଣ । ତାଙ୍କୁ ଅନ୍ୟ ଏକ ଭାଷା ମାଧ୍ୟମରେ ପ୍ରକାଶ କରିବାକୁ ଯାଇ ମୂଳ ରଚନାର ସୌନ୍ଦର୍ଯ୍ୟ ରକ୍ଷା କରିବାକୁ ଏ ଶକ୍ତି ଏକାନ୍ତ ପ୍ରୟୋଜନ । ଏଥିରେ ମଧୁସୂଦନ କିପରି ଏକାବେଳକେ ଅସମର୍ଥ ହୋଇଛନ୍ତି ଉଦାହରଣରୁ ସ୍ପଷ୍ଟ ହେବ ।

ଆସାରସିକ୍ତକ୍ଷିତିବାଷ୍ପଯୋଗାନ୍ମାମକ୍ଷିଣୋଦ୍‌ଯତ୍ର ବିଭିନ୍ନକୋଶୈଃ
ବିଡ଼ମ୍ବ୍ୟମାନା ନବ କନ୍ଦଲୈସ୍ତେ ବିବାହଧୂମାରୁଣଲୋଚନଶ୍ରୀଃ ।

( ରଘୁବଂଶ ୧୩।୨୯ )

[ଅର୍ଥ—ନବ ଜଳଧାରସିକ୍ତ ଭୂମିରୁ ଉତ୍‌ଥିତ ବାଷ୍ପ ସହିତ ମିଶି ଏଇ ନବ ବିକଶିତ କନ୍ଦଳୀ କୁସୁମରାଜି, ବିବାହଧୂମରେ ଅରୁଣ ତୁମର ନୟନ କାନ୍ତି ଅନୁକରଣ କରି ମୋତେ ସନ୍ତାପିତ କରୁଥିଲା । ]

ମଧୁସୂଦନ— "ଏଥି ବିକଶିତ ନବ କନ୍ଦଳୀ କୁସୁମ
ଯୁକ୍ତ ତହିଁ ଜଳସିକ୍ତ ମୃତିକାର ଧୂମ,
ଦେଖନ୍ତେ ପଡ଼ିଲା ମନେ ବିବାହ ସମୟ,
ଦାବାଗ୍ନି ପରାୟେ ଶୋକ ଦହିଲା ହୃଦୟ ।
ସେ ମଧୁର କାଳେ ତୁମ ନୟନ ଯୁଗଳ
ପୂର୍ଣ୍ଣ ଧୂମ ଯୋଗୁ ଆହା କେମନ୍ତ ପାଟଳ ।"

ଦୁଇଟି ପାଦରେ ଗ୍ରଥିତ ଭାବ ସଂପ୍ରସାରିତ ହୋଇ ଅନୁବାଦରେ ଛ'ଟି ପାଦରେ ପରିଣତ ହୋଇଅଛି । ମାତ୍ର ଏହା ମୂଳ ରଚନାର ଅର୍ଥ ପ୍ରକାଶ କରିବାକୁ ଆଦୌ ସମର୍ଥ ହୋଇନାହିଁ । ମୂଳ ରଚନାରେ ଯେଉଁଠି ଯେତିକି ପରିମାଣରେ ଅର୍ଥ ଗୌରବ ଓ ଭାବ ସମ୍ମିଳିତ ଘଟିଛି, ଅନୁବାଦରେ ସେହିପରି ସେତିକି ବିଫଳତା ଦେଖା ଦେଇଛି । ଏଇ ଅନୁବାଦରୁ କାଳିଦାସଙ୍କ ରଚନାର ମାଧୁର୍ଯ୍ୟ ପାଇବା ସମ୍ଭବ ନୁହେଁ ।

ଦ୍ୱିତୀୟତଃ ମଧୁସୂଦନଙ୍କ ଭିତରେ ଥିବା ଅତ୍ୟଧିକ ନୀତି ପ୍ରାଣତା ଓ ଶୁଚିବାୟୁଗ୍ରସ୍ତତା ତାଙ୍କୁ କାଳିଦାସଙ୍କ କବିତାର ଉଚ୍ଚ ମାନବୀୟରସ ଉପଭୋଗରୁ ବଞ୍ଚିତ କରିଅଛି । ବହିଃପ୍ରକୃତିର ଦୃଶ୍ୟ ଭଳି ମନୁଷ୍ୟର ଅନ୍ତଃପ୍ରକୃତିର ଚିତ୍ର କାଳିଦାସ ଅତି ଜୀବନ୍ତ, ସ୍ୱାଭାବିକ ଓ ସୁନ୍ଦର ଭାବରେ ଅଙ୍କନ କରିଛନ୍ତି । ଏଥିଲାଗି ସେ କୌଣସି ପ୍ରକାର ସଙ୍କୋଚ ବା ଅବସାଦ ଅନୁଭବ କରି ନାହାନ୍ତି । ଲଙ୍କା ବିଜୟୀ ବରେଣ୍ୟ ମୂର୍ତ୍ତି ରାମଚନ୍ଦ୍ର କିପରି ରକ୍ତମାଂସର ମନୁଷ୍ୟ, ତାହା ନିପୁଣ ତୂଳିର ସହଜ ସ୍ପର୍ଶରେ କାଳିଦାସ ଫୁଟାଇ ପାରିଛନ୍ତି । ଦୀର୍ଘ ବିଚ୍ଛେଦ ପରେ ପ୍ରକୃତିର ଶୋଭାମୟ କୋଡ଼ରେ ନଭୋପଥରେ ପ୍ରିୟା ସହିତ ନିଶ୍ଚିନ୍ତ ମନରେ ନିଜର ପରିଚିତ ପ୍ରାଣପ୍ରିୟ ରାଜଧାନୀକୁ ଫେରି ଆସିଲା ବେଳେ ରାମଚନ୍ଦ୍ରଙ୍କ ମନରେ ଯେପରି ମଧୁର ପ୍ରେମର ମୋହନ ଆବେଶ ଘାରି ହୋଇଯିବାର କଥା ତାହା କାଳିଦାସ ଦେଖାଇ ଅଛନ୍ତି । ରାମଙ୍କ ହୃଦୟର ଏହି ଅନୁରାଗ ପ୍ରକୃତିକୁ ମଧ୍ୟ ସଞ୍ଚାରିତ ହୋଇଛି । ତେଣୁ ପ୍ରେମିକ ଦୃଷ୍ଟିରେ ରାମଚନ୍ଦ୍ର ସମୁଦ୍ରକୁ ଶ୍ରେଷ୍ଠ ପ୍ରେମିକ ଭାବରେ ଦେଖିଛନ୍ତି ।

"ମୁଖାର୍ପଣେଷୁ ପ୍ରକୃତି-ପ୍ରଗଲ୍‌ଭାଃ ସ୍ୱୟଂ ତରଙ୍ଗାଧରଦାନ-ଦକ୍ଷଃ
ଅନନ୍ୟସାମାନ୍ୟ କଳତ୍ର ବୃତ୍ତିଃ ପିବତ୍ୟସୌ ପାୟୟତେ ଚ ସିନ୍ଧୂଃ ।

( ରଘୁବଂଶ-୧୩।୯ )

[ ଅର୍ଥ—ଦେଖ, ଏଇ ସରିତ୍‌ପତିର ପ୍ରିୟା ସମ୍ଭୋଗ ଅନନ୍ୟ ସାଧାରଣ। ତରଙ୍ଗ ଅଧରରୁ ସୁଧାଦାନ ନିପୁଣ, ନିଜ ମୁଖାର୍ପଣରେ ତରଙ୍ଗିଣୀମାନଙ୍କୁ ପ୍ରଗଲ୍‌ଭିତ କରି ନିଜେ ସେମାନଙ୍କର ଅଧରସୁଧା ପାନ କରୁଅଛୁ ଓ ସେମାନଙ୍କୁ ମଧ୍ୟ ପାନ କରାଉଅଛୁ । )

ମାତ୍ର ମଧୁସୂଦନ—

"ଏଥର ବିମଳ ଜଳ ବଢ଼ି ପ୍ରଳୟରେ
ନେଥାଇଲ୍ ଅବଗୁଣ୍ଠନ କ୍ଷଣେ ଭୂମୁଖରେ ।"

ପର୍ଯ୍ୟନ୍ତ ଅନୁବାଦ କରି ଉପରୋକ୍ତ ଶ୍ଳୋକଟି ବାଦ ଦେଇଛନ୍ତି ।

ବେଳା ଭୂମିର କେତକୀ ରେଣୁ ଯୁକ୍ତ ସୁରଭିତ ସମୀରଣ ଯେତେବେଳେ ଅନ୍ତରରେ ଅପୂର୍ବ ପୁଲକ ସଞ୍ଚାର କରିଛି, ସେତେବେଳେ ରାମଚନ୍ଦ୍ର ଆପଣାର ଏକାନ୍ତ ସହଯାତ୍ରିଣୀ ପ୍ରିୟତମା ପତ୍ନୀଙ୍କୁ କହୁଛନ୍ତି—

"ବେଲାନିଲଃ କେତକରେଣୁଭିସ୍ତେ ସମ୍ଭାବୟତ୍ୟାନନମାୟତାକ୍ଷି
ମାମକ୍ଷମଂ ମଣ୍ଡନକାଳହାନେର୍ବେତ୍ତୀବ ବିମ୍ବାଧରବଦ୍ଧତୃଷ୍ଣମ୍ ।

( ର· ୧୩ । ୧୬ )

[ ଅର୍ଥ—ହେ ଆୟତ ନୟନେ ! ତୁମର ବିମ୍ବାଧର ପାନରେ ବଦ୍ଧତୃଷ୍ଣ ଓ ଭୂଷଣ ପରିଧାନାର୍ଥ କାଳବିଳମ୍ବ ସହ୍ୟ କରିବାକୁ ମୋତେ ଏକାନ୍ତ ଅସମର୍ଥ ଜାଣି, ତୀରଭୂମିର ସମୀରଣ ଯେପରିକି କେତକୀ କୁସୁମ ରେଣୁରେ ତୁମର ମୁଖ ମଣ୍ଡନ କରୁଅଛି । ]

ଏଠାରେ ମଧୁସୂଦନ—

"କେତକୀ ରେଣୁରେ ଦେଖ ତୀର ସମୀରଣ
ତୁମ୍ଭ ମୁଖ ବିଶାଳାକ୍ଷି, କରୁଛି ମଣ୍ଡନ ।"

ମାତ୍ର କହି ନୀରବ ହୋଇଛନ୍ତି ।

ଏଇ ଶ୍ଳୋକରେ କାଳିଦାସ ରାମଙ୍କ ମୁଖରେ ଚଣ୍ଡୀ, ଶୋଭନେ, କରମ୍ଭୋରୁ ଆଦି ଅନେକ ବିଶେଷଣ ପ୍ରୟୋଗ କରିଅଛନ୍ତି । ଏ ସବୁଥିରେ ସୀତାଙ୍କ ଚରିତ୍ର ଓ ତାଙ୍କ ପ୍ରତି ରାମଙ୍କ ସ୍ନେହୋଦ୍ବେଳିତ ଅନ୍ତରର ପରିଚୟ ମିଳିଅଛି । ମାତ୍ର ମଧୁସୂଦନ ଏସବୁ ପ୍ରତି ଆଦୌ ଧ୍ୟାନ ଦେଇ ନାହାନ୍ତି ।

ଲୁହାଯାଇଛି 'ସୀତା ବନବାସ' ପୂର୍ଣ୍ଣ ଅନୁବାଦ ନୁହେଁ, ମାତ୍ର ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିଲେ ଏଥିରେ "କାଳିଦାସ ସ୍ପଷ୍ଟ ଦିଶୁଛନ୍ତି ।" ୬

ନିଜର ସ୍ୱତନ୍ତ୍ର ନିର୍ବାଚନ କ୍ରମେ ମଧୁସୂଦନ କାଳିଦାସଙ୍କ ଶ୍ଳୋକ ଛାଡ଼ି ଦେଇଛନ୍ତି ; ନିଜ କଳ୍ପନା ଯୋଗ କରିଛନ୍ତି, ପୁଣି କାଳିଦାସଙ୍କର ଯେଉଁ ଶ୍ଳୋକଗୁଡ଼ିକ ଅନୁବାଦ କରିଛନ୍ତି ସେଥିରୁ ସ୍ଥାନେ ସ୍ଥାନେ ଭାବ, ଉପମା ଆଦି ଛାଡ଼ି ଦେଇ, ଅନୁବାଦକୁ ବିକଳାଙ୍ଗ କରିଛନ୍ତି ।

ଲକ୍ଷ୍ମଣ ଭାଗୀରଥୀ ତୀର କାନନରେ ସୀତାଙ୍କୁ ଛାଡ଼ି ଆସିଲା ବେଳେ ସୀତା ଓ ଲକ୍ଷ୍ମଣଙ୍କ କଥୋପକଥନ ବାଲ୍ମୀକି ରାମାୟଣରେ ଅଛି । କାଳିଦାସ ମଧ୍ୟ ସଂକ୍ଷେପରେ ଏହି କଥୋପକଥନ ବର୍ଣ୍ଣନା କରିଛନ୍ତି । ଏଥିରେ ସୀତାଙ୍କ ଚରିତ୍ର ପ୍ରସ୍ଫୁଟିତ ହୋଇଛି । ଚରମ ଦୁଃଖରେ ବି ସେ ନିଜ କର୍ତ୍ତବ୍ୟ ଭୁଲି ନାହାନ୍ତି । କେବଳ ପ୍ରଣୟିନୀ ଭାବରେ ନୁହେଁ, ରାଜରାଣୀ ଭାବରେ, ରାଜଅନ୍ତଃପୁର ବଧୂ ରୂପେ ସେ ନିଜର କର୍ତ୍ତବ୍ୟ ସ୍ମରଣ କରି, ନିଜର ଶାଶୂ, ଗୁରୁଜନ, ଭଗିନୀ, ଦାସଦାସୀ, ଶେଷରେ ରାମଚନ୍ଦ୍ର ଓ ନିଜର ଭାବି ସନ୍ତାନଙ୍କ ବିଷୟରେ ନିଜ ମନୋଗତ ଭାବ ଲକ୍ଷ୍ମଣଙ୍କଠାରେ ବ୍ୟକ୍ତ କରିଛନ୍ତି । ମାତ୍ର ଏହି ପ୍ରସଙ୍ଗ ମଧୁସୂଦନ ବାଦ ଦେଇ ସ୍ୱତନ୍ତ୍ର ଭାବରେ ଲକ୍ଷ୍ମଣଙ୍କ ମନର ପ୍ରତିକ୍ରିୟା ଓ ସୀତାଙ୍କ ଶୋକ ଓ ସ୍ୱଗତ କ୍ରନ୍ଦନ ବର୍ଣ୍ଣନା କରିଛନ୍ତି । ଏହି ସ୍ୱଗତ ଶୋକ ବାଣୀରେ ରାମଙ୍କ ପ୍ରଣୟିନୀ ଭାବରେ ସୀତାଙ୍କ ପରିଚୟ ମିଳିଅଛି, ମାତ୍ର ତାଙ୍କ ଚରିତ୍ରର ଉଚ୍ଚ ଆଦର୍ଶ ସଂରକ୍ଷିତ ହୋଇ ପାରିନାହିଁ ।

ସୀତାଙ୍କ କ୍ରନ୍ଦନରେ ବନର ପଶୁପକ୍ଷୀ, ବୃକ୍ଷଲତା ସମବେଦନା ପ୍ରକାଶ କରିବା ଚିତ୍ର କାଳିଦାସଙ୍କ ଅବଲମ୍ବନରେ କବି ପ୍ରଦାନ କରିଛନ୍ତି ।—

କାଳିଦାସ—

ସା ମୁକ୍ତ କଣ୍ଠଂ ବ୍ୟସନାତିଭାରାତ୍ ଚକ୍ରନ୍ଦ ବିଗ୍ନା କୁରରୀବ ଭୂୟଃ ।

ନୃତ୍ୟଂ ମୟୂରାଃ କୁସୁମାନି ବୃକ୍ଷା ଦର୍ଭାନୁପାତ୍ତାନ୍ ବିଜହୁର୍ହରିଣ୍ୟଃ ।

ତସ୍ୟାଃ ପ୍ରପନ୍ନେ ସମଦୁଃଖଭାବମତ୍ୟନ୍ତ ମାସୀଦ୍ରୁଦିତଂ ବନେଽପି ।

( ରଘୁବଂଶ ୧୪।୬୮-୬୯ )

ମଧୁସୂଦନ—

"କୁରରୀ ପ୍ରାୟ ଉଚ୍ଚେ କାନ୍ଦିଲେ ସତୀ ।

ଦେବୀଙ୍କ ଦୁଃଖେ ବନସ୍ଥଳୀ କାତର ।

କାନ୍ଦିଲ ବହୁ ପ୍ରତିଧ୍ୱନି ଛଳରେ !
ତେଜିଲେ ନୃତ୍ୟ ବର୍ହିକୁଳ ବାକଳ,
ହରିଣୀଏ ଛାଡ଼ିଲେ ତୃଣ କବଳ,
ମଣ୍ଡିଥିବେ ନିବିଡ଼ ପୁଷ୍ପ ଭୂଷଣ
ଫିଙ୍ଗିଲେ ଅଙ୍ଗୁ ମଣ୍ଡିତଲେ ତକ୍ଷଣ ।"

( ମ. ଗ୍ର. ପୃ ୧୧୭ )

ଅନୁବାଦରେ ସରଳ ଭାବ ପ୍ରକାଶର ଅତି ସଙ୍କଟ ପାଳନ କରିବାକୁ ଯାଇ ମଧୁସୂଦନ କେତେକ ପରିମାଣରେ ମୂଳ ଭାବକୁ ଖଣ୍ଡିତ କରିଛନ୍ତି । ମାତ୍ର ଭାବକୁ ସମ୍ପ୍ରସାରିତ କରିନାହାନ୍ତି ।

କାଳିଦାସ—

ପୟୋଘଟୈରାଶ୍ରମବାଳବୃକ୍ଷାନ୍ ସଂବର୍ଦ୍ଧୟନ୍ତୀ ସ୍ୱବଳାନୁରୂପୈଃ ।
ଅସଂଶୟଂ ପ୍ରାକ୍ ତନୟୋପପତ୍ତେଃ ସ୍ତନନ୍ଧୟ ପ୍ରୀତିମବାପ୍ସ୍ୟସି ତ୍ୱମ୍ ।

( ରଘୁବଂଶ-୧୪।୭୮ )

ମଧୁସୂଦନ—

"ଆଶ୍ରମର ତରୁଣ ତରୁ ନିକରେ
ଯତନେ ବଢ଼ାଇଣ ଘଟ ଜଳରେ
ନିରେଖିବା ଆଗରୁ ତନୟ ମୁଖ
ଲଭିବୁ ତନୟର ପାଳନ ସୁଖ ।"

( ମ. ଗ୍ର. ପୃ୧୧୯ )

ଏଠାରେ 'ସ୍ୱବଳାନୁରୂପୈଃ' ପଦ ଏକାବେଳେକେ ମଧୁସୂଦନ ତ୍ୟାଗ କରିଛନ୍ତି । ବାଲ୍ମୀକିଙ୍କ ଉକ୍ତିରେ ସ୍ନେହର ଯେଉଁ ମାଧୁର୍ଯ୍ୟ ମିଶି ରହିଥିଲା, ଏହା ଫଳରେ ଅନୁବାଦରୁ ତାହା କେତେକ ପରିମାଣରେ ଅପସାରିତ ହୋଇଅଛି । ପୁଣି ଏଠାରେ 'ସ୍ତନନ୍ଧୟ' ପଦର ଅର୍ଥ 'ତନୟ' ଠିକ୍ ପ୍ରକାଶ କରୁନାହିଁ । 'ବାଳବୃକ୍ଷ' ସହିତ 'ସ୍ତନ୍ୟପାୟୀ' ଶିଶୁର ଯେଉଁ ସମ୍ବନ୍ଧ କାଳିଦାସ ପ୍ରକଟିତ କରାଇଛନ୍ତି; ତାହାହିଁ ଏ କବିତାଂଶର ସୌନ୍ଦର୍ଯ୍ୟ । ମାତ୍ର 'ତରୁଣତରୁ' ଓ ତନୟ ଭିତରେ ସେଇ ଭାବ ସମନ୍ୱୟ ରକ୍ଷିତ ହୋଇନାହିଁ । କିନ୍ତୁ, ଅନୁବାଦ ଭାବରେ ନ ହେଲେ ବି ସାରଲ୍ୟ, ଧ୍ୱନି ମାଧୁର୍ଯ୍ୟ ଓ ମଧୁର ପ୍ରକାଶଭଙ୍ଗୀ ହେତୁରୁ ସ୍ୱତନ୍ତ୍ର ଭାବରେ ମଧୁସୂଦନଙ୍କ କବିତା ଉପଭୋଗ୍ୟ ।

ନିଜ ଆଶ୍ରମକୁ ସୀତାଙ୍କୁ ଘେନିଯାଇ ବାଲ୍ମୀକି ଋଷି ପତ୍ନୀଙ୍କ ହସ୍ତରେ ତାଙ୍କୁ ଅର୍ପଣ କରିବା ପ୍ରସଙ୍ଗ କାଳିଦାସ ଏକ ସୁନ୍ଦର ଉପମାରେ ପ୍ରକାଶ କରିଛନ୍ତି । ଅମାବାସ୍ୟା

ଅଥି ପିତୃଗଣଙ୍କ ଭୁକ୍ତାବଶେଷ ଚନ୍ଦ୍ରଙ୍କ ଶେଷକଳା ଔଷଧିରାଜଙ୍କୁ ଅର୍ପଣ କରିଦେଲା ଭଳି, ସୀତାଙ୍କ ଆଗମନରେ ହୃଷ୍ଟମନା ଋଷିପତ୍ନୀମାନଙ୍କ ହସ୍ତରେ ଶୋକରେ ମଳିନ ସୀତାଙ୍କୁ ବାଲ୍ମୀକି ଅର୍ପଣ କରିଦେଲେ । ୭ ମାତ୍ର ମଧୁସୂଦନ ଏଇ ସୁନ୍ଦର ଭାବ ବ୍ୟଞ୍ଜକ ଉପମାକୁ ପ୍ରତି ଦୃଷ୍ଟି ନ ଦେଇ ଲେଖିଛନ୍ତି—

ବେଗେ ଆସିଣ ମୁଗ୍ଧ ମୁନି କୁମାରୀ
ଅଞ୍ଚଳେ ପୋଛି ସୀତା ନୟନ ବାରି
ସାନ୍ତ୍ୱନା ବାକ୍ୟେ ରଘୁକାନ୍ତା ହୃଦୟ
ପ୍ରବୋଧି ଘେନିଗଲେ ନିଜ ନିଳୟ ।

( ମ. ଗ୍ର. ପୃ. ୧୧୯ )

### ଉତ୍ତର ରାମଚରିତର ଅନୁବାଦ

ଉତ୍ତର ରାମ ଚରିତ ମଧୁସୂଦନଙ୍କ ଶେଷ ଜୀବନର ରଚନା । ୧୯୦୭ରୁ ୧୯୦୮ ମଧ୍ୟରେ ଏହା କ୍ରମଶଃ ଲିଖିତ ହୋଇ ତାଙ୍କର ମୃତ୍ୟୁ ପରେ ମୁକୁରରେ ପ୍ରକାଶିତ ହୋଇଥିଲା । ମଧୁସୂଦନ ସମସ୍ତ ନାଟକଟିକୁ ଅନୁବାଦ କରିବାକୁ ଅବସର ପାଇ ନ ଥିଲେ । ସେ ସପ୍ତଅଙ୍କ ବିଶିଷ୍ଟ ନାଟକଟିରୁ ମାତ୍ର ଚାରିଗୋଟି ଅଙ୍କର ଅନୁବାଦ ଶେଷକରି ପଞ୍ଚମ ଅଙ୍କ କେତେକାଂଶ ( "ସଦର୍ପ ପଦ ବିକ୍ଷେପରେ ଲବର ସନ୍ତ୍ୱର ପ୍ରବେଶ ପର୍ଯ୍ୟନ୍ତ ) ଅନୁବାଦ କରିଥିଲେ ।୮

ଭବଭୂତିଙ୍କ ସହିତ ମଧୁସୂଦନଙ୍କ ଆଦର୍ଶର କିପରି ମେଳ ଥିଲା, ତାହାର ସୂଚନା ଦିଆ ହୋଇଛି । ମହାବୀର ଚରିତ, ମାଳତୀ ମାଧବ ଓ ଉତ୍ତର ରାମ ଚରିତ ମଧ୍ୟରେ ଶେଷୋକ୍ତ ନାଟକଟି ଭବଭୂତିଙ୍କର ଶ୍ରେଷ୍ଠ ରଚନା । କବିତା ଦିଗରୁ ଏହାର ମହତ୍ତ୍ୱ ସ୍ପଷ୍ଟ ଓ ଅବିସମ୍ବାଦିତ । ପ୍ରକୃତି ଓ ମାନବ ଜୀବନର ଭୂୟୋଦର୍ଶନରେ ଭବଭୂତିଙ୍କ ଆଗ୍ରହ ଏଥିରେ ପୂର୍ଣ୍ଣତଃ ସଫଳ ହୋଇଅଛି । ରାମ ଓ ତାଙ୍କର ବୀର ପୁତ୍ରଙ୍କର ଶୌର୍ଯ୍ୟ, ବନବାସିନୀ ସୀତାଙ୍କର କରୁଣ ଭାଗ୍ୟରେ ପିହିତ ହୋଇ ଅପୂର୍ବ ମାନବୀୟ ରସ ସୃଷ୍ଟି କରିଅଛି । ୯ ଋଷିପ୍ରାଣ କବି ମଧୁସୂଦନ ନିଜ ସାଧନାର ଶେଷ ପର୍ଯ୍ୟାୟରେ ଭବଭୂତିଙ୍କ ଏହି ଶ୍ରେଷ୍ଠ କୃତିକୁ ଓଡ଼ିଆ ସାହିତ୍ୟର ଅଙ୍ଗୀଭୂତ କରିବାକୁ ପ୍ରୟାସ କରି ନିଜର ରୁଚି, ସୌନ୍ଦର୍ଯ୍ୟବୋଧ ଓ ସାହିତ୍ୟ ଆଦର୍ଶର ଉଜ୍ଜ୍ୱଳ ପରିଚୟ ଦେଇ ଅଛନ୍ତି ।

ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ କହିଛନ୍ତି—"ମଧୁସୂଦନ ଭବଭୂତିଙ୍କ ମହାପ୍ରାଣ ଲେଖନରେ ମୁଗ୍ଧ ହୋଇଥିଲେ । ତାଙ୍କର ପ୍ରାଣ ବିଶ୍ୱବାସୀ ପାଇଁ ଉନ୍ମୁକ୍ତ ହୋଇଥିଲା । ନିଜେ ଯେ ସୁଝଟକ ପାଇଲେ, ଦେଶବାସୀଙ୍କ ସଙ୍ଗେ ଭାଗକରି ଭୋଗ କରିବାକୁ ସେ ବ୍ୟାକୁଳ ହୋଇ ଉଠିଲେ । "ଉତ୍ତର ଚରିତ"ର ଅନୁବାଦ ଏହି ବ୍ୟାକୁଳତାରୁ ବାହାରିଅଛି ।" ୧୦

ମଧୁସୂଦନ ନିଜ ଅନୁବାଦକୁ ମୂଳ ରଚନା ଭଳି ସର୍ବଦା ଭାବର ଗାମ୍ଭୀର୍ଯ୍ୟ ଓ ଭାଷାର ସନ୍ନଦ୍ଧ ଆଡ଼ମ୍ବର ଦେବାକୁ ଚେଷ୍ଟା କରିଛନ୍ତି । ମାତ୍ର ମୂଳ ରଚନାର ଅର୍ଥ ସହିତ ଧ୍ୱନିର ମଧୁର ସମାବେଶ ନିଜ କବିତାରେ ଘଟାଇବାକୁ ସମର୍ଥ ହୋଇ ନାହାନ୍ତି । ଗୋଟିଏ ଦୃଷ୍ଟାନ୍ତରୁ କଥାଟି ସ୍ପଷ୍ଟ ହେବ –

ଗୁଞ୍ଜତ୍‌କୁଞ୍ଜକୁଟୀର କୌଶିକଘଟାଘୂତ୍କାରବତ୍‌କୀଚକ –
ସ୍ତମ୍ବାଡ଼ମ୍ବରମୂକମୌକୁଲିକୁଲଃ କ୍ରୌଞ୍ଚାବତୋଽୟଂ ଗିରିଃ ।
ଏତସ୍ମିନ୍ ପ୍ରଚଲାକିନାଂ ପ୍ରଚଲତାମୁଦ୍ୱେଜିତାଃ କୂଜିତୈ—
ରୁଦ୍ୱେଲ୍ଲନ୍ତି ପୁରାଣରୋହିଣତରୁସ୍କନ୍ଧେଷୁ କୁମ୍ଭୀନସାଃ ।

( ଉ. ରା. ଚ. ୨ୟ-୨୯ )

ମଧୁସୂଦନ— "ଏ କ୍ରୌଞ୍ଚାବତ ଗିରି—

ପେଚକର ଘୂତ୍କାର-ଶବ୍ଦ ଶୁଣି ବାୟସକୁଳ
ବଂଶବନେ ଲୁଚି ଅଛନ୍ତି ଭୟେ ମୂଢ଼ ଆକୁଳ ।
ମୟୂରର ଘୋର ଶବଦେ ଭୀତ ସର୍ପ ସକଳେ
ପୁରାତନ ବଟ କୋଟରେ ଲୁଚୁଛନ୍ତି ବିକଳେ ।"

( ମ. ଗ୍ର.-୪୧୯ )

ଏହି ଅନୁବାଦରେ ମୂଳ ରଚନାର ଧ୍ୱନିର ଝଂକାର ନାହିଁ ; ଶବ୍ଦର ଆଡ଼ମ୍ବର ନାହିଁ, ଅଧିକନ୍ତୁ ଭାବ ଖଣ୍ଡିତ ଓ ଅର୍ଥ ଭିନ୍ନମୁଖୀ ହୋଇଅଛି । କୁଞ୍ଜକୁଟୀରର ଛାୟା ଶୀତଳ ସ୍ପର୍ଶ ମିଳୁନାହିଁ ; ପେଚକ ଓ ମୟୂରଙ୍କର ଉଲ୍ଲାସ, ବାୟସ କୁଳର ମୌନତା ଆଉ ସର୍ପକୁଳର ପୁରାଣ ରୋହିଣତରୁ (ଚନ୍ଦନ)ର ସ୍କନ୍ଧ ଦେଶକୁ ସର୍ପିଲ ଗତି କରିବାର ଦେଖାଯାଉ ନାହିଁ । ଏଇ ଭାବରେ ମଧୁସୂଦନଙ୍କ ଅନୁବାଦରେ ଯେଉଁ ଗୌଣତ୍ୱ ପ୍ରକାଶ ପାଇଅଛି, ତାହା ଅତିକ୍ରମ କରିବା ହୁଏତ ତାଙ୍କ ପକ୍ଷରେ ସମ୍ଭବ ନଥିଲା । ଏହା ଲକ୍ଷ୍ୟକରି ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ କହିଛନ୍ତି—"ମହାପ୍ରସ୍ଥାରେ, ପରଂପରା ହିସାବରେ ମଧୁସୂଦନ ଭବଭୂତିଙ୍କ ଶିଷ୍ୟ । କିନ୍ତୁ ମହାର୍ଘପଦମୟ ସଂସ୍କୃତ ଉପାଦାନ ବଳରେ ଶିଳ୍ପୀପ୍ରବର ଭବଭୂତି ଯେଉଁ କୃତିତ୍ୱ ଦେଖାଇଛନ୍ତି, ତାହା ନିକଟରେ ମଧୁସୂଦନଙ୍କ ଅନୁବାଦ ତୁଳନାରେ ପଛକୁ ପଡ଼ିଯିବା ଅସଂଗତ ବା ଅସ୍ୱାଭାବିକ ନୁହେ ।"୧୧

ଏଇ ସମସ୍ତ ସତ୍ତ୍ୱେ ମଧୁସୂଦନଙ୍କ ଅନୁବାଦରେ ଭବଭୂତି ହଜି ଯାଇ ନାହାନ୍ତି । ତାଙ୍କର ସନ୍ଦୁଚ୍ଛମାଳା, ଗାଢ ବଚନ, ପ୍ରେମ ଓ ସୌନ୍ଦର୍ଯ୍ୟର ପବିତ୍ର ମଧୁର ଚିତ୍ର ମଧୁସୂଦନ ସୁନ୍ଦର ଫୁଟାଇ ପାରିଛନ୍ତି । ବିଶେଷତଃ ଗାଢ ଓ ଶୁଚିତା ବିଶ୍ୱର ଯେନି କାଳିଦାସଙ୍କ ଅନୁବାଦରେ ତରୁଣ ମଧୁସୂଦନ ଯେପରି ଅସଫଳ ଓ ଅସ୍ୱାଭାବିକ ହୋଇଛନ୍ତି, ଭବଭୂତିଙ୍କ ଅନୁବାଦରେ ତାହା ହୋଇ ନାହାନ୍ତି । ସ୍ୱାଭାବିକ ଗତିରେ ଭବଭୂତିଙ୍କର ପ୍ରେମ ଚିତ୍ର ଅନୁବାଦରେ ଫୁଟାଇଛନ୍ତି । ଚିତ୍ର ଦର୍ଶନାନ୍ତେ ରାମ ସୀତାଙ୍କ ଶୟନ କକ୍ଷରେ ରାମଙ୍କ ଉକ୍ତିରେ କବି କୌଣସି ପରିବର୍ତ୍ତନ କରି ନାହାନ୍ତି ।

ଚନ୍ଦ୍ରିକା-ଚୁମ୍ବିତ ତେଣୁ ବିଗଳିତ ଚନ୍ଦ୍ରକାନ୍ତ-ହାର ସମ
ଭୟଶ୍ରାନ୍ତ ଯୋଗୁଁ, ସ୍ୱେଦ ବିନ୍ଦୁମୟ ତବ ଭୁଜ ମନୋରମ
ସେହି ଭୁଜ ଲତା ମୋ କଣ୍ଠେ ଅରପି ସୁଖେ ଶୁଅ ପ୍ରିୟତମେ !
ନବ ସଞ୍ଜୀବନ ରସେ ମୋ ଜୀବନ ସିକ୍ତହେଉ ମର୍ମେ ମର୍ମେ ।

(ମ. ଗ୍ର.-୪୦୧)

ସୀତାଙ୍କ ବାହୁ ନିଜ କଣ୍ଠରେ ରଖି ଆନନ୍ଦ ଆବେଶରେ ଅଭିଭୂତ ରାମଚନ୍ଦ୍ର କହୁଛନ୍ତି—

ସୁଖ କି ଦୁଃଖ ଏହା ନୁହଇ କଳି,
ମୋହ ବା ନିଦ୍ରା କିବା ମତ୍ତତା ଭଳି,
କିବା ଗରଳ ଦେହେ ଯାଉଛି ଚରି
ଇନ୍ଦ୍ରିୟଗଣେ ଆହା ବିମୂଢ଼ କରି ।
ତବ ସ୍ପର୍ଶର ଏକ ଅଦ୍ଭୁତ ଗୁଣ
କ୍ଷଣେ ବୁଡ଼ାଏ ଜ୍ଞାନ, ଚେତାଏ ପୁଣ ।

(ମ. ଗ୍ର. ପୃ: ୪୦୧-୨)

ଗାଢ ବଚନ ଓ ସୁଗ୍ରଥିତ ଉକ୍ତିଗୁଡ଼ିକର ଅନୁବାଦରେ ମଧୁସୂଦନ ସଫଳ ହୋଇଛନ୍ତି ।

ଭବଭୂତି —

ବଜ୍ରାଦପି କଠୋରାଣି ମୃଦୁନି କୁସୁମାଦପି
ଲୋକୋତ୍ତରାଣାଂ ଚେତାଂସି କୋ ନ ବିଜ୍ଞାତୁମର୍ହତି ।

(ଉ. ଚ. ୨ୟ-୭)

ମଧୁସୂଦନ—

କୁଳିଶୁଁ କଠୋର ପୁଣି ପୁଷ୍ପୁଁ ସୁକୁମାର
ମହାତ୍ମାଙ୍କ ମନ, ମର୍ମ କେ ବୁଝିବ ତାର ।

ଭବଭୂତି —

ବିତରତି ଗୁରୁଃ ପ୍ରାଜ୍ଞେ ବିଦ୍ୟାଂ ଯଥୈବ ତଥା ଜଡ଼େ
ନ ଚ ଖଲୁ ତୟୋର୍ଜ୍ଞାନେ ଶକ୍ତିଂ କରୋତ୍ୟପହନ୍ତି ବା
ଭବତି ଚ ପୁନର୍ଭୂୟାନ୍ ଭେଦଃ ଫଳଂ ପ୍ରତି ତଦ୍ ଯଥା
ପ୍ରଭବତି ଶୁଚିର୍ବିମ୍ବୋଦ୍ଗ୍ରାହେ ମଣିର୍ନ ମୃଦାଂ ଚୟଃ ।।

ମଧୁସୂଦନ— ( ଉ. ଚ. ୨ୟ-୪ )

ପ୍ରାଜ୍ଞ ଶିଷ୍ୟେ ଯଥା ମୂଢ଼ ଶିଷ୍ୟେ ତଥା ଗୁରୁ ବିତରନ୍ତି ଜ୍ଞାନ
ଧୀଶକ୍ତି ବିହିବା କି ଅବା ହରିବା ନୁହେ ତାଙ୍କର ବିଧାଣ ।
ତଥାପି ଫଳରେ ପ୍ରଭେଦ ବହୁତ ଦିଶେ ଦୁହିଁଙ୍କ ମଧ୍ୟରେ
ସ୍ୱଚ୍ଛ ମଣି ଯିନା ଧରେ ପ୍ରତିବିମ୍ବ ମୃତ୍ପିଣ୍ଡ କି ତାହା ଧରେ ।

( ମ. ଗ୍ର ପୃ: ୪୧୦ )

ଭବଭୂତିଙ୍କର ସମାସଯୁକ୍ତ ଦୀର୍ଘ ବାକ୍ୟ ବିଶିଷ୍ଟ ଗମ୍ଭୀର ଗଦ୍ୟକୁ ମଧ୍ୟ ମଧୁସୂଦନ ନିପୁଣ ଭାବରେ ଅନୁବାଦରେ ଫୁଟାଇଛନ୍ତି । ତନ୍ଦପଠରୁ ଲକ୍ଷ୍ମଣ ଜନସ୍ଥାନର ପ୍ରସ୍ରବଣ ଗିରି ଦେଖାଇ ଦେଉଛନ୍ତି ।

ଭବଭୂତି—ଅୟମବିରଲାନୋକହନିବହନିରନ୍ତରସ୍ନିଗ୍ଧନୀଲପରିସରାରଣ୍ୟପରିଣଦ୍ଧ ଗୋଦାବରୀମୁଖରକନ୍ଦରଃ ସତତମଭିଷ୍ୟନ୍ଦମାନମେଘମେଦୁରିତନୀଲିମାଜନସ୍ଥାନମଧ୍ୟଗୋ ଗିରିଃ ପ୍ରସ୍ରବଣୋ ନାମ । ( ପ୍ରଥମ ଅଙ୍କ )

ମଧୁସୂଦନ—ଏହି ସେହି ଜନସ୍ଥାନ-ମଧ୍ୟଗତ ପ୍ରସ୍ରବଣ ଗିରି । ଗୁରିଆଡ଼େ ନିବିଡ଼ ତରୁ ସମାଚ୍ଛନ୍ନ ସ୍ନିଗ୍ଧ ଶ୍ୟାମଳ-ଅରଣ୍ୟ ପ୍ରାନ୍ତରୁ ପ୍ରବାହିତ ହୋଇ ଗୋଦାବରୀ ନଦୀ ଗିରିର କନ୍ଦରକୁ କଳକଳ ଧ୍ୱନିରେ ନିନାଦିତ କରୁଅଛି । ସଜଳ ମେଘମାଳା ଗିରିଦେହ ମଣ୍ଡିତ କରି ତାହାର ନୀଳ କାନ୍ତିକୁ ସ୍ନିଗ୍ଧ ସୁନ୍ଦର କରୁଅଛି । [ ମ.ଗ୍ର-୩୯୭ ]

## ଫକୀରମୋହନଙ୍କ ଅନୁବାଦ

ଇମାର୍ସନ କହିଥିଲେ, "ପ୍ରତ୍ୟେକ ଯୁଗ ଆପଣାର ଗ୍ରନ୍ଥ ରଚନା କରିବା ଉଚିତ ।" ବିଶେଷତ ରାମାୟଣ, ମହାଭାରତ ଭଳି ମୌଳିକ ଗ୍ରନ୍ଥର ଅନୁବାଦ ପକ୍ଷରେ ଏକଥା ଏକାନ୍ତ ସତ୍ୟ । ସାରଳା, ବଳରାମଙ୍କ ଅନୁବାଦଗୁଡ଼ିକ ଆଧୁନିକ ଯୁଗ ଆଦର୍ଶ ସହିତ ଖାପ ଖାଉ ନଥିଲା । ନାନା ସାଂପ୍ରଦାୟିକ ଧର୍ମର ଆଚ୍ଛାଦନ, ଲିପିକାରମାନଙ୍କ ସ୍ୱେଚ୍ଛାକୃତ ବା ଅଜ୍ଞାନତାକୃତ ପରିବର୍ତ୍ତନ ମଧ୍ୟ ଦେଇ ସେମାନଙ୍କ ଗ୍ରନ୍ଥମାନ ଫକୀରମୋହନଙ୍କ ସମୟକୁ ଶୁଦ୍ଧ ବିଗ୍ରହରେ ପ୍ରଚଳିତ ନଥିଲା । ଏଥିପ୍ରତି ଦୃଷ୍ଟି ଦେଇ, ସରଳ ଓ ସହଜବୋଧ

ଭାଷାରେ ମୂଳ ଗ୍ରନ୍ଥର ଭାବ ସଙ୍ଗତି ଓ ଅର୍ଥର ବ୍ୟତିକ୍ରମ ନ ଘଟାଇ ଆକ୍ଷରିକ ଆମୂଳଚୂଳ ଅନୁବାଦ ପାଇଁ ଫକୀରମୋହନ କୃତ ସଙ୍କଳ୍ପ ହୋଇଥିଲେ । ଦୀର୍ଘ ଜୀବନର ସାଧନା ଭିତରେ ସେ ମହାଭାରତ, ରାମାୟଣ, ଭଗବତ୍ ଗୀତା ଓ କେତେଗୁଡ଼ିଏ ଉପନିଷଦ ଅନୁବାଦ କରି ଯାଇଛନ୍ତି । ୧୨

ଏହି ଅନୁବାଦ ଫକୀରମୋହନଙ୍କର ଜୀବନର ପ୍ରିୟକାର୍ଯ୍ୟ ଥିଲା । ସେ ସମଗ୍ର ପ୍ରାଚୀନ ଭାରତୀୟ ଧର୍ମ ଓ ସାହିତ୍ୟର ସାରସଂଗ୍ରହ ଓଡ଼ିଆ ଭାଷାରେ ପ୍ରକାଶ ପାଇଁ ଉଦ୍ୟମ କରିଥିଲେ । ଧର୍ମ ଜୀବନରେ ସେ ଯୁଗର ଚିନ୍ତା ନାୟକମାନେ ଯେପରି ପ୍ରାଚୀନ ଭାରତର ଆଦର୍ଶ ପ୍ରତି ଫେରି ଚାହିଁଥିଲେ, ସାହିତ୍ୟରେ ମଧ୍ୟ ଫକୀରମୋହନ ପାଶ୍ଚାତ୍ୟ ଭାବ ପରମ୍ପରାରେ ଭାସି ନ ଯାଇ ଆମର ଅତୀତ ଦର୍ଶନ ଓ ସାହିତ୍ୟ ସମ୍ପଦ ପ୍ରତି ଦୃଷ୍ଟିପାତ କରିଥିଲେ । ଏହାଦ୍ୱାରା ଯଥାର୍ଥରେ ସାହିତ୍ୟ ଓ ସମାଜର ଉନ୍ନତି ହେବ ବୋଲି ତାଙ୍କର ବିଶ୍ୱାସ ଥିଲା । ଏହି ପ୍ରାଚୀନ ସାହିତ୍ୟର ମହତ୍ତ୍ୱ ପ୍ରତିପାଦନ କରି ପ୍ରାଣର ଆବେଗରେ ସେ ଲେଖିଥିଲେ—"ହିନ୍ଦୁ ଜାତିର ଯଦି କିଛି ଗୌରବ କରିବାର ବସ୍ତୁଥାଏ, ତାହା ବେଦ, ମହାଭାରତ, ରାମାୟଣ । ରାଷ୍ଟ୍ର ବିପ୍ଳବ ତଥା ବିବିଧ ଅତ୍ୟାଚାରରେ ହିନ୍ଦୁ ଗତ ସର୍ବସ୍ୱ, ମାତ୍ର ହିନ୍ଦୁର ପ୍ରକୃତ ଗୌରବ-ସ୍ତମ୍ଭ-ଚୂଡ଼ାକୁ କେହି ସ୍ପର୍ଶ ମଧ୍ୟ କରି ପାରିନାହିଁ, ପାରିବ ନାହିଁ । ଏହି ସ୍ତମ୍ଭର ମୂଳଦୁଆ ହିନ୍ଦୁ ହୃଦୟରେ ନିହିତ; ଚୂଡ଼ା ଧ୍ରୁବଲୋକ ବିଷ୍ଣୁଲୋକ ସ୍ପର୍ଶୀ, ସ୍ତମ୍ଭଲଗ୍ନ ରତ୍ନରାଜିର ବିମଳ ଜ୍ୟୋତି ହିନ୍ଦୁର ଶିର-ଉପଶିର-ବାହ୍ୟ ରକ୍ତ ବିନ୍ଦୁରେ ପ୍ରତିଫଳିତ ।" ୧୩

ପୁରାଣ ଧର୍ମଗ୍ରନ୍ଥଗୁଡ଼ିକର କାହାଣୀ, ବର୍ଣ୍ଣନା ଆଦିରେ ଫକୀରମୋହନ କୌଣସି ପରିବର୍ତ୍ତନ ଆଣିବାକୁ ଯାଇ ନାହାନ୍ତି । ବ୍ୟାସ, ବାଲ୍ମୀକିଙ୍କ ଆଦର୍ଶ ଯେପରି ସାଧାରଣ ଲୋକେ ହୃଦୟଙ୍ଗମ କରି ପାରିବେ ସେହି ଲକ୍ଷ୍ୟରେ ସେ ଅନୁବାଦରେ ହାତ ଦେଇଛନ୍ତି । ନିରକ୍ଷରା ସ୍ତ୍ରୀକୁ ଶୁଣାଇ ଶୁଣାଇ ସେ ଯେପରିକି ନିଜ ସରଳ ଭାଷାର ଆଦର୍ଶ ସ୍ଥିର କରୁଥିଲେ । ତେଣୁ ତାଙ୍କର ଭାଷା ସବୁବେଳେ ସରଳ, ଭାବ ସୁବୋଧ । ଏଇ ସରଳତା ଓ ସୁବୋଧତା ରକ୍ଷା କରିବା ପାଇଁ ଆବଶ୍ୟକ ପଡ଼ିଲେ କେତେକ ପଦକୁ ଅନୁବାଦ ନକରି ଛାଡ଼ି ଦେଇଛନ୍ତି । ଅନୁବାଦରେ ସର୍ବତ୍ର ଉପଧା ମିଳନର ପ୍ରୟାସ ହୋଇଛି । ଚତୁର୍ଦ୍ଦଶାକ୍ଷରୀ ଭଳି ସହଜ ଛନ୍ଦରେ ବୈଚିତ୍ର୍ୟ ଆଣିବା ଲାଗି ମଝେ ମଝେ 'ଜୟ ଜଗଦୀଶ ହରେ' ଭଳି ଧ୍ରୁବାପଦର ପ୍ରୟୋଗ କରିଛନ୍ତି । ମାତ୍ର ଇଚ୍ଛାକୃତ ଭାବରେ ଫକୀରମୋହନ ସ୍ଥାନେ ସ୍ଥାନେ କଠିନ ସଂସ୍କୃତ ଶବ୍ଦକୁ ଅନୁବାଦ କରି ନଥିବାର ଦେଖା ଯାଏ । ଗୋଟିଏ ଦୃଷ୍ଟାନ୍ତ—

ସଞ୍ଜୟଉବାଚ—
ଅପରାହ୍ଣେ ମହାରାଜ ସଗ୍ରାମଃ ସୁମହାନଭୂତ୍ ।
ପର୍ଜ୍ଜନ୍ୟସମନିର୍ଘୋଷଃ ପୁନ ଦ୍ରୋଣସ୍ୟ ସୋମକୈ । ୧ ।

ଶୋଣାଶ୍ବଂ ରଥମାସ୍ଥାୟ ନରବୀରଃ ସମାହିତଃ
ସମରେଽଭ୍ୟଦ୍ରବଦ୍ଧୀରଃ ପାଣ୍ଡବାନ୍ ଜବମାସ୍ଥାୟ ମଧ୍ୟମମ୍ । ୨
ଭରଦ୍ୱାଜସୁତୋ ଯୁକ୍ତୋ ମହେଷ୍ୱାସୋ ମହାବଲଃ
ଚାମ୍ପୁଙ୍ଖୈଃ ଶିତୈର୍ବାଣୈଃ କଳସୋଦ୍ଭବ ସମ୍ଭବଃ । ୩
ବୀରାନ୍ ବଭଞ୍ଜ ଯୋଧାନାଂ ବୀରଃ ସର୍ବାନ୍ ଭାରତ
ଆକ୍ରୀଡ଼ତ ରଣେ ରାଜନ୍ ଭରଦ୍ୱାଜଃ ପ୍ରତାପବାନ୍ । ୪

(ଦ୍ରୋଣପର୍ବ-୧୨୫ ଅଧ୍ୟାୟ)

ଫକୀରମୋହନଙ୍କ ଅନୁବାଦ—

ଆହେ ମହାରାଜ ଦିବା ଅବସାନ କାଳେ ।
ଯୁଦ୍ଧ ହେଲା ପୁଣି ଦ୍ରୋଣ ସୋମକଙ୍କମାଳେ ॥
ଆପଣଙ୍କ ହିତକାରୀ ଧନୁର୍ଦ୍ଧର ଦ୍ରୋଣ
କୌରବ ବିଜୟ ପାଇଁ କରୁଥାନ୍ତି ରଣ ॥
ତହିଁ ବଡ଼ ବଡ଼ ବୀରଗଣ ବିନ୍ଧଶରେ ।
ଭ୍ରମୁଥାନ୍ତି ରଣକ୍ଷେତ୍ରେ ଆନନ୍ଦ ମନରେ ॥ ୧୪

## ବୌଦ୍ଧାବତାର କାବ୍ୟ

ଉପରେ ଯେଉଁ ପୁରାଣ ସାହିତ୍ୟ କଥା କୁହାଗଲା, ତାହା ଏକାନ୍ତ ଅନୁବାଦ । ମାତ୍ର ସମସ୍ତ ଅନୁବାଦ, ଅନୁସରଣ ସତ୍ତ୍ୱେ 'ବୌଦ୍ଧାବତାର' କାବ୍ୟରେ ସୃଷ୍ଟିଧର୍ମ କବି ପାଳନ କରିଛନ୍ତି । ଆନନ୍ଦ ଦାନ ଓ ଧର୍ମ ନୀତି ପ୍ରଚାର ଉଭୟ ଉଦ୍ଦେଶ୍ୟରେ ଏହି କାବ୍ୟଟି କବିଙ୍କ ଶେଷ ବୟସରେ ଲିଖିତ । ସେ ପର୍ଯ୍ୟନ୍ତ ଓଡ଼ିଆରେ ଏହା ସଙ୍ଗେ ତୁଳିବାକୁ କିଛି ନାହିଁ । ମହାପୁରୁଷଙ୍କର ଜୀବନ କାହାଣୀ ଘେନି ରଚିତ ଏହାହିଁ ଏକମାତ୍ର କାବ୍ୟ । ଏହାର ଗୁରିକିକ ଲକ୍ଷଣ ଓ ସାର୍ଥକତା ବର୍ଣ୍ଣନା କରି ଡାଃ କୁଞ୍ଜବିହାରୀ ଦାଶ ଯଥାର୍ଥରେ କହିଛନ୍ତି —"କେତେକ ବୌଦ୍ଧ ଦର୍ଶନ ବ୍ୟାଖ୍ୟା, ନୀତିଶିକ୍ଷା ଅଂଶ ବାଦ୍‌ଦେଲେ ସମସ୍ତ 'ବୌଦ୍ଧାବତାର' କାବ୍ୟଟି ଏକ ନିଃଶ୍ୱାସରେ ପଢ଼ିହୁଏ । ପଦାବଳୀର ସରଳ ମାଧୁରୀ ଆମୂଳାନ୍ତ ବିଦ୍ୟମାନ । ତାଙ୍କ ସ୍ୱଭାବସିଦ୍ଧ ହାସ୍ୟରସ ଏଥିରେ ପ୍ରକାଶ ପାଇନାହିଁ ; ପାଇବାର ଅବକାଶ ନାହିଁ ବୋଲି । ଭିତର ଶାଣଶାଷ୍ଟ ସଂଯମ ଓ ଗାମ୍ଭୀର୍ଯ୍ୟ କେଉଁଠାରେ ନୀରସ ବା ବିରକ୍ତିକର ବୋଧହୁଏ ନାହିଁ । ସମତଳ ଭୂମିରେ ଏହି କାବ୍ୟଧାରାର ଗତି, ...ଶୈଳ ଶିଖରରେ ଆରୋହର ଉନ୍ମାଦନା ନାହିଁ କି ଅବରୋହର ଅବସାଦ ନାହିଁ । ସ୍ୱରର ଚିତ୍ର ଆହ୍ଲାଦକାରୀ ଚମତ୍କାରିତା ନାହିଁ କି ରସ ଧ୍ୱନିର ସର୍ବଶ୍ରେଷ୍ଠ ମାଧୁରୀ ନାହିଁ ।

ଏଥିରେ ଜୀବନର ସହଜ ବ୍ୟାଖ୍ୟା ଅଛି ; ସ୍ୱରର ସରଳ ବିବୃତ୍ତି ଅଛି । ସର୍ବୋପରି ଗୋଟିଏ ଗଭୀର ଲୀଳା ପ୍ରବାହ ; ହେଲେ ହେଁ ଏ ପ୍ରବାହ ପବିତ୍ର ଜାହ୍ନବୀର, ଅବଗାହନରେ ତୀର୍ଥୋଦକର ସାର୍ଥକତା ମିଳେ ।" ୧୫

"ବୌଦ୍ଧ ଗ୍ରନ୍ଥ ଲଳିତ ବିସ୍ତର ଏବଂ ବଙ୍ଗ ଭାଷାରେ ପ୍ରକାଶିତ କେତେଖଣ୍ଡି ମାସିକ ପତ୍ରିକା ଏବଂ ପୁସ୍ତକ ଅବଲମ୍ବନରେ ଏହି କାବ୍ୟ ଖଣ୍ଡି ଲିଖିତ ।" ଏହା କାବ୍ୟର ମୁଖବନ୍ଧରେ ନିଜେ କବି କହିଛନ୍ତି । ଏଠାରେ ଯେଉଁ ପୁସ୍ତକ କଥା କୁହାଯାଇଛି ତାହା ବଙ୍ଗ କବି ନବୀନଚନ୍ଦ୍ର ସେନଙ୍କ 'ଅମିତାଭ' କାବ୍ୟକୁ ଉଦ୍ଦେଶ୍ୟ କରାଯାଇଛି ବୋଲି ଅନୁମାନ କରାଯାଇ ପାରେ । ଇଂରେଜ କବି ଓ ସାମ୍ବାଦିକ ସାର ଏଡ଼ୱିନ ଆର୍ନୋଲ୍ଡ (୧୮୩୨-୧୯୦୪) ୧୮୭୯ରେ 'ଏସିଆର ଆଲୋକ' ( Light of Asia ) ନାମରେ ବିଖ୍ୟାତ ବୁଦ୍ଧ ଜୀବନୀ କାବ୍ୟ ପ୍ରକାଶ କରିଥିଲେ ଓ ତାଙ୍କର ଆଦର୍ଶରେ ନବୀନଚନ୍ଦ୍ର 'ଅମିତାଭ' ରଚନା କରିଥିଲେ । ଅବଶ୍ୟ ଭାବବସ୍ତୁ ଦିଗରୁ ଦେଖିଲେ ମନେହୋଇପାରେ ଯେ 'ବୌଦ୍ଧାବତାର' କାବ୍ୟ ଅମିତାଭ କାବ୍ୟର ଗୋଟିଏ ବିସ୍ତୃତ ଅନୁବାଦ । ୧୬ ( ଓଡ଼ିଆ ଭାଷା ଓ ସାହିତ୍ୟ ପୃ: ୨୯୯ ) । ମାତ୍ର ଫକୀର ମୋହନଙ୍କ କାବ୍ୟର ସର୍ଗ ସଂସ୍ଥାନ, ରଚନାକ୍ରମ, ଆଖ୍ୟାନ ବସ୍ତୁର ସମାବେଶ ଓ ବର୍ଣ୍ଣନାର ଧାରା ପ୍ରତି ଲକ୍ଷ୍ୟକଲେ ବେଶ୍ ସ୍ପଷ୍ଟ ହୁଏ ଯେ, ଏହି ସବୁ କାବ୍ୟ ଅପେକ୍ଷା ଫକୀରମୋହନ ଲଳିତ ବିସ୍ତରକୁ ନିବିଡ଼ ଭାବରେ ଅନୁସରଣ କରିଛନ୍ତି । 'ଲଳିତ ବିସ୍ତର' ବୁଦ୍ଧ ଜୀବନୀର ପ୍ରଧାନ ଉତ୍ସ । ଅଶ୍ୱଘୋଷଙ୍କୁ ଅନୁସରଣ କରି ସାର ଆରନୋଲଡ଼ କାବ୍ୟ ରଚନା କରିଥିଲେ । ଏଇ ସୂତ୍ରରେ ନବୀନଚନ୍ଦ୍ରଙ୍କ ଅମିତାଭ ବା ଅଶ୍ୱଘୋଷଙ୍କ 'ବୁଦ୍ଧ ଚରିତ' ସହିତ ଫକୀର-ମୋହନଙ୍କ ବୌଦ୍ଧାବତାରର ସାମ୍ୟ ଦେଖିବାକୁ ମିଳେ ।

ଲଳିତ ବିସ୍ତର ସହିତ ବୌଦ୍ଧାବତାରର ତୁଳନାତ୍ମକ ଅଧ୍ୟୟନ କରି, ଡା: କୁଞ୍ଜବିହାରୀ ଦାଶ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି । "ଲଳିତ ବିସ୍ତର" ବୌଦ୍ଧବତାରର ପ୍ରଧାନ ଉତ୍ସ । ଫକୀରମୋହନ ଏହି ଗ୍ରନ୍ଥର ଭାବଧାରା ଆମୂଳଚୂଳ ଅନୁସରଣ କରି ଅଛନ୍ତି କେଉଁ ଅଂଶର ଭାବ ଅବିକଳ ଓଡ଼ିଆରେ ରଖିଛନ୍ତି, କେଉଁ ଅଂଶ ସଂପୂର୍ଣ୍ଣ ବର୍ଜନ ବା ସଂକ୍ଷେପ କରିଅଛନ୍ତି, ଏକ ସ୍ଥାନର ଘଟଣା ପ୍ରୟୋଜନାନୁଯାୟୀ ଅନ୍ୟତ୍ର ସନ୍ନିବେଶିତ କରିଅଛନ୍ତି । ସେ ଲଳିତ ବିସ୍ତରର ୨୭ ଟି ଅଧ୍ୟାୟକୁ ୧୯ ସର୍ଗରେ ଲେଖିଅଛନ୍ତି । ଯାହା କାହାଣୀର ବହିର୍ଭୂତ, କାବ୍ୟ ନିର୍ମାଣର ଅନୁପଯୋଗୀ, ଆଧୁନିକ ରୁଚିର ଗର୍ହିତ, ଅସଙ୍ଗତ, ଅତିରଞ୍ଜିତ, ତାହା କୌଶଳ ପୂର୍ବକ କବି ପରିହାର କରିଅଛନ୍ତି ।" ୧୭

ଲଳିତ ବିସ୍ତର, ବୁଦ୍ଧ ଚରିତ ଓ ବୌଦ୍ଧାବତାର କାବ୍ୟର ସୌସାଦୃଶ୍ୟର ଦୃଷ୍ଟାନ୍ତ ସ୍ୱରୂପ ମାୟାଦେବୀଙ୍କ ସ୍ୱପ୍ନ ପ୍ରସଙ୍ଗଟି ଉଲ୍ଲେଖ କରାଯାଇ ପାରେ । ଲଳିତ ବିସ୍ତରରେ ଅଛି—

ହିମରଜତନିଭଶ୍ଚ ଷଡ଼ବିଷାଣଃ ସୁଚରଣ ସୁରୁଭୁଜଃ ସୁରକ୍ତ ଶୀର୍ଷା,
ଉଦରମୁପଗତୋ ଗଜ ପ୍ରଧାନେ ଲଳିତ ଗତି-ଦୃଢ଼ ବଜ୍ରଗାତ୍ରସନ୍ଧି ।

( ୬ଷ୍ଠ ଅଧ୍ୟାୟ )

ବୁଦ୍ଧଚରିତ—

ବିବେଶ ତସ୍ୟା ସ୍ମୃତ ଏବ କୁକ୍ଷୌ ନନ୍ଦଗୁହାୟାମିବ ନାଗରାଜଃ
ଧୃତ୍ୱା ହିମାଦ୍ରି ଧବଳଂ ଗୁରୁଷଡ଼ବିଷାଣଂ । ( ପ୍ରଥମ ଅଧ୍ୟାୟ )

ବୌଦ୍ଧାବତାର –

ତୁଷାର ଧବଳ ଏକ ଦନ୍ତାବଳ ଶ୍ୱେତପଦ୍ମ ଏକ ଧରି

× × × ×

ରାଣୀଙ୍କ ପଯ୍ୟଙ୍କରେ ଭକ୍ତି ବିନୟରେ ପ୍ରଣମିଣ ତିନିଥର,
ସବ୍ୟେତର ଦେଶ କଲ୍ପି ପ୍ରବେଶ ବିଦାରି ଦେବୀ ଉଦର ।

( ପ୍ରଥମ-ଅଧ୍ୟାୟ )

ଛ'ଟି ଶୁଣ୍ଢ ବିଶିଷ୍ଟ ଗଜ କଥା 'ଲଳିତ ବିସ୍ତର' ଓ ବୁଦ୍ଧଚରିତ'ରେ ବର୍ଣ୍ଣିତ ଅଛି । ଅସଙ୍ଗତ ବୋଧ ହେବାରୁ ଫକୀରମୋହନ ଏହା ପରିହାର କରିଅଛନ୍ତି । ଘଟଣା ତଥା ବର୍ଣ୍ଣନାରେ 'ଲଳିତ ବିସ୍ତର' ଓ ବୌଦ୍ଧାବତାର ମଧ୍ୟରେ କିପରି ନିବିଡ଼ ସାମ୍ୟ ରହିଅଛି, ତାହା ନିମ୍ନ ତୁଳନାତ୍ମକ ଉଦ୍ଧୃତିରୁ ବୁଝାଯିବ । ବ୍ରାହ୍ମଣମାନେ ମାୟାଦେବୀଙ୍କ ସ୍ୱପ୍ନ ବିଶ୍ଳେଷଣ କରିବା ପ୍ରସଙ୍ଗରେ ଲଳିତ ବିସ୍ତରରେ ଏହି ବର୍ଣ୍ଣନା ଅଛି ।

ପୁତ୍ର ତବ ଜନେଷୀ ଲକ୍ଷଣେ—

ଭୂଷିତାଙ୍ଗମ୍ ରାଜକୁଳକୁଳୀନଂ ଚକ୍ରବର୍ତ୍ତିଂ ମହାତ୍ମଂ
ସ ଚ ପୁନ ରାଜହିତ୍ୱା କାମ ରାଜାଞ୍ଚ ଗେହଂ
ପ୍ରବ୍ରଜିତ ନିରପେକ୍ଷଃ ସର୍ବଲୋକାନୁକମ୍ପା
ବୁଦ୍ଧୋ ଭବତି ଏଷୋ ଦକ୍ଷିଣୀୟସ୍ତ୍ରୀ ଲୋକେ
ଅମୃତ ରସ ବରେଣ ତର୍ପୟେତ୍ ସର୍ବଲୋକଂ ।

( ଷଷ୍ଠୋଧ୍ୟାୟ )

ବୌଦ୍ଧାବତାର—

ପୁଚ୍ଛନ୍ତେ ସକଳେ ରାଣୀ ଗ୍ରାହ୍ୟବଳେ
ଲଭିବେ ଦିବ୍ୟ ସନ୍ତାନ—
ବୋଇଲେ ସମସ୍ତେ ଯେବେ ଗୃହାଶ୍ରମେ
ରହିବେ ରାଜ ନନ୍ଦନ ।
ହେବେ ଚକ୍ରବର୍ତ୍ତୀ, ଲଭିବେ ସମ୍ପତ୍ତି,
ଏକଛତ୍ର ଏ ଭୁବନ

ହେଲେ ସେ ସନ୍ନ୍ୟାସୀ ଜଗତ ନିବାସୀ
ମାନବ ଉଦ୍ଧାର ପାଇଁ
କରିବେ ବିଧାନ ଚେତନ୍ତ ଧନମାନ
ବିଷୟେ ସଂଶୟ ନାହିଁ ।"

(ପୃ: ୪୧୫)

ଲଳିତ ବିସ୍ତର ଓ ବୁଦ୍ଧ ଚରିତ ଫକୀର ମୋହନଙ୍କ ବୌଦ୍ଧାବତାର କାବ୍ୟର ପ୍ରଧାନ ଅବଲମ୍ବନ । ମାତ୍ର ଏହି ପୁରାତନ କାବ୍ୟଗୁଡ଼ିକରେ ବର୍ଣ୍ଣିତ ବହୁ ଅତି ମାନୁଷିକ ଓ ପୌରାଣିକ ଚିତ୍ର ପରିହାର କରି କବି ନିଜ କାବ୍ୟକୁ ସ୍ୱାଭାବିକତା ଦାନ କରିଛନ୍ତି । ମାୟାଦେବୀ ଦର୍ପଣରେ ଗର୍ଭସ୍ଥ ପୁତ୍ରର ମୁଖ ଦେଖିବା, ଦଶ ସହସ୍ର ଦେବ କନ୍ୟା ଛତ୍ର ପତାକା ଧରି କପିଳବାସ୍ତୁ ପ୍ରଦକ୍ଷିଣ କରିବା, ଅଥବା ଶିଶୁ ଗୌତମଙ୍କ ମୁଖର ଅ, ଆ ଆଦି ଧ୍ୱନିରୁ ଦୁରୁହ ଦାର୍ଶନିକ ଭାବପୂର୍ଣ୍ଣ ଶବ୍ଦରାଜି ନିର୍ଗତ ହେବା ଭଳି ପ୍ରସଙ୍ଗ ବୌଦ୍ଧାବତାର କାବ୍ୟରେ ସ୍ଥାନ ପାଇ ନାହିଁ । ଫଳରେ କାବ୍ୟଟି ଅଧିକ ବାସ୍ତବମୁଖୀ ହୋଇଅଛି । ଚରିତ୍ର ଚିତ୍ରଣ କଳା ଓ ଲୋକଜୀବନ ଅଧ୍ୟୟନରେ ଫକୀରମୋହନ ମୌଳିକ ପ୍ରତିଭାର ଅଧିକାରୀ ଥିଲେ । ବୌଦ୍ଧାବତାର କାବ୍ୟର ସମସ୍ତ ଚରିତ୍ର ପରମ୍ପରାର ସୃଷ୍ଟି ହେଲେହେଁ ସେଥିରେ ସ୍ଥଳ ବିଶେଷରେ କବି ଆଧୁନିକ ଯୁଗୋଚିତ ମାନବୀୟ ଆବେଦନ ଓ ବାସ୍ତବତା ଫୁଟାଇବାକୁ ସମର୍ଥ ହୋଇଛନ୍ତି । ଗୋପା ଓ ଗୌତମଙ୍କ ପ୍ରଣୟ ଚିତ୍ର, ତଥା ପତ୍ନୀ, ପ୍ରେମିକା ଓ ସନ୍ନ୍ୟାସିନୀ ରୂପେ ଗୋପାଙ୍କର ଚରିତ୍ର ବହୁ ପରିମାଣରେ ଫକୀରମୋହନଙ୍କ ସ୍ୱାତନ୍ତ୍ର୍ୟର ପରିଚାୟକ ।

## ସଂସ୍କୃତ ପ୍ରଭାବର ପରିଣାମ

ଓଡ଼ିଆ କାବ୍ୟଧାରା ପରମ୍ପରାର ଏକ ସଙ୍କୀର୍ଣ୍ଣ ପଥରେ ଗତି କରୁଥିଲା । ପାଶ୍ଚାତ୍ୟ ପ୍ରଭାବ ଏହା ସମ୍ମୁଖରେ ବିସ୍ତୃତ ଦିଗ୍‌ବଳୟ ଖୋଲିଦେଲା । ପରମ୍ପରାର ଶୃଙ୍ଖଳା ହରାଇ ନବଯୁଗର କାବ୍ୟ ବିପଥଗାମୀ ଓ ଆଦର୍ଶଚ୍ୟୁତ ହୋଇ ପଡ଼ିବାର ଆଶଙ୍କା ଦେଖା ଦେଇ-ଥିଲା । ମାତ୍ର ମହା ସମ୍ପଦମୟ ସଂସ୍କୃତ ଧର୍ମ ଓ ଶାଶ୍ୱତ ସାହିତ୍ୟରେ ନବଯୁଗର କବିଗଣଙ୍କ ଅକୁଣ୍ଠ ଆଗ୍ରହ ସେ ଆଶଙ୍କା ବହୁ ପରିମାଣରେ ଦୂର କରିବାକୁ ସମର୍ଥ ହୋଇଥିଲା । ରାଧାନାଥ ଓ ମଧୁସୂଦନ ସଂସ୍କୃତ ଲଳିତ ସାହିତ୍ୟର ସୌନ୍ଦର୍ଯ୍ୟ ଜଗତ ଓ ଫକୀରମୋହନ ଧର୍ମ ଓ ପୁରାଣ ସାହିତ୍ୟର ନୈତିକ ଓ ଆଧ୍ୟାତ୍ମିକ ଜଗତ ପ୍ରତି ବିଶେଷ ସଚେତନ ଥିଲେ । ଏମାନଙ୍କର ଅନୁବାଦ ଓ ଆହରଣ ମଧ୍ୟରେ ଆଧୁନିକ ଓଡ଼ିଆ କାବ୍ୟ ଧାରାର ବିକାଶ ଲାଗି ସୌନ୍ଦର୍ଯ୍ୟ ସୃଷ୍ଟି ଓ ନୈତିକ ଆଦର୍ଶ ପ୍ରତିଷ୍ଠାର ଭିତ୍ତି ଦୃଢ଼ୀଭୂତ ହୋଇଅଛି ।

## ନବଯୁଗର ଛନ୍ଦ ବିଚାର

'ମୋ ମତରେ କବିତାର ଉତ୍କର୍ଷ ଛନ୍ଦ ସାପେକ୍ଷ ନୁହେ, କ୍ଷମତା ସାପେକ୍ଷ ।'[୧]

ରାଧାନାଥ

ନୂତନତା ନବ ଦୃଷ୍ଟିଧାରା ଭଳି ନାନା ସ୍ରୋତରେ ପ୍ରବାହିତ ହୁଏ । ଊନବିଂଶ ଶତକର ଶେଷ ପାଦରେ ଓଡ଼ିଆ କାବ୍ୟଧାରାରେ ନୂତନତାର ପ୍ରାଣସ୍ପନ୍ଦନ ଭାଷା, ଭାବ, ବିଷୟ ଚୟନ, ରଚନା ପଦ୍ଧତି ଆଦି କ୍ଷେତ୍ର ଭଳି ଛନ୍ଦ ପ୍ରୟୋଗ କ୍ଷେତ୍ରରେ ଅନୁଭୂତ ହୋଇଥିଲା । ରାଧାନାଥ ଓ ନବଯୁଗର ପଥିକ କବିମାନେ ପ୍ରାଚୀନ ଓଡ଼ିଆ ଛନ୍ଦର ଛନ୍ଦ ପ୍ରତି ସମ୍ପୂର୍ଣ୍ଣ ଅବହିତ ଥାଇ ମଧ୍ୟ ନାନାଭାବରେ ପାଶ୍ଚାତ୍ୟ ଛନ୍ଦଶୈଳୀର ଆହରଣ କରିବାକୁ ଲାଗିଲେ । ନବଯୁଗର ଭାବ ବହନ ଲାଗି ଆଧୁନିକ କାବ୍ୟଧାରାରେ ଏଇ ସମସ୍ତ ଛନ୍ଦୋଗତ ଆହରଣ ଏକାନ୍ତ ପ୍ରୟୋଜନ ଥିଲା । ସବୁ ନୂତନ ଆହରଣର ଦଳେ ସମର୍ଥକ ଓ ଦଳେ ସମାଲୋଚନାକାରୀ ଥାଆନ୍ତି । ଏ କ୍ଷେତ୍ରରେ ତାହାର ବ୍ୟତିକ୍ରମ ଘଟି ନଥିଲା । ମାତ୍ର ସମାଲୋଚନାର ତୀବ୍ର ସ୍ୱର ନବଯୁଗର କବିମାନଙ୍କୁ ଛନ୍ଦ ପ୍ରେମ ନବ ନବ ପରୀକ୍ଷାରୁ କ୍ଷାନ୍ତ କରି ନଥିଲା ।

ନୂତନ କାବ୍ୟଧାରାରେ ପ୍ରାଚୀନ ଚକ୍ରକେଳି, ବଙ୍ଗଳାଶ୍ରୀ, ରାମକେରୀ ସହିତ ପାଶ୍ଚାତ୍ୟ ସନେଟ୍, ଷ୍ଟାଞ୍ଜା, ବ୍ଲାଙ୍କଭର୍ସ ସମାନ ପ୍ରତିଷ୍ଠା ଲାଭ କଲା । ଦେଶୀୟ ଓ ବିଦେଶୀୟ ଛନ୍ଦଶୈଳୀର ବିରୋଧମାନ ଭୂମିକା ନବଯୁଗର ପ୍ରାଣ ପ୍ରାଚୁର୍ଯ୍ୟରେ, ଆହରଣ ପରିପାଟୀରେ ଏକ ସମନ୍ୱୟ ଓ ସହିତ ସୂତ୍ରରେ ଗ୍ରଥିତ ହେଲା ।

ନବ କାବ୍ୟଧାରାର ଅଭ୍ୟୁତ୍ଥାନ ଯୁଗ ଆମ ସାଂସ୍କୃତିକ ଇତିହାସରେ ଏକ ମହାନ୍ ଭୂମିକା । ମନୁଷ୍ୟର ଭାବ ଜଗତରେ ମହାନ୍ ସର୍ଜନଶୀଳ ମୁହୂର୍ତ୍ତରେ ସକଳ ପ୍ରକାର ବିରୋଧର ଅବସାନ ଘଟେ । ମାତ୍ର ଉନ୍ମାଦନା ଓ ଉଚ୍ଛ୍ୱାସର ଉଷ୍ଣତା ଶୀତଳ ହୋଇ

ଆସିଲେ ପୁଣି ନାନା ବିରୋଧ ଦେଖାଦିଏ । ଊନବିଂଶ ଶତକର ନୂତନତା ବିଂଶ ଶତକର ଆଦ୍ୟ ପାଦରେ କ୍ରମଶଃ ପୁରାତନ ବୋଧ ହୋଇଥିଲା । ସତ୍ୟବାଦୀ, ସବୁଜ ଓ ଅତ୍ୟାଧୁନିକ କବିମାନଙ୍କ ଲେଖାରେ କାବ୍ୟରୀତି ଓ ଲିଖନ ଶୈଳୀର ପରିବର୍ତ୍ତନ ଘଟିବା ସଙ୍ଗେ ସଙ୍ଗେ ନୂତନ ଛନ୍ଦର ପ୍ରୟୋଗ ଦେଖାଦେଲା । ରାଧାନାଥଙ୍କ ପ୍ରବର୍ତ୍ତିତ ଉପଧା ମିଳନ ଆଉ ସ୍ୱୀକୃତ ହେଲାନାହିଁ । ମିତ୍ର ଛନ୍ଦ ନନା ପ୍ରକାର ଦ୍ରୁତଗତି ମାତ୍ରା-ବୃତ୍ତରେ ଓ ଅମିତ୍ରାକ୍ଷର କଥାଛନ୍ଦ ଅଥବା ଗଦ୍ୟ କବିତାରେ ନୂତନ କଳେବର ଲାଭ କଲା । ଆଧୁନିକ ଓଡ଼ିଆ କବିତାରେ ଛନ୍ଦ ପ୍ରୟୋଗର ଏହି ବିଚିତ୍ର ପରିବର୍ତ୍ତନମୟ ଇତିହାସର ଆଦିଯୁଗ ପ୍ରତି ଦୃଷ୍ଟି ଦେବା ପୂର୍ବରୁ କାବ୍ୟ କଳାରେ ଛନ୍ଦର ସ୍ଥାନ ଯେଉଁ ଏବେ ଦେଖା ଦେଇଥିବା ବିଗ୍ରହ ବିତର୍କ ପ୍ରତି କିଂଚିତ ଧ୍ୟାନ ଦେବା ପ୍ରୟୋଜନ ।

**କାବ୍ୟକଳାରେ ଛନ୍ଦର ସ୍ଥାନ**

କବିତା ପ୍ରସଙ୍ଗ ଭାବିଲାବେଳେ ସ୍ୱତଃ ଛନ୍ଦ କଥା ମନକୁ ଆସେ । କବିତାରେ ଛନ୍ଦ ସାଧାରଣରେ ବୁଝିହେଲା ଭଳି ଏକ ନିୟମ ବା ଶୃଂଖଳା । ସବୁ ଦେଶର ପ୍ରାଚୀନ କବିତା ଓ ଆଧୁନିକ ଯୁଗର ବହୁ ଜନପ୍ରିୟ କବିତାରେ କୌଣସି ନା କୌଣସି ଛନ୍ଦର ପ୍ରାଧାନ୍ୟ ସହଜରେ ଅନୁଭୂତ ହୁଏ । କବିତାରେ ଛନ୍ଦ ଏକ ପ୍ରାଚୀନ ପରଂପରା । ଏହି ପରଂପରାର ପ୍ରଭାବ ଏବେ ବି ମଳିନ ହୋଇନାହିଁ । ଧର୍ମ ଉତ୍ସବର ନୃତ୍ୟ, ଶୋଭାଯାତ୍ରାର ମଙ୍ଗଳ ବାଦ୍ୟ ସଙ୍ଗେ ଯେଉଁ ଲୟ ଓ ତାନ ଶୁଣାଯାଏ ତାହାହିଁ କବିତାର ଯତି ଓ ଛନ୍ଦରେ ଅନୁଭୂତ ହୁଏ । ଆଦିମଙ୍କ ଗଣନୃତ୍ୟରେ ଗୀତ କବିତାର ଛନ୍ଦ ନୃତ୍ୟର କାଳମାତ୍ରା ଗଣନା କାର୍ଯ୍ୟ କରୁଥିଲା । ଛନ୍ଦ ଦେଉଥିଲା ନୃତ୍ୟରେ ଶୃଙ୍ଖଳିତ ଗତି ଓ ହିଲ୍ଲୋଳ । ଆଧୁନିକ ଯୁଗରେ ଛନ୍ଦର ଏହି ଧର୍ମ ସଙ୍ଗୀତରେ ପୂର୍ଣ୍ଣ ଭାବରେ ରହିଅଛି । ସଙ୍ଗୀତ ସହ ବାଦ୍ୟ ଯନ୍ତ୍ରର ସଂପର୍କ ଏବେବି ଛିନ୍ନ ହୋଇନାହିଁ । ମାତ୍ର କବିତା ବହୁ ପରିମାଣରେ ସ୍ୱାଧୀନ ହୋଇଛି । ଆଧୁନିକ ଯୁଗର କୌଣସି କବି ବାଦ୍ୟଯନ୍ତ୍ର ଧରି କବିତା ରଚନା କରନ୍ତି ନାହିଁ । ଆଧୁନିକ ଯୁଗରେ ଛନ୍ଦ କବିତାର ଏକ ବହିରଙ୍ଗ ଉପାଦାନ ହୋଇ ଆଉ ରହିନାହିଁ । ଯତି, ପଦ ଯୋଜନା, ପ୍ରାନ୍ତିକ ମେଳ ଯେତେ ଛନ୍ଦ ଗଠିତ ନୁହେଁ । କବିତା ସହିତ ଛନ୍ଦର ଯୋଗ ଆତ୍ମିକ । କବିତାର ଭାବ, ବିଷୟ, ପଦ, ପଦାର୍ଥ ଯୋଜନା ପର୍ଯ୍ୟନ୍ତ ସଙ୍ଗେ ଏହାର ପ୍ରଭାବ ଅପ୍ରତିହତ । ଛନ୍ଦର ଏହି ଆତ୍ମିକ ପ୍ରକାଶ ଏପରିକି ଗଦ୍ୟରେ ମଧ୍ୟ ଦେଖା ଯାଇପାରେ ।

ବହୁ ଅତୀତ ଯୁଗର ସ୍ମୃତି ଓ ଆଗ୍ରହ ଛନ୍ଦ ସହିତ ଜଡ଼ିତ । ଛନ୍ଦକୁ ଏକ କୁସଂସ୍କାର ବା ଅନ୍ଧଆଗ୍ରହ ବୋଲି ଉଡ଼େଇ ଦେଇ ହେବନାହିଁ । ଏହା ଏକ ବହମାନ ଧାରା । ପ୍ରାଚୀନ ସହ ନବୀନର ପ୍ରାଣସ୍ପନ୍ଦନ ଏହି ଗୋଟିଏ ସୂତ୍ରରେ ଗ୍ରଥିତ । ଏହାର ସ୍ଥାୟୀ ଶକ୍ତି ଚେତନାର ଅନ୍ତସ୍ଥଳରେ ଆନନ୍ଦ ଓ ଆଲୋକ ସୃଷ୍ଟି କରେ ।

ଛନ୍ଦ ସୂଚେଇ ଦିଏ ଯେ, କବିତା ଗଦ୍ୟଠାରୁ ଭିନ୍ନ ଭାବରେ ଲେଖା ହେବା ଉଚିତ । ଏହି ଆକୃତିଗତ ଭିନ୍ନତା କବିତା ପକ୍ଷରେ ବିଶେଷ ମୂଲ୍ୟବାନ । ଏହି ଆକୃତ ବୈଚିତ୍ର୍ୟ କବି ମନରେ କବିତା ରଚନା ଲାଗି ଭାବ ବା ମୁଡ୍ ସୃଷ୍ଟି କରେ । ବାସ୍ତବ ଜୀବନ ସହିତ ଜଡ଼ିତ କୌଣସି ଉପନ୍ୟାସ ବା ବାସ୍ତବ ସମସ୍ୟା ଘେନି ପ୍ରବନ୍ଧ ଲେଖି ବସିବା ବେଳେ ଯେଉଁ ସବୁ ଧାରଣା ମନକୁ ଆସିବା ସ୍ୱାଭାବିକ କବିତା ରଚନା ବେଳେ ତାହା ଆସେନାହିଁ ।

କବିତାର ଯେ ଏକ ସ୍ୱତନ୍ତ୍ର ସମ୍ମୋହନ ଶକ୍ତି ଅଛି ଏହି ଧାରଣା ଛନ୍ଦ ସୃଷ୍ଟି କରେ । କବିତାର ପ୍ରତ୍ୟେକ ଶବ୍ଦ ସ୍ୱତନ୍ତ୍ର ଅର୍ଥ ଗୌରବ ଲାଭ କରେ । କେତେ କୌଶଳରେ ଏହାର ଛନ୍ଦସ୍ପନ୍ଦନ ଗ୍ରଥିତ ହୁଏ । ନାନା ବିଚିତ୍ର ରୂପରେ କଳ୍ପିତ ଭାବଲୋକର ପଥ ଛନ୍ଦର ଲୟରେ କବିଙ୍କ ଇଚ୍ଛା ଅନୁସାରେ ଖୋଲେ ଓ ବନ୍ଦ ହୁଏ । ଯାହା ବହୁ ପୃଷ୍ଠା ଗଦ୍ୟ ଭିତରେ ପ୍ରକାଶ କରିହୁଏ ନାହିଁ, ତାହା ଅଳ୍ପ କେତେ ପଂକ୍ତି କବିତା ଭିତରେ ପ୍ରକାଶିତ ହୁଏ । କବି ହ୍ୱିଟ୍‌ମ୍ୟାନ୍ ଯଥାର୍ଥରେ କହିଥିଲେ—'ଛନ୍ଦର ଲାଭ ହେଉଛି, ଏହା ଏକ ମଧୁରତର ଓ ବିପୁଳତର ଛନ୍ଦର ବୀଜ ବୁଣେ । ପୁଣି ନିଜର ଅଦୃଶ୍ୟ ମୂଳଭିତ୍ତି ପର୍ଯ୍ୟନ୍ତ ଏହା ଏକ ସଂହତି ବନ୍ଧନ କରିନିଏ ।' ୨

ଛନ୍ଦ ଭିତରେ କବିଙ୍କ ସୃଜନ ଶକ୍ତିର ଗୋଟିଏ ଦିଗ ଦେଖିବାକୁ ମିଳେ । ସବୁ ଯୁଗରେ ସମାଲୋଚକଙ୍କ ମତ କବିଙ୍କ ପ୍ରଧାନ ଧର୍ମ ସର୍ଜନା ଶକ୍ତି । ସେ ଅଦୃଷ୍ଟପୂର୍ବଙ୍କୁ ପ୍ରତୀତ କରନ୍ତି, ଅରୂପକୁ ରୂପ ଦାନ କରି ଦେଖାଇ ଦିଅନ୍ତି । ଆତ୍ମଶକ୍ତି ସମ୍ପନ୍ନ, ଗତିମାନ ସୃଷ୍ଟିଶୀଳ, ଐଶ୍ୱରିକ ଗୁଣର ଅଧିକାରୀ କବି ଛନ୍ଦ ମାଧ୍ୟମରେ ନିଜର ଜଗତ ସୃଷ୍ଟି କରନ୍ତି ।

କବି କେବଳ ସୃଷ୍ଟି କରନ୍ତି ନାହିଁ, ସେ ମଧ୍ୟ ନିର୍ମାଣ କରନ୍ତି । ତାଙ୍କ ସୌଧ କାଳ ବକ୍ଷରେ ନିର୍ମିତ ହୁଏ । ନିର୍ଦ୍ଦିଷ୍ଟ ସମୟ କ୍ରମେ ଉଚ୍ଚାରିତ ଶବ୍ଦାବଳୀହିଁ କାବ୍ୟର ପ୍ରଧାନ ଉପାଦାନ । କାବ୍ୟରେ ଏହି ଟେମ୍ପୋରାଲ ଷ୍ଟ୍ରାକ୍‌ଚର ବା କାଳକୃତି ପ୍ରତକ୍ଷୀଭୂତ କରେଇବା ଛନ୍ଦର କାମ ।୩

ଇଂରେଜୀ ରିଦ୍‌ମ ଶବ୍ଦର ମୂଳ ଗ୍ରିକ୍‌ଶବ୍ଦ ରେଇନ୍‌ର (Rhein) ଅର୍ଥ ପ୍ରବାହିତ ହେବା । କବି କାଳ ସ୍ରୋତରେ ଶବ୍ଦାବଳୀକୁ ଭସାଇ ନିଅନ୍ତି । ସ୍ଥିର ଶବ୍ଦ କବିତାରେ ସଚଳ ହୋଇଉଠେ । ଏହି ଚଳନ ହିଁ ଛନ୍ଦର ଧର୍ମ । ଏହାର ପ୍ରଭାବ ମନୁଷ୍ୟ ମନରେ ଅପ୍ରତିହତ । ଛନ୍ଦର ଦୋଳନ ମନୁଷ୍ୟ ପ୍ରାଣକୁ ମୁଗ୍ଧ କରେ । ଏହା ଆଦିମମାନବଙ୍କୁ ନୃତ୍ୟରେ ପ୍ରବୃତ୍ତ କରେ, ସେନାମାନଙ୍କୁ ସମର ଅଗ୍ନିରେ ଝାସ ଦେବାକୁ ସାହସୀ କରେ,

ବିଧର୍ମୀଙ୍କ ହୃଦୟରେ ଈଶ୍ୱର ଚିନ୍ତା ଜାଗ୍ରତ କରାଏ । ସଂସ୍କୃତ ଛନ୍ଦ ଶବ୍ଦର ମୂଳ ଅର୍ଥରୁ ମଧ୍ୟ ଏହି ସୂଚନା ମିଳେ । 'ଛନ୍ଦ୍ୟତେ ଇତି ଛନ୍ଦଃ'—ଯାହା ଆଛନ୍ନ କରେ ବା ସମ୍ମୋହିତ କରେ ତାହାହିଁ ଛନ୍ଦ । ମୁନିମାନେ ଛନ୍ଦ ବୋଲି ଅସୁରଗଣଙ୍କୁ ଆଛନ୍ନ ବା ମନ୍ତ୍ରମୁଗ୍ଧ କରି ଅଭିଭୂତ କରୁଥିଲେ । ଛନ୍ଦର ପ୍ରକାଶ ଭାବ ବା ଭାଷାଠାରୁ ପ୍ରାଚୀନ । ବ୍ରିଟିଶ୍ ଜ୍ଞାନକୋଷର ନିର୍ଣ୍ଣୟ ଅନୁସାରେ 'ଛନ୍ଦ ହେଉଛି ଧ୍ୱନି ଶୃଂଖଳା ପ୍ରତି ମନୁଷ୍ୟର ସହଜାତ ପ୍ରବୃତ୍ତିର ପ୍ରକାଶ ।' ୪

### ଭାବ ପ୍ରକାଶର ସହାୟକ ରୂପେ ଛନ୍ଦ

ଛନ୍ଦକୁ କେବଳ ଏକ ଧ୍ୱନି ଶୃଂଖଳା ବୋଲି ମନେ କରିବା ଠିକ୍ ନୁହେଁ । ଏହା ମଧ୍ୟ ଭାବ ପ୍ରକାଶର ସହାୟକ । ଛନ୍ଦ ଯେଉଁ ପରିମାଣରେ କବିତାର ଭାବ ଅନୁସରଣ କରେ, ତାହା ସେଇ ପରିମାଣରେ ସାର୍ଥକ ହୁଏ । ଏ ବିଷୟରେ ସଂସ୍କୃତ ଆଲଙ୍କାରିକ-ମାନଙ୍କର ସିଦ୍ଧାନ୍ତ ଅତିସ୍ପଷ୍ଟ । ୫ ଭରତ ବୃତ୍ତି ଓ ଧ୍ରୁବ ଅଧ୍ୟାୟରେ ଏହାର ଆଲୋଚନା କରିଛନ୍ତି । ଅଭିନବ ଗୁପ୍ତ ଅଭିନବ ଭାରତୀରେ ଭରତଙ୍କ ମତହିଁ ଉଦ୍ଧାର କରିଛନ୍ତି । କାତ୍ୟାୟନ ସଂସ୍କୃତ ଛନ୍ଦବେତ୍ତା ପ୍ରାଚୀନ ଲେଖକ । ସେ କାବ୍ୟର ବିଷୟ ବସ୍ତୁ, କବିଙ୍କ ମନୋଭାବ ଓ ପରିବେଶ ଅନୁଯାୟୀ ଛନ୍ଦଯୋଜନାର ପକ୍ଷପାତୀ । କ୍ଷେମେନ୍ଦ୍ର ଏହି ପ୍ରସଙ୍ଗରେ ସୁବୃତ୍ତତିଲକରେ (ତୃତୀୟ ବିନ୍ୟାସ—ଶ୍ଲୋକ ୭-୧୬) ଆଲୋଚନା କରିଛନ୍ତି ।

> କାବ୍ୟେ ରସାନୁସାରେଣ ବର୍ଣ୍ଣନାନୁଗୁଣେ ନ ଚ,
> କୁର୍ବୀତ ସର୍ବବୃତ୍ତାନାଂ ବିନିୟୋଗଂ ବିଭାଗବିତ୍ ।

> ବୃତ୍ତରତ୍ନାବଳୀ କାମାଦ୍ ଅସ୍ଥାନେ ବିନିବେଶିତା
> କଥୟତ୍ୟଜ୍ଞତାମେବ ମେଖଳେବ ଗଳେକୃତା ।

ସଂସ୍କୃତ କାବ୍ୟରେ ଛନ୍ଦର ପ୍ରୟୋଗ ପ୍ରତି ଦୃଷ୍ଟି ଦେଲେ ଏ ସିଦ୍ଧାନ୍ତର ଯଥାର୍ଥତା ପ୍ରତିପାଦିତ ହୁଏ । ଅବଶ୍ୟ ଏହାର ଯେ ବ୍ୟତିକ୍ରମ ନାହିଁ ତାହା ନୁହେଁ । ତଥାପି ସ୍ରଗ୍ଧରା ଭଳି ଦୀର୍ଘ ଛନ୍ଦ ଯୁଦ୍ଧ ବର୍ଣ୍ଣନା, ବୀର, ରୁଦ୍ର ଓ ବିଭତ୍ସ ରସର ବର୍ଣ୍ଣନା ସ୍ଥଳରେ ଓ ଅନୁଷ୍ଟୁଭ ଭଳି ଲଘୁ ଛନ୍ଦ ଶାନ୍ତ, ମଧୁର ରସ ଆଦି ବର୍ଣ୍ଣନା ସ୍ଥଳରେ ପ୍ରଯୁକ୍ତ ହୋଇଥାଏ । ଛନ୍ଦ କବିତାରେ ଯେ ଭାବ ପ୍ରକାଶ ପଥର ସହାୟକ ଛନ୍ଦଗୁରୁ କବି ରବୀନ୍ଦ୍ରନାଥ ତାହା ସୁନ୍ଦର ଭାବରେ ଉପଲବ୍ଧି କରିଛନ୍ତି—

> ମାନବେର ଜୀର୍ଣ୍ଣ ବାକ୍ୟେ ଛନ୍ଦ ମୋର ଦିବେ ନବ ସୁର
> ଅର୍ଥେର ବନ୍ଧନ ହତେ ନିୟେ ତାରେ ଯାବେ କିଛୁ ଦୂର
> ଭାବେର ସ୍ୱାଧୀନଲୋକେ । ( କାହିନୀ, ଭାଷା ଓ ଛନ୍ଦ ) ୬

## ଆନନ୍ଦ ଓ ଉଦ୍ଦୀପନ ସୃଷ୍ଟିରେ ଛନ୍ଦର ଭୂମିକା

ଇଂରେଜ କବି ଓ୍ୱାର୍ଡସ୍‌ୱର୍ଥ ଛନ୍ଦ ପ୍ରସଙ୍ଗରେ ଅତି ଗମ୍ଭୀର ଭାବରେ ଚିନ୍ତା କରିଛନ୍ତି । ତାଙ୍କ ମତରେ କବିତାର ମୌଳିକ ଉଦ୍ଦେଶ୍ୟ ଛନ୍ଦ ଦ୍ୱାରା ସାଧିତ ହୁଏ । କବିତାର ଲକ୍ଷ୍ୟ ଆନନ୍ଦ ଓ ଉଦ୍ଦୀପନା ସୃଷ୍ଟି । ଏହା ନିୟମ ଶୃଙ୍ଖଳା, ମନର ଅନୁଦ୍ଦୀପ୍ତ ବା ଅପେକ୍ଷାକୃତ ଅଳ୍ପୋଦ୍ଦୀପ୍ତ ଅବସ୍ଥାର ବିଚିତ୍ର ଭାବାନୁଭୂତି ସହ ଏକାତ୍ମ୍ୟ, ଅଧୀର ଚିତ୍ତବୃତ୍ତିର ସାଧାରଣ ଅନୁଭୂତି ଓ ମନର ସହଜ ଅବସ୍ଥାର ଅନୁଭୂତିର ସମ୍ମିଶ୍ରଣ ଦ୍ୱାରା ସଂଯମ ସାଧନ ବଳରେ ସମ୍ଭବ ହୁଏ । ଛନ୍ଦ ବିନା କବିତା ଏହି ଉଦ୍ଦେଶ୍ୟ ସିଦ୍ଧ କରିବା ଅସମ୍ଭବ । ୭

ଏହି ଭାବରେ ବିଚାର କଲେ ଛନ୍ଦର ଆନନ୍ଦ ଦାନକାରୀ ଶକ୍ତି ତ୍ରିବିଧ—ବୌଦ୍ଧିକ, ନନ୍ଦନ ତାତ୍ତ୍ୱିକ ଓ ଶାରୀରିକ । ପ୍ରଥମତଃ ଛନ୍ଦ ଭିତରେ ନିରବଚ୍ଛିନ୍ନ ଭାବରେ ଏକ ଶୃଙ୍ଖଳା, ଏକ ଉଦ୍ଦେଶ୍ୟମୁଖୀନତା ଦେଖାଯାଏ ବୋଲି ଆମର ବୌଦ୍ଧିକ ଆଗ୍ରହ ସୃଷ୍ଟି ହୁଏ । ନନ୍ଦନ ତାତ୍ତ୍ୱିକ ଦୃଷ୍ଟିରୁ ଏହାର କୃତ୍ରିମ ଗଠନ ଓ ରୂପାଙ୍କନର ସୌନ୍ଦର୍ଯ୍ୟ ଆନନ୍ଦ ଦାନ କରେ । ଏହା କଳ୍ପନା ଓ ଚିନ୍ତା ଶକ୍ତିକୁ ଉଜ୍ଜୀବିତ କରେ, ବାସ୍ତବ ଜଗତର ବନ୍ଧନରୁ ମନକୁ ଦୂରକୁ ନେଇଯାଏ । ଛନ୍ଦର ଧ୍ୱନି ପ୍ରବାହ କିପରି ଆମ ସ୍ନାୟୁମଣ୍ଡଳରେ ପୁଲକ ଶିହରଣ ସୃଷ୍ଟି କରେ ତାହା ନିର୍ଦ୍ଦିଷ୍ଟଭାବରେ କହିବା କଠିନ । ଚିନ୍ତନ ଅନୁଭୂତି, ଆବେଗ ଏସବୁ ଉଭୟ ଗଦ୍ୟ ଓ ପଦ୍ୟରେ ପ୍ରକାଶ କରି ଯାଇପାରେ । ମାତ୍ର କବିତା ଶତବାର ଆବୃତ୍ତି ହେବା ବେଳେ ଗଦ୍ୟ ଥରେ ମାତ୍ର ପଢ଼ିଲେ ଯଥେଷ୍ଟ ହୁଏ । ଏହାର କାରଣ ଠିକ କରି ନ ହେଲେ ହେଁ ଅନୁମାନ କରି ଯାଇପାରେ । କବିତା କେବଳ ଆମ ବୁଦ୍ଧି ଓ କଳ୍ପନାକୁ ଉଦ୍ଦୀପ୍ତ କରେ ନାହିଁ, ଆମ ସ୍ନାୟୁମଣ୍ଡଳରେ ପୁଲକ ସଞ୍ଚାର କରେ । କାରଣ ଛନ୍ଦ ସହିତ ମାନବ ଜୀବନର ସମ୍ପର୍କ ନିବିଡ଼ । ଜାଗରଣ ଓ ନିଦ୍ରା, ଶ୍ୱାସକ୍ରିୟା, ହୃଦସ୍ପନ୍ଦନ ସର୍ବତ୍ର ଏକ ଛନ୍ଦର ଦୋଳନ ଲକ୍ଷ୍ୟ କରି ଯାଇପାରେ । କୌଣସି କବିତା ସ୍ପଷ୍ଟ ସ୍ୱର ବିନ୍ୟାସରେ ଆବୃତ୍ତି କଲେ ଶ୍ୱାସକ୍ରିୟା ଉପରେ ଛନ୍ଦର ପ୍ରଭାବ ଅନୁଭୂତ ହୁଏ । ଜଣେ ପାଶ୍ଚାତ୍ୟ ପଣ୍ଡିତ ଗଣନା କରି ଦେଖିଛନ୍ତି ଯେ, ଏକ ମିନିଟରେ ଏକଶହ ଦ୍ୱିଅକ୍ଷର ବିଶିଷ୍ଟ ଚରଣ ବା ପଞ୍ଚସ୍ୱର ତିନି ଅକ୍ଷର ବିଶିଷ୍ଟ ଚରଣ ପଢ଼ା ଯାଇପାରେ । ଏହି ଭାବରେ ଦେଖିଲେ, ଆମ ନାଡ଼ୀ ସ୍ପନ୍ଦନର ଗତିଠାରୁ କବିତାରେ ଛନ୍ଦର ଚଳନ କିଞ୍ଚିତ ଦ୍ରୁତ । ତେଣୁ କବିତା ପାଠ ସମୟରେ ସ୍ନାୟୁମଣ୍ଡଳରେ ଏକ ସ୍ୱତଃ ଉତ୍ତେଜନା ଓ ପୁଲକ ସଞ୍ଚାରିତ ହେବା ସ୍ୱାଭାବିକ । ଏହା ସତ୍ୟ ହେଲେ, ଯଥାର୍ଥରେ କହିବାକୁ ହେବ କବିତା ହୃଦୟର ଭାଷା, ହୃଦୟର ରକ୍ତରେ ଲିଖିତ । କବିତାର ଚେତନା ବହିରଙ୍ଗ ଚେତନା ନୁହେଁ । ବୌଦ୍ଧିକ ବିଚାରର ବାହାରେ ସହଜାତ ପ୍ରବୃତ୍ତି ଜଗତରେ କବିତାର ଆନନ୍ଦର ସ୍ଥାନ । ପୁଣି ମନୁଷ୍ୟେତର ପ୍ରାଣୀଙ୍କ

ହୃଦୟରେ ମଧ୍ୟ ଏହି ଛନ୍ଦର ଆସନ କଳ୍ପନା କରାଯାଇ ପାରେ । ଛନ୍ଦ ସହିତ କବିତାର ସମ୍ପର୍କ ଛିନ୍ନ ହେଲେ ଜୀବନ ସହିତ ଏହାର ସମ୍ପର୍କ ଛିନ୍ନ ହେବ । କବିତାର ଛନ୍ଦ ପ୍ରେମ ଏହି ଶରୀରତାତ୍ତ୍ୱିକ ବିଗ୍ରହର କେତେଦୂର ଯଥାର୍ଥ ତାହା ପ୍ରତ୍ୟେକେ କବିତା ଆବୃତ୍ତି ସମୟରେ ନିଜେ ଅନୁଭବ କରିପାରନ୍ତି ।

## ଛନ୍ଦ, ଗଦ୍ୟ ଓ ପଦ୍ୟ ।

ନବଯୁଗର କବିଙ୍କ ପ୍ରକୃତ ବର୍ଣ୍ଣନା କରିବାକୁ ଯାଇ କବି ବାଇରଣ୍ ଲେଖିଥିଲେ, 'ଯେ ଉଭୟ ଆଦର୍ଶ ଓ ଦୃଷ୍ଟାନ୍ତ ଦ୍ୱାରା ଦେଖାଇ ଦିଅନ୍ତି ଗଦ୍ୟ ହିଁ କବିତା ଓ କବିତା ହିଁ କେବଳ ଗଦ୍ୟ ।' ୭ ଆଧୁନିକ କବିତା ଗଦ୍ୟ ଯୁଗର, ସ୍ୱତଃ ଗଦ୍ୟ ପ୍ରଭାବିତ । କବିତା ପୂର୍ଣ୍ଣତଃ ଛନ୍ଦର ସୁବର୍ଣ୍ଣ ଶୃଙ୍ଖଳରେ ବନ୍ଧ ନ ହୋଇ ମୁକ୍ତିର ସନ୍ଧାନ କରିଛି । ଏକ ଦିଗରେ ଛନ୍ଦର ବନ୍ଧନ, ଅନ୍ୟ ଦିଗରେ ଚଳମାନ ଭାବର ପ୍ରବାହ, ଏକ ଦିଗରେ ଯତି ଓ ମେଳ, ଅନ୍ୟ ଦିଗରେ ଭାଷା, ଭାଷାର ବ୍ୟାକରଣଗତ ଓ ବିନ୍ୟାସଗତ ପରିଚ୍ଛନ୍ନ ପ୍ରକାଶ—ଏ ସମସ୍ତ କବିତାର ଉଭୟ ଧ୍ୱନି ମାଧୁର୍ଯ୍ୟ ଓ ପ୍ରକାଶ ସୌନ୍ଦର୍ଯ୍ୟ ସହିତ ସମାନଭାବେ ଜଡିତ । ତେଣୁ ଉଚ୍ଚ କବିତା ଲାଗି ଛନ୍ଦ ଯେ ଅନପେକ୍ଷିତ ଏହା ଅନେକ ମାନିବାକୁ ରାଜି ନୁହନ୍ତି । ବରଂ ଅନେକ ଛନ୍ଦର ବନ୍ଧନକୁ ଭାବ ପ୍ରକାଶର ବାଧକ ବୋଲି ମନେ କରନ୍ତି । ମିଲ୍‌ଟନ ମନେ କରୁଥିଲେ, 'ପ୍ରାନ୍ତିକ ମେଳ କବିତା ଏକ ବର୍ବର ଯୁଗର ସୃଷ୍ଟି । ଭାବର ଦାରିଦ୍ର୍ୟ ଓ ଛନ୍ଦର ଗତିହୀନତାକୁ ଲୁଚାଇବାକୁ ଏହା ଏକ ଉପାୟ ।' ୮ କୋଲେରିଜଙ୍କ ମତରେ 'ଉଚ୍ଚକୋଟୀର କବିତା ମିଟର ବିନା ସମ୍ଭବ ହୋଇପାରେ ।'୯ ଶେଲି ବହୁଭାବରେ ଫିଲୋସଫର ବା ପଦ୍ୟ ଲେଖକଙ୍କୁ କବି ନାମଯୋଗ୍ୟ ବୋଲି ବିଗ୍ରହରୁ ନ ଥିଲେ । ରାଧାନାଥ ମଧ୍ୟ ଏହି ଭାବରେ କବିତା ଓ ପଦ୍ୟ ମଧ୍ୟରେ ପାର୍ଥକ୍ୟ ଦେଖିଛନ୍ତି । ପଦ୍ୟ ଲେଖକ ମାତ୍ର ଯେ କବି ପଦବାଚ୍ୟ ନୁହନ୍ତି, ଏ ଧାରଣା ତାଙ୍କଠାରେ ସ୍ପଷ୍ଟ ଥିଲା ।

କବିତା ରଚନା ଯେ ଏକ କଠିନ କଳା ତାହା ମାନିବାକୁ ଅନେକ ପ୍ରସ୍ତୁତ ନୁହନ୍ତି । ବର୍ଣ୍ଣାଡ୍‌ଶଙ୍କ ମତରେ, 'ପଦ୍ୟ ନୁହେଁ, ଗଦ୍ୟ ରଚନା ହିଁ କଠିନ ।' ୧୦ ଏହାର ପ୍ରତିଧ୍ୱନି ଆଧୁନିକ ଇଂରେଜ କବି ଏଜ୍‌ରା ପାଉଣ୍ଡଙ୍କ ଉକ୍ତିରେ ଶୁଣାଯାଏ । ସେ କହନ୍ତି କବିତା ମଧ୍ୟ ଗଦ୍ୟ ଭଳି ସୁଲିଖିତ ହେବା ଉଚିତ ।' ୧୧

ଗଦ୍ୟ ଓ ପଦ୍ୟ ସଭ୍ୟତାର ସୁଦୀର୍ଘ ଇତିହାସ କାଳରେ ସମାନ୍ତରାଳ ଭାବରେ ଗତି କରିବା ଫଳରେ ଉଭୟର ସ୍ୱାଧୀନ ମହତ୍ତ୍ୱ ବହୁ ପରିମାଣରେ ହରାଇଛନ୍ତି । ମନୁଷ୍ୟର ଭାବ ପ୍ରକାଶ କ୍ଷେତ୍ରରେ କବିତା ଏକାଧିପତ୍ୟ ହରାଇଛି । ସ୍ମୃତିଶକ୍ତିର ସହାୟକ ହୋଇଥିବାରୁ ପ୍ରାଚୀନ କାଳରେ ସବୁ କିଛି କବିତାରେ ପ୍ରକାଶିତ ହେଉଥିଲା । ଆଜିର

ମୁଦ୍ରା ଯନ୍ତ୍ର ଓ ହେତୁ ବିଶ୍ଳେଷଣ ଯୁଗରେ ସ୍ମୃତି ନିର୍ଭରଶୀଳତାର ଆବଶ୍ୟକତା ନାହିଁ । ଜଣେ ପାଶ୍ଚାତ୍ୟ ସମାଲୋଚକ ଯଥାର୍ଥରେ କହିଛନ୍ତି, 'ଅଷ୍ଟାଦଶ ଶତକରୁ ଆଧୁନିକ ପୃଥିବୀର ସାହିତ୍ୟ, ଅର୍ଥନୀତି ସମାଜ ଓ ରାଜନୀତିକ ଆଦର୍ଶରେ ଯେଉଁ ବିପୁଳ ପରିବର୍ତ୍ତନ ଘଟୁଅଛି ତାହା ଶ୍ରେଣୀ ବିଭାଜନ ସଂପୂର୍ଣ୍ଣ ଧ୍ୱଂସ କରି ପାରି ନ ଥିଲେ ବି ମାନବ ସମାଜ ଭଳି ସାହିତ୍ୟ ଜଗତରେ ମଧ୍ୟ ଶ୍ରେଣୀ ବାରିବା ଲାଗି ଆମ ଆଖିରେ ଯବନିକା ଟାଣି ଦେଇଛି ।' ୧୨

ସମଗ୍ର ଭାବରେ ଦେଖିଲେ, କବିତାରେ ଶୃଙ୍ଖଳିତର ଛନ୍ଦ ପ୍ରୟୋଗ ପ୍ରତି କବିମାନଙ୍କ ମଧ୍ୟରେ ଏବେ ଏକ ଅନାସ୍ଥା ଭାବ ଦେଖା ଦେଇଛି । କେତେକ କବି ଇତସ୍ତତଃ ଧ୍ୱନି ମେଳ ବା ଯତି ମେଳ ଦେଇ ଛନ୍ଦର ସ୍ଥାନ ପୂରଣ କରିବାକୁ ଚେଷ୍ଟା କରୁଛନ୍ତି । ପୁଣି କେତେକ କବି ମଧୁର ଧ୍ୱନିଗତ ଛନ୍ଦର ସପକ୍ଷରେ ଥାଇ ଛନ୍ଦକୁ ଏକାବେଳକେ ପରିହାର କରିବାକୁ ଗୃହୀତ୍ତ । ମାତ୍ର ଏହି ଧ୍ୱନିଗତ ଛନ୍ଦର ଯଥାର୍ଥ ରୂପ କଳନା କରିବା ଏକାବେଳକେ ସମ୍ପ୍ରତିରେ ଅସମ୍ଭବ ମନେହୁଏ । ଊନବିଂଶ ଶତକର ଶେଷ ଆଡ଼କୁ ଛନ୍ଦ ସ୍ୱାଧୀନରେ ଏଇ ଧାରା ଜନ୍ମଲାଭ କରି ବିଂଶ ଶତକରେ ସ୍ୱଚ୍ଛନ୍ଦରେ ବିପୁଳ ଶକ୍ତି ଲାଭ କରିଅଛି । ୧୩

ପଦ୍ୟ ଉପରେ ଗଦ୍ୟର ଅହେତୁକ ପ୍ରଭାବ ଯେପରି ସମାଲୋଚନାର ବିଷୟ, ସେହିପରି ମଧ୍ୟ ନୂତନ ପ୍ରାଣଶକ୍ତିର ପରିଚାୟକ । ଇଲିୟଟଙ୍କ ମତରେ କବିତାର ଗଦ୍ୟରୁ ଅନେକ ଶିଖିବାର ଅଛି, ଠିକ ଯେପରି ଏକ ଦେଶର କବିତା ପକ୍ଷରେ ଅନ୍ୟ ଦେଶର କବିତାରୁ ଶିଖିବା ପ୍ରୟୋଜନ ହୋଇଥାଏ । ଭାଷା ଭାଷା ମଧ୍ୟରେ ବିନିମୟ ଯେପରି ଭାଷାକୁ ପ୍ରାଣବନ୍ତ କରେ, ଗଦ୍ୟ ଓ ପଦ୍ୟର ପରସ୍ପର ଉପରେ ସକ୍ରିୟ ପ୍ରଭାବ ସେଇପରି ସାହିତ୍ୟକୁ ପ୍ରାଣବନ୍ତ କରିବା ସୁନିଶ୍ଚିତ । ୧୪

## ଆଧୁନିକ ଯୁଗରେ ଓଡ଼ିଆରେ ଛନ୍ଦ ବିଚାର

ଓଡ଼ିଆ ଛନ୍ଦ ସମ୍ବନ୍ଧରେ ଏପର୍ଯ୍ୟନ୍ତ ଯେଉଁସବୁ ଆଲୋଚନା ହୋଇଛି, ତାହାକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରଥମତଃ ଛନ୍ଦର ବହିରଙ୍ଗ ରୂପ ସମ୍ବନ୍ଧୀୟ ଆଲୋଚନା, ଦ୍ୱିତୀୟତଃ ଛନ୍ଦ ବିକାଶର ତାତ୍ତ୍ୱିକ ଆଲୋଚନା । ଛନ୍ଦର ବହିରଙ୍ଗ ସମ୍ବନ୍ଧୀୟ ଯେଉଁ ବର୍ଣ୍ଣନା 'ଯତିପାତ' 'ଅଳଙ୍କାର ତରଙ୍ଗିଣୀ' ବା 'ଅଳଙ୍କାର ଚନ୍ଦ୍ରିକା' ଆଦିରେ ଦିଆ ହୋଇଛି, ତାହା ଏକାନ୍ତ ଗତାନୁଗତିକ । ପ୍ରାଚୀନ ଓଡ଼ିଆ ଛନ୍ଦର ବାହ୍ୟ ଆକୃତିର ଏକ ପାରମ୍ପରିକ ଚିତ୍ର ଏଥିରୁ ମିଳେ । ଶ୍ୟାମସୁନ୍ଦର ରାଜଗୁରୁଙ୍କର ଆଲୋଚନା ଏହି ପର୍ଯ୍ୟାୟରେ ସବୁଠାରୁ ପ୍ରସିଦ୍ଧ । ଓଡ଼ିଆ ଭାଷା ବିସ୍ତାରରେ କଥିତ ଓ ଲିଖିତ

ଭାଷାର ସ୍ୱତନ୍ତ୍ର ଅଧ୍ୟୟନ ଲାଗି ଯେପରି ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତତ୍ତ୍ୱରେ ପ୍ରୟାସ ଦେଖା ଯାଇଥିଲା, ଓଡ଼ିଆ ଛନ୍ଦର ଉତ୍ପତ୍ତି ଓ ବିକାଶ ପ୍ରସଙ୍ଗରେ ଠିକ ସେହିପରି ଏକ ଦୃଷ୍ଟିକୋଣ ରାଜଗୁରୁଙ୍କଠାରେ ଦେଖିବାକୁ ମିଳେ । ଓଡ଼ିଆ ଛନ୍ଦର ଉତ୍ପତ୍ତି ଓ ବିକାଶକ୍ରମ ଦେଖାଇବା ଲାଗି ସେ ପ୍ରଥମେ ପ୍ରୟାସ କରିଛନ୍ତି । ମାତ୍ର ଛନ୍ଦ ବିଚାରର ଏକ ସାଧାରଣ ସୂତ୍ର ବା ପଦ୍ଧତି ତାଙ୍କ ସମ୍ମୁଖରେ ସ୍ପଷ୍ଟ ନ ଥିବାରୁ ସେ ନିଜ ଆଲୋଚନାର ଏକ ପରିଣତ ରୂପ କଳ୍ପନା କରି ପାରି ନାହାନ୍ତି । ସେ ଓଡ଼ିଆ ଛନ୍ଦକୁ ସମ ଓ ବିଷମ ଭେଦରେ ଦୁଇ ଭାଗରେ ବିଭକ୍ତ କରି ପ୍ରାକୃତ ଓ ଲୋକଗୀତି ସହିତ ଏସବୁର ତୁଳନା କରିଛନ୍ତି । ମାତ୍ର ବିଷମ ଛନ୍ଦଗୁଡ଼ିକର ପ୍ରାଚୀନତମ ରୂପ ସେ ଦେଖାଇ ପାରି ନାହାନ୍ତି । କେତେଗୁଡ଼ିଏ ଛନ୍ଦର ବିବରଣ ମାତ୍ର ଦେଇ ସନ୍ତୁଷ୍ଟ ରହିଛନ୍ତି । ଓଡ଼ିଆ ଛନ୍ଦର ଯେ ଏକ ବିକାଶଶୀଳ ଇତିହାସ ଅଛି ଓ ଛନ୍ଦଗୁଡ଼ିକ ପରିବର୍ତ୍ତନଶୀଳ ଏହା ରାଜଗୁରୁଙ୍କ ଆଲୋଚନାରୁ ସ୍ପଷ୍ଟ ହୁଏ । କେଉଁ ଭାବ ଓ ରସ ପରିବେଷଣ ଲାଗି କବିମାନେ କିପ୍ରକାର ଛନ୍ଦର ଉପଯୋଗୀତା ଅନୁଭବ କରିଛନ୍ତି ବା କବିତାର ସାମଗ୍ରିକ ରୂପ ରଚନାରେ ଛନ୍ଦର ସ୍ଥାନ ବିଷୟରେ ସେ ନିଜ ଆଲୋଚନାରେ କୌଣସି ସଙ୍କେତ ଦେଇ ନାହାନ୍ତି । ୧୫

ଓଡ଼ିଆ ଛନ୍ଦର ତାତ୍ତ୍ୱିକ ବିଚାର ପଣ୍ଡିତ ନୀଳକଣ୍ଠ ହିଁ ପ୍ରଥମେ କରିଛନ୍ତି । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କଠାରୁ ଉପଧା ବିଚାର ପ୍ରସଙ୍ଗରେ ସତ୍ୟ ରାହିତବିପ୍ରଙ୍କ ଆଲୋଚନା ପର୍ଯ୍ୟନ୍ତ ସବୁ ଏକ ପର୍ଯ୍ୟାୟଭୁକ୍ତ କରାଯାଇପାରେ, ଯଦିବା ଏହିସବୁ ଆଲୋଚନାର ପ୍ରକାର,ବିଷୟ ଏକା ନୁହେଁ । ପଣ୍ଡିତ ନୀଳକଣ୍ଠଙ୍କ ବିଚାରରେ ଛନ୍ଦ ଏକ ବହମାନ ପରମ୍ପରା । ଏହାର ପରିସର ବିପୁଳ । କେତେବେଳେ ଜୀବନରେ, ଭାସ୍କର୍ଯ୍ୟରେ ଅଥବା କାବ୍ୟ କଳାରେ ରୂପାୟିତ ହୋଇ ଛନ୍ଦ ନିଜର ପ୍ରବାହରେ ବହୁ ପରମ୍ପରାର ସମନ୍ୱୟ ସାଧନ କରେ । ପ୍ରାଚୀନ ସହିତ ନବୀନ ଯୋଗସୂତ୍ର ରକ୍ଷା କରେ । ପୁଣି ଛନ୍ଦ ସହିତ ଭାଷାର ଉଚ୍ଚାରଣ ରୀତି ଓ କବିତାର ଭାବ ପ୍ରକାଶ ଶକ୍ତିର ସମ୍ବନ୍ଧ ନିବିଡ଼ । ସଂସ୍କୃତର ଆର୍ଯ୍ୟ ଓ ଜାତି ଏହି ଦୁଇ ଶ୍ରେଣୀ ମଧ୍ୟରେ ଅଛି ପ୍ରାଚୀନ ବୈଦିକ, ପ୍ରାକୃତ ଓ ଦ୍ରାବିଡ଼ ଛନ୍ଦ ରୀତିର ଅଭିବ୍ୟକ୍ତି ରହିଥିଲା ପରି ସମଗ୍ର ଭାବରେ ଦେଖିଲେ, ଓଡ଼ିଆ ଛନ୍ଦରେ ପ୍ରାଚୀନ ଆଦିମ, ଦ୍ରାବିଡ଼ ଓ ପ୍ରାକୃତାଦି ଓ ସଂସ୍କୃତ ଆର୍ଯ୍ୟଭାଷାର ଛନ୍ଦର ପ୍ରୟୋଗ ସନ୍ଧାନ କରାଯାଇ ପାରେ । ମାତ୍ର ଓଡ଼ିଆ ଏକ କ୍ରମବିକଶିତ ଓ ପରିବର୍ତ୍ତନକ୍ଷମ ଭାଷା ହୋଇଥିବାରୁ ଏଥିରେ ସଂସ୍କୃତ ଭଳି ଛନ୍ଦର ଏକ ସ୍ଥିର ଶୃଙ୍ଖଳା କରାଯାଇ ନ ପାରେ । ପୁଣି ଓଡ଼ିଆ ଭାଷାର ଉଚ୍ଚାରଣ ରୀତିରେ ସ୍ୱରଲଘୁ ଓ ସ୍ୱରଘାତ ଧ୍ୱନିର କ୍ରମ ନ ଥିବାରୁ ଏଥିରେ ଛନ୍ଦ ରଚନା ଯେତିକି ସହଜ, ଛନ୍ଦାନୁଭୂତି ସେତିକି କଠିନ । ଏଥିଲାଗି ଆମ ଛନ୍ଦରେ କେବଳ ଉଚ୍ଚାରଣ କ୍ରମରେ ଛନ୍ଦର ଅଭିବ୍ୟକ୍ତି ନ ଘଟି ଗାୟକର କଣ୍ଠରେ ଘଟୁଥିଲା । ରାଧାନାଥଙ୍କ ପର୍ଯ୍ୟନ୍ତ

ଓଡ଼ିଆ ଛନ୍ଦ କବିତା କହିଲେ ସଙ୍ଗୀତକୁହିଁ ବୁଝାଉଥିଲା । ରାଧାନାଥ ଓ ମଧୁସୂଦନଙ୍କ କବିତା ଓ କାବ୍ୟରେ ଆହୃତ କେତୋଟି ପାଶ୍ଚାତ୍ୟ ଛନ୍ଦକୁ ବାଦ ଦେଲେ କେବଳ ପ୍ରାଚୀନ ଓଡ଼ିଆ ଛନ୍ଦର ଛନ୍ଦହିଁ ବିନିଯୁକ୍ତ ହୋଇଛି । ଛନ୍ଦକୁ କବିତା ସହିତ ଏକାତ୍ମରୂପେ ବିଗ୍ଭର କରିବା ଓଡ଼ିଆରେ ଏକ ବିଚିତ୍ର ପରଂପରା । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିଲେ, 'ଓଡ଼ିଆ ସଭ୍ୟତା ଯେପରି ଭାରତରେ ଅନନ୍ୟ ସାଧାରଣ ସେହିପରି ଓଡ଼ିଆର କାବ୍ୟକଳା ପ୍ରକାଶ କରିବାରେ ଛନ୍ଦ ଅନନ୍ୟ ସାଧାରଣ । ଓଡ଼ିଆରେ କାବ୍ୟର ନାମ ଛନ୍ଦ, ଯଥା ସେ ଛନ୍ଦ ପଢ଼ୁଛି । ସର୍ଗର ନାମ ଛନ୍ଦ—ମଧୁବାବୁ ଲେଖିଥିଲେ ଛନ୍ଦମାଳା ଅର୍ଥାତ୍ କବିତାସମୂହ ।' ୧୭ ଏକ ଦିଗରେ ଏହି ଛନ୍ଦ ଯେପରି ସ୍ୱରଶିଳ୍ପମୟ ସଙ୍ଗୀତ ଅନ୍ୟ ଦିଗରେ ଏହି ଛନ୍ଦ ଭାଷା ଶିଳ୍ପମୟ ଭାବବିକାଶକ କବିତା । ରାଧାନାଥ ଯୁଗରୁ ଆରମ୍ଭ କରି ଏପରିକି ଅନେକ ଆଧୁନିକ କବି ଏ ପରଂପରାରୁ ଏକାବେଳେକେ ବିଚ୍ଛିନ୍ନ ହୋଇ ନାହାନ୍ତି ।

## ରାଧାନାଥଙ୍କ ଛନ୍ଦର ବୈଶିଷ୍ଟ୍ୟ

କାବ୍ୟର ଉତ୍କର୍ଷ ଛନ୍ଦ ସାପେକ୍ଷ ନୁହେଁ, କ୍ଷମତା ସାପେକ୍ଷ'—ରାଧାନାଥଙ୍କ ଏହି ଉକ୍ତିରେ ନବଯୁଗର ଛନ୍ଦର ଆଭିମୁଖ୍ୟ ସୂଚୀତ ହୋଇଛି । କବିତାରେ ଛନ୍ଦକୁ ଏ ଯୁଗର କବିମାନେ କାବ୍ୟ ସହିତ ଏକାତ୍ମରୂପେ ଦେଖିଛନ୍ତି । ଏହା ଭାବ ପ୍ରକାଶର ଏକ ବାହନ । ନବ ଯୁଗର ଛନ୍ଦରେ ପ୍ରାଚୀନ ଛନ୍ଦର ଆକୃତି ଅପରିବର୍ତ୍ତିତ ରହିଥିଲେହେଁ, ତାହାର ମୂଳ ପ୍ରକୃତିର ପରିବର୍ତ୍ତନ ଘଟିଅଛି । ବାହାରୁ ଦେଖିଲେ ରାଧାନାଥ କଳହଂସକେଦାର, ନଟବାଣୀ ରାମକେରୀ, ବଙ୍ଗଳାଶ୍ରୀ ଆଦି ଛନ୍ଦ ବ୍ୟବହାର କରିଛନ୍ତି । ଏହି ଛନ୍ଦଗୁଡ଼ିକର ପ୍ରାଚୀନ ଯତି ନିୟମ ରକ୍ଷା କରିଛନ୍ତି । ଏଗୁଡ଼ିକୁ ପ୍ରାଚୀନ ଛନ୍ଦର ସ୍ୱରଳୟରେ ହୁଏତ ଗାନ କରାଯାଇପାରେ । ମାତ୍ର ଏହାର ଆତ୍ମିକ ପ୍ରକୃତି ପ୍ରାଚୀନ ଛନ୍ଦ କବିତାଠାରୁ ବହୁ ପରିମାଣରେ ଭିନ୍ନ । ଏଥିରେ ଛନ୍ଦ କେବଳ ଏକ ଧ୍ୱନିଶୃଙ୍ଖଳା ନୁହେଁ । କବିତାର ଭାଷାଶିଳ୍ପ, ବାକ୍ୟକଳା, ଭାବ ପ୍ରକାଶ ଶକ୍ତି ବିଷୟ ପ୍ରପତ୍ତି ବା ଅର୍ଥବୋଧ ସହିତ ଛନ୍ଦସ୍ପନ୍ଦ ନିବିଡ଼ଭାବେ ଗ୍ରଥିତ । ଏଣୁ ପ୍ରାଚୀନ ଛନ୍ଦରେ ରଚିତ ହେଲେହେଁ ଆମେ ସହଜରେ ଅନୁଭବ କରିଥାଉଁ, ରାଧାନାଥଙ୍କ କବିତା ପ୍ରାଚୀନ ପଦ୍ଧତିରେ ଲିଖିତ ନୁହେଁ । ଏହା ଯେପରି ଗେୟ, ସେହିପରି ପାଠ୍ୟ । ବରଂ ଅଧିକ ପରିମାଣରେ ପାଠ୍ୟ । ସାଧାରଣ ଆବୃତ୍ତିରେ ମଧ୍ୟ ଏହି କବିତାର ଛନ୍ଦ ଅନୁଭୂତ ହୁଏ । ଏଠାରେ ପ୍ରାଚୀନ ଓ ଆଧୁନିକ କବିତାର ଦୁଇଟି ପଂକ୍ତିର ଦୃଷ୍ଟାନ୍ତରୁ ବିଗ୍ଭର କରାଯାଇ ପାରେ

କି ଉପମା ଦେବା ସହଜେ ତ ବାମା ତିଭୁବନେ ନିରୁପମା
କମଳ ନୟନେ ମଦନମୋହନ ପ୍ରିୟତମା ସୁଖସୀମା । ରସକଲ୍ଲୋଳ-୧୦।୨

ଉପମାର ପ୍ରତି ଉପମା ରୂପସୀ ବିଭୂଷଣ ଭୂଷଣର
ବୃଥା ଶ୍ରମ ସିନା ଏ ଥାଉଁ ବୋଲିବା ଫୁଲଶର ମଦନର ।

( ପାଟ୍ଟଗା )

ଉଦ୍ଧୃତ ପଦ ଦୁଇଟି ଏକ ଛନ୍ଦ ଓ ପ୍ରାୟ ଏକା ପର ବିଷୟ ଘେନି ରଚିତ । ଆବୃତ୍ତି କଲେ ପ୍ରଥମ ପଦଟି ଅଧିକ କୋମଳ ଓ ସ୍ୱରଲୟ ଯୁକ୍ତ ମନେ ହୁଏ । ପ୍ରଥମ ପଦରେ ଧ୍ୱନି ପ୍ରବାହରେ ଅଧିକ ସମତା ଓ ସାବଲୀଳତା ଅଛି । ଏହାର ଛନ୍ଦ ସ୍ପନ୍ଦ ମୁଖ୍ୟତଃ ଧ୍ୱନିଗତ ଏହା କାବ୍ୟରେ ଥାଇପରେ, ମାତ୍ର ବାକ୍ୟରେ ନାହିଁ । ଏହା ମୁଖ୍ୟତଃ ଶ୍ରୁତି ଛନ୍ଦ ବା ଅଡ଼ିଟରି ରାଇମ୍ । କବିତାର ସମଗ୍ର ରୂପ ରଚନାରେ ପ୍ରଭାବ ଦୃଗରୁ ଛନ୍ଦକୁ ପ୍ରଧାନତଃ ତିନି ଭାଗରେ ବିଭକ୍ତ କରାଯାଇପାରେ । ଶ୍ରୁତି ଛଂଦ ବା ଅଡିଟରି ରାଇମ୍, ଦୃଷ୍ଟି ଛଂଦ ବା ଭିଜୁଏଲ ରାଇମ, ଭାବଛଂଦ ବା ରସାନୁଭୂତି ଛଂଦ ଅଥବା କନ୍‌ସେପ୍‌ଚୁଆଲ୍ ବା ଇମୋଟିଭ୍ ରାଇମ୍ । ଏକ ଏକ ଧ୍ୱନିଗ୍ରାମର ପୁନରାବୃତ୍ତି ବା ବିଭାଜନ ଫଳରେ ଶ୍ରୁତିଛଂଦ ରଚିତ ହୁଏ । ଏକ ବା ଏକାଧିକ ଶବ୍ଦର ପୁନରାବୃତ୍ତି ବା ଏକକ ପ୍ରୟୋଗଦ୍ୱାରା ଅଭିବ୍ୟକ୍ତ ଚିତ୍ରକଳ୍ପ, ଆଲେଖ୍ୟ ଅଙ୍କନ ହେତୁ ଦୃଷ୍ଟିଛନ୍ଦର ଅନୁଭବ ସମ୍ଭବ ହୁଏ । ସେହିପରି ଶବ୍ଦ ଓ ଭାବକଳ୍ପର ସମନ୍ୱୟ ଦ୍ୱାରା ଭାବଛନ୍ଦ ରଚନା କରାଯାଇପାରେ ।

ଉପର ଦୃଷ୍ଟାନ୍ତର ଦ୍ୱିତୀୟ ପଦଟିରେ ଶ୍ରୁତିଛନ୍ଦ ଦୁର୍ବଳ । ମାତ୍ର ଏହି ଅଭାବ ଭାବ ଓ ଦୃଷ୍ଟି ଛନ୍ଦ ଦ୍ୱାରା ପୂରଣ କରିବାର ଚେଷ୍ଟା ହୋଇଛି । ନୀରବ ପଠନରେ ବି ଏହି ପଂକ୍ତିର ଏକ ସୁନ୍ଦର ଛନ୍ଦାନୁଭୂତି ହୁଏ । ପୁଣି ଏଇ ପଦଟି ଅଧିକ ଗଦ୍ୟାତ୍ମକ । ଗଦ୍ୟର ବାକ୍ୟ ଧାରା ମଧ୍ୟରେ ଶବ୍ଦ ଓ ପଦ ଯୋଜନାର ଯେଉଁ ଏକ ସହଜ ଉତ୍‌ଥାନ ପତନର କ୍ରିୟା ଦେଖିବାକୁ ମିଳେ ତାହା ଏଥିରେ ପ୍ରାଞ୍ଜଳ ଭାବରେ ପ୍ରକାଶିତ । ଏଇ ସମସ୍ତ ନୂତନ ଇଙ୍ଗିତହିଁ ଆଧୁନିକ କବିତାର ଧର୍ମ । ଏହି ରୀତିରେ ଗ୍ରଥିତ ହୋଇ କବିତା କ୍ରମଶଃ ପାରଂପରିକ ଅର୍ଥରେ ଛନ୍ଦହୀନ ହୋଇ ଗଦ୍ୟମୁଖୀ ହୋଇ ପଡୁଛି । ଓଡ଼ିଆ କବିତାକୁ ରାଧାନାଥ ଓ ତତ୍ପର ଯୁଗର କବିମାନଙ୍କ ଦାନ ହେଉଛି କାବ୍ୟର ଆକୃତିଗତ ମୁକ୍ତି ସାଧନ । ଏହି ସାଧନା ଯେପରିକି ନିଜ ଅଲକ୍ଷ୍ୟରେ ଏହି ନବଯୁଗର କବିମାନେ କରିଥିଲେ ।

ଏହି ଆକୃତିଗତ ମୁକ୍ତିର ଏକାଧିକ କାରଣ ଅନୁମାନ କରାଯାଇ ପାରେ । ସାଧାରଣତଃ ସମାଲୋଚକମାନେ ସ୍ୱୀକାର କରିଥାନ୍ତି ଯେ ରାଧାନାଥ ଓଡ଼ିଆ ଛନ୍ଦକୁ ଆଧୁନିକ ଜୀବନର ଅନୁକୂଳ କରିବା ଲାଗି ସହଜ ଓ ସରଳ ଅଭିବ୍ୟକ୍ତି ଦେଲେ । ଛନ୍ଦର ସମୃଦ୍ଧି ନୁହେଁ, ଛନ୍ଦର ସାରଲ୍ୟହିଁ ତାଙ୍କର ଶ୍ରେଷ୍ଠ ଦାନ । ବଙ୍ଗାଳି, ଚକ୍ରା ଦେଶାକ୍ଷ, ତୋଡ଼ି ଆଦି

ଗାୟନ ଦୃଷ୍ଟିରୁ କଠିନ ଛନ୍ଦକୁ ବାଦ ଦେଇ ଚକ୍ରକେଳି, ନଟବାଣୀ ଆଦି ସହଜ ଛନ୍ଦର ବ୍ୟବହାର ମୂଳରେ ଏହି ଉଦ୍ଦେଶ୍ୟ ଥିବାର ଅନୁମାନ କରାଯାଏ। ଏହି ନୂତନତାର ଆଭିମୁଖ୍ୟ ବର୍ଣ୍ଣନା କରିବାକୁ ଯାଇ ଡାଃ ମାୟାଧର ମାନସିଂ କହିଛନ୍ତି, 'ଓଡ଼ିଆ ସାହିତ୍ୟରେ ସମୁନ୍ନତ ଛନ୍ଦ ସମୃଦ୍ଧି ସତ୍ତ୍ୱେ ରାଧାନାଥ ଛନ୍ଦ ରଚନାରେ ଏକ ପ୍ରୟୋଜନୀୟ ନୂତନତା ଆଣିଲେ। ପ୍ରାଚୀନ କବିମାନଙ୍କର ଛନ୍ଦ ରଚନା ଏକ ସମୃଦ୍ଧ ଅରଣ୍ୟ ପରି, ଯେଉଁଠାରେ ମନୁଷ୍ୟ ପ୍ରକୃତିକୁ ସଙ୍ଗୀ ପରି ଆଦର କରିପାରେ ନାହିଁ। ଭୟ କରେ। ଅପର ପକ୍ଷରେ ରାଧାନାଥଙ୍କ ଛନ୍ଦ ଯତ୍ନ ରଚିତ ଉଦ୍ୟାନ ପରି, ଯେଉଁଠାରେ ମନୁଷ୍ୟ ପ୍ରକୃତିକୁ ସଙ୍ଗୀରୂପେ ଗ୍ରହଣ କରିବାକୁ ସାହସ ପାଏ। ଏଠାରେ ଭୟଙ୍କର କିଛି ନାହିଁ, ଦୁର୍ଭେଦ୍ୟ ବା ଦୁଃସାଧ୍ୟ କିଛି ନାହିଁ, ସବୁ ସୁବୋଧ, ସବୁ ପ୍ରିୟ।' ୧୮ ଏଠାରେ କବି ମାନସିଂ ନିଜର ଅନୁଭବ ଯଥାର୍ଥଭାବରେ ପ୍ରକାଶ କରିଥିଲେ ହେଁ ରାଧାନାଥଙ୍କ ଛନ୍ଦର ଜନପ୍ରିୟତାର କାରଣ ଠିକ ଭାବରେ ନିରୂପଣ କରି ପାରି ନାହାନ୍ତି। ଉପର ଆଲୋଚନାରୁ କଳନା କରାଯାଇପାରେ ଯେ, ଆଧୁନିକ ମନ କବିତାରୁ ଭାବ ଓ ରୂପାନୁଭୂତିର ସ୍ୱାଦ ବିଶେଷ ଭାବରେ ପାଇବାକୁ ଚାହେଁ। ଏହା ବ୍ୟକ୍ତି ବିଶେଷର ଉପଭୋଗ୍ୟ। କବିତାର ଭାବ ଓ ଦୃଷ୍ଟି ଛନ୍ଦରୁ ଏହା ପ୍ରକୃଷ୍ଟ ରୂପେ ମିଳିଥାଏ। ରାଧାନାଥ ଛନ୍ଦର ଏହିସବୁ ଦିଗ ପ୍ରତି ଅବହିତ ଥିବାରୁ ତାଙ୍କ କବିତା ପ୍ରାଚୀନ କବିତା ତୁଳନାରେ ଅଧିକ ଶୁଷ୍କ ଓ ଗଦ୍ୟାୟିତ ମନେ ହେଲେ ହେଁ ଆଧୁନିକ ଯୁଗର ଅନୁକୂଳ ହୋଇଅଛି। ଏପରିକି ପାଶ୍ଚାତ୍ୟ ଷ୍ଟାଇଲରେ ରାଧାନାଥ ଯେଉଁ ଅମିତ୍ରାକ୍ଷର ଛନ୍ଦ ବ୍ୟବହାର କରିଛନ୍ତି ତାହା ତାଙ୍କର ମିତ୍ର ଛନ୍ଦ ସହ ସମ୍ପର୍କହୀନ ନୁହେଁ। ସମସ୍ତ ଏକ ପର୍ଯ୍ୟାୟଭୁକ୍ତ କରାଯାଇ ପାରେ। ଏ ସମସ୍ତ ଭିତରେ ରାଧାନାଥଙ୍କ ଛନ୍ଦର ନୂତନତା କଳନୀୟ। ଅଧ୍ୟାପକ ଗିରିଜାଶଙ୍କର ରାୟ ଯଥାର୍ଥରେ କହିଛନ୍ତି 'ଉପେନ୍ଦ୍ର ଭଞ୍ଜ ଆଦିଙ୍କ ଲିଖନ ଭଙ୍ଗୀ ପରିବର୍ତ୍ତିରେ ରାଧାନାଥ ନୂତନ ଛନ୍ଦର ଅବତାରଣା କରିଥିଲେ ଓ ତାଙ୍କର କ୍ଷମତାରୁ ଓ ଦେଶର ପାରିପାର୍ଶ୍ୱିକ ଅବସ୍ଥାରୁ ଭଞ୍ଜ କବିତାର ଲିଖନ ପଦ୍ଧତି ଓଡ଼ିଶାରୁ ଲୁପ୍ତ ହୋଇଅଛି।" ୧୯ ଏହି ଦୃଷ୍ଟିରୁ ଦେଖିଲେ ରାଧାନାଥ ଓଡ଼ିଆ କବିତାରେ ଯେଉଁ ଯୁଗ ପରିବର୍ତ୍ତନ ଆଣିଲେ ତାହା କେବଳ ବିଷୟ ଓ ଭାଷାଗତ ନୁହେଁ, ଛନ୍ଦଗତ ମଧ୍ୟ।

## ଉପଧା ବିଚାର

ଛନ୍ଦ ଓ ଲିଖନ ପଦ୍ଧତିର ନବ ପ୍ରୟୋଗ ଫଳରେ ରାଧାନାଥ ଯେପରି ଓଡ଼ିଆ କବିତାରୁ ଭଞ୍ଜୀୟ ଶୈଳୀକୁ ବିଦାୟ ଦେଇଥିଲେ, ଠିକ ସେହିପରି ରାଧାନାଥୀୟ ଶୈଳୀ ଓ ଛନ୍ଦରୀତି ଆଜି ଓଡ଼ିଆ କବିତାରୁ ଅପସୃତ ହୋଇଅଛି। ଅଲକ୍ଷ୍ୟରେ ରାଧାନାଥ ଛନ୍ଦମୁକ୍ତିର ପ୍ରୟାସ କରିଥିଲେହେଁ ପ୍ରକାଶ୍ୟରେ ସେ ଯେ ଛନ୍ଦ ଶୃଙ୍ଖଳାର ସମର୍ଥକ ତାହା ସର୍ବତ୍ର ପରିଲକ୍ଷିତ ହୁଏ।

ତାଙ୍କର ସମସ୍ତ ମିତ୍ରାକ୍ଷର ଛନ୍ଦ କଠିନ ଶୃଙ୍ଖଳାରେ ଆବଦ୍ଧ । ସେ ଯେ କେବଳ ପ୍ରାଚୀନ ଶୃଙ୍ଖଳା ସବୁ ରକ୍ଷା କରିଛନ୍ତି ତାହା ନୁହେଁ, ଉପଧା ମିଳନ ଭଳି ନୂତନ ଶୃଙ୍ଖଳା ପ୍ରବର୍ତ୍ତିତ କରିଛନ୍ତି ।

ରାଧାନାଥ ମିତ୍ରାକ୍ଷର ଛନ୍ଦକୁ ପୂର୍ଣ୍ଣ ଓ ଅପୂର୍ଣ୍ଣ ଭେଦରେ ବିଚାର କରୁଥିଲେ । ସେ ମନେ କରୁଥିଲେ "ମିତ୍ରାକ୍ଷର ପୂର୍ଣ୍ଣ ମିତ୍ରାକ୍ଷର ହେଲେ ଅଧିକ ସୁଶ୍ରାବ୍ୟ ହୁଏ ।" [୨୦] ବ୍ୟାକରଣ ପ୍ରବେଶର ଛଂଦ ପ୍ରକରଣରେ ରାଧାନାଥ ପ୍ରାଚୀନ କବିତାରୁ ପୂର୍ଣ୍ଣ ଓ ଅପୂର୍ଣ୍ଣ ମିତ୍ରାକ୍ଷରର ନିମ୍ନ ଉଦାହରଣ ଦେଇଛନ୍ତି ।

ପୂର୍ଣ୍ଣ : ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ
ଶ୍ରୀଭୂଷଣ କରି କନ୍ୟାକୁ ଆଣ ।

ଅପୂର୍ଣ୍ଣ : ବାରଣ ଶିରେ ପଦ ଦେଇ ଆସୁ
ବରଣ କରି ରାମ ମନ ତୋଷୁ ।

ପୁଣି ଲକ୍ଷଣ ବର୍ଣ୍ଣନା କରି ଲେଖିଛନ୍ତି, 'ପ୍ରଥମ ଦୁଇ ପଂକ୍ତିର ଶେଷ ବର୍ଣ୍ଣ ଏବଂ ତାହାର ପୂର୍ବବର୍ତ୍ତୀ ସ୍ୱରର ମେଳ ଥିବାରୁ ତାହା ପୂର୍ଣ୍ଣ ମିତ୍ରାକ୍ଷର । ଶେଷୋକ୍ତ ପଂକ୍ତି ଦ୍ୱୟରେ ଶେଷ ବର୍ଣ୍ଣର ମେଳ ଥାଇ ତାହାର ପୂର୍ବବର୍ତ୍ତୀ ସ୍ୱରର ମେଳ ନ ଥିବାରୁ ତାହା ଅପୂର୍ଣ୍ଣ ମିତ୍ରାକ୍ଷର ।

ସମାଲୋଚନା ଦୃଷ୍ଟିରେ ଏହି ଉପଧା ମିଳନ ଏକ ଅଳଙ୍କାର । ପ୍ରାଚୀନ ଓଡ଼ିଆ ଛନ୍ଦରେ ଏହାର ବ୍ୟବହାର ଦେଖାଯାଏ । ନି ପୁରୁଷ ଦାସ ରାମକୃଷ୍ଣ କେଳି କଲ୍ଲୋଳ କବିତା ଗ୍ରନ୍ଥକୁ ଅନ୍ତ୍ୟାନୁପ୍ରାସରେ ଲେଖିଥିଲେ । [୨୧] ତାଙ୍କର ଅନ୍ତ୍ୟାନୁପ୍ରାସ ଆଧୁନିକ ଉପଧା ମିଳନ ସଙ୍ଗେ ସମାନ । ମାତ୍ର ରାଧାନାଥ ଏହାକୁ ମିତ୍ରାକ୍ଷର କବିତାର ଏକ ଅଙ୍ଗ ରୂପେ ଗ୍ରହଣ କରିଛନ୍ତି । ଏପରି ଭାବରେ ବିଚାର କରିବା ମୂଳରେ ବଙ୍ଗ ଭାଷା କବିତାର ପ୍ରଭାବ ଅନୁମାନ କରାଯାଇପାରେ ।

ଉପଧା ମିଳନ ଏକ କୃତ୍ରିମ ଶୃଙ୍ଖଳା । ସବୁବେଳେ ରାଧାନାଥଙ୍କ ଅନୁସରଣକାରୀମାନେ ମଧ୍ୟ ଏହାର ଯଥାର୍ଥ ପ୍ରୟୋଗ କରିପାରି ନାହାନ୍ତି । ଏହି ଉପଧା ମିଳନ ଆଧୁନିକ କବିତାରେ ଏକ କୃତ୍ରିମ ବନ୍ଧନ । ଏହା ସ୍ୱାଭାବିକ ଭାବ ପ୍ରକାଶ କ୍ଷେତ୍ର ସଂକୁଚିତ କରିଛି । ଏହି ପ୍ରସଙ୍ଗରେ ଏବେ ପଣ୍ଡିତ ନୀଳକଣ୍ଠ ଓ କବି ସଚି ରାଉତରାୟ ବିଶଦ ଆଲୋଚନା କରିଛନ୍ତି । ଏପରିକି ଏହି ଉପଧା ମିଳନ ଦ୍ୱାରା ରାଧାନାଥଙ୍କ କବିତାରେ କିପରି ପ୍ରତ୍ୟବାୟ ସୃଷ୍ଟି ହୋଇଛି ତାହା ପ୍ରାଚୀନ ସଢରେ ପଣ୍ଡିତ ବ୍ରଜବନ୍ଧୁ ମିଶ୍ର ଶର୍ମା ବିଚାର କରି ଦେଖାଇ

ଦେଇଛନ୍ତି । କିନ୍ତୁ ଏ ସୁଶ୍ରାବ୍ୟ କରିବାକୁ ଯାଇ ଗୋଟିଏ ମାତ୍ର ଅଳଂକାରର ବନ୍ଧନରେ ପଡ଼ି ଉଦ୍ଦିଷ୍ଟ ଭାବ ପ୍ରକାଶ ଓ ଧ୍ୱନି ଶୃଙ୍ଖଳା ଦିଗରୁ କାବ୍ୟକୁ ଏତେ ଦୋଷରେ ଜର୍ଜ୍ଜରିତ କରିବା ନିଶ୍ଚୟ ସ୍ପୃହଣୀୟ ନୁହେଁ । ''

ଯେଉଁ ଧ୍ୱନି ସମତା ରକ୍ଷା ଉପଧା ମିଳନର ଲକ୍ଷ୍ୟ ତାହା ବି ରାଧାନାଥ ନିଜେ ରକ୍ଷା କରିପାରି ନାହାନ୍ତି । ମିଶ୍ରବର୍ଣ୍ଣ ସହିତ ଅମିଶ୍ରବର୍ଣ୍ଣ, ଘୋଷଯୁକ୍ତ ଧ୍ୱନି ସହିତ ଘୋଷହୀନ ଧ୍ୱନିର ସମତା ଆରୋପ କବିତାକୁ ଶ୍ରୁତିକଟୁ କରିଅଛି ।

ପ୍ରଭାତିଲା ବିଭାବରୀ ହସିଲେ ଉତ୍ଫୁଲେ
ପଙ୍କଜବରଣୀ ଉଷା ଉଦୟ ଅଚଳେ ।

ଏଠାରେ ମିଶ୍ର 'ଚ୍ଛ' ବର୍ଣ୍ଣ ସହିତ ଅମିଶ୍ର 'ଚ'ର ସମାନତା ଆରୋପିତ ।

ସଘୋଷ ଖ ଘ ଝ ଧ ଢ ଭ ଆଦି ସହିତ ଘୋଷହୀନ କ ଗ ଦ ଡ ବ ବର୍ଣ୍ଣର ପଦ ପକେଇବା ଅସିଦ୍ଧ । ଏହାର ବହୁ ଦୃଷ୍ଟାନ୍ତ ରାଧାନାଥଙ୍କ କବିତାରେ ଅଛି । ତଳ ଦୃଷ୍ଟାନ୍ତରେ ଉଭା ସହିତ ଯୁବାର ପଦ ପଡ଼ିଛି ।

ଲଜ୍ଜାବତୀ ବାଳା ଶଯ୍ୟାରୁ ଓହ୍ଲାଇ ତଳେ ଯାଇ ହେଲା ଉଭା
ସଙ୍ଗେ ସଙ୍ଗେ ତଳେ ଓହ୍ଲାଇ ତା କର ପଲ୍ଲବ ଧଇଲା ଯୁବା ।

ଉପଧା ମିଳନ ଅନୁରୋଧରେ କେତେ ଶବ୍ଦର ସ୍ୱାଭାବିକ ରୂପ ବିକୃତ ହୋଇଅଛି । ନିମ୍ନ ଦୃଷ୍ଟାନ୍ତରେ ବୌଦ ଶବ୍ଦଟି ବୋଦରେ ପରିଣତ ହୋଇଛି ।

ଅଙ୍ଗ ଲାଗି ପାଇଁ କନ୍ଧପକ୍ଷୀ ଜାତ ହରିଦ୍ରା ଯୋଗାଏ ବୋଦ
ଅନୁଗୋଳ ଶାଳ କ୍ଷୀରେ ହେଉଅଛି ନଅର ଧୂପ ଆମୋଦ

ଉପଧା ମିଳନ ଘଟାଇବାକୁ ଯାଇ କେତେକ ସ୍ଥଳରେ ଅର୍ଥବୈକଲ୍ୟ ଘଟୁଅଛି ଓ ସ୍ୱାଭାବିକଭାବେ ଭାବ ପ୍ରକାଶ ସମ୍ଭବ ହୋଇନାହିଁ । ଗୋଟିଏ ପଦରେ ଯେଉଁ ଭାବ ପ୍ରକାଶ ପାଇ ପାରନ୍ତା, କେବଳ ଛନ୍ଦ ଅନୁରୋଧରେ ସେଥିଲାଗି ଏକ ବାକ୍ୟ ରଚନା କରିବାକୁ ପଡ଼ିଅଛି । ଫଳରେ ସଂଯମ ଓ ସୂଚନା ପରିବର୍ତ୍ତେ ବାକ୍‌ପଲ୍ଲବନ ହୋଇଅଛି । ଏହି ଶ୍ରେଣୀର ଗୋଟିଏ ଦୋଷ ବିରୁଦ୍ଧମତିକାରିତା ।

ଏଣେ କରେ ବୋଲ ଅମର ସରଣୀ
ବିରାଜନ୍ତି ଚନ୍ଦ୍ରଚୂଡ଼ ଚୂଡ଼ାମଣି ।

ଚନ୍ଦ୍ର ପରିବର୍ତ୍ତେ ଚନ୍ଦ୍ରଚୂଡ଼ାମଣି ଶବ୍ଦର ପ୍ରୟୋଗ ନିଶ୍ଚୟ ଦୋଷଣୀୟ ।

ଓଡ଼ିଆ କବିତାରେ ଉପଧା ମିଳନର ଅନାବଶ୍ୟକତା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ପଣ୍ଡିତ ନୀଳକଣ୍ଠ ଏହା ନିଜ କୋଣାର୍କେ କାବ୍ୟରେ ପରିହାର କରିଛନ୍ତି । ଏହି କାବ୍ୟର ସଫଳତାର ଏକ କାରଣ ଉପଧା ମିଳନ ଭଳି କୃତ୍ରିମ ଶୃଙ୍ଖଳାର ପରିହାର ବୋଲି ସମାଲୋଚକଙ୍କର ମତ । ମାନସିଂଙ୍କ ମତରେ ଉପଧାର ଅନାବଶ୍ୟକ ବନ୍ଧନରୁ ମୁକ୍ତି ଫଳରେ ଏହି କାବ୍ୟର ଛନ୍ଦରେ ଏକ ବଳିଷ୍ଠ ଜାଙ୍ଗଲିକ ସୁଷମା ପ୍ରକାଶ ପାଇଛି । ଓଡ଼ିଆ କବିତାରେ ଉପଧାର ଅନାବଶ୍ୟକତା ବିଷୟରେ ଦୀର୍ଘ ଆଲୋଚନା କରି ସେ ଗୁରୁତ୍ୱପୂର୍ଣ୍ଣ ନିମ୍ନ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । 'ଉପଧାର କୌଣସି ସ୍ୱତନ୍ତ୍ର ଆକର୍ଷଣୀ ଶକ୍ତି ଓଡ଼ିଆ ଭାଷାରେ ନାହିଁ । ଓଡ଼ିଆ ଭାଷାର ଧ୍ୱନିଗତ ବୈଚିତ୍ର୍ୟ ଧ୍ୱୈମାତ୍ରିକ ମେଳର ଅପେକ୍ଷା ରଖେ ନାହିଁ । ତା'ପରେ ଓଡ଼ିଆ ସାହିତ୍ୟରେ ଉପଧାର କୌଣସି ଦୃଢ଼ ପୃଷ୍ଠଭୂମି ନାହିଁ କି ଓଡ଼ିଆ ସାହିତ୍ୟ ପରମ୍ପରାରେ ଏହାର କୌଣସି ସମର୍ଥନ ନାହିଁ । କି ସଂସ୍କୃତ କି ଓଡ଼ିଆ କୌଣସି ସାହିତ୍ୟ ବ୍ୟାକରଣରେ ଉପଧାର କୌଣସି ଯୁକ୍ତିଯୁକ୍ତ ପରିଚୟ ମିଳେ ନାହିଁ । ଉପଧା ପ୍ରଣାଳୀ ଉଠିଗଲେ ଓଡ଼ିଆ ସାହିତ୍ୟରୁ ଭାଷା, ଛନ୍ଦ ଓ ଭାବ ପ୍ରକାଶର ଦୈନ୍ୟ, ବୈକଲ୍ୟ ଓ ବିକୃତି ଦୂର ହୋଇ ଏକ ପରିଚ୍ଛନ୍ନ ସରଳ ପଦ୍ଧତି ଗଢ଼ି ଉଠିବ । [୭୩]

## ପାଶ୍ଚାତ୍ୟ ଛନ୍ଦର ଆହରଣ

ପ୍ରାଚୀନ ଛନ୍ଦର ନବୀକରଣରେ ରାଧାନାଥ ଓ ତତ୍କାଳୀନ ଯୁଗର ଆଦର୍ଶ ଯେପରି ଏବେ ଆଉ ନାହିଁ, ପାଶ୍ଚାତ୍ୟ ଆହୃତ ଛନ୍ଦ ମଧ୍ୟ ଏବେ ପୁରୁଣା ହୋଇଯାଇଛି । ଆପଣା ଯୁଗର ଦୀର୍ଘ ବର୍ଣ୍ଣନାତ୍ମକ କାବ୍ୟ କବିତା ଲାଗି ରାଧାନାଥ ମଧୁସୂଦନ ଯେଉଁ ଅମିତ୍ରାକ୍ଷର, ସ୍ପେନସାରିଆନ ଷ୍ଟାଞ୍ଜା ଆଦି ପ୍ରୟୋଗ କରୁଥିଲେ ତାହା ଆଜିର ଭାବ କବିତା, ଏପରିକି ଦୀର୍ଘ ବର୍ଣ୍ଣନାତ୍ମକ କବିତାରେ ମଧ୍ୟ ଦେଖିବାକୁ ମିଳେ ନାହିଁ । ମାତ୍ର ଏଥିଲାଗି ଅନୁମାନ କରିବା ଉଚିତ ନୁହେଁ ଯେ ଏମାନଙ୍କର ଆହରଣରେ କିଛି ବୈଶିଷ୍ଟ୍ୟ ନ ଥିଲା । ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦ ଓ ମଧୁସୂଦନଙ୍କ ସନେଟ ମିଲଟନ ଓ ସେକ୍ସପିୟରଙ୍କ ଛନ୍ଦ ସହିତ ତୁଳନୀୟ ହେଲେ ହେଁ ଏକାନ୍ତ ଅନୁକରଣ ନୁହେଁ । ଏଥିରେ ମଧ୍ୟ ପ୍ରାଚୀନ ଓ ନବୀନର ଏକ ସମନ୍ୱୟ ସାଧନର ପ୍ରୟାସ ସୁସ୍ପଷ୍ଟ । ଏମାନେ ଆମ ଭାଷାରେ ଛନ୍ଦର ପରମ୍ପରା ଓ ପ୍ରକୃତି ପ୍ରତି ସମ୍ପୂର୍ଣ୍ଣ ଅବହିତ ଥାଇ ଯେତିକି ସମ୍ଭବ ପାଶ୍ଚାତ୍ୟ ଛନ୍ଦ ଆହରଣ ଦ୍ୱାରା ବୈଚିତ୍ର୍ୟ ସୃଷ୍ଟିର ପ୍ରୟାସ କରିଛନ୍ତି । ଏଠାରେ ଏମାନଙ୍କ ବୈଶିଷ୍ଟ୍ୟ ବିଚାର କରିବା ପୂର୍ବରୁ ପାଶ୍ଚାତ୍ୟ ବିଶେଷତଃ ଇଂରେଜୀ ଛନ୍ଦର ସାଧାରଣ ପ୍ରକୃତି ବିଷୟରେ ସାମାନ୍ୟ ସୂଚନା ଦେବା ଆବଶ୍ୟକ ।

ଛନ୍ଦବିଦ୍ ଷ୍ଟୁଆର୍ଟ ଇଂରେଜୀ ଛନ୍ଦର ପ୍ରକୃତି ଆଲୋଚନା କରି ଏକ ସାଧାରଣ ସଂଜ୍ଞା ନିରୂପଣ କରିଛନ୍ତି । ତାଙ୍କ ମତରେ ଛନ୍ଦ ହେଉଛି, "ବାଚନରେ ଆପାତତଃ ସମାନ

କାଳଗତ ବ୍ୟବଧାନରେ ଘାତ ସଂସ୍ଥାପନ ।" ୨୪ ଇଂରେଜୀ ଉଚ୍ଚାରଣ ସ୍ୱଭାବରେ, ଧ୍ୱନି ବିନ୍ୟାସରେ ଘାତ ଓ ଲୟ—ଷ୍ଟ୍ରେସ୍ ଓ ପିଚ୍‌ର ବ୍ୟବହାର ସ୍ୱାଭାବିକ ହୋଇଥିବାରୁ ଏହି ଘାତ ସଂସ୍ଥାପନ ଦ୍ୱାରା ଛନ୍ଦାନୁଭୂତି ସହଜ ଓ ସମ୍ଭବ ହୁଏ । ପୁଣି ଉଚ୍ଚାରଣଗତ ଧ୍ୱନି-ଗ୍ରାମର ପରିମାଣ ଘେନି ଛନ୍ଦ ବସ୍ତୁର ଲାଟିନ୍ ସଂସ୍କୃତ ଆଦି ସବୁ ଆର୍ଯ୍ୟଭାଷାର ଏକ ସାଧାରଣ ପରଂପରା । ଇଂରେଜୀରେ ଏହାର ବ୍ୟତିକ୍ରମ ଦେଖାଯାଏ ନାହିଁ । ସବୁ ଆର୍ଯ୍ୟଭାଷାର ଛନ୍ଦଭଙ୍ଗୀର ରୀତି ମଧ୍ୟ ପ୍ରାୟ ଏକ ପ୍ରକାର । ପଦ ଓ ଷ୍ଟାଞ୍ଜା, ପଂକ୍ତି ଓ ଲାଇନ୍, ଚରଣ ଓ ଫୁଟ୍, ଯତିବିରାମ ଓ ପଜ୍ ଆଦି ସମ୍ବନ୍ଧ ସମାନ ଭାବରେ ଦେଖିବାକୁ ମିଳେ । ପାଶ୍ଚାତ୍ୟ ବସ୍ତୁରରେ କବିତାର ପଦ ଯେପରି ଏକ ଏକ ପୂର୍ଣ୍ଣ ବିରାମ ସ୍ଥଳ, ଆମ ପ୍ରାଚୀନ ଛନ୍ଦରେ ଏକ ପଦ ଶେଷରେ ଗାୟକଙ୍କୁ ସେଇପରି ପୂର୍ଣ୍ଣ ବିଶ୍ରାମ ମିଳିଥାଏ । ମାତ୍ର ଆମର ପ୍ରାଚୀନ ଛନ୍ଦ କେବଳ ସ୍ୱର ଲୟରେ ଗାନ କରାଯାଉଥିବାରୁ ବଚନ ବିନ୍ୟାସର ସ୍ୱାଭାବିକ ଯତି ବା ବିରାମ ପ୍ରତି ଯଥାର୍ଥ ଧ୍ୟାନ ଦିଆ ଯାଉ ନଥିଲା । (ଇଂରେଜୀରେ ଉପଯତି, ବିଭଙ୍ଗ ଯତି ଆଦି ଯେପରି ବାଚନ ବିନ୍ୟାସର ପରିପୂରକ ଓଡ଼ିଆ ପ୍ରାଚୀନ କବିତାରେ ତାହା ଦେଖାଯାଏ ନାହିଁ । ଆମ ପ୍ରାଚୀନ ରୀତିରେ ରଚିତ କବିତା ସ୍ୱରଲୟରେ ଯେପରି ଗେୟ, ବଚନ ବିନ୍ୟାସରେ ସେପରି ପାଠ୍ୟ ନୁହେଁ ।) ଏଠାରେ ମଧୁସୂଦନଙ୍କର ସୁପରିଚିତ 'ଉତ୍କଳ ମା ଜନମ ଭୂମି' କବିତାର ଦୃଷ୍ଟାନ୍ତ ନିଆଯାଇପାରେ । ଛନ୍ଦ ରକ୍ଷି ପାଠ କଲେ ମୂଳ ଚରଣଟି ହେବ—

ଉତ୍କ । । ମାଜ । । ନମ ଭୂମି
ପବି । । ତ୍ରଭା । । ରତ ଭୂମି

ପ୍ରାଚୀନ ରୀତିର ଏ ଛନ୍ଦ ବଡ଼ ମୁଗ୍ଧକର । କିନ୍ତୁ ଭାଷାରେ ଭାବଦ୍ୟୋତକ ସରଳ ଓ ସ୍ୱଚ୍ଛନ୍ଦ ଛନ୍ଦଶୈଳୀ ଫୁଟାଇବାରେ ତା କିପରି ପ୍ରତ୍ୟବାୟ, ତା ଏହି ଦୃଷ୍ଟାନ୍ତରୁ ବେଶ୍ ବୁଝା ଯାଉଛି । ପ୍ରାଚୀନ ଓଡ଼ିଆ ଛନ୍ଦରେ କେବଳ ଅକ୍ଷରର ପୂର୍ଣ୍ଣ ସ୍ୱାଧୀନତା । ଅକ୍ଷର ଛନ୍ଦର ପଦ ବା ଅର୍ଥପଦ ଚଳନର ଅପେକ୍ଷା ରଖିନାହିଁ । ଏହାର ପ୍ରକୃତ ବର୍ଣ୍ଣନା କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଯଥାର୍ଥ କହିଛନ୍ତି, 'ଛନ୍ଦ ଥିଲା ପଣ୍ଡିତଙ୍କ ସାଧନା ଓ ଅ-ଶୂଦ୍ରଙ୍କ କାବ୍ୟ ବିଳାସ । ଶବ୍ଦାଳଂକାର ଏହାର ବିଳାସ ସଙ୍ଗୀ । ଅର୍ଥାଳଙ୍କାର ଏଥିରେ ଗତାନୁଗତିକ ନିୟମାବଦ୍ଧ ।' ୨୫ ଏହି ପ୍ରାଚୀନ ଛନ୍ଦର ପ୍ରଭାବ ଏଡ଼ାଇ ରାଧାନାଥ ମଧୁସୂଦନ ଆଦି କବିମାନେ କେବଳ ଛଂଦ ବୈଚିତ୍ର୍ୟ ଦିଗରୁ ନୂଆ ଭାବ ପ୍ରକାଶ ଦିଗରୁ ଇଂରେଜୀ ଛଂଦର ଯେଉଁ ସ୍ୱାଧୀନତା ଓ ଶୃଂଖଳା ତାହା ଆହରଣର ସାଧୁ ଉଦ୍ୟମ କରିଛନ୍ତି ।

### ଅମିତ୍ରାକ୍ଷର ଛନ୍ଦ

ଓଡ଼ିଆ କବିତାରେ ଏହି ଛଂଦର ସଫଳ ବିନଯୋଗ କରିଥିଲେହେଁ ରାଧାନାଥ ଏହାର ଆଦି ପ୍ରବର୍ତ୍ତକ ନୁହନ୍ତି । ସାମୟିକ କ୍ଷୁଦ୍ର କବିତାରେ ଅନେକ ଗୌଣକବି ଏହାର

ବ୍ୟବହାର କରିଛନ୍ତି । ରାମଶଙ୍କର ନାଟକର ସଂଳାପରେ ପ୍ରଥମେ ଏହାର ବହୁଳ ପ୍ରୟୋଗ କରିଛନ୍ତି । ରାଧାନାଥ ଏକ ପ୍ରକାର ନିଜ କବି ଜୀବନର ଶେଷ କାଳରେ ମହାଯାତ୍ରାରେ ଏହି ଛଂଦର ବିନିଯୋଗ କରିଛନ୍ତି । ଏ ବିଷୟରେ ତାଙ୍କ ନିଜର ସ୍ୱୀକାରୋକ୍ତି ବଡ଼ ସ୍ପଷ୍ଟ । ଗୋଟିଏ ପତ୍ରରେ ସେ ଜଣେ କବି ବନ୍ଧୁଙ୍କୁ ଲେଖିଥିଲେ, 'ଓଡ଼ିଆରେ ଅନେକ ଲୋକ ଅମିତ୍ରାକ୍ଷରରେ ଲେଖିଛନ୍ତି, ମଧ୍ୟ ଲେଖୁଛନ୍ତି । ଏହି ସାହସରେ ମୁଁ ସେଥିରେ ପ୍ରବୃତ୍ତ ହୋଇଥିଲି । ଅନ୍ୟଥା ଏପରି ଦୁରୂହ ବିଷୟରେ ମୁଁ କଦାଚ ହସ୍ତାର୍ପଣ କରିବାକୁ ସାହସୀ ହୋଇ ନଥାନ୍ତି ।' ୨୭ ......ପୁଣି ଅମିତ୍ରାକ୍ଷର ରଚନାରେ ନିଜ ଅନୁଭୂତି ବର୍ଣ୍ଣନା କରି ଲେଖିଛନ୍ତି, 'ମିତ୍ରାକ୍ଷର ଅପେକ୍ଷା ଅମିତ୍ରାକ୍ଷର ସହଜ ଏ ମତ କେତେଦୂର ଠିକ୍, ମୁଁ କହି ନପାରେ । ନିଜ ଅନୁଭବରୁ ମୁଁ ଜାଣେ ଅମିତ୍ରାକ୍ଷର ରଚନା ଅଧିକତର କଠିନ ।" ୨୭

ଅମିତ୍ରାକ୍ଷର ଛନ୍ଦରେ ରାଧାନାଥଙ୍କ ନୈପୁଣ୍ୟ ସର୍ବ ସମ୍ମତ । ମହାଯାତ୍ରା ପୃଷ୍ଠାରେ ଏକାଧାର ରେ ଏହି ଛନ୍ଦର ବିକାଶ ଓ ପରିଣତି ଦେଖା ଦେଇଛି । ଆଲୋଚକମାନେ ଏହି ସଫଳତାର ନାନାକରଣ ଅନୁମାନ କରିଛନ୍ତି—ଧ୍ୱନି ବିନ୍ୟାସର ଶୃଙ୍ଖଳା ଓ ସୌଂଦର୍ଯ୍ୟ, ସାଙ୍ଗୀତିକତା ପ୍ରଭୃତି । ମାତ୍ର ଏଥିରେ ମିଲଟନ୍‌ଙ୍କ ଆଦର୍ଶ ରାଧାନାଥଙ୍କୁ ପ୍ରଭାବିତ କରିଥିବା ଅସମ୍ଭବ ନୁହେଁ । ଦୀର୍ଘ ବର୍ଣ୍ଣନାତ୍ମକ କବିତାରେ ପଦ ମେଳ ମିଲଟନ୍ ଅନାବଶ୍ୟକ ମନେ କରୁଥିଲେ । ତାଙ୍କ ମତରେ ମେଳ ହେଉଛି କେବଳ ଧ୍ୱନିର ପୁନରାବୃତ୍ତି । ଭାବ ଓ ବିଷୟର ଦାରିଦ୍ର୍ୟ ଓ ଛନ୍ଦର ଦୁର୍ବଳତା ଘୋଡ଼ାଇବା ଲାଗି ଏହା ଦରକାର ହୋଇଥାଏ ।" ୨୮ ପ୍ରାଚୀନ ଗ୍ରୀକ୍ ଓ ଲାଟିନ୍ ତଥା ସଂସ୍କୃତ କବିମାନଙ୍କ ଦ୍ୱାରା ଏହା ଗୃହୀତ ହୋଇ ନଥିଲା । କାବ୍ୟରେ ବିଷୟ, ଭାବ ଓ ଧ୍ୱନି ବିନ୍ୟାସ ଦିଗରୁ ଯଦି ବଳିଷ୍ଠ ଭୂମିକା ଥାଏ ତେବେ ମେଳ ଏକାନ୍ତ ଅନାବଶ୍ୟକ । ନିଜର ଛୟାଳିଶ ବର୍ଷ ବୟସରେ ରଧାନାଥ ଦେଖିଥିଲେ 'ସାହିତ୍ୟାନୁରାଗ ମୋହର ବହୁ ଦିନରୁ ଥିଲା, ମାତ୍ର ଉଚ୍ଚ ସାହିତ୍ୟ କଅଣ ସେ ଜ୍ଞାନ ବହୁ ବିଳମ୍ବରେ ଲାଭ ହେଲା ।' ୨୯ ଏ ସ୍ୱୀକାରୋକ୍ତି କବିଙ୍କ ଆଦର୍ଶ ପରି ଛନ୍ଦ ଦିଗରେ ମଧ୍ୟ ସତ୍ୟ । କବି ନିଜର ସମସ୍ତ କାବ୍ୟରେ ମିତ୍ର ଛନ୍ଦ ବ୍ୟବହାର କରିଥିଲେ, ମହାଯାତ୍ରା ରଚନା ପରେ ପ୍ରଧାନତଃ ଅମିତ୍ରାକ୍ଷର ଛନ୍ଦକୁ ପ୍ରାଧାନ୍ୟ ଦେଇଛନ୍ତି । ଏହା ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ ଯଥାର୍ଥରେ ଲେଖିଛନ୍ତି, "ଅମିତ୍ରାକ୍ଷର ଛନ୍ଦ ତାଙ୍କ (ରାଧାନାଥଙ୍କ) ଲେଖନ ପ୍ରକ୍ରିୟାର ଅନ୍ୟ ଗୋଟିଏ ଉପାଦାନ । ବୋଧହୁଏ ଶେଷକାଳକୁ ସେ ଏଥିପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ ।" ୩୦

ଅମିତ୍ରାକ୍ଷର ଛନ୍ଦର ପ୍ରକୃତି ପ୍ରଧାନତଃ ଦୁଇ ଦିଗରୁ ବିଗ୍ଭର କରାଯାଇ ପାରେ । ପ୍ରଥମରେ ଧ୍ୱନି ଶୃଙ୍ଖଳା ଓ ଦ୍ୱିତୀୟରେ ବିରତି ବା ଯତିପାତର ସ୍ୱାଧୀନତା । ଇଂରେଜୀ

ଅମିତ୍ରାକ୍ଷର ଛନ୍ଦରେ ମିଲଟନ୍ ଧ୍ୱନି ସୌନ୍ଦର୍ଯ୍ୟ ଦିଗରୁ ନାନା ବୈଚିତ୍ର୍ୟ ସୃଷ୍ଟି କରିଛନ୍ତି । ସେ ଇଟାଲୀୟ ଓ ପ୍ରାଚୀନ କ୍ଲାସିକ କବିମାନଙ୍କ ଆଦର୍ଶରେ ଏକ୍ସ୍ଟ୍ରା ମେଟ୍ରିକ୍ୟାଲ୍ ସିଲେବ୍ଲ ବ୍ୟବହାର କରିଛନ୍ତି । ଛନ୍ଦ ଅନୁରୋଧରେ ଶବ୍ଦାବଳୀର ସାଧାରଣ ଉଚ୍ଚାରଣରେ ବ୍ୟତିକ୍ରମ ଘଟାଇବାକୁ କୁଣ୍ଠାବୋଧ କରିନାହାନ୍ତି । ଏଥିରେ କଳାତ୍ମକ ଶୃଙ୍ଖଳା ଓ କଳାତ୍ମକ ସ୍ୱାଧୀନତା ଏକତ୍ର ଦେଖିବାକୁ ମିଳେ । ଛନ୍ଦ, ଶବ୍ଦ, ବାକ୍ୟ ଗଠନ ଯତି, ଉପମା ଓ ରୂପକଳ୍ପ ପ୍ରୟୋଗ ସମସ୍ତ ମିଶି ଏପରି ଏକ ମହାନ ଆଧାର ସୃଷ୍ଟି ହୋଇଛି, ଯାହା ମିଲଟନ୍‌ଙ୍କ ଭାବର ଅବଧାରଣା ଲାଗି ଏକାନ୍ତ କ୍ଷମ । ମିଲଟନ୍‌ଙ୍କ ଛନ୍ଦର ପ୍ରଧାନ ବିଶେଷତ୍ୱ ଭାବର ସ୍ୱାଧୀନ ଗତି ଛନ୍ଦ ଅନୁରୋଧରେ କୁତ୍ରାପି ବ୍ୟାହତ ହୁଏ ନାହିଁ । ଯତିମେଳ କବିତା ଅଥବା ନିର୍ଦ୍ଦିଷ୍ଟ ଯତି ଓ ଉପଯତି ଶୃଙ୍ଖଳାରେ ଆବଦ୍ଧ କବିତାରେ ଏ ସ୍ୱାଧୀନତା ନଥାଏ । ସେଠାରେ ଏକ ଚରଣରୁ ଅନ୍ୟ ଚରଣକୁ ଗତି କଲାବେଳେ ଭାବର ସ୍ୱାଭାବିକ ପ୍ରବାହ ଅକ୍ଷୁଣ୍ଣ ରଖିବା ସମ୍ଭବ ହୁଏନାହିଁ । ଅମିତ୍ରାକ୍ଷରର ଏହି ଲକ୍ଷଣ ବିଚାର କରି ଜଣେ ବଙ୍ଗୀୟ ଆଲୋଚକ ଏହାକୁ 'ଅମିତାକ୍ଷର' ଛନ୍ଦ ବୋଲି ଅଭିହିତ କରିଛନ୍ତି । ଏଥିରେ କେତେ ସଂଖ୍ୟକ ଅକ୍ଷର ପରେ କେଉଁଠି ଛେଦ, ବା ଯତିପାତ ହେବ ତାହାର କୌଣସି ନିୟମ ନାହିଁ । ଏହି ଭାବରେ ଏଥିରେ ଛନ୍ଦ ସ୍ୱେଚ୍ଛାବିହାର ଓ ମୁକ୍ତିର ସ୍ୱାଦପାଏ । ମାଇକେଲଙ୍କ ପ୍ରବର୍ତ୍ତିତ ଅମିତ୍ରାକ୍ଷର ଛନ୍ଦର ପ୍ରକୃତି ବିଶ୍ଳେଷଣ କରିବାକୁ ଯାଇ ଏହି ସମାଲୋଚକ ପୁଣି କହିଛନ୍ତି, 'ଏଥିରେ ଯତିର ନିୟମାନୁସାରିତା ଲାଗି ଅବଶ୍ୟ ଗୋଟିଏ ଐକ୍ୟ ସୂତ୍ର ରହିଗଲା । କିନ୍ତୁ ଐକ୍ୟର ରଙ୍ଗକୁ ବଳେଇ ଉଠିଲା ବୈଚିତ୍ର୍ୟର ଜ୍ୟୋତି ।' ୩୧

ରାଧାନାଥଙ୍କ ମହାଯାତ୍ରାର ଛନ୍ଦ ଢେନ ଆଲୋଚନା କରିବାକୁ ଯାଇ ଶ୍ରୀଯୁକ୍ତ ଜଗଦାନନ୍ଦ ମହାନ୍ତି ଅନୁରୂପ ସିଦ୍ଧାନ୍ତରେ ପହଞ୍ଚିଛନ୍ତି । ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଦେଖାଯିବ ଯେ ଯତିପାତର ସମସ୍ତ ନିୟମ ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦରେ ରକ୍ଷିତ ହୋଇଅଛି । କେଉଁ ପଂକ୍ତିରେ ଷଷ୍ଠ ଓ ଚତୁର୍ଦ୍ଦଶ, କାହିଁ ବା ଅଷ୍ଟମ ଓ ଚତୁର୍ଦ୍ଦଶ, କେଉଁଠାରେ ଚତୁର୍ଥ, ଦଶମ ଓ ଚତୁର୍ଦ୍ଦଶ ଅକ୍ଷରରେ, କେଉଁଠାରେ ତୃତୀୟ, ଅଷ୍ଟମ ଓ ଚତୁର୍ଦ୍ଦଶ ଅକ୍ଷରରେ—ଏହିରୂପେ ବିଭିନ୍ନ ପଂକ୍ତିରେ ବିଭିନ୍ନ ଯତିର ଉପକ୍ରମ କରି କବି ସର୍ବବ୍ୟାପୀ ସ୍ୱରର ଐକ୍ୟକୁ ଆମ୍ଭମାନଙ୍କ ନବ ନବ ବିଷୟାଭିଳାଷୀ ମନକୁ ଶାନ୍ତି ପ୍ରଦାନ କରିଅଛନ୍ତି । ଏବଂ ଯତିପାତର ବିଭିନ୍ନ ଭଙ୍ଗ ବା ସନ୍ଧି ବିସନ୍ଧି ମଧ୍ୟରେ ନବ ନବ ପଂକ୍ତିରେ ନବ ନବ ଯତିପାତ କରି ନବ ନବ ଭାବ ରାଜ୍ୟକୁ ଆମ୍ଭମାନଙ୍କ ଚିତ୍ତ ଆକର୍ଷଣ କରିଛନ୍ତି । ୩୨ ପଣ୍ଡିତ ନୀଳକଣ୍ଠଙ୍କ ମତରେ 'ବସ୍ତୁତଃ ଉନ୍ନତ ସାହିତ୍ୟିକ ଦୃଷ୍ଟିରେ ଏହା ମିତ୍ରାକ୍ଷରଠାରୁ ମହତ୍ତର ଓ ଅଧିକ ସୁଶ୍ରାବ୍ୟ । ସଙ୍ଗୀତ ଓ ଅକ୍ଷର ସାମ୍ୟ କବିତାଠାରୁ ଭିନ୍ନ । ଯୁଗର ଉନ୍ନତି, ପ୍ରଚାର ଓ ପ୍ରସାର ସଙ୍ଗେ କବିତା ଛନ୍ଦୋବନ୍ଧରୁ ବିଚ୍ଛିନ୍ନ ହୋଇ ଭାବରେ ପର୍ଯ୍ୟବସିତ

ହେଉଛି । ମନୋଭାବର ସୂକ୍ଷ୍ମାଂଶକୁ ବ୍ୟକ୍ତ କରିବାରେ ଯେଉଁ ଭାଷା ଉପଯୋଗୀ ତାହାହିଁ ଆଜି କବିତାର ଭାଷା ହେଉଛି ।... ଏଥିରେ କବିଙ୍କ ପ୍ରତିଭା ଗୋଟିଏ କୃତ୍ରିମ ବନ୍ଧନ ପରିତ୍ୟାଗ କରି ଏବଂ ଆଉ ଗୋଟିଏ ପ୍ରାକୃତିକ ବନ୍ଧନ ଯୋଗେ ମହତ୍ତର ହୁଏ । ଗଦ୍ୟକୁ ଅକ୍ଷର ଗଣି ନିୟମରେ ଭାଙ୍ଗି ବସାଇବାକୁ ଅମିତ୍ରାକ୍ଷର ପଦ୍ୟ କହନ୍ତି ନାହିଁ । ମାନବର ସାଙ୍ଗୀତିକ ଚିତ୍ତବୃତ୍ତି ପଦ୍ୟର ଗୋଟିଏ ବିଶିଷ୍ଟ ଉପକରଣ ହୋଇଅଛି । ତାହା ଦିନେ ଅକ୍ଷର ସାମ୍ୟରେ ପରିବଦ୍ଧ ଥିଲା । ନବଯୁଗରେ ଆଜି ଶବ୍ଦ ଯୋଜନାରେ ଓ ଶିଳ୍ପ ଗୁଣରେ ପର୍ଯ୍ୟବସିତ ଏବଂ ସେହିଠାରେ ହିଁ ଅମିତ୍ରାକ୍ଷର କବିଙ୍କ ସ୍ୱାଧୀନ ପ୍ରତିଭାକୁ ବିକାଶ ପାଇବାକୁ ବିଶିଷ୍ଟ ଅବସର ମିଳେ । ୩୬

ଅଧ୍ୟାପକ ତ୍ରିଲୋଚନ ମିଶ୍ର ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦର ବିଗ୍ରହ ଇଂରେଜୀ, ବିଶେଷତଃ ମିଲ୍ଟନୀୟ ଛନ୍ଦ ସହିତରେ କରିଛନ୍ତି । ସେ ମନେ କରିଛନ୍ତି, ମିଲ୍ଟନ୍‌ଙ୍କ ମୂଳଛନ୍ଦ ଆୟାମ୍ବିକ୍ ପେଣ୍ଟାମିଟାର୍‌ର ସିଲେବ୍‌ଲ ଗଣନାପର୍ଯ୍ୟନ୍ତ ରାଧାନାଥଙ୍କ ଛନ୍ଦରେ ରକ୍ଷିତ ହୋଇଛି । ଆୟାମ୍ବିକ୍ ପେଣ୍ଟାମିଟାରରେ ଦଶଟି ସିଲେବ୍‌ଲ ଥାଏ । ରାଧାନାଥଙ୍କ ଛନ୍ଦରୁ ତାହାର ଦୃଷ୍ଟାନ୍ତ ଦେଇଛନ୍ତି—

ସଂ-କଳ-ବା-ସିନ-ଦେ-ବି-ଉତ୍-କଳ-ଭୂ-ରତ

ଏହି ଚରଣରେ ଓଡ଼ିଆ ଉଚ୍ଚାରଣ ସହିତରେ ଦଶମାତ୍ରା (?) ଗଣନା କରିବା କଠିନ । ମହାଯାତ୍ରାର ମୂଳଛନ୍ଦ ଚତୁର୍ଦ୍ଦଶାକ୍ଷରୀ ଓଡ଼ିଆ ପୁରାଣ ଛନ୍ଦ । ଇଂରେଜୀ ଛନ୍ଦ ସହିତ ଏହାର ସାମ୍ୟ ଖୋଜି ପାଇବା ଅସମ୍ଭବ । ଓଡ଼ିଆରେ ଚତୁର୍ଦ୍ଦଶାକ୍ଷରୀ ଛନ୍ଦକୁ ବାଣୀ ଓ ବୃତ୍ତି ଭେଦରେ ମଙ୍ଗଳ, କଳସା, ଭୈରବ, ଧନାଶ୍ରୀ, ଦକ୍ଷିଣ କାମୋଦୀ, ଯୋଗୀ ସନ୍ନ୍ୟାସୀ ବାଣୀ, ଗୋବିନ୍ଦଚନ୍ଦ୍ର ବାଣୀ ଆଦି ନାନା ନାମରେ ନାମିତ କରାଯାଇଅଛି । ଓଡ଼ିଆ ଲୋକଗୀତରେ ମଧ୍ୟ ଏହି ଚତୁର୍ଦ୍ଦଶାକ୍ଷର ଛନ୍ଦ ଦେଖିବାକୁ ମିଳେ । ସ୍ଥୂଳ ଭେଦରେ ଏହି ଛନ୍ଦରେ ଯତିପାତ ବିଭିନ୍ନ ଅକ୍ଷରରେ ପଡ଼େ । ଉପଯତି ଦୁଇ ଓ ତିନି ଅକ୍ଷରର ଚଳନ ଅନୁସାରେ ଚତୁର୍ଥ, ଅଷ୍ଟମ, ଦ୍ୱାଦଶ ଓ ଶେଷାକ୍ଷରରେ ଅଥବା ଷଷ୍ଠ, ଦଶମ ଶେଷାକ୍ଷରରେ ପଡ଼ିପାରେ । ପୁଣି ପଦ ଯୋଜନା ଦୃଷ୍ଟିରୁ ଦୁଇ ବା ଚାରି ଚରଣର ବନ୍ଧଯୋଗ ଦେଖାଯାଏ । ଏହି ଛନ୍ଦର ଏକ ସ୍ୱାଭାବିକ ଅଭିବ୍ୟକ୍ତି ଓ ବିକାଶ ରାଧାନାଥଙ୍କଠାରେ ଦେଖା ଦେଇଛି । ରାଧାନାଥଙ୍କ ଛନ୍ଦରେ ପଦ ବିଭାଗ, ଯତିମେଳ ବା ଯତିପାତର କୃତ୍ରିମ ବନ୍ଧନ ଓ ଶେଷ ବର୍ଣ୍ଣର ସାମ୍ୟ ବା ମିତ୍ରାକ୍ଷରର ଆବଶ୍ୟକତା ନଥିବାରୁ ଏହା ସ୍ୱତନ୍ତ୍ର ପ୍ରକୃତିରେ ପ୍ରତିଷ୍ଠିତ ହୋଇଅଛି ।

ରବାର୍ଟ ବ୍ରିଜ ମିଲଟନଙ୍କ ଅମିତ୍ରାକ୍ଷର ଛନ୍ଦକୁ ମୂଳଛନ୍ଦର ସିଲେବ୍‌ଲ ଗଣନା, ଘାତ ବା ଆକ୍‌ସେଣ୍ଟ ସ୍ଥାପନ, ଘାତ ସଂଖ୍ୟାର ଭିନ୍ନତା ଓ ବୈଚିତ୍ର୍ୟ, ବିରତି ବା ଯତି ଦିଗରୁ ବିଗ୍ରହ

କରିଛନ୍ତି । ରାଧାନାଥଙ୍କ ଛନ୍ଦରେ ଏହି ସମସ୍ତ ଲକ୍ଷଣ ପୂର୍ଣ୍ଣତଃ ନ ହେଲେହେଁ କେତେକ ପରିମାଣରେ ଦେଖାଯାଏ ।

ଓଡ଼ିଆ ଅକ୍ଷର ଛନ୍ଦରେ ପ୍ରତି ଅକ୍ଷରକୁ ସମାନ ବଳ ବିଶିଷ୍ଟ ବୋଲି ଗ୍ରହଣ କରିଯାଉଥିବାରୁ ଏଥିରେ ଧ୍ୱନି ବିନ୍ୟାସରେ ବୈଚିତ୍ର୍ୟ ବା କଳା ଫୁଟାଇବା କଠିନ । ମାତ୍ର ରାଧାନାଥ ଯେତେଦୂର ମନେହୁଏ ଅକ୍ଷର ଛନ୍ଦର ଏ ଗ୍ରୁଟି ଗ୍ରହଣ କରି ନାହାନ୍ତି । ଅବଶ୍ୟ ଓ ସେଇ କ୍ରମରେ କେତେକ ପ୍ରାଚୀନ ଓଡ଼ିଆ କବିତାରେ ଅକ୍ଷର ପରିବର୍ତ୍ତେ ମାତ୍ରା ଛନ୍ଦ ଗଣନାରେ ବ୍ୟବହୃତ ହୋଇଛି । ମାତ୍ରା ବିଗ୍ଭରରେ ବା ଉଚ୍ଚାରଣ ଅନୁସାରେ ସବୁ ଅକ୍ଷର ସମାନ 'ବଳ' ବିଶିଷ୍ଟ ନୁହନ୍ତି । ଓଡ଼ିଆରେ ମଧ୍ୟ ଯୁକ୍ତାକ୍ଷର ଓ ମିଶ୍ରବର୍ଣ୍ଣ ସବୁ ସାଧାରଣ ଅକ୍ଷର ଅପେକ୍ଷା ଅଧିକ ବଳଯୁକ୍ତ । ଏଗୁଡ଼ିକର ଏକ କଳାତ୍ମକ ବିନ୍ୟାସ ଦ୍ୱାରା କବି ନିଜ ଛନ୍ଦରେ ଏକ ନୂତନ ଶକ୍ତି ଓ ବୈଚିତ୍ର୍ୟ ସୃଷ୍ଟି କରିଥିଲି ଭଳି ମନେ ହୁଏ । ତେବେ ଏହାର ଏକ ସାଧାରଣ ନିୟମ ଖୋଜି ପାଇବା ଅସମ୍ଭବ । ଅନୁରୂପ ଭାବ ପ୍ରକାଶ ଲାଗି ଭାଷାକୁ ଯେଉଁଠି ଯେପରି ଓଜଃଶାଳୀ କରିବା ପ୍ରୟୋଜନବୋଧ ହୋଇଛି କବି ସେଠାରେ ସେଇ କ୍ରମରେ ମିଶ୍ର ଓ ଯୁକ୍ତ ବର୍ଣ୍ଣର ସମାବେଶ ଘଟାଇ ଛନ୍ଦକୁ ଅଧିକ ଭାବମୟ କରିଛନ୍ତି ।

ମିଲ୍ଟନ୍‌ଙ୍କ ଛନ୍ଦରେ ବିରାମ ବା ଯତି ସ୍ଥାପନର ସ୍ୱାଧୀନତା ଓ ଶୃଙ୍ଖଳା ଏକ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ସୃଷ୍ଟି କରେ । ରବାର୍ଟ ବ୍ରିଜେସ୍ ମତରେ ଛନ୍ଦ ବିରାମ ବ୍ୟାକରଣଗତ ବିରାମ ଦ୍ୱାରା ନିୟନ୍ତ୍ରିତ ହୋଇ ପଂକ୍ତିର ଯେ କୌଣସି ସ୍ଥାନରେ ଆସିପାରେ । ବ୍ୟାକରଣଗତ ବିରାମ ଦ୍ୱାରା ଛନ୍ଦ ବିରାମର ନିୟନ୍ତ୍ରଣ ଓ ପଂକ୍ତିର ଯେ କୌଣସି ସ୍ଥାନରେ ତାହାର ସଂସ୍ଥାପନ ପଦ୍ଧତି ରାଧାନାଥ ସମ୍ପୂର୍ଣ୍ଣ ଭାବରେ ଗ୍ରହଣ କରିଛନ୍ତି । ଓଡ଼ିଆରେ ବ୍ୟବହୃତ ସବୁ ପ୍ରକାର ଚତୁର୍ଦ୍ଦଶାକ୍ଷରୀ ଛନ୍ଦରେ ଯତି ସ୍ଥାପନ କେବଳ ଛନ୍ଦ ଅନୁରୋଧରେ ହେଉଥିଲା । ମିଲ୍ଟନଙ୍କ ପୂର୍ବରୁ ମଧ୍ୟ ଇଂରାଜି ପେଣ୍ଟାମିଟର ଛନ୍ଦରେ ଯତିପାତ ଛନ୍ଦ ଅନୁରୋଧରେ ହେଉଥିଲା । ମାତ୍ର ମିଲ୍ଟନ୍ ଏ ଧାରା ବଦଳାଇ ଭାବ ପ୍ରକାଶ ଲାଗି ଛନ୍ଦକୁ ସ୍ୱାଧୀନତା ଦେଲେ । ବିଭିନ୍ନ ପଂକ୍ତିରେ ବ୍ୟାକରଣଗତ ବିରାମର ଅନୁରୋଧରେ କିପରି ଯତିପାତ ହୋଇଅଛି ତାହା ଗୋଟିଏ ଦୃଷ୍ଟାନ୍ତରୁ ଦେଖାଯାଇ ପାରେ ।

Season return, but not to me returns
Day, or the sweet approach of ev'n or morn.

ରାଧାନାଥଙ୍କ ପଂକ୍ତିରେ ଏହାର ସାମ୍ୟ ରହିଅଛି—

ରହିବା ଉଚିତ ତେଣୁ ଜାଗରୁକ ହୋଇ
ଭ୍ରମର, ହେ ବୀର, ଏହି ତରୁଣ ଯୌବନେ,

ସ୍ତବ୍ଧ ନିରବେ, ପ୍ରଜାପୁଞ୍ଜ-ରଣଭୂଇଁର
ମୁଣ୍ଡାଇଛି ମୁଣ୍ଡେ ରାଜ ମୁକୁଟର ବ୍ୟାଜେ,

ଏହି ପ୍ରସଙ୍ଗରେ ପୁଣି ଲକ୍ଷ୍ୟ କରିବାର କଥା, ଆଧୁନିକ କାବ୍ୟ ନୀରବ ପଠନ ଯୋଗ୍ୟ । ଏଥିରେ ଧ୍ୱନି ସବୁବେଳେ କାନରେ ବାଜେ ନାହିଁ, ଅଥବା ଉଚ୍ଚାରଣ ସୌକର୍ଯ୍ୟ ପାଇଁ ବିରତି ଆବଶ୍ୟକ ହୁଏନାହିଁ । ଗୋଟିଏ ଗୋଟିଏ ଭାବର ପ୍ରବାହ ଅକ୍ଷୁଣ୍ଣ ରଖିବା ଲାଗି ବିରତିର ପରିସର ଯେତେ ଦୀର୍ଘ ହେଲେ ବି କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡେ ନାହିଁ । ମହାଯାତ୍ରାରେ ସ୍ଥୂଳ ବିଶେଷରେ ପାଂଚ ବା ଦଶ ପଂକ୍ତି ମଧ୍ୟରେ କୌଣସି ବ୍ୟାକରଣଗତ ବିରତି ନାହିଁ । ସେଠି ଉପପତ୍ତିର ଚଳନ ଅନୁସାରେ ଯେ କୌଣସିଠାରେ ବିରାମ ସ୍ଥାପନ କରାଯାଇ ପାରେ ।

ଏହିପରି ଭାବରେ ବିଶ୍ଳେଷଣ କରି ଦେଖିଲେ, ରାଧାନାଥଙ୍କ ଅମିତ୍ରାକ୍ଷର ଛନ୍ଦକୁ ଛନ୍ଦନିୟମରେ ଶୃଙ୍ଖଳିତ କରି ବିଚାର କରିବା କଠିନ । ମିଲ୍ଟନଙ୍କ ଛନ୍ଦର ଆଲୋଚନା କରିବାକୁ ଯାଇ ବ୍ରିଜ୍ ଯେଉଁ ଶେଷ ସିଦ୍ଧାନ୍ତରେ ପହଂଚନ୍ତି ତାହା ବହୁ ପରିମାଣରେ ରାଧାନାଥଙ୍କ ଛନ୍ଦ ସମ୍ବନ୍ଧରେ ମଧ୍ୟ ସତ୍ୟ । ଏହି ଛନ୍ଦରେ ସୌନ୍ଦର୍ଯ୍ୟର ଉପାଦାନ ବିଶ୍ଳେଷଣ କରି ଦେଖାଇ ଦେବା କଠିନ । ଏଥିରେ ପାଠକକୁ ନିଜର ସୂକ୍ଷ୍ମ କଳାତ୍ମକ ବିଚାର ଖଟାଇବାକୁ ପଡେ, ଠିକ୍ ଗାୟକ ବା ଯନ୍ତ୍ର ସଙ୍ଗୀତଜ୍ଞ ନିଜ କଳା କୌଶଳ ଦେଖାଇବା ଭଳି । ଏ ଦିଗରେ କବି ବା ସଙ୍ଗୀତ ସଂଯୋଜକଙ୍କ ନିର୍ଦ୍ଦିଷ୍ଟ ସୀମା ପାଠକ ବା ଗାୟକଙ୍କ ପକ୍ଷରେ ଅନୁସରଣ କରିବା ଅସମ୍ଭବ । ପୁଣି ଏ କବିତାର କୋମଳ ଲୟ, ଗଠନ, ଗୁଣାତ୍ମକ ସର୍ଜନ, ଆବହ, ଧ୍ୱନି ତଥା ଭାବ ମୂର୍ଚ୍ଛନାର ଆରୋହ ଅବରୋହ ସୀମାର ବିଚାର କଲେ ଏହା ଏକାନ୍ତ ଅସମ୍ଭବ । ଠିକ୍ ଯେପରି କବିଙ୍କ କବିତାର ଅର୍ଥ ନାନା ପାଠକଙ୍କଠାରେ ନାନା ରୂପରେ ପ୍ରତିଭାତ ହୁଏ, ସେହିପରି ସାର୍ଥକ ଅମିତ୍ରାକ୍ଷର ଛନ୍ଦ ଭିନ୍ନ ଭିନ୍ନ ପରିବେଶରେ ଭିନ୍ନ ଭିନ୍ନ ପାଠକଙ୍କଠାରେ ବିଚିତ୍ର ରୂପରେ ଅନୁଭୂତ ହୁଏ । ୩୬

ପ୍ରକୃତରେ ଏହି ଅମିତ୍ରାକ୍ଷର ଛନ୍ଦର ସାର୍ଥକତା କୌଣସି ଛନ୍ଦ କୌଶଳ ଉପରେ ନିର୍ଭର କରେ ନାହିଁ । ଏ କ୍ଷେତ୍ରରେ ଛନ୍ଦ କବିଙ୍କ ବ୍ୟକ୍ତିତ୍ୱର ପ୍ରତିବିମ୍ବ ବହନ କରେ । କବିଙ୍କ ଅନ୍ତରର ବାଣୀରୁ ଏହା ଭିନ୍ନ ନୁହେ । କବିତାରେ ଜୀବନ୍ତ ଛନ୍ଦ କେବଳ କବିଙ୍କ ଅନ୍ତରର ପ୍ରକୃତ ଭାବ ଚେତନାର ଉଚ୍ଛଳ ପ୍ରବାହରୁ ଜନ୍ମଲାଭ କରେ ଓ ତାଙ୍କର ଅନ୍ତର ଆକାଂକ୍ଷାର ଅବଧାରଣା ଲାଗି ଏହାଠାରୁ ବଳି ମନୋରମ ସୂଚୀପତ୍ର ଆଉ ନାହିଁ ।

## ମଧୁସୂଦନଙ୍କ ସନେଟ୍ ଓ ସ୍ପେନ୍‌ସରୀୟ ଷ୍ଟାଞ୍ଜା

ନବଯୁଗର ଛନ୍ଦରେ ଏହି ପାଶ୍ଚାତ୍ୟ ଅନୁକରଣର ଅନ୍ୟ ଏକ ଦିଗ ମଧୁସୂଦନଙ୍କ ସନେଟ୍ ଓ ସ୍ପେନ୍‌ସରୀୟ ଷ୍ଟାଞ୍ଜା ପ୍ରୟୋଗରେ ଦେଖିବାକୁ ମିଳେ । ଏଥିରେ ମଧ୍ୟ ଆମ ପ୍ରାଚୀନ ଛନ୍ଦର ପରମ୍ପରା ସହିତ ନୂତନ ପାଶ୍ଚାତ୍ୟ ଧାରାର ଏକ ସମନ୍ୱୟ ସାଧନାର ପ୍ରୟାସ ହୋଇଛି ।

ଇଂରେଜୀରେ ଷ୍ଟାଞ୍ଜା ବା ପଦ ରଚନା ପ୍ରତି ପଦର ପଂକ୍ତି ସଂଖ୍ୟା, ଓ ପ୍ରତି ପଂକ୍ତିରେ ସିଲେବ୍‌ଲ୍ ସଂଖ୍ୟା ଓ ବିରାମ ତଥା ଘାତ ସଂସ୍ଥାପନ ଉପରେ ନିର୍ଭର କରେ । ଏହି ସୂତ୍ରରେ ଚାରି ଚରଣ ବିଶିଷ୍ଟ ବାଲାଡ୍ ଷ୍ଟାଞ୍ଜା, ଛଅ ପଂକ୍ତିର ବାଲାଡ୍ ଷ୍ଟାଞ୍ଜା, ପରବର୍ତ୍ତୀମାନ ଛନ୍ଦରେ ପେଣ୍ଟା ମିଟାର ଚତୁଷ୍ପଦୀ, ଛଅ ପଂକ୍ତିର ପେଣ୍ଟା ମିଟାର, ସାତ ପଂକ୍ତିର ରୟାଲ୍ ରାଇମ୍, ଅଷ୍ଟ ପଂକ୍ତି ବିଶିଷ୍ଟ ଅକ୍‌ଟାଭ ରାଇମ୍‌ର ପ୍ରଚଳନ ଦେଖାଯାଏ । ଭାବ ପ୍ରକାଶ ଦିଗରେ ଛନ୍ଦକୁ ସ୍ୱାଧୀନତା ଦେବାଲାଗି ସ୍ପେନ୍‌ସାର ପ୍ରଥମେ ନିଜର ଫେୟାରି କୁଇନ୍ କାବ୍ୟରେ ପ୍ରୟାସ କରିଥିଲେ । ଏହି କାବ୍ୟରେ ପ୍ରଯୁକ୍ତ ପଦ ଆଠଟି ପଞ୍ଚଘାତ ବିଶିଷ୍ଟ ପାଦ ପରେ ଛ ଘାତ ବିଶିଷ୍ଟ ଗୋଟିଏ ପଂକ୍ତି ଯୋଗ ଗଠିତ । ଏହାର ଛନ୍ଦ ଗଠନ ହେଉଛି କ ଖ କ ଖ ଖ ଗ ଖ ଗ । ଏହି ଛନ୍ଦକୁ ଆଧୁନିକ କାଳରେ ଇଂରେଜ କବି ଶେଲି ଆଡୋନାସ୍ ଓ ଦ ରିଭୋଲ୍ଟ ଅଫ୍ ଇସ୍‌ଲାମ କାବ୍ୟରେ, ଓ ବାଇରଣ୍ ଚାଇଲ୍ଡ ହେରଲ୍ଡ୍ କାବ୍ୟରେ ବ୍ୟବହାର କରିଛନ୍ତି । ୩୬

ପ୍ରାଚୀନ ଓଡ଼ିଆ କାବ୍ୟରେ ବିଶେଷତଃ ଛାନ୍ଦରେ ପଦ ଯୋଜନାର ବହୁ ବିଚିତ୍ର ସ୍ଥିତି ଦେଖାଯାଏ । ଏହାର ଚରଣ ସଂଖ୍ୟାର କୌଣସି ସୀମା ନାହିଁ । ଚରଣ, ଅର୍ଦ୍ଧ ଚରଣ ମିଶି ଦୁଇଠାରୁ ୧୦ ପର୍ଯ୍ୟନ୍ତ ଗୋଟିଏ ଗୋଟିଏ ପଦରେ ରହିପାରେ । ପୁଣି ପ୍ରତି ଚରଣରେ ମଧ୍ୟ ଅକ୍ଷର ସଂଖ୍ୟା ଭିନ୍ନ ଭିନ୍ନ ହୋଇପାରେ । ଏହି ଧରଣର ଛନ୍ଦକୁ ରାଜଗୁରୁ ବିଷମ ବୃତ୍ତ ଶ୍ରେଣୀରେ ଗ୍ରହଣ କରିଛନ୍ତି । ମଧୁସୂଦନ ପାଶ୍ଚାତ୍ୟ ଛନ୍ଦର ଆଦରଣ ସମୟରେ ପ୍ରାଚୀନ ଓଡ଼ିଆ ଛନ୍ଦର ପଦ ଯୋଜନା ସ୍ଥିତି ପ୍ରତି ସମ୍ପୂର୍ଣ୍ଣ ଅବହିତ ଥିଲେ । ମାତ୍ର ଭାବକୁ ଏକ ନିର୍ଦ୍ଦିଷ୍ଟ ପଂକ୍ତି ବିଶିଷ୍ଟ ପଦ ମଧ୍ୟରେ ପ୍ରକାଶ କରିବାରେ ଅନ୍ତରାୟ ଅନୁଭବ କରି ସେ ସ୍ୱତନ୍ତ୍ର ଭାବରେ ଷ୍ଟ୍ରଫିକ୍ ଇଉନିଟ୍ ବା ଭାବାନୁସାରୀ ପଦଚ୍ଛେଦ ବ୍ୟବହାର କରିଛନ୍ତି । କେଦାର ଚନ୍ଦ୍ରକେଳି ବୃତ୍ତରେ ଲିଖିତ 'ଶୋଭା' କବିତାଟି ଏହାର ଏକ ଦୃଷ୍ଟାନ୍ତ । କେଦାର ଚନ୍ଦ୍ରକେଳି ବୃତ୍ତରେ ପ୍ରତି ପଦ ଦୁଇ ଚରଣ । ମାତ୍ର କବି ଗତାନୁଗତିକ ଭାବରେ ଛନ୍ଦୋପଦ ବ୍ୟବହାର ନ କରି କବିତାଟିକୁ ଭାବ ଦିଗରୁ ବିଭିନ୍ନ ପର୍ଯ୍ୟାୟରେ ବିଭାଗ କରିଛନ୍ତି । ଭାବ ପ୍ରକାଶର ଆବଶ୍ୟକତା ଦୃଷ୍ଟିରୁ କେଉଁ ପର୍ଯ୍ୟାୟରେ ଦୁଇଟି ପଦ, କେଉଁ ପର୍ଯ୍ୟାୟରେ ପାଞ୍ଚ ପଦ, ଅଥବା କେଉଁ ପର୍ଯ୍ୟାୟରେ ବାରପଦ ଇଚ୍ଛାନୁସାରେ ବ୍ୟବହାର

କରିଛନ୍ତି । ମାତ୍ର ଏହି ସ୍ୱେଚ୍ଛାଗ୍ରହ ଅପେକ୍ଷା ପଦ ବିଭାଗରେ ଭାବ ଓ ଛନ୍ଦ ଉଭୟର ସମନ୍ୱୟ ସାଧନ କାମ୍ୟ ବୋଲି ଅନୁଭବ କରି ସେ ସ୍ପେନ୍‌ସରୀୟ ଷ୍ଟାଞ୍ଜାର ଆଶ୍ରୟ ନେଇଛନ୍ତି । 'ଭାରତ ଭାବନା' ଓ 'ନିଶୀଥ ଚିନ୍ତା' କବିତା ଦୁଇଟିର ଛନ୍ଦ ସ୍ପେନ୍‌ସରୀୟ ଷ୍ଟାଞ୍ଜା ସହିତ ତୁଳନୀୟ । ସ୍ପେନ୍‌ସରୀୟ ଷ୍ଟାଞ୍ଜାରେ ସାଧାରଣତଃ ନଅଟି ପଂକ୍ତି ରହିଲି ଭଳି ଏଥିରେ ପ୍ରତି ପଦ ନଅ ପଂକ୍ତି ବିଶିଷ୍ଟ ହୋଇଛି । ସ୍ପେନସରୀୟ ଷ୍ଟାଞ୍ଜାର ପ୍ରଥମ ଆଠ ପଂକ୍ତି ପଞ୍ଚ ଘାତ ବା ଦଶ ସିଲେବ୍ଲ ଯୁକ୍ତ ଓ ଶେଷ ଚରଣ ଛ ଘାତ ବିଶିଷ୍ଟ ବା ବାର ସିଲେବ୍ଲ ଯୁକ୍ତ ହୋଇଥାଏ । ମଧୁସୂଦନଙ୍କ ପ୍ରଥମ ଆଠ ପଂକ୍ତି ଚତୁର୍ଦ୍ଦଶାକ୍ଷର ଓ ଶେଷ ଚରଣ ଅଷ୍ଟାଦଶ ଅକ୍ଷର ବିଶିଷ୍ଟ ହୋଇଛି । ଏହାର ଛନ୍ଦ ଯୋଜନା ବା ମେଳ ମଧ୍ୟ ସ୍ପେନ୍‌ସରୀୟ ଷ୍ଟାଞ୍ଜା ସ୍ୱଭରେ ହୋଇଅଛି । ମାତ୍ର ଏହି ଛନ୍ଦରେ ଛନ୍ଦୋମୁକ୍ତ ଉଦ୍ଦେଶ୍ୟ ପୂର୍ଣ୍ଣତଃ ଚରିତାର୍ଥ ହେଉ ନ ଥିବାରୁ ଏହା ମଧୁସୂଦନ ବା ତାଙ୍କର ପରବର୍ତ୍ତୀ କବିଙ୍କ ଦ୍ୱାରା ବିଶେଷ ବହୁଳ ଭାବରେ ବ୍ୟବହୃତ ହୋଇନାହିଁ ।

ମଧୁସୂଦନଙ୍କ ପ୍ରବର୍ତ୍ତିତ ସନେଟ୍ କ୍ଷୁଦ୍ର ଭାବ କବିତା ରଚନା ଲାଗି ବିଶେଷ ଉପଯୋଗୀ ହୋଇଥିବାରୁ ତାହା ଏବେ ବି ବହୁଳ ଭାବରେ ବ୍ୟବହୃତ ହେଉଛି । ମଧୁସୂଦନଙ୍କ ସନେଟ୍ ଅବଶ୍ୟ ଶୁଦ୍ଧ ଇଟାଲୀୟ ସ୍ୱଭର ନୁହେ । ସେ ଇଂରେଜ କବିମାନଙ୍କ ମିଶ୍ର ସ୍ୱଭର ସନେଟ୍‌କୁ ଅନୁସରଣ କରିଥିଲି ଭଳି ମନେ ହୁଏ । ତାଙ୍କ ଲେଖାରେ ସନେଟ୍ ମଧ୍ୟ ଏକ ଉତ୍କଳୀୟ ଆକୃତି ଲାଭ କରିଅଛି । ଏହା ଚତୁର୍ଦ୍ଦଶାକ୍ଷରୀ ଚତୁର୍ଦ୍ଦଶ ଚରଣ ବିଶିଷ୍ଟ କ୍ଷୁଦ୍ର କବିତା ମାତ୍ର । ଏଥିରେ ସେକ୍ସପିୟରଙ୍କ ସ୍ୱଭର ଯୁଗ୍ମ ପଦ ବ୍ୟବହୃତ ହୋଇଅଛି । ସନେଟ୍ ପରମ୍ପରା ଓ ପ୍ରକୃତି ଓ ମଧୁସୂଦନଙ୍କ ବିଶେଷତ୍ୱ ବସନ୍ତ ଗାଥା ଆଲୋଚନା ପ୍ରସଙ୍ଗରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇ ଥିବାରୁ ଏହା ଉପରେ ଅଧିକ ଆଲୋଚନା ଅନାବଶ୍ୟକ । ମଧୁସୂଦନଙ୍କର ନୂତନ ଆହରଣରେ ପ୍ରାଚୀନ ପରମ୍ପରାର ସଙ୍ଗତି ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ ଯଥାର୍ଥ କହିଛନ୍ତି, 'ମଧୁବାବୁ ନବଯୁଗର କବି । ନବ ଭାବ ସଙ୍ଗେ ନବ ଛନ୍ଦର ଆମଦାନୀ ସେ କରିଛନ୍ତି ।.........କିନ୍ତୁ ଏ ସମସ୍ତ ମଧ୍ୟରେ ପ୍ରାଚୀନ ଉତ୍କଳ ସାହିତ୍ୟର ଛନ୍ଦ ପ୍ରତି ତାଙ୍କର ପ୍ରାଣର ଆକର୍ଷଣ ଲୁଚି ଯାଇନାହିଁ ।' ୩୬

## ଉପସଂହାର

ନବଯୁଗର ଛନ୍ଦ ପ୍ରୟୋଗ ଓ ତାହାର ତାତ୍ତ୍ୱିକ ଓ ଙ୍ଗାସ୍ତ୍ରିକ ଭୂମିକା ଯେଜି ଏହି କ୍ଷୁଦ୍ର ଆଲୋଚନାରେ ଯେଉଁ ସୂଚନା ଦିଆଗଲି ତାହା ସୂଚନା ମାତ୍ର । ଓଡ଼ିଆ ଛନ୍ଦ ବିକାଶର କ୍ରମିକ ଇତିହାସ, ଉଚ୍ଚାରଣକ୍ରମ ଓ ଧ୍ୱନି ତତ୍ତ୍ୱ ଦିଗରୁ ଛନ୍ଦ ରଚନାର ସାଧାରଣ ସୂତ୍ର ଯେଜି ବିସ୍ତୃତ ଆଲୋଚନା ଏ ପର୍ଯ୍ୟନ୍ତ ହୋଇନାହିଁ । ତାହା ନହେବା ପର୍ଯ୍ୟନ୍ତ କବି ବିଶେଷଙ୍କର ଛନ୍ଦ ବୈଶିଷ୍ଟ୍ୟ ପୂର୍ଣ୍ଣ ରୂପେ ଅବଧାରଣା କରିବା କଠିନ ।

# ସୂଚନା

[ ସଙ୍କେତ—ରା·ଗ୍ର· —ରାଧାନାଥ ଗ୍ରନ୍ଥାବଳୀ । ମ· ଗ୍ର·—ମଧୁସୂଦନ ଗ୍ରନ୍ଥାବଳୀ ।
ଫ. ଗ. ଫକୀରମୋହନ ଗ୍ରନ୍ଥାବଳୀ । ରା· ଜୀ·—ରାଧାନାଥ ଜୀବନୀ ]
ନ· ଗ୍ର·—ନନ୍ଦକିଶୋର ଗ୍ରନ୍ଥାବଳୀ । ]

## ପ୍ରସ୍ତାବନା

* Art is awareness in creation, criticism is awareness in contemplation.

Preface to world Literature-Albert Guerard P. 458 Henry Holt & Co. New York-1947.

୧. An Introduction to the Study of Literature
W. H. Hudson-P. 297
George G. Harrap & Co. 1957.

୨. ସାହିତ୍ୟ ଓ ସଂସ୍କୃତି—ଅଧ୍ୟାପକ ବଂଶୀଧର ମହାନ୍ତି-ପ୍ରଥମ ସଂସ୍କରଣ-ପୃ: ୧୩୫

୩. ତତ୍ରୈବ ପୃ: ୧୩୨ । ୪. ତତ୍ରୈବ ପୃ: ୧୪୨ । ୫ ଓ ୬ ତତ୍ରୈବ ପୃ: ୧୪୩

୭. ମ· ଗ୍ର·--୨ୟ ସଂ-୧୯୪୯-ପୃ: ୩୦୭-୮ ।

୮. ରା·ଜୀ-ଦୁର୍ଗାଚରଣ ରାୟ ସମ୍ପାଦିତ ପ୍ର:ସଂ: ୧୯୪୧ ପୃ:୫୭୦ । ୯ ତତ୍ରୈବ ପୃ: ୧୦୫୧

୧୦. ଓଡ଼ିଆ ସାହିତ୍ୟର ଇତିହାସ-ତାରିଣୀଚରଣ ରଥ ପୃ: ୫ ।

୧୧. ନ ଗ୍ର.-୧ମ ସଂ.-ପୃ:୯୫୧ । ୧୨ ତତ୍ରୈବ ପୃ: ୯୭୫ । ୧୩. ତତ୍ରୈବ ପୃ: ୯୭୨

୧୪. ଓଡ଼ିଆ ଭାଷା ଓ ସାହିତ୍ୟ-ପଣ୍ଡିତ ନୀଳକଣ୍ଠ ଦାସ : ୨ୟ ସଂ.-ପୃ: ୨୪୦ ।

୧୫. ତତ୍ରୈବ ପୃ: ୨୪୫ । ୧୬. ତତ୍ରୈବ ପୃ: ୨୬୫ । ୧୭ ରା· ଜୀ· ପୃ: ୮୬୯ ।

୧୮. ରାଧାନାଥ ଗ୍ରନ୍ଥାବଳୀ : ୯ମ ସଂ.-୧୯୫୧-ପୃ: ୧୬୬-୬୭

୧୯. ରା· ଜୀ·--ପୃ:୭୯୧ । ୨୦. ତତ୍ରୈବ ପୃ: ୭୯୭ । ୨୧. ତତ୍ରୈବ ପୃ: ୬୬୨-୬୩ ।

୨୨. ରା. ଜୀ· ପୃ: ୮୭୦ । ୨୩ । ନ· ଗ୍ର·-ପୃ: ୧୦୦୫ । ୨୪. ମ· ଗ୍ର·--ପୃ:୧୯

୨୫. ଓଡ଼ିଆ ଭାଷା ଓ ସାହିତ୍ୟ : ପଣ୍ଡିତ ନୀଳକଣ୍ଠ ପୃ: ୨୦୯ ।

୨୬. ତତ୍ରୈବ ପୃ: ୨୧୫ ଓ ପୃ: ୨୧୯ ।

୨୭. ବିବିଧ ପ୍ରସଙ୍ଗ : ମୋହିନୀମୋହନ ସେନାପତି : ୧ମ: ସଂ. ୧୯୩୯ :

୨୮. ଉତ୍କଳ ସାହିତ୍ୟ : ୨୮ଶ ଭାଗ : ୯ମ, ୧୦ ଓ ୧୧ଶ ସଂଖ୍ୟା :

୨୯. ନ. ଗ୍ର.-ପୃ: ୯୯୨ । ୩୦. ଓ ୩୧ ତଦ୍ଦୈବ ପୃ: ୯୭୧ ।

୩୨. କବି ଓ କବିତା : ଡାଃ ମାୟାଧର ମାନସିଂ : ପ୍ରଥମ ସଂ. ପୃ: ୯୧ ।

୩୩. ରାଧାନାଥ ଜୀବନୀ : ୮୮୯-୯୦

## ପ୍ରଥମ ଅଧ୍ୟାୟ

୧. All that poetry can legitimately aspire to, is to be a brief synthesis of music and painting, of sensation and thought. In this respect, no other art, no other mental discipline, can compete with it; for whereas each of the other arts can serve better than poetry to satisfy some of our faculties considered in isolation, poetry alone can give harmonious, though abbreviated, expression to the human spirit in its entirety.

Contemporary Studies-Charles Baudouin-P.240
George Allen & Unwin-London 1924.

୨. Marxim and poetry-George Thomson

Ref : Chap. I. I. III.

୩. Nature has left us tears, the cry of pain
When man can bear no more, and most of all
To me-She has left me melody and speech
To make the full depth of my anguish known;
And when man in his agony is dumb,
I have God's gift to utter what I suffer.

Marxism and poetry-p. 32

୪. An introduction to poetry-J. B. Hubble and John O Beety. P. 428

୫. Cassel's Encyclopaedia of World Literatures. Vol I. P. 538

୬. India : What can teach us-Max Muller.

୭. History of Sanskrit Literature (Classical period ) S. N. Das Gupta. Introduction. P. XLI.

୮ Guide to the Modern Thought C. E. M. Joad-Chapt II

୯. History of English Literature-Emile Legouis and Louis Cazamian. P 1117 (New edn 13th Imp)

୧୦ ବିଶ୍ୱ ଇତିହାସ-ଜବାହରଲାଲ ନେହେରୁ ଓଡ଼ିଆ ଅନୁବାଦ ସୁରେନ୍ଦ୍ରନାଥ ଦ୍ୱିବେଦୀ : ପୃ ୭୨

## ଦ୍ୱିତୀୟ ଅଧ୍ୟାୟ

୧. I only affirm that all human affairs are involved with each other, that consequently all history involves abstraction, and in attempting to win a full understanding of the poetry of a period you are led to the cansideration of subjects which at the first sight appear to have little bearing upon poetry.
The use of poetry and the use of criticism
by T. S. Eliot. P. 75-76

୨. The Economic and Social Development of Modern India.
M. N. Das. P7. Firma K. L. Mukhopadhyaya-1959

୩. ବିଶ୍ୱ ଇତିହାସ-ଜବାହରଲାଲ ନେହେରୁ-୨ୟ ଖଣ୍ଡ-ପୃ:୩୨୪

୪ ଓ ୫. Articles on India-Karl Marx. Ed. Mulk Raj Anand. Socialist

Book club. Allahabad.

୬· ବଙ୍ଗଇତିହାସ-୨ୟ ଖଣ୍ଡ-ପୃ: ୩୧୫-୧୬

୭· Marx and Engels on India Ed. Mulk Raj Anand.
Socialist Book Club. Allahabad

୮· Economic History of India-R. C. Dutta P. 10

୯· Renancent India-H. C. E. Z. Acharia-P. 98

୧୦ The structural Basis of Indian Economy.
H. Venkata Subbiah P. 94

୧୧· ବଙ୍ଗ ଇତିହାସ : ୨ୟ ଖଣ୍ଡ ପୃ: ୩୨୦

୧୨ Economic History of India-R. C. Dutta-P.9

୧୩ Orissa W. w. H. Hunter. Vol. II. P. 59

୧୪, ୧୫, ୧୬, ଓଡ଼ିଶା ଇତିହାସ—ଡଃ ହରେକୃଷ୍ଣ ମହତାବ : ୧ମ ସ. ପୃ: ୨୯୪, ୨୮୩ ।

୧୭· Orissa-W. W. Hunter. Vol. II P. 162. ୧୮· Ibid P. 170

୧୯. Economic and Social Development of modern India
M. N. Das. P. 237

୨୦ Orissa-W. W. Hunter Vol. II. P.144-148 ( Ref. State of education in Orissa. )

୨୧· ପ· ଗ୍ର·-୧ମ· ସ· ପୃ : ୭୬୧ । ୨୨· ତତ୍ରୈବ ପୃ: ୭୬୧ ।

୨୩. ଓଡ଼ିଆ ସାହିତ୍ୟରେ ଅନ୍ଧକାର ଯୁଗ-ସୁରେନ୍ଦ୍ର ମହାନ୍ତି, ଉଗର-ଷୋଡ଼ଶ ଭାଗ-୧ମ ସଂଖ୍ୟା

୨୪· ତତ୍ରୈବ । ୨୫. ପ· ଗ୍ର· ପୃ: ୧୦୪୮

୨୬· Modern Indian Culture-D. P. Mukherji. P. 109

୨୭. On Gandhi, Tagore and Ramkrishna-Romain Rolland.

## ତୃତୀୟ ଅଧ୍ୟାୟ

୧. The relatian of poetry to social life-to politics in the wider sense of the word is not a very profound or difficult subject, but it is a little profounder, a little more difficult than it is sometimes thought to be.

A New Study of English Poetry-Henry Newbolt.
Constable and co. London-1919. P. 69.

୨. For it is with the present rather than with the past this book has to do. W. W. Hunter.

୩. କମିସନାର ଟି· ଇ· ରେଭେନ୍‌ସା, କଟକର କଲେକ୍‌ଟର ଡବ୍ଲୁ· ମ୍ୟାକ୍‌ଫରସନ, ବାଲେଶ୍ୱର ଜିଲ୍ଲାର କଲେକ୍‌ଟର ଜେ· ବିମ୍‌ସ ଓ ପୁରୀ ଜିଲ୍ଲାର କଲେକ୍‌ଟର ଓ୍ୱାଲ୍‌ଟନଙ୍କ ଠାରୁ ହଣ୍ଟର ନିଜ ଇତିହାସ ଲାଗି ବିବରଣୀ ସଂଗ୍ରହ କରିଥିଲେ। ରେଭେନ୍‌ସା ଓ ବିମ୍‌ସ ତାଙ୍କୁ ବିଶେଷ ସହାୟତା କରିଥିଲେ। ଫକୀରମୋହନଙ୍କ ଲେଖାରୁ ଜଣାଯାଏ-ଏ ଉଭୟେ ଜନପ୍ରିୟ ଶାସକ ଥିଲେ।

୪· Orissa-W. W. Hunter-Appendix IV. P.129

୫· —do— P. 124, 129. ୬· ବ୍ରା· ଗ୍ର-ପୃ ୮୩୯

୭· Biographia Literaria-S. T. Coleridge. P· 234.
Every man's Library edn :

୮· କାଳାନ୍ତର-ରବୀନ୍ଦ୍ରନାଥ ଠାକୁର-ପୃ: ୧୪୧.
ବିଶ୍ୱଭାରତୀ-ପରିବର୍ଦ୍ଧିତ ସଂସ୍କରଣ।

୯· ବ୍ରା· ଗ୍ର· ପୃ: ୨୮୪। ୧୦· ଫ· ଗ୍ର-ପୃ: ୫୨-୫୩।

୧୧· Orissa-W. W. Hunter· Vol. II-P.120.

୧୨· ବ୍ରା· ଗ୍ର· ପୃ: ୬୬୨। ୧୩. ଫ· ଗ୍ର· ପୃ: ୬୬୨।

୧୪· Orissa-W. W. Hunter-App : II. P. 47-48.

୧୫· ଫ· ଗ୍ର· ପୃ: ୮୩୨। ୧୬· ତତ୍ରୈବ ପୃ: ୮୩୩। ୧୭· ତତ୍ରୈବ ପୃ: ୮୪୫।

୧୮· ତତ୍ରୈବ ପୃ: ୮୪୬। ୧୯· ତତ୍ରୈବ ପୃ: ୯୫୩। ୨୦· ତତ୍ରୈବ ପୃ: ୯୫୪-୫୫

୨୧· ମ· ଗ୍ର-ପୃ: ୨୨୪। ୨୨· ତତ୍ରୈବ ପୃ: ୨୨୬। ୨୩. ଫ· ଗ୍ର· ପୃ: ୬୬୫।

୨୪· Discovery of India-J· L. Neheru P. 119.
Signet Press-Cal-1956·

୨୫· ଫକୀରମୋହନ ଗ୍ରନ୍ଥାବଳୀ-ପୃ: ୬୬୧

## ଚତୁର୍ଥ ଅଧ୍ୟାୟ

* The Work of the poet depends not only on himself and his age, but on the mentality of the nation to which

he belongs and the spiritual, aesthetic tradition and environment which it creats for him.

The Future poetry-Sri Aurobindo P. 52
Sri Aurobindo Ashram-Pondicheri-1953


1. Eucyclopaedia Americana-Vol.19. P. 744.
1954 publication.

2. War and Human progress : John U. Nef. P. 294ର ତଥ୍ୟ ଅବଲମ୍ବନରେ । Harvard University Press-1952

3. —Do— P. 294.

୪. ଓଡ଼ିଆ ସାହିତ୍ୟର କ୍ରମ-ପରିଣାମ ପଣ୍ଡିତ ନୀଳକଣ୍ଠ ଦାସ ପ୍ର· ସଂ-୧୯୫୩ ୨ୟ ଭାଗ ପୃ: ୧

୫. ତତ୍ରୈବ ପୃ : ୩୮୮

୬. ବିଶ୍ୱ ଇତିହାସ ଜବାହରଲାଲ ନେହେରୁ-୩ୟ ଖଣ୍ଡ· ପୃ. ୩୫୭

7. Discovery of India-J. L. Neheru.
Reform and other movments among Hindus & Moslems. ଅଧ୍ୟାୟ ଦ୍ରଷ୍ଟବ୍ୟ

୮. ଦ୍ୱି· ଖ· ପୃ : ୩୬୧ । ୯. ତତ୍ରୈବ ପୃ : ୧୯୭ । ୧୦. ତତ୍ରୈବ ପୃ : ୨୨୭ ।
୧୧. ତତ୍ରୈବ ପୃ : ୩୨୪ । ୧୨. ମ· ଗ୍ର· ପୃ : ୧୭୪ । ୧୩. ତତ୍ରୈବ ପୃ : ୨୩୮ ।
୧୪. ତତ୍ରୈବ ପୃ : ୨୨୯-୩୦ । ୧୫. ଫ· ଗ୍ର· ପୃ : ୧୬୧ । ୧୬. ଦ୍ୱି· ଗ· ପୃ: ୧୬୧ ।
୧୭. ମ·ଗ୍ର· ପୃ ୨୪୭-୨୪୮ । ୧୮. ଉତ୍କଳ ଗୌରବ ମଧୁସୂଦନ ନବକିଶୋର ଦାସ ପୃ:୫୧
ପ୍ର: ସଂ:-ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୫୧

୧୯. ଫକୀର ମୋହନ ଗ୍ରନ୍ଥାବଳୀ-ପୃ : ୨୫୩
୨୦. ଉତ୍କଳ ଗୌରବ ମଧୁସୂଦନ-ନବକିଶୋର ଦାସ ପୃ: ୬୮
୨୧. ଫ· ଗ୍ର-ପୃ ୯୪୯ । ୨୨. ଉତ୍କଳ ଗୌରବ ମଧୁସୂଦନ-ନବକିଶୋର ଦାସ ପୃ: ୫୭ ।
୨୩. ଫ· ଗ୍ର· ପୃ: ୮୬୯ । ୨୪. କବିଲିପି ସଂ· ଦେବୀପ୍ରସନ୍ନ ପଟ୍ଟନାୟକ-ପୃ : ୮୮ ।
୨୫. ଫ· ଗ୍ର. ପୃ: ୮୭୧ । ୨୬. ତତ୍ରୈବ ପୃ: ୧୦୯୫ । ୨୭. ତତ୍ରୈବ ପୃ: ୮୬୯ ।
୨୮. ତତ୍ରୈବ ପୃ: ୧୦୯୪ । ୨୯. ତତ୍ରୈବ ପୃ: ୭୯୬ । ୩୦. ତତ୍ରୈବ ପୃ: ୧୦୮୨ ।
୩୧. ତତ୍ରୈବ ପୃ: ୬୯୬ ।

୩୨. Speeches on British Rule. Ed. Dr. J.K. Mazumdar p. 44
Longman Green & Co. 1937

୩୩. ibid P- 41. ୩୪. ibid P. 49. ୩୫. ଓ ୩୬. ibid P. 136.
୩୭. ୩୮, ୩୯, ସ୍ୱ. ଗ୍ର. ପୃ: ୩୬ । ୪୦. କାଳାନ୍ତର ରବୀନ୍ଦ୍ରନାଥ ଠାକୁର ପୃ: ୩୮୨-୮୩ ।
୪୧. ବିଶ୍ୱଇତିହାସ-ନେହେରୁ : ୩ୟ ଖଣ୍ଡ ପୃ: ୩୫୯ । ୪୨. ଫ. ଗ୍ର. ପୃ: ୮୩୬ ।

## ପଞ୍ଚମ ଅଧ୍ୟାୟ

୧. 'Aristole, I have been told, has said, that poetry is the most Philosophic of all writings; it is so : its object is truth, not individual and local, but general, and operative.'
The use of poetry and the use of criticism.

T. S. Eliot. P. 75.

୨. Practical Criticism-I. A. Richards. P.351.

୩. An Introduction to poetry-J. B. Hubbel and John O. Beaty. P. 549.

୪. A History of World Civilisations. - James Edgar Swain-P. 445.

୫. L'Inde Et. e Monde-Sylvain Leve-Paris 1928-P. 1[illegible]8.

୬. The chief currents of conteporary philosophy
D. M. Dutta. P. 567. Cal. University-1960 (APP.I)

୭. ଭାରତୀୟ ଦର୍ଶନ ପ୍ରବେଶିକା-ପଣ୍ଡିତ ବିନାୟକ ମିଶ୍ର ପୃ: ୨୭ ।

୮. ଓଡ଼ିଆ ଲୋକଗୀତ ଓ କାହାଣୀ-ଡକ୍ଟର କୁଞ୍ଜବିହାରୀ ଦାଶ ପୃ: ୧୭୫ ।

୯. ଫ. ଗ୍ର. ପୃ: ୯୫୭ ୫୮ ('ଧର୍ମବିଜୟ' କବିତା ଦ୍ରଷ୍ଟବ୍ୟ) । ୧୦. ତତ୍ରୈବ ପୃ: ୧୪୪ ।
୧୧. ତତ୍ରୈବ ପୃ: ୧୪୬ । ୧୨ ତତ୍ରୈବ ପୃ: ୭୦୭ । ୧୩. ତତ୍ରୈବ ପୃ: ୭୦୮ ।
୧୪. ତତ୍ରୈବ ପୃ: ୭୦୯ । ୧୫. ସ୍ୱ. ଗ୍ର. ପୃ: ୩୫୩ । ୧୬ ଫ. ଗ୍ର. ପୃ: ୭୦୬ ।
୧୭. ସ୍ୱ. ଗ୍ର. ପୃ: ୬୨ । ୧୮. ସ୍ୱ. ଗ୍ର. ପୃ: ୭୬ । ୧୯. ଫ. ଗ୍ର. ପୃ ୭୫୯ ।
୨୦. ମ. ଗ୍ର. ପୃ: ୨୫୮ । ୨୧ ଫ. ଗ୍ର. ପୃ: ୭୬୩ ।

୨୨. Western Influence in Bengali Literature.

Prof. P. R. Sen P. 365

୨୩. ଘ. ଗ୍ର. ପୃ: ୧୪୧ ।

୨୪. Meanig of Hope-Prof. Otto Fride'ich Bollnow (ଦ୍ରଷ୍ଟବ୍ୟ) Universitus-Vol-4, No. 3. P. 273

୨୫. Oxford lectures on Poetry-A. C. Bradles P. 121.

୨୬. ଘ. ଗ୍ର. ପୃ: ୨୦୫ । ୨୭. ମ. ଗ୍ର. ପୃ: ୧୬୮ ୫୯ ।

୨୮. କବିଲିପି-ଦେବୀପ୍ରସନ୍ନ ପଟ୍ଟନାୟକ-ପୃ: ୭୨ । ୨୯ ଗ୍ର. ଗ୍ର. ପୃ ୩୨୮-୨୯ ।

୩୦. ଗ୍ର. ଗ୍ର. ପୃ: ୪୭୯ ।

## ଷଷ୍ଠ ଅଧ୍ୟାୟ

୧. କବିଲିପି—ଦେବୀପ୍ରସନ୍ନ ପଟ୍ଟନାୟକ ପୃ: ୯୬ ।

୨. ୧୮୭୯ ଖ୍ରୀଷ୍ଟାବ୍ଦ ମେ ୨୩ ତାରିଖରେ ଏଡୁକେଶନ ଗେଜେଟରେ ଭୂଦେବଙ୍କ କବିତାରୁ ଏହା ସୂଚୀତ :

> ସେଇଦିନ ରାଧାନାଥ, ଆଛେତବ ମନେ
> ସେଇଦିନ ପ୍ରିୟବର, ମମ ସନ୍ନିଧାନେ
> କରିଥ୍ଲା ଅଗାଧ ସୁଖେ,
> ହରଷିତ ସ୍ମିତ ମୁଖେ
> ଉପେନ୍ଦ୍ର ଭଂଜେର ସେଇ କବିତା ସୁନ୍ଦର
> ଶୁନାୟେ ମୋହିଥ୍ଲା ଛିଲେ ଆମାର ଅନ୍ତର

୩. ଗ୍ର. ଜୀ. ପୃ: ୪୬

୪. ଗ୍ର. ଜୀ. ପୃ: ଏକନ୍

୫ ଓ ୬ ଗ୍ର. ଜୀ. ପୃ: ୧୦୨

୭. The classical Tradition in poetry – Gilbert Murray PP.182-83

୮. History of English Romanticism in the nineteenth century—Henry A Beers. Ne 1918, P. 27

୯. The orphic voice – Elizabeth sit weel P. 6

୧୦. ଡଗର ( ରାଧାନାଥ ବିଶେଷାଙ୍କ ) ୬୧-୬୨-ଡସେମ୍ବର-ଜାନୁଆରି ସଖ୍ୟା ଗ୍ରବଗ୍ରାହୀ ମିଶ୍ରଙ୍କ ରାଧାନାଥଂକ କାବ୍ୟରେ ପୌରାଣିକ ଉପାଦାନ (ଦ୍ରଷ୍ଟବ୍ୟ)

୧୧· Latin literature in Translation—kevin Guinah and Alfred P. Dorjahn-see Introduction.

୧୨· ସ୍ୱ· ଗ୍ର· ପୃ: ୪୧

୧୩· 'Mythology—Edith Hamilton P· 174

୧୪· ସ୍ୱ· ଗ୍ର· ପୃ: ୪୯

୧୫· Centaur—ଘୋଟକାକୃତ ମନୁଷ୍ୟ ମୁଖ ବିଶିଷ୍ଟ ଗ୍ରୀକ୍ ପୁରାଣ ବର୍ଣ୍ଣିତ ଜୀବ ।

୧୬· Mythology—Edith Hamilton

୧୭· ଓଡ଼ିଶାର ଇତିହାସ—ପ୍ୟାରୀମୋହନ ଆଚାର୍ଯ୍ୟ ପୃ: ୬୦ (୨ୟ ସଂ)

୧୮· ମାଦଳାପାଞ୍ଜି ପୃ· ୨୧-୨୧ (ପ୍ରାଚୀ ସଂସ୍କରଣ)

୧୯· ସମାଲୋଚନା ( ବିଶ୍ୱଭାରତୀ ପ୍ରକାଶିତ) କୁଞ୍ଜ ବିହାରୀ ଦାଶ, ପୃ: ୮୯

୨୦· ଓଡ଼ିଶାର ଇତିହାସ—ପ୍ୟାରୀ ମୋହନ ଆଚାର୍ଯ୍ୟ

୨୧· ମାଦଳା ପାଞ୍ଜି—ପୃ: ୨୩-୨୪

୨୨· The cenci P. B. Shelly (see preface)

୨୩· Aeschylas (୫୨୫-୪୫୬) ଓରେଷ୍ଟିଆ ନାଟକ ସମୂହ ରଚନା ସମୟ ୪୫୮ ଖ୍ରୀ:ପୂ: ବୋଲି କେତେକ ଆଲୋଚକ ମତବ୍ୟକ୍ତ କରିଛନ୍ତି ।

୨୪· Agamemnon—Tr. E. D. A. Morshead P· 6 Macmillan and Co.

୨୫· ସ୍ୱ· ଜୀ· ପୃ: ୨୧୯ (ବିଶ୍ୱନାଥ ରଥଂକୁ ରାଧାନାଥଂକ ଲିଖିତ ୩୦।୧୧ ୧୮୯୫ ପତ୍ର (ଦ୍ରଷ୍ଟବ୍ୟ)

୨୬· କବିଳିପି —ଦେବୀ ପ୍ରସନ୍ନ ପଟ୍ଟନାୟକ ପୃ: ୭୨

୨୭· Modern Oriya literature —Priya Ranjan sen

୨୮· ସ୍ୱ· ଗ୍ର· ପୃ: ୨୨୪

୨୯· The Romantic Agony —Maria Pruze P. 38 Oxford Universety Press—1594

୩୦· କବିଳିପି—ପୃ: ୭୦ ୩୧· । ୩୧ । ସ୍ୱ· ଜୀ· ପୃ: ୫୯୨

୩୨· Naturalism in English poetry —S. A. Brook P. 25

୩୩· Fundamentals of Indian Art—S. N. Das gupta· P. 18.

୩୪· ସ୍ୱ· ଜୀ· ପୃ: ୮୬୫ । ୩୫· କବିଳିପି ପୃ: ୯୪ ପଦ୍ୟଦ· ୪୩ ।

୩୬· ସ୍ୱ· ଗ୍ର· ପୃ: ୪୦୧ । ୩୭· ଉତ୍କଳ ପୃ: ୧୬୧ । ୩୮· ଉତ୍କଳ ପୃ ୧୬୫

୩୯. What is classoic -Sainte Beuve see great Essays. Ed. Houston paterson P. 230.

୪୦. What is classic—T. S. Eliot P. 10

୪୧. ସ୍ୱ· ଗ· ପୃ· ୪୯୪ । ୪୨· ସ୍ୱ· ଗ· ୧୭୬ ।

୪୩. The literary Epic if we may judge by its best examples flourishes not in the hay days of a nation or of a canse but in its last days of inits after math From virgil to Milton C. M. Bowra, P-28 Macmillan and Co. London, 1945

୪୪. କବିଲିପି ପୃ: ୭୫ । ୪୫· ସ୍ୱ· ଗ· ପୃ: ୧୭୭ । ୪୬· ସ୍ୱ: ଗ: ପୃ: ୨୦୯ ।

୪୭· ଉତ୍କୈବ ପୃ: ୨୧୧ । ୪୮· ଉତ୍କୈବ ପୃ: ୨୧୪ । ୪୯· ଉତ୍କୈବ ପୃ: ୧୬୯

୫୦· କବିଲିପି ପୃ: ୭୮ ।

୫୧· English satire and satirists—Hough walker. ୨୩।୪ P.V.

୫୨· ଶ୍ରୀ ସ୍ୱରଚ୍ଛ ଦର୍ପଣ—ଗୋପୀନାଥ ନନ୍ଦ ଶର୍ମା Inr. P· V· ପୃ: ୬୮୩

୫୩. English satire and satirists Hough walker P. 283

୫୪. କବିଲିପି : ପୃ ୯୨ । ୫୫ ସ୍ୱ· ଗ· ପୃ: ୨୮୪ । ୫୬· English satire and satirists P· 285·

୫୭· କବିଲିପି ପୃ ୭୮ । ସ୍ୱ· ଗୀ· ପୃ ୪୭୦ ।

୫୯· English satire and satirists. Intr. PVII

୬୦· ସ୍ୱ ଗ. ପୃ ୨୮୯

୬୧. History of English Romanticism in 19th century Henry A Beers P. 13.

୬୨. ସ୍ୱ· ଗ· ପୃ : ୩୨୪

୬୩. ସମାଲୋଚନା—କୁଞ୍ଜବିହାରୀ ଦାଶ ପୃ ୧୨୨

୬୪· ସ୍ୱ· ଗୀ· ପୃ ୪୬୬ –୬୨ (ଦ୍ରଷ୍ଟବ୍ୟ)

## ସପ୍ତମ ଅଧ୍ୟାୟ

୧. ଅବସରବାସରେ-ପ୍ରଥମ ସଂସ୍କରଣ ଭୂମିକା । ୨. ଫ. ଗ୍ର. ପୃ: ୮୯ । ୪. ଫ.ଗ୍ର.ପୃ: ୮୯
୫. ଫ. ଗ୍ର. ପୃ: ୮୨ । ୬. ଫ. ଗ୍ର. ପୃ: ୩ । ୭. ଫ. ଗ୍ର. ପୃ: ୯୪ ।
୮. ଅବସରବାସରେ ପ୍ରଥମ ସଂସ୍କରଣ ଭୂମିକା । ୯. ଫ.ଗ୍ର. ପୃ:୭୭ । ୧୦.ଫ.ଗ୍ର. ପୃ:୬୫୩
୧୧. ବ୍ୟାସ କବି ଫକୀରମୋହନ-ନଟବର ସାମନ୍ତରାୟ-ପୃ: ୧୦୪ ।
୧୨. Phases of English Poetry-Herbert Read P. 43.
( See Passionate love, Sophisticated love, physical and calculated love. ) ୧୩. Ibid P.44.
୧୪. ପୁଷ୍ପମାଳାର ଉତ୍ସର୍ଗ ପତ୍ର । ୧୫. ଫ. ଗ୍ର. ପୃ: ୭୭୦ । ୧୬. ଫ. ଗ୍ର. ୬୯୧ ।
୧୭. ଫ.ଗ୍ର. ପୃ: ୬୯୨ । ୧୮. ଫ. ଗ୍ର. ପୃ: ୭୬୪ । ୧୯. ଫ. ଗ୍ର. ପୃ: ୭୬୪ ।
୨୦. ଫ.ଗ୍ର. ପୃ: ୭୦୧ । ୨୧. ଫ.ଗ୍ର. ପୃ: ୭୬୮ । ୨୨. ଫ.ଗ୍ର. ପୃ: ୬୭୭ ।
୨୩. An Introduction to the Study of Literature.
W. H. Hudson. P. 105.
୨୪. ଓଡ଼ିଆ ଲୋକଗୀତ ଓ କାହାଣୀ-ଡା: କୁଞ୍ଜବିହାରୀ ଦାଶ ପୃ: ୪୯ ।
୨୫. ଫ.ଗ୍ର. ପୃ: ୭୯୨ । ୨୬ ଫ.ଗ୍ର. ପୃ: ୬୭୧ । ୨୭. ଫ.ଗ୍ର. ପୃ: ୬୭୫ ।
୨୮. ଗ୍ର.କା. ପୃ: ୪୬୧ ।
୨୯. Aesthetic-Benedetto Croce-P. 12. ୩୦. Poetry is the Language of feeling, prose of the intelect.

## ଅଷ୍ଟମ ଅଧ୍ୟାୟ

୧. Cassel's Encyclopaedia of World literature.
Vol. I. P. 354.
୨. History of English Literature—Legouis and Cazamian.
୩. ଲୋକସାହିତ୍ୟ – ରବୀନ୍ଦ୍ରନାଥ ଠାକୁର-ପୃ: ୨୧ । (New Edn. 1957). P. 814,
୪. ଛନ୍ଦୋବିବ ପୃ: ୫୦ । ୫—ଭା: ଗ୍ର: ପୃ: ୩୬୭ । ୬ – ମ: ଗ୍ର: ପୃ: ୧୧୩ ।
୭. New English Dictionery :
See An Introduction to the study of Literature P. 99.
୮. English Odes—Edmund Gosse. Introduction P. XIII
୯. Preface to world Literature— A. Guerard. P.218.

୧୦. ମାନୁଷେର ଧର୍ମ—ରବୀନ୍ଦ୍ରନାଥ ଠାକୁର—ପୃ: ୮୦ । ୧୧—ପ: ଗ: ପୃ: ୧୯ ।
୧୨. ପ: ଗ: ପୃ: ४୫ ।

୧୩. "Many a hearth upon our dark globe
Sighs after many a vanished face
Many a planet by many a Sun may roll
With the dust a vanished race
Spring and Summer and Autumn and
Winter, and all these old revolutions of earth
All new-old revolution of Empire—
Change of tide—what is all of it worth."
The work of Alfred Tennyson.
Macmillan & Co. (1915) P. 850

୧୪. ପ: ଗ: ପୃ: ୧୮୪ । ୧୫ ପ: ଗ: ପୃ ୨୭୦ ।
୧୬. Cassel's Encyclopaedia of world literature
Vol. I. P.400
୧୭. "A faultless Sonnet is worth a long poem"
୧୮. ଓଡ଼ିଆ ଲୋକଗୀତ ଓ କାହାଣୀ—ଡଃ କୁଞ୍ଜବିହାରୀ ଦାଶ—ପୃ: ४୯ ।
୧୯. "A Sonnet is a moment's monument."
୨୦. On poetry and Poets—T. S. Eliot. P. 37
Faber and Faber—London—1957
୨୧. ସନେଟେର ଆଲୋକେ ମଧୁସୂଦନ ଓ ରବୀନ୍ଦ୍ରନାଥ-ଜଗଦୀଶ ଭଟ୍ଟାଚାର୍ଯ୍ୟ ପୃ: ୩୨
୨୨. English Sonnet—Anid Hamer
Introduction—XLIV—XLV.
୨୩ Elizabethan Love Sonnet—J. W. Lever (1956) P.6
୨୪ ପ: ଗ: ପୃ: ୨୭୩ । ୨୫. ପ: ଗ: ପୃ: ୧୯୨ ।
୨୬. Selected Essays T. S. Eliot—P. 137-138.
Faber and Faber. London-1934.
୨୭. "କବି ବଚନାୟତ୍ତା ଲୋକଯାତ୍ରା । ସା ଚ ନିଃଶ୍ରେୟ ସମୂଳଂ ।"
କାବ୍ୟ ମୀମାଂସା—ରାଜଶେଖର ।
୨୮. ଉତ୍କଳ ସାହିତ୍ୟ—ପ୍ରଥମ ବର୍ଷ ସଖ୍ୟା ୧, ୨, ४, ୫,

## ନବମ ଅଧ୍ୟାୟ

୧. What I am concerned to dispel in any derogatory association connected with the term 'minor poetry' together with the suggestion than minor poetry is easier to read, or less worthwhile to read, then major poetry.

On poetry and poets – T. S. Eliot-P. 39.
Faber and Faber-London-1957.

୨. History of English Literature—Legouis & Cazamian 13th impression-P. 1065.

୩. ଦ୍ରଷ୍ଟବ୍ୟ :—ସ୍ୱର୍ଗତ ପଣ୍ଡିତ ଗୋବିନ୍ଦରଥଙ୍କ ଜୀବନ ଚରିତ—ପଣ୍ଡିତ ଶ୍ରୀ ନରସିଂହ ମହାପାତ୍ର ନବଭାରତ—୬ଷ୍ଠ ବର୍ଷ ୮ମ ଓ ନବମ ସଂଖ୍ୟା । କର୍ମଯୋଗୀ ଗୌରିଶଙ୍କର ମୃତ୍ୟୁଞ୍ଜୟ ରଥ ଅଷ୍ଟମ ପରିଚ୍ଛେଦ ।

୪. କବିତା କଳାପ—୧ମ ଓ ୨ୟ ଭାଗ—୧୮୭୮ରେ ପ୍ରକାଶିତ । ପୁରୁଷୋତ୍ତମ ବର୍ଣ୍ଣନା କଟକ ଦର୍ଶନ, ମାଛ—ମନସା, ଡାଳି ତରକାରି ମନସା ଓ ଏହି ଧରଣର ବହୁ କ୍ଷୁଦ୍ର ପୁସ୍ତକ ।

୫. କବିତା କଳାପ—ଦ୍ୱୀପାନ୍ତରିତ ବ୍ୟକ୍ତିର ଖେଦ ।

୬. ଫିଚର ସାହେବ – ନବ ଭାରତରୁ ପଣ୍ଡିତ ନରସିଂହ ମହାପାତ୍ରଙ୍କ ପ୍ରବନ୍ଧରୁ ଉଦ୍ଧୃତ ।

୭. ଫ. ଗ୍ର. ପୃ: ୬୬୧ । ୮. ସମାଲୋଚନା—ଡଃ କୁଞ୍ଜବିହାରୀ ଦାଶ—ପୃ: ୮୫ ।

୯. ସ୍ୱ. ଗ୍ର. ପୃ: ୪୬୮ । ୧୦ ବୀରବାମା-ଭୂମିକା-ବାସୁଦେବ ଗ୍ରନ୍ଥାବଳୀ ପୃ: ୨ ।

୧୧. ବୀରବାମା—ବାସୁଦେବ ଗ୍ରନ୍ଥାବଳୀ-ପୃ: ୭ । ୧୨. ଛନ୍ଦୋମାଳା—ବାସୁଦେବ ଗ୍ର. ପୃ: ୨୩

୧୩. ସମାଲୋଚନା – ଡଃ କୁଞ୍ଜବିହାରୀ ଦାସ—ପୃ: ୮୬ ଓ ୮୭ । ୧୪. ମ. ଗ୍ର. ପୃ: ୨୧୩ ।

୧୫. ଉତ୍କଳ ସାହିତ୍ୟ—୨ୟ ଭାଗ—ପୃ: ୧୪୬ । ୧୬. ଉତ୍କଳ ସାହିତ୍ୟ-୧ମ ଭାଗ-୩ୟ ସଂଖ୍ୟା ପୃ: ୫୯ । ୧୭. ଉତ୍କଳ ସାହିତ୍ୟ-୧ମ ଖଣ୍ଡ-୯ମ ସଂଖ୍ୟା-ପୃ: ୨୦୬-୮ ।

୧୮. ତପସ୍ୱିନୀ – ଉ. ସା. । ୧୯. ସ୍ୱ. ଜୀ. ପୃ: ୨୧୭ । ୨୦ କର୍ମଯୋଗୀ ଗୌରିଶଙ୍କର —ମୃତ୍ୟୁଞ୍ଜୟ ରଥ -ପୃଃ ୭୬-୭୭ । ୨୧. ଉତ୍କଳ ସାହିତ୍ୟ-ପ୍ରଥମ ଖଣ୍ଡ ୬ଷ୍ଠ ସଂଖ୍ୟା ପୃ: ୧୪୨ । ୨୨. ଫ. ଗ୍ର. ପୃ: ୬୬୩ । ୨୩. ଉତ୍କଳ ସାହିତ୍ୟ – ୧ମ ଖଣ୍ଡ—୬ଷ୍ଠ ସଂଖ୍ୟା—ପୃ: ୧୪୪ । ୨୪. ଉତ୍କଳ ସାହିତ୍ୟ – ୭ମ ଭାଗ—୧୨ ସଂଖ୍ୟା ।

# ପରିଶିଷ୍ଟ

## ସଂସ୍କୃତର ପ୍ରଭାବ

୧. ଗ୍ର· ଗ୍ରୀ· ପୃ: ୭୫୭ । ୨. ତଦେବ ପୃ:୫୮୯ । ୩. ଓଡ଼ିଆ ଭାଷା ଓ ସାହିତ୍ୟ ନୀଳକଣ୍ଠ ଦାସ ପୃ:୨୭୪ । ୪. ମେଘଦୂତ—ଅନୁବାଦକ—ରାଧାମୋହନ ଗଡ଼ନାୟକ-ଭୂମିକା ପୃ:୭

୫. ପ୍ରାଚୀନ ସାହିତ୍ୟ-ରବୀନ୍ଦ୍ରନାଥ ଠାକୁର ପୃ:୫୧ । ୬. ଓଡ଼ିଆ ଭାଷା ଓ ସାହିତ୍ୟ ପୃ:୨୩୩

୭. ତାମର୍ପ୍ୟମାସ ଚ ଶୋକଦୀନାଂ ତଦାଗମପ୍ରୀତିଷୁ ତାପସୀଷୁ
ନିବଷ୍ଟସାରଂ ପିତୃଭିର୍ହିମାଂଶୋ-ରନ୍ତ୍ୟାଂ କଳାଂ ଦର୍ଶଇ ବୌଷଧୀଷୁ ।
ରଘୁବଂଶ—୧୪।୧୮୦

୮. ମ· ଗ୍ର· —ମଧୁସୂଦନଙ୍କ ଜୀବନ ବୃତ୍ତାନ୍ତ ପୃ: —୧୩

୯. Sanskrit Drama—A. B. Keith. P. 195 (1954 Edn.)

୧୦. ଓଡ଼ିଆ ଭାଷା ଓ ସାହିତ୍ୟ ପୃ:୨୨୫ । ୧୧. ତଦେବ—ପୃ: ୨୨୪ ।

୧୨. ଫକୀର ମୋହନଙ୍କ ଦ୍ୱାରା ଅନୂଦିତ ଗ୍ରନ୍ଥର ନାମ ଓ ପ୍ରକାଶ କାଳ : ରାମାୟଣ (ବାଲକାଣ୍ଡ) ୧୮୮୦-୧୮୯୫ ; ମହାଭାରତ ଆଦି ଓ ସଭାପର୍ବ—୧୮୮୩ ଓ ୧୮୮୭ । ମହାଭାରତର ଅବଶିଷ୍ଟ ପର୍ବ ଅପ୍ରକାଶିତ । ଶ୍ରୀମଦ୍‌ଭଗବତ ଗୀତା—୧୮୮୫ । ଖିଳ ହରିବଂଶ—୧୯୦୨, ଉପନିଷଦ ସଂଗ୍ରହ—୧୯୦୫ ।

୧୩. ଫ· ଗ୍ର· ପୃ: ୧୦୮୦ । ୧୪. ଫକୀର ମୋହନ ପରିକ୍ରମା-ପରିଶିଷ୍ଟ—ପୃ: ୧୨ ।

୧୫. ସମାଲୋଚନା—କୁଞ୍ଜବିହାରୀ ଦାଶ ପୃ: ୧୯ ; ୧୬. ଓଡ଼ିଆ ଭାଷା ଓ ସାହିତ୍ୟ—ପୃ:୧୯୯

୧୭. ସମାଲୋଚନା—କୁଞ୍ଜବିହାରୀ ଦାଶ ପୃ: ୨୨ ।

## ନବ ଯୁଗର ଛନ୍ଦ ବିଚାର

୧. ରା· ଗ୍ର· ପୃ: ୪୯୪ ।

୨. "The profit of rhyme is that it drops seeds of sweeter and more luxuriant rhyme, and uniformity, that it conveys itself into its own roots out of sight.
Withman : Preface to leaves of grass.

୩. Nature of poetry-Donald A Strauffer P· 192.

୪. "Rhythm is an expression of the instinct for order in sound which normally governs the human ear."
Encyclopaedia Britanica.

୫. Some concepts of the Alankara Shastra·
V· Raghavan P· 249-50

୬. Nature of poetry-Donald A· Straffer. P· 192.

୭. "Who both by precept and example shows
That prose is verse, and verse is merely prose."
See, Nature of poetry-Donald A. Strauffer-P. 204.

୮. "The jingling sound of like endings, a fault avoyed by the learned Ancients both in poetry and all good oratory." Preface to Paradise lost-Milton.

୯. "Poetry of the highest kind may exist without metre"
Biographia Literaria-S. T. Coleridge Vol. II. P. II

୧୦. Preface to world Literture-A Guerard. P. 134.

୧୧. The use of poetry and the use of criticism
T. S. Eliot. P.71.

୧୨. Preface to World Literature-A. Guerard-P. 132.

୧୩. Prosody-Cassel's Encyclopaedia of World Literature. Vol. I. P. 463.

୧୪. "But poetry has as much to learn from prose as from other poetry; and I think that an interaction between prose and verse, like the interaction between language and language, is a condition of vitality in literature."
The use of poetry and use of criticism-T. S. Eliot.

୧୫. ପ୍ରବନ୍ଧାବଳୀ-ଶ୍ୟାମସୁନ୍ଦର ରାଜଗୁରୁ (ଓଡ଼ିଆ ଛନ୍ଦ)

୧୬. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ—ପଣ୍ଡିତ ନୀଳକଣ୍ଠ ଦାସ-ଦ୍ୱିତୀୟ ଭାଗ-୬ଷ୍ଠ ଅଧ୍ୟାୟ ଓ ଏହି ଅଧ୍ୟାୟର ପରିଶିଷ୍ଟ ଦ୍ରଷ୍ଟବ୍ୟ ।

୧୭. The Analysis of Free Verse Form : Walter Sutton : The journal of Aesthetic and Art criticism. Vol. XVIII No 2 Decr. 1959.

୧୮. ଶ୍ରୀ. ଜୀ. ପୃ: ୮୭୭ । ୧୯. ସାହିତ୍ୟ ସନ୍ଦର୍ଭ-ଅଧ୍ୟାପକ ଗିରିଜାଶଙ୍କର ରାୟ : ୧୦୫ ।

୨୦. ବ୍ୟାକରଣ ପ୍ରବେଶ ରାଧାନାଥ ରାୟ : ପୃ ୧୫୪ (ଛନ୍ଦ ପ୍ରକରଣ ଦ୍ରଷ୍ଟବ୍ୟ) ।

୨୧. ଓଡ଼ିଆ ଭାଷାର କ୍ରମ ପରିଣାମ-ପଣ୍ଡିତ ନୀଳକଣ୍ଠ ୨ୟ ଭାଗ ପୃ. ୨୯୪ ।

୨୨. ଆଧୁନିକ କବିତାରେ 'ଉପଧା ବିଚ୍ଛୁର ଓ ଅନ୍ୟାନ୍ୟ ସମସ୍ୟା—ଝଙ୍କାର ଦ୍ୱିତୀୟ ବର୍ଷ ତଥା "କବିତା ୧୯୬୨ ଓ ନୂତନ କବିତାର ଭୂମିକା" ୪ର୍ଥ ଅଧ୍ୟାୟ ଦ୍ରଷ୍ଟବ୍ୟ ।

୨୩. ତତ୍ରୈବ : କବିତା ୧୯୬୨-ସଚ୍ଚିଦାନନ୍ଦ ରାଉତରାୟ-ପୃ: ୨୪୬ ପ୍ର: ମୁଦ୍ରଣ-୧୯୬୨ ।

୨୪· "Sp…ch in which stresses occur at apparently equal intervals of time."

The Technique of English verse Stewart-P· 2·

୨୫· ଓଡ଼ିଆ ସାହିତ୍ୟର କ୍ରମ ପରିଣାମ-ପଣ୍ଡିତ ନୀଳକଣ୍ଠ, ୨ୟ ଭାଗ ପୃ: ୨୯୬।

୨୬· କବିଲିପି-ଦେବୀପ୍ରସନ୍ନ ପଟ୍ଟନାୟକ-ପୃ: ୭୭ । ୨୭· ର· ଗ· ପୃ: ୪୯୪ ।

୨୮· Preface to Paradise lost-Milton. ୨୯· କବିଲିପି-ପୃ: ୭୦ ।

୩୦. ର· କା· ପୃ: ୮୩୬ । ୩୧· ବାଂଲା ଛନ୍ଦେର ମୂଲସୂତ୍ର-ଅମୂଲ୍ୟଧନ ମୁଖୋପାଧ୍ୟାୟ ପୃ: ୨୨୭ । ୩୨· ର· କା· ପୃ: ୭୩୫–୩୬ । ୩୩· ର· କା· ପୃ: ୮୩୬ ।

୩୪· ଓଗର-ରାଧାନାଥ ବନ୍ଦୋଷାଙ୍କ ଦ୍ରଷ୍ଟବ୍ୟ ୧୯୬୧-୬୨ ଡସେମ୍ବର-ଜାନୁୟାରି ସଂଖ୍ୟା ।

୩୫· Robert Bridges·Militon's Prosody.

A Milton Hand book-by James Holly Hanford-P· 320

୩୬· A Spenser Hand book by H. S. V· Jones P· 400.

୩୭· ଓଡ଼ିଆ ଭାଷା ଓ ସାହିତ୍ୟ-ପଣ୍ଡିତ ନୀଳକଣ୍ଠ-ପୃ: ୨୧୭ ।

# ସାଧାରଣ ନାମ ସୂଚୀ

ନି ୍ାଶିତ

-••

ଂ ଅଞ୍ଚଳେ

ାସ୍ତ : ନବଜାଗରଣ ଯୁଗ (୧୯୭୮) ୫୪୨-୦୦

ଅନ୍ୟ ବହି

ଜ୍ଞାନକୋଷ (ଧ୍ୱ... ଡକ୍ଟର ମାୟାଧର ମାନସିଂଙ୍କ ଭୂମିକା ସହିତ) ୧୯୫୭

ଶୈଳ ଓ ସୀମାନ୍ତ ( ୧୯୫୯ ); ଓଡ଼ିଆଭାଷା ଓ ସାହିତ୍ୟ

ଏକ ଅଧ୍ୟୟନ (୧୯୬୮); ଆଧୁନିକତା ଓ ଆଧୁନିକ ସାହିତ୍ୟ ( ୧୯୭୯ )